# ସାର୍ବଜନୀନ ଗୀତା

( ପ୍ରଥମ ଖଣ୍ଡ )

ଲେଖକ :

ଡକ୍‌ଟର ମାୟାଧର ମାନସିଂହ

ପ୍ରକାଶକ :

**ଜେ. ମହାପାତ୍ର ଏଣ୍ଡ କୋ.**

**ଛାତ୍ରସାଥୀ ଅଫିସ**

ନୟାସଡ଼କ, କଟକ-୨

ମୂଲ୍ୟ ଟ ୧୫-୦୦

# ସାର୍ବଜନୀନ ଗୀତା

# SARBAJANIN GITA

ଲେଖକ :
ଡକ୍ଟର ମାୟାଧର ମାନସିଂହ

Written by :
Dr. Mayadhar Mansinha

ପ୍ରକାଶକ :
ଜେ. ମହାପାତ୍ର ଏଣ୍ଡ କୋ.
ନିମଚଉଡ଼ି,
କଟକ-୨

Published by :
J. Mohapatra & Co.
Nimchouri,
Cuttack-2

ମୁଦ୍ରାକର :
ଛାତ୍ରସାଥୀ ପ୍ରେସ
କାଳୀଗଳି,
କଟକ-୨

Printed by :
Chhatrasathi Press
Kaligali,
Cuttack-2

ମୂଲ୍ୟ : ଟ ୧୫-୦୦

Price : Rs. 15-00

# ଗୀତାର ନିଷ୍ଠାବାନ୍ ପାରାୟଣିକ,
# ନିଖିଳ ଉତ୍କଳ ଥିଓସଫିକାଲ୍ ସୋସାଇଟିର ସଭାପତି
# ଡକ୍ଟର ରାମଚନ୍ଦ୍ର ରଥଙ୍କର
# ଏହି 'ସାର୍ବଜନୀନ ଗୀତା' ଉପରେ ପଦେ ।

ଡକଟର ମାୟାଧର ମାନସିଂହଙ୍କର 'ସାର୍ବଜନୀନ ଗୀତା', ଶ୍ରୀମଦ୍ ଭଗବଦ୍‌ଗୀତାର ଓଡ଼ିଆ-ଭାଷ୍ୟମାନଙ୍କ ମଧ୍ୟରେ ଏକ ଅତ୍ୟାଧୁନିକ, ବିଜ୍ଞାନ-ସମର୍ଥିତ ଓ ସଂପୂର୍ଣ୍ଣ ନୂତନ ଅବଦାନ । ଏଥିରେ, ସେ ଯେପରି ସାଂପ୍ରଦାୟିକ ଧର୍ମର ସଂକୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ ନ ରହି ; ନିର୍ଭିକ ଓ ନିରପେକ୍ଷ ଭାବରେ, ଦର୍ଶନ, ବିଜ୍ଞାନ, ଇତିହାସ ତଥା ସାଂପ୍ରତିକ ମହାତ୍ମାମାନଙ୍କର ଜୀବନ-ଦୃଷ୍ଟାନ୍ତ ଦେଇ ଆମ୍ଭମାନଙ୍କର ଦୈନନ୍ଦିନ ଓ ସମସାମୟିକ ଜୀବନରେ ଘଟି ଚାଲିଥିବା ଅନୁଭବମାନଙ୍କ ସହିତ ଗୀତାର ଗୂଢ଼ ତତ୍ତ୍ୱ ସବୁ ଉପସ୍ଥାପିତ କରିଛନ୍ତି, ତାହା କେବଳ ତାଙ୍କ ବିଦ୍‌ବତ୍ତା ଓ ପ୍ରତିଭାର ପରିଚାୟକ ।

ଡକ୍‌ଟର ମାନସିଂହ ଓଡ଼ିଶାରେ ଏକ ପ୍ରତିଷ୍ଠିତ କବି, ଲେଖକ ଓ ଶିକ୍ଷାବିତ୍ ଭାବରେ ହିଁ ସୁପରିଚିତ ; କିନ୍ତୁ କ୍ୱଚିତ୍ ଜାଣନ୍ତି ଯେ ସେ ମଧ୍ୟ ଜଣେ ଦାର୍ଶନିକ । ତାଙ୍କର ଦର୍ଶନ ଅବଶ୍ୟ କୌଣସି ନିର୍ଦ୍ଦିଷ୍ଟ ପାଠ୍ୟ-ପୁସ୍ତକ ମଧ୍ୟରେ ଆବଦ୍ଧ ନୁହେଁ । ତାର ଏକ ସଂଜ୍ଞା ହୋଇପାରେ, ବ୍ରହ୍ମବିଦ୍ୟା ବା ଥିଓସଫିକାଲ୍ ଦର୍ଶନ । କାରଣ ବ୍ରହ୍ମବିଦ୍ୟା ଦର୍ଶନର ଏହା ହିଁ ପ୍ରଧାନ ବୈଶିଷ୍ଟ୍ୟ ଯେ, ଏଥିରେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ବିଭିନ୍ନ, ଧର୍ମ, ଦର୍ଶନ ଓ ବିଜ୍ଞାନ ସହିତ ରହସ୍ୟବାଦୀମାନଙ୍କର ଗୁପ୍ତ-ବିଜ୍ଞାନକୁ ମିଳାଇ, ଏକ ଯୁକ୍ତିଯୁକ୍ତ ବିଚାରବନ୍ତ ସମନ୍ୱୟ ସଫଳତାର ସହିତ ଠିଆ କରାଯାଇପାରିଛି ।

ଗତ ଶହେ ବର୍ଷ ଧରି, ଶ୍ରୀମଦ୍ ଭଗବଦ୍‌ଗୀତା ମାନବଜୀବନର ଏକ ଆଦର୍ଶ ଗ୍ରନ୍ଥ ହିସାବରେ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିଆସିଛି । ପୃଥିବୀର ବହୁ ବଡ଼ ପଣ୍ଡିତମାନଙ୍କ ମତରେ, ଗୀତାର ବିଷୟବସ୍ତୁ ଦେଶ-କାଳ-ପାତ୍ର-ନିର୍ବିଶେଷରେ ସାର୍ବଭୌମ, ସାର୍ବ-କାଳୀନ ଓ ସାର୍ବଜନୀନ ହୋଇ ଦଣ୍ଡାୟମାନ । ଆମର ପ୍ରତ୍ୟକ୍ଷୀଭୂତ ଚାକ୍ଷୁଷ ଜଗତରେ ପ୍ରାକୃତିକ ନିୟମାବଳୀରେ ସ୍ଥାନ ଓ ସମୟର ବାଛ-ବିଚାର ନାହିଁ । ଅଗ୍ନିର ଦାହିକା ଶକ୍ତି ବା ଜଳର ଶୀତଳତା, ସବୁ ସ୍ଥାନ ଓ ସମୟରେ, ସମାନ ପରିସ୍ଥିତିରେ ବିରାଜିତ ଏବଂ ଠିକ୍ ଏହି କାରଣରୁ ହିଁ ଆଧୁନିକ ବିଜ୍ଞାନ ଏପରି ନିର୍ଭରଯୋଗ୍ୟ ଓ ସର୍ବତ୍ର ଆଦୃତ ।

ପୁଣି ସେହି ବିଜ୍ଞାନ ଜଗତରେ ଯେପରି ପ୍ରତିଭାଶାଳୀ ବୈଜ୍ଞାନିକମାନେ ଦୃଶ୍ୟମାନ ପ୍ରକୃତିର ପ୍ରଚ୍ଛନ୍ନ ରହସ୍ୟ ସବୁ ଉଦଘାଟନ କରିଚାଲିଛନ୍ତି, ସେହିପରି ଆଉ ଦଳେ ବିଜ୍ଞାନଧର୍ମୀ ମନସ୍ୱୀ, ମନୁଷ୍ୟର ଚିତ୍ତରାଜ୍ୟରେ ମଧ୍ୟ ଲୁକ୍‌କାୟିତ ରହସ୍ୟ ସବୁ ଉଦ୍‌ଘାଟନ କରି ଜନସମାଜରେ ଉପସ୍ଥାପିତ କରିଆସୁଛନ୍ତି ।

ପ୍ରକୃତିର ସ୍ରଷ୍ଟା ଈଶ୍ୱରଙ୍କୁ ଆମେ କେହି ଦେଖୁନାହିଁ ; କିନ୍ତୁ ପ୍ରକୃତିର ଯାବତୀୟ ଜ୍ଞାତ ଓ ଅଜ୍ଞାତ ରହସ୍ୟ ସବୁକୁ ସେହି ଅଜ୍ଞାତ, ଅଦୃଷ୍ଟ ସ୍ରଷ୍ଟାଙ୍କର ପ୍ରକଟନ ବୋଲି ହିଁ ଧରିବାକୁ ହେବ । ଅର୍ଥାତ୍, ସୃଷ୍ଟ-ପ୍ରକୃତି ଓ ସ୍ରଷ୍ଟା-ଈଶ୍ୱର ଅଭିନ୍ନ । ସେହିପରି ଗୀତାକାରଙ୍କୁ ଆମେ କେହି ଦେଖି ନାହୁଁ ବା ଦେଖିବାର କଳ୍ପନା ବି ନାହିଁ ; ତେଣୁ ତାଙ୍କରି ଶବ୍ଦାବଳିରେ ପରିବେଷ୍ଟିତ ଗୀତା, କୌଣସି ଏକ ପରବର୍ତ୍ତୀ ଭାଷ୍ୟକାରର ନିର୍ଦ୍ଦିଷ୍ଟ ଭାବଦ୍ୱାରା ସୀମିତ ରହି

ନ ପାରେ ଏବଂ ସେହି ଦୃଷ୍ଟିରୁ ଡକ୍ଟର ମାନସିଂ ତାଙ୍କର ଏହି "ସାର୍ବଜନୀନ ଗୀତା"ରେ କ୍ରମାଗତଭାବରେ ପରିବେଷିତ କରି ଯାଇଥିବା "ବିଶେଷ ଭାଷ୍ୟ" ଗୁଡ଼ିକ, ସ୍ୱୟଂ ଦୂରଦ୍ରଷ୍ଟା, ତ୍ରିକାଳଜ୍ଞ ଗୀତାକାର ଭଗବାନ ବ୍ୟାସଦେବଙ୍କର ମନମୁଖୀ ଯେ ନୁହେଁ, ଏହା ମଧ୍ୟ ଆମେ ଜୋର୍ ଦେଇ କହି ପାରିବା ନାହିଁ ।

ଊନବିଂଶ ଶତାବ୍ଦୀର 'ବସ୍ତୁବାଦ'-ବିଜ୍ଞାନ, ବିଂଶ ଶତାବ୍ଦୀରେ 'ଶକ୍ତି-ବାଦ'ରେ ପରିଣତ ହୋଇ ସାରିଲାଣି । ସେହି ଦୃଷ୍ଟିରୁ ଶ୍ରୀମଦ ଭଗବତ୍ ଗୀତା ଯାହାକି ଶାଶ୍ୱତ-ଓ-ସନାତନ-ଶକ୍ତି-ସମ୍ବନ୍ଧି ସାର-ତତ୍ତ୍ୱ, ତାହା କୌଣସି ଗୋଷ୍ଠୀ, ସଂପ୍ରଦାୟ ବା ଦେଶର ସୀମା ମଧ୍ୟରେ ଆବଦ୍ଧ ହୋଇ ନ ପାରେ ।

ଆଧୁନିକ ବିଜ୍ଞାନ ପ୍ରତ୍ୟେକ ଶକ୍ତିର ତିନୋଟି ଗୁଣ ଆବିଷ୍କାର କରିଛି । ସେଗୁଡ଼ିକ ହେଲେ-ସାର୍ବଭୌମତା, ଅତୀନ୍ଦ୍ରିୟତା, ଓ ନୈମିତ୍ତିକତା । ଶ୍ରୀମଦ ଭଗବଦ୍ ଗୀତା ସଦୃଶ ମହାଗ୍ରନ୍ଥ, ଯାହାକି ମାନବ-ପ୍ରକୃତିର ଇନ୍ଦ୍ରିୟ, ମନ ଓ ବୁଦ୍ଧିଭଳି ଅତି ସୂକ୍ଷ୍ମ ଶକ୍ତିର ବ୍ୟାପାରମାନଙ୍କ ସହିତ ସଂପୃକ୍ତ, ତହିଁରେ ସର୍ବଜନପ୍ରତି ଲାଗୁହେଉଥିବା ତତ୍ତ୍ୱ ସବୁ ହୃଦୟଙ୍ଗମ କରି କେବଳ ଜନକଲ୍ୟାଣ ଲକ୍ଷ୍ୟରେ ହିଁ ଉପସ୍ଥାପିତ କରିବା ଡକ୍ଟର ମାନସିଂହଙ୍କ ପକ୍ଷରେ ସମୟୋପଯୋଗୀ ଓ ଯଥାର୍ଥ ହୋଇଛି ।

ମୋର ବିଶ୍ୱାସ, ଶ୍ରୀମଦ୍ ଭଗବଦ୍ ଗୀତାର ଓଡ଼ିଆ ଭାଷାରେ ଏହି ନୂତନ ପରିବେଷଣ ଓଡ଼ିଶାର ଗୀତାପ୍ରେମୀ ଯୁବସମାଜ ତଥା ସମଗ୍ର ଓଡ଼ିଆ ଭାଷାଭାଷୀଙ୍କ ଦ୍ୱାରା ବିଶେଷ ଆଦୃତ ହେବ ।

ଡକ୍ଟର ରାମଚନ୍ଦ୍ର ରଥ
ସଭାପତି, ଓଡ଼ିଶା ବ୍ରହ୍ମବିଦ୍ୟା ସମିତି

କଟକ—ମକର ସଂକ୍ରାନ୍ତି, ୧୯୬୩,

—————

# ଲେଖକର କୈଫିୟତ

ଶ୍ରୀମଦ୍ ଭଗବତ୍‌ଗୀତାକୁ କୁହାଯାଏ, ହିନ୍ଦୁଧର୍ମର ସାରତତ୍ତ୍ୱ ଏବଂ ତାର ଲେଖକ କିଏ ଜଣା ନ ଥିଲେ ମଧ୍ୟ, ତାର ବ୍ୟାଖ୍ୟାକାରମାନଙ୍କ ମଧ୍ୟରେ ଆମେ ଦେଖୁ ଶଙ୍କର, ରାମାନୁଜ, ତିଳକ, ଗାନ୍ଧି, ଅରବିନ୍ଦ ଓ ରାଧାକ୍ରିଷ୍ଣନ୍‌ଙ୍କ ପରି ବିରାଟ ବ୍ୟକ୍ତିମାନଙ୍କୁ । ହିନ୍ଦୁଧର୍ମରେ ବାଦରାୟଣଙ୍କ ବ୍ରହ୍ମସୂତ୍ର, ଉପନିଷଦ (ଅନ୍ତତଃ ୧୧୦ଟି, କେଉଁମାନଙ୍କୁ ମୁଖ୍ୟ ବୋଲି ଧରାଯାଏ ) ଏବଂ ଭଗବଦ୍‌ଗୀତା—ଏହି ତିନି ଗ୍ରନ୍ଥକୁ କୁହାଯାଏ 'ପ୍ରସ୍ଥାନତ୍ରୟୀ' । 'ପ୍ରସ୍ଥାନ' ଶବ୍ଦର ଏକ ଅର୍ଥ ହିଁ ହେଲା, ଏକ ବିଶେଷ, ରୀତି ବା ପଦ୍ଧତି, ବା ଇଂରାଜିରେ ଯାହାକୁ କୁହାଯାଏ 'ସିଷ୍ଟେମ୍' (System) । ହିନ୍ଦୁ ସଂସାରରେ, ଯେ କୌଣସି ନୂତନ ଧର୍ମ-ସଂପ୍ରଦାୟ ଆପଣାକୁ ଲୋକଚକ୍ଷୁରେ ଅଭିଜ୍ଞାସ୍ୟ ଭାବରେ ପ୍ରତିଷ୍ଠିତ ଓ ସମ୍ମାନିତ ହେବାକୁ ଚାହେଁ, ତାକୁ ପ୍ରମାଣିତ କରିବାକୁ ହେବ ଯେ ସେ ଧର୍ମର ବାର୍ତ୍ତା ଏହି 'ପ୍ରସ୍ଥାନ ତ୍ରୟୀ'ର ସଂଦେଶଠାରୁ ଭିନ୍ନ ତ ନୁହେଁ, ବରଂ ସେମାନଙ୍କଦ୍ୱାରା ସମର୍ଥିତ । ଏମାନଙ୍କର ଏତେ ଟୀକା ଓ ଭାଷ୍ୟ ଥିବାର ଗୋଟିଏ କାରଣ ଏହିଠାରେ । ଶଙ୍କର ତାଙ୍କର ଅଦ୍ୱୈତ-ଚିନ୍ତା-ଧାରାନୁଯାୟୀ ଗୀତା, ଉପନିଷଦ ଓ ବ୍ରହ୍ମସୂତ୍ର କୁ ବ୍ୟାଖ୍ୟା କରିସାରିଲା ପରେ; ରାମାନୁଜ ତାଙ୍କର ବିଶିଷ୍ଟାଦ୍ୱୈତ ମତକୁ ହିଁ ସେ ସବୁ ଶାସ୍ତ୍ର କିପରି ସମର୍ଥନ କରୁଛି , ତାହା ନୂତନ ଟୀକା କରି ଦେଖାଇ ବସିଲେ । କଥିତ ଅଛି ଯେ, ଚୈତନ୍ୟାନୁଗାମୀମାନଙ୍କୁ ପ୍ରଥମେ ଏକ ସମ୍ମାନିତ ସଂପ୍ରଦାୟ ବୋଲି ଧରାଯାଉ ନ ଥିଲା, କାରଣ ଚୈତନ୍ୟ ନିଜେ ବା ତାଙ୍କର କୌଣସି ଶିଷ୍ୟ ତତ୍‌ସଂପୃକ୍ତ କୌଣସି ଶାସ୍ତ୍ର ଛାଡ଼ିଯାଇ ନ ଥିଲେ । ଏ ଧର୍ମବାଦ କିନ୍ତୁ ସୁପ୍ରତିଷ୍ଠିତ ହେଲା ଜଣେ ଓଡ଼ିଆ ପଣ୍ଡିତଙ୍କଦ୍ୱାରା । ତାଙ୍କ ନାମ ବଳଦେବ ବିଦ୍ୟାଭୂଷଣ ଏବଂ ସେ ଥିଲେ ଦକ୍ଷିଣ ମେଦିନିପୁର ଅଞ୍ଚଳର ଏକ ଖଣ୍ଡାୟତ । ବିଦ୍ୟାଭୂଷଣଙ୍କ ବ୍ରହ୍ମପୁତ୍ର ଭାଷ୍ୟ ହିଁ ଚୈତନ୍ୟ-ଧର୍ମକୁ ସାଂପ୍ରଦାୟିକ ପ୍ରତିଷ୍ଠା ଦେଇ ପାରିଛି ।

ଗୀତାରେ ଉପନିଷଦମାନଙ୍କର ଭାବଧାରା ଗୃହୀତ ହୋଇଛି କେବଳ ନୁହେଁ, ଗୀତାର ଏକାଧିକ ଶ୍ଳୋକ କୌଣସି କୌଣସି ଉପନିଷଦରୁ ପୂରାପୂରି ଉଠାଇ ନିଆଯାଇଛି । ସେଇଥିପାଇଁ ଗୀତା ସଂପର୍କରେ କୁହାଯାଇଛି, "ସର୍ବୋପନିଷଦୋ ଗାବଃ, ଦୋଗ୍ଧା ଗୋପାଳନନ୍ଦନଃ" । ଉପନିଷଦ ରୂପକ ଗାଈକୁ ଶ୍ରୀକୃଷ୍ଣ-ରୂପକ ଗଉଡ ଦୁହିଁ ଯେଉଁ ଦୁଗ୍ଧ ଠେକିରେ ଭରିଛନ୍ତି; ସେଇ ହେଲା ଶ୍ରୀମଦ୍ ଭଗବଦ ଗୀତା । ଗୀତାରେ ବ୍ରହ୍ମସୂତ୍ରର ଉଲ୍ଲେଖ ମଧ୍ୟ ହୋଇଛି । ତେଣୁ ଗୀତା ଏକ ସଙ୍କଳିତ ଗ୍ରନ୍ଥ । ସ୍ୱୟଂ ଭଗବାନ ଏହାକୁ କହିଛନ୍ତି, କହିବାଦ୍ୱାରା ବିଶ୍ୱ-ଚେତନାରେ ଏହାର ମୂଲ୍ୟ ବଢ଼ିଯାଉ ନାହିଁ । ଏହି ଗ୍ରନ୍ଥରେ ଓ ଏହି ଲେଖକର "ଗୀତାମାହାତ୍ମ୍ୟ" ପୁସ୍ତକରେ, ଏସବୁ ବିଷୟ ବିସ୍ତୃତ ଭାବରେ ଆଲୋଚିତ ହୋଇଛି । 'ସାର୍ବଜନୀନ ଗୀତା' ପାଠ କରିବା ପୂର୍ବରୁ, କୁତୂହଳୀ ପାଠକ, ତେଣୁ ଲେଖକର "ଗୀତା ମାହାତ୍ମ୍ୟ' ଗ୍ରନ୍ଥଟି ପଢ଼ିନେଲେ, ଗୀତାର ପଶ୍ଚାତ୍‌ପଟ ବା ଚରିତ୍ରଟି ପାଠକଙ୍କ ଚିତ୍ତରେ ସ୍ପଷ୍ଟ ହୋଇଯିବ ବୋଲି ବିଶ୍ୱାସ ।

ଅନ୍ୟ ପକ୍ଷରେ ବହୁ ବିବୁଧଜନ, ଗୀତା ନିଜ ନିଜର ଦର୍ଶନାନୁଯାୟୀ ରଚିତ ହୋଇଥିବାର ହିଁ ପ୍ରମାଣିତ କରିବାକୁ ଯିବାରେ, ଗୀତା ବର୍ତ୍ତମାନ ଏକ ବହୁ-ଅର୍ଥ-ସମ୍ବଳିତ, ଜଟିଳ ଗ୍ରନ୍ଥରୂପେ ଆମ ଆଗରେ ଠିଆ ହୋଇଛି । ଗୀତା; ସ୍ୱୟଂ ଭଗବାନଙ୍କର ବାଣୀ ବୋଲି ଧରିନେଇ, ଏହାର କୌଣସି ହେଲେ ଷ୍ଟେଟ୍‌ମେଣ୍ଟକୁ ଆଧୁନିକ ଜ୍ଞାନାନୁଯାୟୀ ପ୍ରଶ୍ନ କରିବାର ଅଧିକାରକୁ ଏହି ବରେଣ୍ୟ ଟୀକାକାରମାନେ ଜାଣି ଜାଣି

ପରିତ୍ୟାଗ କରି ଦେଇଥିବାରୁ, ଗୀତାର ଜଟିଳତା ବଢ଼ିଛି ସିନା କମିନାହିଁ । ସାଧାରଣ ପାଠକ ନିକଟରେ ସର୍ବମତର ସମନ୍ୱୟ ନାମରେ, ଗୀତା ଏକ ଅବୋଧ୍ୟ ହଜ୍-ପଜ୍ ହୋଇଉଠିଛି ମାତ୍ର ।

ହେତୁ ହେଲା ଦିନୁ, ଏହି ସାମାନ୍ୟ ଲେଖକ, ଜୀବନ-ଜିଜ୍ଞାସା ଭାବରେ ବିବିଧ ଧର୍ମର ଗ୍ରନ୍ଥମାନ ଅଧ୍ୟୟନ କରି ଆସୁଛି , ଯେପରି ଆଗ୍ରହରେ ଅନେକେ ପଢ଼ିଥାନ୍ତି ଗଳ୍ପ-ଉପନ୍ୟାସ । ଗୀତା ପଢ଼ିଲି । ଗୀତା ଉପରେ ଲେଖା ହୋଇଥିବା କେତେକ ପୁସ୍ତକ ମଧ୍ୟ ପଢ଼ିଲି । କ୍ରମେ ଦୁଇଟି ଧାରଣା ଚିତ୍ତରେ ଦୃଢ଼ୀଭୂତ ହେବାକୁ ଲାଗିଲା । (୧) ଗୀତା ସ୍ପଷ୍ଟତଃ ଏକ ମନୁଷ୍ୟ-କୃତ ଗ୍ରନ୍ଥ । ଯଦି ଏହାକୁ ଈଶ୍ୱର-କଥିତ ବୋଲି କୁହାଯାଏ, ତେବେ ସେ ଈଶ୍ୱରଙ୍କୁ ଅଜ୍ଞ ଧରିବାକୁ ହେବ ; କାରଣ ଗୀତାରେ ଏପରି ଅନେକ କଥା କୁହାଯାଇଛି, ଯାହା ଆଜିର ମାଟ୍ରିକ ପଢ଼ିଥିବା ବାଳିକା ଆଖିରେ ମଧ୍ୟ ଉପହାସର ବିଷୟ ହେବ । (୨) ଅଥଚ, ଯଦି କୌଣସି ଧର୍ମ-ମତକୁ ଆଧୁନିକ-ବିଜ୍ଞାନ-ସମ୍ମତ ଓ ବିଶ୍ୱରେ ସବୁଠାରୁ ଉଦାର ଓ ସର୍ବକଲ୍ୟାଣକର ବୋଲି ମନେ କରିବାର କଥା, ତେବେ ତାହା କେବଳ ଗୀତାରେ ଅଛି ବୋଲି ମାନିବାକୁ ହେବ । ଅଜ୍ଞ ହିନ୍ଦୁ-ନୈଷ୍ଠିକତାର କେତେଟା କଣ୍ଟାବାଡ଼ ଉଠାଇ ନେଲେ, ଗୀତାର ସାର୍ବଜନୀନତା ସହିତ ତୁଳନୀୟ ହେବାକୁ ଅନ୍ୟ କୌଣସି ଧର୍ମମତ ଆସ୍ପର୍ଦ୍ଧା ରଖି ନ ପାରେ ।

ଏପରି ଭାବରେ ପ୍ରଭାବିତ ହୋଇ ଏହି ଲେଖକ ପ୍ରଥମେ ଗୀତା ଉପରେ କେତେ-ଗୁଡ଼ିଏ ପ୍ରବନ୍ଧ ଲେଖିଲା ।

ସେହି ପ୍ରବନ୍ଧଗୁଡ଼ିକୁ ବହି ଆକାରରେ ପ୍ରକାଶିତ କରିବାକୁ ଅନୁରୋଧ କରନ୍ତେ, କଟକ ବା ଓଡ଼ିଶାର ଜନୈକ ପରିଜ୍ଞାତ ପ୍ରକାଶନ-ସଂସ୍ଥାର ମାଲିକ ନାସ୍ତି କରିବା ସାଥେ ସାଥେ, ବରଂ ଅନୁରୋଧ କଲେ, ଗୀତାର ଏକ ନୂତନ ଭାଷ୍ୟ ଲେଖିବାକୁ, ଯାହାକୁ ସେ ଛାପି ଦେବାକୁ ପ୍ରସ୍ତୁତ ଅଛନ୍ତି ।

ସେ ପର୍ଯ୍ୟନ୍ତ, ଗୀତାର ଏକ ଭାଷ୍ୟକାର ରୂପେ ଠିଆ ହେବା, ଲେଖକର କଳ୍ପନାର ବହିର୍ଭୂତ ବିଷୟ ଥିଲା ।

କିନ୍ତୁ ଉକ୍ତ ପ୍ରକାଶକଙ୍କର ଯୁଗପତ ନାସ୍ତି ଓ ଅନୁରୋଧ, ଏହି ଲେଖକକୁ ଏକ ଆହ୍ୱାନ ରୂପେ ପ୍ରତୀତ ହେଲା । ସେ ତେଣୁ ଗୀତାର ଏକ ଅଭିନବ ଭାଷ୍ୟ ଲେଖିବସିଲା ଯାହାର ମୁଖ୍ୟ ଲକ୍ଷ୍ୟ ରହିଲା ଏହି ଯେ, ଗୀତାର ବାଣୀ ଯେପରି କେବଳ ହିନ୍ଦୁ ନୁହେଁ, ବିଶ୍ୱର ସକଳ ଧର୍ମର ନରନାରୀଙ୍କ ପାଇଁ ଧର୍ମସାଧନାର ରାଜମାର୍ଗ ଦେଖାଇ ଦେଇ ପାରିବ ।

ସେହି କାରଣରୁ ହିଁ ଗୀତାର ଏହି ସଂସ୍କରଣକୁ କୁହାଯାଇଛି "ସାର୍ବଜନୀନ ଗୀତା"। ଏ ଭାଷ୍ୟ ସର୍ବଜନର ଉପକାରରେ ଆସିପାରିଲେ ହିଁ ଲେଖକ ତାର ଶ୍ରେଷ୍ଠ ପୁରସ୍କାର ପାଇଯିବ ।

କିନ୍ତୁ ଏହି ଲେଖକର ଓଡ଼ିଶାରେ ସାମାନ୍ୟ ସାହିତ୍ୟିକ ବ୍ୟକ୍ତିତ୍ୱ ସହିତ ଗୀତା-ଭାଷ୍ୟର ଆସ୍ପର୍ଦ୍ଧା ଯେ ବହୁ ଲୋକଙ୍କୁ ଏକ ଉପହାସ୍ୟ ବିଷୟ ହେବ, ଏହା ସେମାନଙ୍କ ଅପେକ୍ଷା, ଲେଖକକୁ ବେଶି ଜଣା ।

ତେଣୁ ସେ ଖୋଜିବସିଲା ତା'ର ଏ ପ୍ରକାର ଅପ୍ରସ୍ତାବିତ ଯୋଗ୍ୟତାର ଏକ ଡିପ୍ଲୋମା ସାର୍ଟିଫିକେଟ ।

ଭାବି ଭାବି ଓ ଚରମ ଦ୍ୱିଧା, ଆଶଂକା ଓ ସଂଦେହରେ, ସେ ଏହି ଭାଷ୍ୟର ପ୍ରଥମାଂଶଟିକୁହିଁ ପଢ଼ିବାକୁ ଦେଲା, ଓଡ଼ିଶା ଥିଓସଫିକାଲ ସୋସାଇଟିର ସାଂପ୍ରତିକ ସୁଯୋଗ୍ୟ ସଭାପତି ଡକ୍ଟର ଶ୍ରୀ ଶ୍ରୀରାମଚନ୍ଦ୍ର ରଥଙ୍କୁ, ଯେ କି ତାଙ୍କର ହେତୁ ହେଲାବେଳୁ

ଗୀତାକୁ କେବଳ ପ୍ରତ୍ୟହ ପାରାୟଣ କରି ଆସୁଛନ୍ତି ନୁହଁ, ଯେ ବରଂ ତାଙ୍କର ଚିତ୍ତକୁ ଏକାଧାରେ ଉନ୍ମୁଖୀ ରଖିଛନ୍ତି ସକଳ ଧର୍ମର ସତ୍ୟପାଇଁ ଓ ବିଜ୍ଞାନର ନବତମ ଆବିଷ୍କାରପାଇଁ ।

ତାଙ୍କର ଅକୁଣ୍ଠ ଓ ସ୍ୱାଭାବିକ ଅଭିମତ ତେଣୁ ଏଥି ସହିତ ପ୍ରକାଶିତ । ତାହା ଲେଖକର ମନରୁ, ଏ ଗ୍ରନ୍ଥ ସାଧାରଣ ପାଠକର ହାତରେ ପହଁଚିବା ଆଗରୁ, ପୁଂଜୀଭୂତ ଆଶଙ୍କା ଓ ସଂଦେହକୁ ବହୁ ପରିମାଣରେ କାଢ଼ିନେଇ ପାରିଛି । ସେଥିପାଇଁ ସେ ଡକ୍ଟର ରଥଂକୁ ଅନ୍ତର ସହିତ ଧନ୍ୟବାଦ ଜଣାଉଛି ।

ପାଠକ-ପାଠିକାମାନଙ୍କୁ ବିଶେଷ ଅନୁରୋଧ ଏହି ଯେ, 'ସାର୍ବଜନୀନ ଗୀତା' ପଢ଼ିବା ଆଗରୁ ବା ପଢ଼ିବା ସାଥେ ସାଥେ, ଜେ. ମହାପାତ୍ର ଏଣ୍ଡ କୋ: ଦ୍ୱାରା ପ୍ରକାଶିତ ଏହି 'ଗୀତାମାହାତ୍ମ୍ୟ' ବହିଖଣ୍ଡି ପଢ଼ିନେଲେ, ଗୀତା-ସଂପୃକ୍ତ ବହୁ ଜିଜ୍ଞାସାର ଉତ୍ତର ସେ ସେଇଥିରୁ ପାଇ ପାରିବେ ।

ଗୀତାର ସଂସ୍କୃତ ଶ୍ଳୋକାବଳୀ କାବ୍ୟଗୁଣାନ୍ୱିତ ; ତେଣୁ ସେଗୁଡ଼ିକୁ ସମଗ୍ର ବା ଆଂଶିକ ଭାବରେ କଣ୍ଠସ୍ଥ କଲେ ସଂସ୍କୃତ ସହିତ ପରିଚୟ କେବଳ ଗାଢ଼ତର ହେବ ନାହିଁ; ନିଜ ମାତୃଭାଷା ଓଡ଼ିଆର ଜ୍ଞାନ ମଧ୍ୟ ମାର୍ଜିତ ଓ ମର୍ଯ୍ୟାଦାବନ୍ତ ହେବ ।

କିନ୍ତୁ ଯେଉଁମାନେ ଭାଷାଗତ ମାଧୁର୍ଯ୍ୟ ଅପେକ୍ଷା ଧର୍ମ-ସାଧନା ଓ ବ୍ୟକ୍ତିତ୍ୱ-ଗଠନ ପ୍ରତି ଅଧିକ ଆଗ୍ରହୀ, ସେମାନେ ଏହି ଗ୍ରନ୍ଥରେ ଥିବା ସଂସ୍କୃତ-ଶ୍ଳୋକ ଓ ତାର ଅନ୍ୱୟକୁ ଅପେକ୍ଷା ନ କରି, ଶ୍ଳୋକଗୁଡ଼ିକର କେବଳ ଓଡ଼ିଆ ଅନୁବାଦ ଓ "ବିଶେଷ ଭାଷ୍ୟ"ଦେଇ ସେଗୁଡ଼ିକର କ୍ରମିକ, ପ୍ରବହମାନ 'ଇଣ୍ଟରପ୍ରିଟେଶନ'କୁ ମନୋଯୋଗ ଦେଇ ପଢ଼ି ଚାଲିଲେ ହିଁ ଗୀତାର ଜୀବନ-ଦର୍ଶନ ପୂର୍ଣ୍ଣରୂପେ ଅବଗତ ହେବାପାଇଁ ଯଥେଷ୍ଟ ହେବ ।

ଗୀତାର ସଂସ୍କୃତ ଶ୍ଳୋକଗୁଡ଼ିକୁ, ବୁଝ-ନ ବୁଝ, କେବଳ ବୋଲି ଚାଲିଲେ ହିଁ ପୁଣ୍ୟ ଲାଭ ହୋଇଯିବ ବୋଲି ଲେଖକ ଆଦୌ ବିଶ୍ୱାସ କରେ ନାହିଁ । ଏହା ଏକ ଘୋର ମାରାତ୍ମକ ପ୍ରଚାର । ଗୀତାର ବାଣୀ ଆମର ଦୈନନ୍ଦିନ ଜୀବନର ପ୍ରତ୍ୟେକଟି କର୍ମରେ ଫୁଟିଉଠୁ, ଏହା ହିଁ ପ୍ରକୃତ ଗୀତାପାଠ ଓ ଗୀତାପୂଜା । ପାଠକମାନଙ୍କର ଜୀବନରେ ସେହି ପ୍ରକାର ଧର୍ମସାଧନା ଜାଗ୍ରତ କରାଇବା ହିଁ ଏ ଗ୍ରନ୍ଥର ଏକମାତ୍ର ଲକ୍ଷ୍ୟ ଏବଂ ସେହି ଲକ୍ଷ୍ୟରେ ହିଁ ଗୀତାର ଗଭୀର ଶାସ୍ତ୍ରୀୟ ପ୍ରଜ୍ଞା, ରାମକୃଷ୍ଣ ପରମହଂସ ଓ ଅନ୍ୟାନ୍ୟ ସିଦ୍ଧ ପୁରୁଷଙ୍କର ଉଚ୍ଚ ଆଧ୍ୟାତ୍ମିକ ଅଭିଜ୍ଞତାଦ୍ୱାରା କିପରି ସଂପୂର୍ଣ୍ଣ ସମର୍ଥିତ ହୋଇଛି, ତାହା ମଧ୍ୟ ଯଥାସ୍ଥାନରେ ଜଣାଇ ଦିଆଯାଇଛି । ସେହି ସମର୍ଥନ ହିଁ ଗୀତାବାଣୀର ପରମ ପ୍ରମାଣ । ଧର୍ମମତ ନିର୍ବିଶେଷରେ ସକଳ ଶ୍ରେଣୀର ପାଠକେ ତେଣୁ, ସେହି କାରଣରୁ ହିଁ ଗୀତା-ବାଣୀକୁ ଅକୁଣ୍ଠଚିତ୍ତରେ ଜୀବନାଦର୍ଶ ରୂପେ ନେଇପାଇ ପାରନ୍ତି ।

ଏ ଗ୍ରନ୍ଥ ପଢ଼ି, କେହି ପାଠକ ବା ପାଠିକା ଗ୍ରନ୍ଥର ଦୋଷ-ଗୁଣ ନେଇ ଜଣାଇଲେ ଏହାର ଭବିଷ୍ୟତ ସଂସ୍କରଣ ବେଳେ ସେଗୁଡ଼ିକ ଆମର ବହୁ ସହାୟତାରେ ଆସିବ ବୋଲି ଆମର ବିଶ୍ୱାସ । ଇତି ।

କଟକ, ମକର ସଂକ୍ରାନ୍ତି
୧୩।୧।୧୯୬୩

ମାୟାଧର ମାନସିଂହ

# ସୂଚୀପତ୍ର

[ପ୍ରତ୍ୟେକ ଶ୍ଳୋକର ଅଧ୍ୟାୟ ଦୀପିକା, ଅନୁବାଦ ଓ ବିଶେଷ ଭାଷ୍ୟ ଦିଆଯାଇଅଛି । ]

# ପ୍ରଥମ ଅଧ୍ୟାୟ

( ଅର୍ଜ୍ଜୁନ ବିଷାଦ ଯୋଗ )

**ଅଧ୍ୟାୟ ଦୀପିକା—**

ଶ୍ରୀମଦ୍‌ଭଗବଦ୍‌ଗୀତା ଅଷ୍ଟାଦଶାଧ୍ୟାୟିନ । କୁହାଯାଇଥାଏ ଯେ, ଗୀତାର ସେହି ଅଠର ଅଧ୍ୟାୟଭିତରୁ ପ୍ରଥମ ଛଅ ଅଧ୍ୟାୟ 'କର୍ମ ଯୋଗ', ଦ୍ୱିତୀୟ ଛଅଟି 'ଭକ୍ତି ଯୋଗ' ଏବଂ ଶେଷ ଛଅଟି 'ଜ୍ଞାନ ଯୋଗ'ର ପରିବେଷକ ।

କିନ୍ତୁ ପାଠକେ ଟିକିଏ ତଳେଇ ଦେଖିଲେ ସହଜରେ ବୁଝିପାରିବେ ଯେ, ଏହିସବୁ ପରସ୍ପର-ଭିନ୍ନ ଆଧ୍ୟାତ୍ମିକ ତତ୍ତ୍ୱମାନଙ୍କର ଏପ୍ରକାର ସୁନିର୍ଦ୍ଦିଷ୍ଟ ସୀମାରେଖା, ଗୀତାରେ କୌଣସିଠାରେ ହେଲେ ନାହିଁ । ପୁଣି, ଅନେକ ଅଧ୍ୟାୟର ସଂଜ୍ଞାର ତଦର୍ଥତା ନ ଥାଇ, ପାଠକେ ମଧ୍ୟ ବୋଧ କରିବେ ଯେ, ସେହି ସେହି ଅଧ୍ୟାୟରେ ବହୁ ଉତ୍ତମ କଥା କୁହାଗଲେହେଁ, ସେଥିରେ ସଂଜ୍ଞାର ବାହାରର କଥାହିଁ ବେଶୀ କୁହାଯାଇଛି ।

ପଣ୍ଡିତମାନଙ୍କ ମତରେ ଗୀତାର ବିଭିନ୍ନ ଅଧ୍ୟାୟର ନାମକରଣ ଓ ପ୍ରତି ଅଧ୍ୟାୟ ଶେଷରେ "ଇତି ଶ୍ରୀମଦ୍‌ଭଗବଦ୍‌ଗୀତାସୁ" ଇତ୍ୟାଦି ବାକ୍ୟ ପରେ ଯୋଡ଼ାଯାଇଛି । ଆମର 'କମନ୍-ସେନ୍‌ସ' ମଧ୍ୟ ଆମକୁ ଏତିକି ବୁଝେଇ-ଦେବାର କଥା ଯେ, ଅନ୍ତତଃ ନିଜେ ଶ୍ରୀକୃଷ୍ଣ ଯୁଦ୍ଧଭୂମିଉପରେ ଠିଆ ହୋଇ ଗୀତାର ପ୍ରତି ଅଧ୍ୟାୟ ଶେଷରେ "ଇତି ଶ୍ରୀମଦ୍‌ଭଗବଦ୍‌ଗୀତାସୁ" ଇତ୍ୟାଦି କହି ନ ଥିଲେ । ଗୀତା ଯେ ଏକ ମନୁଷ୍ୟରଚିତ ଗ୍ରନ୍ଥ ଅନ୍ୟ ବହୁ କାରଣଭିତରେ ଏ ମଧ୍ୟ ଏକତମ । ( ଏ ସଂପର୍କରେ ଲେଖକର 'ଗୀତା-ମାହାତ୍ମ୍ୟ' ପୁସ୍ତକ ପଠିତବ୍ୟ । )

ବରଂ ଆମେ ଦେଖିବା ଯେ, ଗୀତାର ପ୍ରତ୍ୟେକଟି ଅଧ୍ୟାୟରେ ଏବଂ ଏପରିକି, କାହିଁ କାହିଁ ଏକ ଏକ ଶ୍ଳୋକରେ ମଧ୍ୟ, 'ଜ୍ଞାନ', 'କର୍ମ' ଓ 'ଭକ୍ତି'ର ମଧୁର

ତ୍ରିବେଣୀ ପ୍ରବାହିତ ଏବଂ ସମଗ୍ର ଭଗବଦ୍ ଗୀତାଟି ମଧ୍ୟ ସେହି ଉଦାର, ମନୋଜ୍ଞ ସମନ୍ୱୟର ଏକ ମୂର୍ତ୍ତି ମଧୁର ପ୍ରକାଶ ।

ପାଠକେ ବରଂ ସ୍ମରଣ ରଖିବେ ଯେ, କେବଳ ଏହି ଗୀତା ଗ୍ରନ୍ଥରେ ନୁହେଁ, ଆମର ବାସ୍ତବ ଦୈନନ୍ଦିନ ଜୀବନରେ ମଧ୍ୟ, 'ଜ୍ଞାନ', 'ଭକ୍ତି', 'କର୍ମ' ବୋଲି ତିନୋଟି ପରସ୍ପର-ବିରୋଧାତ୍ମକ ଭାବ-କଳ୍ପ କାମ କରୁଥିବାର ଆମେ ଆଦୌ କେବେ ହେଲେ ଭେଟୁ ନାହିଁ । ସେଗୁଡ଼ିକ ବରାବର ମିଶ୍ରିତଭାବରେହିଁ ରହିଥାନ୍ତି ଏବଂ ବରଂ ପରସ୍ପରର ପରିପୂରକ ଓ ସହାୟକ ; ଆଦୌ ନୁହନ୍ତି ବିରୋଧାତ୍ମକ । ତାହାହିଁ ଏଠାରେ ଆଲୋଚନା କରି ଦେଖିବା ।

ପାଠକେ ଦେଖନ୍ତୁ ଯେ, ଏହି ଚରାଚର ଜଗତରେ ଏବଂ ଆମର ଦୈନନ୍ଦିନ ଜୀବନରେ ମଧ୍ୟ, ଗୀତାର 'କର୍ମଯୋଗ'ପ୍ରତି ସମ୍ପୂର୍ଣ୍ଣ ଅନପେକ୍ଷ ରହି, ବା ସମ୍ପୂର୍ଣ୍ଣ ଅଜ୍ଞାତସାରରେହିଁ ଏକ ନିରବଚ୍ଛିନ୍ନ କର୍ମ-ପ୍ରବାହ ଅହରହ ଚାଲିଛି । ଗୀତାର ବାଣୀ (ଗୀ: ୩।୫) ଏକାନ୍ତ ସତ୍ୟ ଯେ ଆମେ କେହି ହେଲେ 'କର୍ମ' ନ କରି ଏକ ମୁହୂର୍ତ୍ତ ମଧ୍ୟ ରହିପାରିବାନି । ଆମେ ଚାହୁଁ ବା ନଚାହୁଁ, କୌଣସି ନା କୌଣସି କର୍ମ ନେଇ ଆମେ ଆପେ ଆପେ ନିରତ ଥାଉ ।

ଏହି ଅଜ୍ଞାତସାର-ଘଟିତ ଜୈବିକ କର୍ମ-ସ୍ରୋତରେ ଯେତେବେଳେ 'ଜ୍ଞାନ' ଆସି ମିଶେ, ସେତିକବେଳେହିଁ ସେହି ଆପେ-ଆପେ-ଘଟୁଥିବା ଆମର ପ୍ରତ୍ୟେକଟି କର୍ମ, ଗୀତାର 'କର୍ମ ଯୋଗ'ରେ ପରିଣତ ହୋଇଯାଏ । କେବଳ ନିରହଂକାର ଓ ନିଃସ୍ୱାର୍ଥ କର୍ମହିଁ 'କର୍ମ ଯୋଗ' ; ଆଉ କିଛି ନୁହେଁ । ଏହି ନିରହଂକାର ଓ ନିଃସ୍ୱାର୍ଥ କର୍ମ, ଅଗ୍ରଗତି କରି କରି ଯେତେବେଳେ 'ବାସୁଦେବ ସର୍ବମିତି' (୭।୧୯) ବା ବ୍ରହ୍ମ-ବା-ଈଶ୍ୱର-ହିଁ-ସବୁ-ଓ-ସର୍ବତ୍ର-ବୋଲି-ଭାବ ଆସିଯିବ ଏବଂ ସେହି ହେତୁରୁ ମଧ୍ୟ ଆମର ଶତ୍ରୁ-ମିତ୍ର-ଭାବ ସମ୍ପୂର୍ଣ୍ଣ ଉଭେଇ ଯାଇ ଗୀତାର 'ସମତା-ବୋଧ' (୬।୯), ଆସିଯିବ, ସେହିହିଁ ହେବ, ପାଠକେ, 'ଜ୍ଞାନଯୋଗ' ବା ଗୀତାର 'ହିତ୍ୱାତୀତ'-ବୋଧ ଅବସ୍ଥା । ପ୍ରକୃତି-ମୁକ୍ତ ପୁରୁଷ ପୁଣି ପାଇଯିବ ତାର ଅ-ହିତୀୟ ଅବସ୍ଥା ।

ଏବଂ, ଆମର କର୍ମଜାଲ ଓ ଆମର ନିଖିଳ ବ୍ୟକ୍ତିତ୍ୱକୁ ଆମେ ଯେତେବେଳେ ନିଃଶେଷଭାବରେ ବିଶ୍ୱ-ବିଧାତାଙ୍କ ନିକଟରେ ସମର୍ପିତ କରିଦେଇ ପାରିବା, ସେହି ହେବ, ପାଠକେ, 'ଭକ୍ତିଯୋଗ' ।

ତେଣୁ ପାଠକେ ଦେଖିବେ ଯେ, ଜ୍ଞାନ, କର୍ମ, ଭକ୍ତି ଆଦୌ ପରସ୍ପର-ବିରୋଧୀ ତ ନୁହନ୍ତି, ବରଂ ସେମାନେ ପରସ୍ପରାପେକ୍ଷୀ ।

ଅବଶ୍ୟ ପ୍ରକୃତି-ଭେଦରେ କିଏ କର୍ମ-ପ୍ରଧାନ, କିଏ ଜ୍ଞାନ-ପ୍ରଧାନ, କିଏ ବା ଭକ୍ତି-ପ୍ରଧାନ, ହୋଇପାରନ୍ତି । କିନ୍ତୁ ଭକ୍ତି-ପ୍ରଧାନ ଲୋକର କର୍ମ ବା ଜ୍ଞାନର ଆଦୌ ଆବଶ୍ୟକତା ନାହିଁ ବୋଲି ଆମେ କହିପାରିବା ନାହିଁ, କିମ୍ବା କହିପାରିବାନି, ଏଗୁଡ଼ିକ ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ । ଦୃଷ୍ଟାନ୍ତସ୍ୱରୂପ ଆମେ ନିଶ୍ଚିତଭାବରେ କହିପାରିବା ଯେ, ଗାନ୍ଧିଜୀ, ଶ୍ରୀକୃଷ୍ଣଙ୍କ ପରେ, ଭାରତର ଶ୍ରେଷ୍ଠ କର୍ମଯୋଗୀ। କିନ୍ତୁ ସେ ଯେ ଜ୍ଞାନୀ ଓ ଭକ୍ତ ଆଦୌ ନ ଥିଲେ, ଏହା ଆମେ ଦୃଢ଼ଭାବରେ କହିପାରିବା କି ?

ସେହିପରି ଗୌତମ ବୁଦ୍ଧଙ୍କୁ ସମଗ୍ର ବିଶ୍ୱର ଶ୍ରେଷ୍ଠ 'ଜ୍ଞାନଯୋଗୀ' ବୋଲି ଧରାଯାଇଥାଏ । କିନ୍ତୁ ସେହି ରାଜପୁତ୍ର କେବଳ ଜନ-କଲ୍ୟାଣପାଇଁ, ରଥ-ଗଜ-ଅଶ୍ୱାଦି ଯାନବାହନ, ତାଙ୍କ ପାଇଁ ଥୁଆ ଥିଲେହେଁ, ସମଗ୍ର ଉତ୍ତର-ଭାରତରେ, ଗ୍ରାମେ ଗ୍ରାମେ, ନଗରେ ନଗରେ ସେ ଯେ, ଚାଳିଶ ବର୍ଷ କାଳ ଧର୍ମ-ପ୍ରଚାର କରିଥିଲେ, କେବଳ ପଦ-ବ୍ରଜରେ, କେବଳ ଭିକ୍ଷାଲବ୍ଧ ରୂଢ଼ ଅନ୍ନରେ ଏବଂ ବୃକ୍ଷ ତଳେ ଦିନଯାପନ କରି କରି, ଏବଂ ଯେ କି କୌଣସି ଏକ ବିହାରର ଏକ କୋଣରେ ଏକ ଆମାଶୟଗ୍ରସ୍ତ ଭିକ୍ଷୁ ପଡ଼ିରହିଥିବାର ଦେଖି ନିଜ ହାତରେ ତାର ମୂତ୍ର-ପୁରୀଷ ପରିଷ୍କାର କରିଦେଇଥିଲେ, ତାଙ୍କୁ, ଅର୍ଥାତ୍ ସେହି ବୌଦ୍ଧ-'ସଂଘ'-ସ୍ଥାପକ ବିଶ୍ୱର ଶ୍ରେଷ୍ଠତମ ସଂଗଠକଙ୍କୁ 'କର୍ମ-ଯୋଗୀ' ବୋଲି ମଧ୍ୟ ଆମେ ନ କହିବା କିପରି ?

ପୁଣି ଯେଉଁ ବୁଦ୍ଧ 'ଈଶ୍ୱର' ଶବ୍ଦ ଉଚ୍ଚାରଣ ନ କରି ମଧ୍ୟ, ଜୀବ ଓ ମାନବ ପ୍ରତି ଏପରି ପରମ କରୁଣାବାନ୍ ଥିଲେ ଯେ, ଗୋଟିଏ ଛାଗଶିଶୁର ଜୀବନ ରଖିବାପାଇଁ, ନିଜର ପରମ-ମସ୍ତକକୁ ହାଡ଼-କାଠରେ ଦେଖାଇଦେଇଥିଲେ, ତାଙ୍କଠାରୁ ଆଉ ଅଧିକ 'ଈଶ୍ୱରଭକ୍ତ' ପୁରୁଷ ବା 'ଭକ୍ତିଯୋଗୀ' କିଏ ହୋଇପାରେ ?

ଆମେ କହିପାରିବାନି ଯେ, ଗାନ୍ଧିଜୀ 'ମହାତ୍ମା' ହୋଇପାରିଥିଲେ କାରଣ, କେବଳ ସେ ପ୍ରତ୍ୟହ ଅଜ୍ଞାତ-ଅଦୃଷ୍ଟ ଈଶ୍ୱରଙ୍କୁ 'ପ୍ରାର୍ଥନା' କରୁଥିଲେ । ଆମକୁ ମନେ ରଖିବାକୁ ହେବ ଯେ, ପ୍ରତିଟି ମୁସଲମାନ ଦିନରେ ଥରେ ନୁହେଁ, ପାଞ୍ଚ ଥର ଆଲ୍ଲାଙ୍କୁ ପ୍ରାର୍ଥନା କରେ। ତେଣୁ କେବଳ ଏପ୍ରକାର ଆନୁଷ୍ଠାନିକ 'ପ୍ରାର୍ଥନା'ମାନ କାହାକୁ 'ମହାତ୍ମା' କରି ନ ପାରେ। ଗାନ୍ଧିଜୀ ନିଜ ଜୀବନକୁ ସତ୍ୟ ଓ ଅହିଂସାର ଦୁଇଟି କ୍ଷୁର-ଧାର ଭିତର ଦେଇ ଯେପରି କଠୋର ସଂଯମ ଭିତରେ ନିଜକୁ ପରିଚାଳିତ କଲେ, ତାହାହିଁ ତାଙ୍କୁ କଲା 'ମହାତ୍ମା', ଯାହାର

ଏକମାତ୍ର ତାତ୍ପର୍ଯ୍ୟ ଏହି ଯେ, ମୋହନ ଦାସ କରମଚାନ୍ଦ ଗାନ୍ଧି ନାମକ ବାରିଷ୍ଟରଙ୍କର 'କ୍ଷୁଦ୍ର' ଆତ୍ମା, ବିଶ୍ୱ-ଜନ-ବ୍ୟାପ୍ତ ହୋଇ, 'ମହାନ୍' ଆତ୍ମାରେ ରୂପାନ୍ତରିତ ହୋଇଗଲା ।

ସେହିପରି ପ୍ରାର୍ଥନା ନ କରି ମଧ୍ୟ, ରାଜପୁତ୍ର ଗୌତମ, ପ୍ରଜ୍ଞା ଓ କରୁଣା (ଯାହା ଗାନ୍ଧିଙ୍କ ସତ୍ୟ ଓ ଅହିଂସାର ଅନ୍ୟ ନାମ ମାତ୍ର)ରେ ନିଜର ଜୀବନକୁ ଏପରି ଆଲୋକିତ କରିପାରିଥିଲେ ଯେ, ଆପାତ-ଈଶ୍ୱର-ହୀନ ହୋଇ ମଧ୍ୟ, ସେ ସକଳ ଈଶ୍ୱର-ଗୁଣରେ ମଣ୍ଡିତ ହୋଇପାରିଥିଲେ ଏବଂ ସେ ସେହିଭାବରେହିଁ ଏହି ବହୁ ଶତାବ୍ଦୀ ଧରି ଅଗଣିତ ଜନତାଠାରୁ ପୂଜା ଓ ସମ୍ମାନ ପାଇଆସୁଛନ୍ତି ।

କାର୍ଲାଇଲ୍ ଯେ କହିଛନ୍ତି 'Work is worship', —'ଶ୍ରମହିଁ ଶ୍ରେଷ୍ଠ ଈଶ୍ୱର-ପୂଜା', ତାହା ଏକାନ୍ତ ସତ୍ୟ ଏବଂ ତାହାହିଁ ଗୀତାର ଉଭୟ 'କର୍ମ ଯୋଗ' ଓ 'ଭକ୍ତି ଯୋଗ' ।

ପାଠକେ ମଧ୍ୟ ମନେ ରଖିବେ ଯେ, ଭଗବଦ୍‌ଗୀତା ଏକ ଗତାନୁଗତିକ ଭାବଧାରାର ଗ୍ରନ୍ଥ ନୁହେଁ । ଏହା ବହନ କରେ ବୈପ୍ଲବିକ ଭାବ ଓ ଜୀବନ-ଦର୍ଶନ । ତେଣୁ ଗତାନୁଗତିକ ସଂଜ୍ଞାସବୁ ଗୀତାର ମାପକାଠି ହୋଇ ନ ପାରନ୍ତି । ଗୀତା, ନିଜକୁ ଜନସାଧାରଣରେ ସୁ-ଅବଧାରିତ କରି ରଖିବାପାଇଁ, ସମସାମୟିକ ଭାରତୀୟ ସାହିତ୍ୟ ଓ ସଂସ୍କୃତିର କେତେଗୁଡ଼ିଏ ପରିଚିତ ସଂଜ୍ଞା ବ୍ୟବହାର କରିବାକୁ ହୁଏତ ବାଧ୍ୟ ହୋଇଛନ୍ତି । କିନ୍ତୁ ପାଠକେ ସେଗୁଡ଼ିକୁ କେବଳ ଆଶ୍ରୟ ବୋଲି ମନେ କରିବେ, ଯାହା ଉପରେ ଭରା ଦେଇ ଓ ଯାହାକୁ ବ୍ୟବହାର କରିହିଁ ଗୀତା ଅପୂର୍ବ କୌଶଳ ଓ ବିଚକ୍ଷଣତାରେ, ନିଜର ବୈପ୍ଲବିକ, ଉଦାର, ମାନବିକ, ସାର୍ବଜନୀନ ଓ ସାର୍ବଭୌମ ଚିନ୍ତାର ବୀଜସବୁ ବୁଣିଯାଇଛନ୍ତି ।

ଗୀତାର ସୂକ୍ଷ୍ମ ତତ୍ତ୍ୱଗୁଡ଼ିକ ବୁଝିବାକୁ ହେଲେ, ପାଠକେ ତେଣୁ 'ଜ୍ଞାନ', 'କର୍ମ' ବା 'ଭକ୍ତି' ରୂପକ ଏହି ଗତାନୁଗତିକ ସଂଜ୍ଞାଗୁଡ଼ିକର ହିଡ଼ସବୁରେ ଯେପରି ଅଟକି ନ ଯାନ୍ତି । ସେଗୁଡ଼ିକ କେବଳ ପ୍ରତୀକ ଶବ୍ଦ । ସେହି ପ୍ରତୀକ ଶବ୍ଦଗୁଡ଼ିକର ପଛରେ, ଗୀତା ଗତାନୁଗତିକ-ସଂଜ୍ଞାସବୁର-କ୍ଷୁଦ୍ର-ସୀମାରୁ ଫିଟି-ବାହାରିଯାଉଥିବା ଯେଉଁ ଉଦାର ଚିନ୍ତାସବୁକୁ ପରିବେଷଣ କରିଛନ୍ତି, ପାଠକେ ବରଂ ସେସବୁକୁ ଖୋଜି ପାଇବାକୁ ଚେଷ୍ଟା କରିବେ ।

ଗୀତାର ଏହି ପ୍ରଥମ ଅଧ୍ୟାୟଟି ଗ୍ରନ୍ଥ-ପ୍ରବେଶ ମାତ୍ର । ଏଥିର ପ୍ରଥମ ୨୫ଟି ଶ୍ଳୋକରେ, ପାଣ୍ଡବ ଓ କୌରବମାନଙ୍କର ସେନା-ସନ୍ନିବେଶ ଏବଂ

୨୭ଠାରୁ ୪୭ ଶ୍ଲୋକଗୁଡ଼ିକରେ ଗୀତାର ଜିଜ୍ଞାସୁ-ଶ୍ରୋତା ଅର୍ଜ୍ଜୁନଙ୍କର ସମର-ବିମୁଖତା-ଜନିତ 'ବିଷାଦ ଯୋଗ' ବର୍ଣ୍ଣିତ ।

ଏହି 'ବିଷାଦ ଯୋଗ'ଟି ଯେ କିପରି ଅତ୍ୟନ୍ତ ଗଭୀର ଭାବ-ବ୍ୟଞ୍ଜକ, ତାହା ବରଂ ପାଠକେ ମନେ ରଖିବେ । କାରଣ,'ବିଷାଦ' ବା ଅବସାଦର ଗଭୀରତାରୁହିଁ ଉପରକୁ ଉଠିଆସେ, ପ୍ରକୃତ ଅଧ୍ୟାତ୍ମ-ବୋଧ । ବିଷାଦହିଁ ଆଣି ଦିଏ ମନୁଷ୍ୟ-ଚିତ୍ତରେ ଜିଜ୍ଞାସା । ଯେପର୍ଯ୍ୟନ୍ତ ଦସ୍ୟୁ ରତ୍ନାକର ନାରଦଙ୍କୁ ଭେଟି ନ ଥିଲା, ସେପର୍ଯ୍ୟନ୍ତ ସେ ତାର ହତ୍ୟା-ଲୁଣ୍ଠନର ନିଷ୍ଠୁରତାଭିତରେ ମଧ୍ୟ ବେଶ୍ ସନ୍ତୋଷର ସହିତ ଚଳୁଥିଲା । ନାରଦଙ୍କ ସ୍ପର୍ଶ, ତରୁଣ ଦସ୍ୟୁକୁ ହଠାତ୍ ଏପରି ଏକ ନୈତିକ ଓ ଚୈତ୍ତିକ ସଙ୍କଟରେ ସମ୍ମୁଖୀନ କଲା, ଯେଉଁଠି ସେ ଦେଖିଲା ଯେ, ସମଗ୍ର ସଂସାରରେ ସେ ପ୍ରକୃତରେ ଏକାନ୍ତ ଏକାକୀ । ପିତା, ମାତା, ପତ୍ନୀ, ପୁତ୍ର-କନ୍ୟାଦି—ଏ ସମସ୍ତ କେବଳ ନିଜ-ସ୍ୱାର୍ଥ-କେନ୍ଦ୍ରିକ ମାୟାର ଅଚିର-ସ୍ଥାୟୀ ଅଭିନୟ ମାତ୍ର । ସେ ତେଣୁ ଜୀବନରେ ପ୍ରଥମ କରି ଜାଣିଲା, 'ବିଷାଦ-ଯୋଗ' । ଠିକ୍ ସେହିପରି ବର୍ତ୍ତମାନ ଅର୍ଜ୍ଜୁନଙ୍କର ଅବସ୍ଥା । ଦିନେ ରାଜକନ୍ୟା ଓ ରାଜରାଣୀ ଦ୍ରୌପଦୀ ମଧ୍ୟ ଠିକ୍ ଏହିପରି ସଙ୍କଟରେ ସମ୍ମୁଖୀନ ହୋଇ ପରମ ଅବସାଦରେ, ଆତ୍ମାର ଅନ୍ତସ୍ତଳରୁ ଚିତ୍କାର କରିଉଠିଥିଲେ—

ନୈବ ମେ ପତୟୋ ସନ୍ତି,
ନ ପୁତ୍ରା, ନ ଚ ବାନ୍ଧବାଃ
ନ ଭ୍ରାତାରୋ, ନ ଚ ପିତା,
ନୈବ ତ୍ୱଂ, ମଧୁସୂଦନ !

( ମୋର ସ୍ୱାମୀମାନେ ମୋର ନୁହନ୍ତି ; ଆଜି ମୋର ପୁଅ ବା ବାନ୍ଧବ କେହି ନାହିଁ ; ଭାଇ ନାହାନ୍ତି; ବାପା ନାହାନ୍ତି । କିନ୍ତୁ ହେ ମଧୁସୂଦନ ! ତମେ ବି କଣ ମୋର ହୋଇ ଆଉ ନାହଁ ? )

କିନ୍ତୁ ପାଠକେ ମନେ ରଖିବେ ଯେ, ଠିକ୍ ଏତିକିବେଳେ, ଯେତେ-ବେଳେ କି ତମ ଜୀବନରେ ସଂସାର, ସମାଜ, ଦେଶ ଓ ପରିବାର ସମସ୍ତେହିଁ ଉଭେଇଯିବେ, ସେତିକିବେଳେହିଁ, ଆତ୍ମାରେ ଅବତୀର୍ଣ୍ଣ ହେବେ ପ୍ରାଣର ସେହି ନିକଟତମ ଦ୍ୱିତୀୟ ଓ ସୃଷ୍ଟିର ଏକାନ୍ତ ଏକକ, କେବଳ ଯାହାଙ୍କ-ଠାରେହିଁ ଆମ ଜୀବନର ସକଳ ପ୍ରଶ୍ନର ଓ ଈପ୍ସାର ପରିପୂର୍ଣ୍ଣ ଉତ୍ତର ଆମେ ପାଇବାକୁ ଆଶା କରିବା । ଅର୍ଥାତ୍, ଉପନିଷଦ୍‌ର ପ୍ରଜ୍ଞାପୂର୍ଣ୍ଣ ବାଣୀରେ—

"ଯାହାକୁ ଜାଣିଲାପରେ ଆଉ ଜାଣିବାକୁ କିଛି ଅବଶେଷ ନ ଥାଏ" । ଭଗବଦ୍-ଗୀତା ସେହି ପ୍ରଜ୍ଞା-ଓ-ଦର୍ଶନଦାୟୀ ଗ୍ରନ୍ଥ ।

ବର୍ତ୍ତମାନ ଶ୍ଳୋକଗୁଡ଼ିକୁ ଗୋଟିକପରେ ଗୋଟିଏ ଆଲୋଚନା କରିବା ।

୧

ଧୃତରାଷ୍ଟ୍ର ଉବାଚ
ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ
ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଞ୍ଜୟ । ୧ ।

ଧୃତରାଷ୍ଟ୍ର ଉବାଚ (ଧୃତରାଷ୍ଟ୍ର କହିଲେ) [ହେ] ସଞ୍ଜୟ, ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ( କୁରୁକ୍ଷେତ୍ରପରି ଏକ ଧର୍ମକ୍ଷେତ୍ରରେ ) ମାମକାଃ ପାଣ୍ଡବାଃ ଚ ଏବ (ମୋ ପିଲେ) ଏବଂ [ଭାଇ] (ପାଣ୍ଡୁଙ୍କ ପିଲେ) [ଭାଇ ଭାଇ ହେଲେ ମଧ୍ୟ] ଯୁଯୁତ୍ସବଃ (ପରସ୍ପର ହଣାମରା ହେବାକୁ ଉତ୍ସୁକ ହୋଇ ଏକାଠି ହେଲାପରେ) କିମକୁର୍ବତ (କଣ କପରି କଲେ) [କହ ତ] ।

**ଅନୁବାଦ**

ହେ ସଂଜୟ, ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ମୋର ଓ ମୋର ଭାଇ ପାଣ୍ଡୁଙ୍କର ସନ୍ତାନମାନେ ପରସ୍ପର ଲଢ଼ିବାପାଇଁ ଉତ୍ସାହୀ ହୋଇ ଏକାଠି ହେଲା-ପରେ, କଣ କଲେ କହ ତ ?

**ବିଶେଷ ଭାଷ୍ୟ**

ଧର୍ମକ୍ଷେତ୍ର କୁରୁକ୍ଷେତ୍ର । ମହାଭାରତ ଯୁଦ୍ଧ ଏବଂ ଭାରତ ଇତିହାସର ବହୁ ପ୍ରସିଦ୍ଧ ସଂଗ୍ରାମର ପୃଷ୍ଠଭୂମି, ବିରାଟ କୁରୁକ୍ଷେତ୍ର-ସମତଳ ଏବେ ବି ରହିଛି ଏବଂ ଏପର୍ଯ୍ୟନ୍ତ ମଧ୍ୟ ଏହା ହିନ୍ଦୁମାନଙ୍କର ଏକ ମୁଖ୍ୟ ପୁଣ୍ୟତୀର୍ଥ ବା 'ଧର୍ମକ୍ଷେତ୍ର' ରୂପେ ପରିଗଣିତ ।

କୌରବ ଓ ପାଣ୍ଡବ, ଉଭୟଙ୍କର ଏକ ପ୍ରସିଦ୍ଧ ଆଦିପୁରୁଷ ଥିଲେ 'କୁରୁ' । ନିଜ ଉଦ୍ୟମରେ ସେ ଯେଉଁ 'କ୍ଷେତ୍ର' ଅର୍ଥାତ୍ ଉପଯୁକ୍ତ କୃଷି ଓ ଗୋଚାରଣ ଏବଂ ମନୁଷ୍ୟ-ବାସୋପଯୋଗୀ ଜମି ତିଆରି କରେଇଥିଲେ, ତାହାହିଁ ପରେ 'କୁରୁକ୍ଷେତ୍ର' ନାମରେ ପରିଚିତ ହେଲା ।

ଋଗ୍‌ବେଦରେ ଆମେ 'ପଞ୍ଚଜନ' ବା ପାଞ୍ଚଟି ଭିନ୍ନଭିନ୍ନ 'ଆର୍ଯ୍ୟ'-ଗୋଷ୍ଠୀର ଖବର ପାଉ । ପରେ କିନ୍ତୁ ଏହି ଆର୍ଯ୍ୟ 'ପଂଚଜନ' 'ବହୁ-ଜନ' ହୋଇଉଠିଲେ ଆର୍ଯ୍ୟମାନେ ବହୁ ଶତାବ୍ଦୀ ଧରି ମଧ୍ୟ-ଏସିଆରୁ ଏକ ପରେ ଏକ ଗୋଷ୍ଠୀ ହୋଇ

ଏ ଦେଶକୁ ଆସୁଥିଲେ । ତେଣୁ ଋଗ୍‌ବେଦର ପ୍ରଥମାଂଶରେ ଆମେ ଯେଉଁ ଗୋଷ୍ଠୀମାନଙ୍କର ନାମ ଦେଖୁ, ପରବର୍ତ୍ତୀ ଅଂଶରେ ସେମାନଙ୍କର ଆଉ ନାମୋଲ୍ଲେଖ ନ ହୋଇ, ଅନ୍ୟ ନୂତନ ଗୋଷ୍ଠୀମାନଙ୍କର ନାମୋଲ୍ଲେଖ ଥିବାର ଦେଖୁ । ପୁଣି ଏହି ଗୋଷ୍ଠୀସବୁ ସମସ୍ତେ 'ଆର୍ଯ୍ୟ' ହେଲେହେଁ, ବରାବର ପରସ୍ପର-ବିବଦମାନ ଥିଲେ ; ଠିକ୍ ଯେପରି ସମସ୍ତେ ଶ୍ୱେତଚର୍ମୀ ଓ ଖ୍ରୀଷ୍ଟାନ ହେଲେହେଁ, ୟୁରୋପୀୟ ଜାତିମାନେ ବରାବର ପରସ୍ପର ସହିତ ଯୁଧ୍ୟମାନ ରହିଆସିଛନ୍ତି । ପରବର୍ତ୍ତୀ କାଳର ଏହି କୁରୁକ୍ଷେତ୍ର ଯୁଦ୍ଧର ଏକ ପୂର୍ବତନ ସଂସ୍କରଣ ପରି, ଋଗ୍‌ବେଦରେ ମଧ୍ୟ ଏହି ଆର୍ଯ୍ୟ-ଗୋଷ୍ଠୀ-ସଂଘର୍ଷର ପରିଣତି ଭାବରେ, ଏକ 'ଦଶରାଜାର' ଯୁଦ୍ଧ ବର୍ଣ୍ଣିତ ଅଛି ।

ଏହି 'ଦଶରାଜାର ଯୁଦ୍ଧ' ରେ ଦୁଇ ପକ୍ଷେ ଦୁଇ ମୁଖ୍ୟ ଗୋଷ୍ଠୀ ଥିଲେ ପ୍ରାଚୀନ ଔପନିବେଶିକ ଗୋଷ୍ଠୀ 'ପୁରୁ' ଓ ନୂତନ ଔପନିବେଶିକ ଗୋଷ୍ଠୀ 'ଭରତ' । ଭାରତବର୍ଷର ଇତିହାସରେ ବରାବର ଯେପରି ଦେଖା ଦେଇଛି, ଉତ୍ତରାଗତ ନୂତନ ଗୋଷ୍ଠୀ 'ଭରତ'ମାନଙ୍କର ହିଁ 'ଦଶରାଜାର ଯୁଦ୍ଧ'ରେ ଜୟ ହେଲା ଏବଂ ସେହି ବିଜୟଫଳରେହିଁ ଏ ଦେଶ, ସେହିମାନଙ୍କ ନାମାନୁସାରେ 'ଭାରତବର୍ଷ' ହେଲା । ଇଂଲଣ୍ଡ, ଫ୍ରାନ୍‌ସ, ଜର୍ମାନୀ ପ୍ରଭୃତି ୟୁରୋପୀୟ ଆର୍ଯ୍ୟରାଜ୍ୟଗୁଡ଼ିକ ମଧ୍ୟ ଏହିପରି ବିଶେଷ ବିଶେଷ ଆର୍ଯ୍ୟଗୋଷ୍ଠୀର ନାମରେ ହିଁ ଆଜି ବିଶ୍ୱ-ପରିଚିତ । ଦୁଷ୍ମନ୍ତ-ଶକୁନ୍ତଳାଙ୍କ ପୁଅ ଭରତଙ୍କ ଯୋଗୁ ଏ ଦେଶର ଏପରି ନାମକରଣ, ଏକ ଭ୍ରାନ୍ତ ଧାରଣା ।

'ଭରତ' ଓ 'ପୁରୁ' ଗୋଷ୍ଠୀ, ପରସ୍ପରର ଶତ୍ରୁ ହେଲେହେଁ, ପରେ ବୈବାହିକ ସୂତ୍ରରେ ଗୋଟିଏ 'କୁରୁବଂଶ'ରେ ପରିଣତ ହୋଇଗଲେ । ଗୀତାରେ, ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ତେଣୁ, କେତେବେଳେ 'ପାଣ୍ଡବ', କେତେବେଳେ 'ଭାରତ' ଓ ପୁଣି କେତେବେଳେ 'କୁରୁନନ୍ଦନ' ବୋଲି ନାନା କୌଳିକ ବିଶେଷଣରେ ସମ୍ବୋଧନ କରିଛନ୍ତି ।

ଅଧୁନା-ଲୁପ୍ତ ସରସ୍ୱତୀ ଓ ଦୃଷଦ୍‌ବତୀ ନଦୀଦ୍ୱୟର ଏବଂ ପଞ୍ଜାବର ଶିଓ୍ୱାଲିକ ପର୍ବତମାଳା ଓ ରାଜପୁତାନାର ଆରାବଲୀ ପର୍ବତମାଳାମଧ୍ୟରେ କୁରୁ-କୀର୍ତ୍ତି, ବିସ୍ତୃତ ବିରାଟ ଏହି ସମତଳ ଭୂମି, 'କୁରୁକ୍ଷେତ୍ର' ବିରାଜିତ । ପୂର୍ବେ ଏହାର ହିଁ ଦକ୍ଷିଣାଂଶରେ ଥିଲା ବିସ୍ତୃତ ଖାଣ୍ଡବବନ, ଯାହାକୁ ଅର୍ଜୁନ ଦହନ କରିଥିଲେ । କୁରୁ ନିଜ ହାତରେ ବା ନିଜ ତତ୍ତ୍ୱାବଧାନରେ 'କ୍ଷେତ୍ର' ପ୍ରସ୍ତୁତ କରିବା ଏବଂ ଅର୍ଜୁନଙ୍କ ଖାଣ୍ଡବବନ ଦହନ କରିବାରୁ, ସେକାଳରେ ଅରଣ୍ୟଭୂମିସବୁକୁ ସାଧି କରି ଜନବାସୋପଯୋଗୀ କରିବାହିଁ ସୂଚିତ ହେଉଛି, ଠିକ୍ ଯେପରି, ମାହି

ସ୍ମରଣ ବର୍ଷ ତଳେ, ପ୍ରାଚୀନ ମହାଦେଶରୁ ଶ୍ୱେତାଙ୍ଗମାନେ ଯାଇ 'ନୂତନ' ମହାଦେଶ ଆମେରିକାରେ ଜଙ୍ଗଲ କାଟି ବସବାସ କଲେ ।

ଏହି ନୂତନ ଆର୍ଯ୍ୟବସତିରେ କୁରୁକ୍ଷେତ୍ର-ସମତଳ-ବାହିନୀ ସରସ୍ୱତୀ ନଦୀର କୂଳେ କୂଳେ ସେ କାଳରେ ବହୁ ପଣ୍ଡିତ, କବି ଓ ଋଷି ବାସ କରୁଥିଲେ । ସ୍ଥାନେ ସ୍ଥାନେ ଯାଗ-ଯଜ୍ଞ ଓ ବେଦାଧ୍ୟୟନ ଲାଗିରହିଥିଲା । ବହୁ ଶତାବ୍ଦୀପରେ ହୁଏତ, ବିସ୍ତୃତ ଅରଣ୍ୟ-ଧ୍ୱଂସ ହେତୁରୁ ସରସ୍ୱତୀ ନଦୀର ସ୍ରୋତ ଶୁଖିଯାଆନ୍ତେ ସେ ଅଞ୍ଚଳରୁ ଲୋକବସତିସବୁ ଉଠିଗଲା । କିନ୍ତୁ ପୁରାଣଯୁଗ ବେଳକୁ ସେହି ସରସ୍ୱତୀ ନଦୀର ଉଭୟ କୂଳସ୍ଥ ଉଚ୍ଚ ସାଂସ୍କୃତିକ ସ୍ମୃତିହିଁ, ଲୋକ-କଳ୍ପନାରେ ବିଦ୍ୟାର ଦେବୀ 'ସରସ୍ୱତୀ' ହୋଇ ଦେଖାଦେଲେ । ଖୁବ୍ ସମ୍ଭବତଃ, ଯାଗ-ଯଜ୍ଞମୟ ଏବଂ ଋଷିଜନସେବିତ ସରସ୍ୱତୀର ଉଭୟ କୂଳର ଉଚ୍ଚ ବୈଦିକ-ବ୍ରାହ୍ମଣ୍ୟ ସଂସ୍କୃତିହିଁ ସମଗ୍ର କୁରୁକ୍ଷେତ୍ର ଅଞ୍ଚଳଟିକୁ ମଧ୍ୟ, ଲୋକସ୍ମୃତିରେ ଏକ 'ଧର୍ମକ୍ଷେତ୍ର' କରି ଥୋଇଥିଲା ।

ଐତିହାସିକ ରାଜା ହର୍ଷବର୍ଦ୍ଧନଙ୍କ ରାଜଧାନୀ ଥାନେଶ୍ୱର, ଏହି ଧର୍ମକ୍ଷେତ୍ର କୁରୁକ୍ଷେତ୍ରଠାରୁ ଅଦୂରରେ ଏବଂ ଦିଲ୍ଲୀ ବା ପ୍ରାଚୀନ ଇନ୍ଦ୍ରପ୍ରସ୍ଥ 'କୁରୁକ୍ଷେତ୍ର'ର ଦକ୍ଷିଣକୁ । ଐତିହାସିକ ପାନିପଥ ରଣକ୍ଷେତ୍ର, ଏହି କୁରୁକ୍ଷେତ୍ରର ଏକ ଅଂଶ କହିଲେ ଚଳେ । ସିନ୍ଧୁ ନଦୀର ଉପତ୍ୟକାରୁ ଗଙ୍ଗା-ଯମୁନା ଉପତ୍ୟକାକୁ ଆସିବା-ପାଇଁ ଦ୍ୱାରସ୍ୱରୂପ ଏହି କୁରୁକ୍ଷେତ୍ର । ତେଣୁ କେବଳ ମହାଭାରତ ଯୁଦ୍ଧ ନୁହେଁ, ଭାରତର ଭାଗ୍ୟନିର୍ଣ୍ଣାୟକ ବହୁ ଯୁଦ୍ଧ ଏହି କୁରୁକ୍ଷେତ୍ରରେ ଘଟିଯାଇଛି । ପୂର୍ବର ଆର୍ଯ୍ୟବସତିମାନଙ୍କୁ ସ୍ମରଣ କରାଇ, ଏବେ ଏହି ବିସ୍ତୃତ ପ୍ରାନ୍ତରରେ ପାକିସ୍ତାନରୁ ପଳାୟିତ ଲକ୍ଷ ଲକ୍ଷ ବାସ୍ତୁହରା ପଞ୍ଜାବୀ ନେଇ ସମୃଦ୍ଧ ନୂତନ ବସତିସବୁ ଦେଖା ଦେଇଛନ୍ତି । ହିଂସା ଓ ମତାନ୍ଧତାର ଉତ୍ତରସ୍ୱରୂପ ଶାନ୍ତି ଓ ପ୍ରେମର ଏହି ଯେ ଜୟପତାକା, ଏ କାରଣରୁ ମଧ୍ୟ କୁରୁକ୍ଷେତ୍ର, ବହୁ ସହସ୍ର ବର୍ଷପରେ ଆଜି ମଧ୍ୟ ପବିତ୍ର 'ଧର୍ମକ୍ଷେତ୍ର' । ବର୍ତ୍ତମାନ, ଭାରତ ସରକାର, ଅବଲୁପ୍ତ ସରସ୍ୱତୀର ଜଳ-ଧାରକୁ ମଧ୍ୟ ପୁଣି ଉଠେଇବାକୁ ଚେଷ୍ଟା କରୁଛନ୍ତି ।

ଗୀତାର ଏହି ଆଦ୍ୟତମ ଶ୍ଳୋକରେ ଧୃତରାଷ୍ଟ୍ରଙ୍କ ବଚନର ନିଗୂଢ଼ ବ୍ୟଞ୍ଜନା ତେଣୁ ଏହିକି ଯେ—"ହେ ସଞ୍ଜୟ, ଆଜି ସ୍ଥାନ ମିଳିଲାନି ଯେ, ପୁଣ୍ୟ-କ୍ଷେତ୍ର କୁରୁକ୍ଷେତ୍ରଟାରେ ଏ ଭାଇ-ଭାଇସବୁ ହଣାକଟା ହେବାକୁ ଏକାଠି ହେଲେ ! କି ଦୁର୍ଘଟଣା !"

କିନ୍ତୁ ମହାଭାରତଯୁଦ୍ଧ କେବଳ ଭ୍ରାତୃବଧ ମାତ୍ର ନ ଥିଲା । ଏହା ଥିଲା ବ୍ୟକ୍ତି-ନିରପେକ୍ଷ,—ଥିଲା ଧର୍ମ-ଅଧର୍ମ, ନ୍ୟାୟ-ଅନ୍ୟାୟ ଓ ସତ୍ୟ ମିଥ୍ୟାର ସଂଗ୍ରାମ । ମହାଭାରତ ଯୁଦ୍ଧ ଆମ ଜୀବନରହିଁ ପ୍ରତୀକ । ପୁଣି ସେହି ସଂହାରର ଶାଭତ୍ସତାଭିତରେହିଁ ଏହି ମହାଗ୍ରନ୍ଥ ଭଗବଦ୍‌ଗୀତାର ଜନ୍ମ । ଏବଂ ସେହି ସଂହାର ପରିଚାଳନା କରୁଥିଲେ ଆପାତ-ନିରାସକ୍ତ ପରମପୁରୁଷ ଶ୍ରୀକୃଷ୍ଣ । ତେଣୁ ମହାଭାରତ ଯୁଦ୍ଧରୂପକ ଭ୍ରାତୃବଧର ଭୟାବହତା ସତ୍ତ୍ୱେ କୁରୁକ୍ଷେତ୍ର-ମାଟି ଯେ ଏକ ସନାତନ ମହିମା ଅର୍ଜନ କରିଛି, ଏହା ନିଶ୍ଚିତ । ସେ ମହିମା ପାଖରେ କେତୋଟି ସାମନ୍ତଙ୍କର ବିନାଶ, ସାମାନ୍ୟ ଘଟଣା ମାତ୍ର ।

୨-୩

ସଂଜୟ ଉବାଚ

ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ ବ୍ୟୂଢ଼ଂ ଦୁର୍ଯ୍ୟୋଧନସ୍ତଦା
ଆଚାର୍ଯ୍ୟମୁପସଙ୍ଗମ୍ୟ ରାଜାବଚନମବ୍ରବୀତ୍ । ୨ ।
ପଶ୍ୟୈତାଂ ପାଣ୍ଡୁପୁତ୍ରାଣାମାଚାର୍ଯ୍ୟ ମହତୀଂ ଚମୂମ୍
ବ୍ୟୂଢ଼ାଂ ଦ୍ରୁପଦପୁତ୍ରେଣ ତବ ଶିଷ୍ୟେଣ ଧୀମତା । ୩ ।

ସଞ୍ଜୟ ଉବାଚ (ସଞ୍ଜୟ କହିଲେ), ତଦା ତୁ (ସେତେବେଳେ) ପାଣ୍ଡବାନୀକଂ (ପାଣ୍ଡବ ସୈନ୍ୟମାନଙ୍କୁ) ବ୍ୟୂଢ଼ଂ (ବ୍ୟୂହ ଆକାରରେ ଦଣ୍ଡାୟମାନ) ଦୃଷ୍ଟ୍ୱା (ଦେଖି) ରାଜା ଦୁର୍ଯ୍ୟୋଧନଃ (ରାଜା ଦୁର୍ଯ୍ୟୋଧନ) ଆଚାର୍ଯ୍ୟଂ ଉପସଂଗମ୍ୟ (ଆଚାର୍ଯ୍ୟ, ତାଙ୍କର ଅସ୍ତ୍ରଗୁରୁ ଦ୍ରୋଣଙ୍କ ନିକଟକୁ ଯାଇ) ବଚନଂ ଅବ୍ରବୀତ୍ (ଏହିପରି କହିଲେ) ଆଚାର୍ଯ୍ୟ (ହେ ଗୁରୁଦେବ) ତବ (ଆପଣଙ୍କର) ଧୀମତା ଶିଷ୍ୟେଣ ଦ୍ରୁପଦପୁତ୍ରେଣ (ବୁଦ୍ଧିମାନ୍ ଶିଷ୍ୟ, ଦ୍ରୁପଦପୁତ୍ର ଧୃଷ୍ଟଦ୍ୟୁମ୍ନଙ୍କଦ୍ୱାରା) ବ୍ୟୂଢ଼ାଂ (ବ୍ୟୂହାକାରରେ ସଜ୍ଜିତ) ଏତାଂ (ଏହି) ପାଣ୍ଡୁପୁତ୍ରାଣାଂ ମହତୀଂ ଚମୂଂ (ପାଣ୍ଡବମାନଙ୍କର ବିଶାଳ ସେନାକୁ) ପଶ୍ୟ (ଦେଖନ୍ତୁ) ।

**ଅନୁବାଦ**

ସଞ୍ଜୟ କହିଲେ, "ହେ ମହାରାଜ, କୁରୁକ୍ଷେତ୍ରରେ ପାଣ୍ଡବ ସୈନ୍ୟମାନଙ୍କୁ ଯୁଦ୍ଧ-ବ୍ୟୂହସବୁ ରଚନା କରି ଯୁଦ୍ଧାରମ୍ଭପାଇଁ ପ୍ରସ୍ତୁତ ହୋଇଗଲେଣି ଦେଖି ରାଜା ଦୁର୍ଯ୍ୟୋଧନ ତାଙ୍କର ଅସ୍ତ୍ରାଚାର୍ଯ୍ୟ ଦ୍ରୋଣଙ୍କ ନିକଟକୁ ଯାଇ କହିଲେ, 'ହେ ଆଚାର୍ଯ୍ୟଦେବ, ଆପଣଙ୍କର ବୁଦ୍ଧିମାନ୍ ଶିଷ୍ୟ ଦ୍ରୌପଦେୟ(ଧୃଷ୍ଟଦ୍ୟୁମ୍ନ)ର ନେତୃତ୍ୱରେ ସଂଗଠିତ-ବ୍ୟୂହ ପାଣ୍ଡବ-ସେନାପ୍ରତି ଦୃଷ୍ଟି ନିକ୍ଷେପ କରନ୍ତୁ' ।"

## ବିଶେଷ ଭାଷ୍ୟ

ସମରପ୍ରାଜ୍ଞ ଏବଂ କୌରବ ଓ ପାଣ୍ଡବ ଉଭୟଙ୍କର ସମର-ଗୁରୁ, ଦ୍ରୋଣାଚାର୍ଯ୍ୟଙ୍କୁ ଏପରି ଶିଷ୍ୟ ଦୁର୍ଯ୍ୟୋଧନଙ୍କର ଉପଦେଶ ଦେବା ଘୋର ଦାମ୍ଭିକତା ଓ ଅପ୍ରାସଙ୍ଗିକ । ଦୁର୍ଯ୍ୟୋଧନ କିନ୍ତୁ ଇତିହାସର ବହୁ ଏକଛତ୍ରବାଦୀ ଶାସକଙ୍କ ଭିତରୁ ଜଣେ, ଯେଉଁମାନେ କି କାହାକୁ ବିଶ୍ୱାସ କରନ୍ତି ନାହିଁ ଏବଂ ଯେଉଁମାନେ ମଧ୍ୟ ସୌଜନ୍ୟକୁ ଏକ ଉତ୍ତମ ମାନବିକ ଗୁଣ ବୋଲି ମନେ କରି ନ ଥାନ୍ତି । ପୁଣି, ନ୍ୟାୟ ଓ ଧର୍ମର ଜୟରେ ବା ଈଶ୍ୱରେଚ୍ଛାରେ ବିଶ୍ୱାସ ନ ଥିବାରୁ ଏମାନେ ବାହାରକୁ ଯେତେ ଆଡ଼ମ୍ବର ଦେଖାଇଲେ ମଧ୍ୟ, ଅନ୍ତରରେ ସର୍ବଦା ଥାନ୍ତି ଆତଂକିତ । ତେଣୁ ପରେ ଦଶମ ଶ୍ଳୋକରେ, ଦୁର୍ଯ୍ୟୋଧନ ପାଣ୍ଡବ-ସୈନ୍ୟବଳ ଅଳ୍ପ, ଏବଂ ତା' ତୁଳନାରେ ନିଜ ସୈନ୍ୟବଳ 'ଅପର୍ଯ୍ୟାପ୍ତ' ବୋଲି ଗର୍ବ କଲେ ମଧ୍ୟ, ନିଜର ଆଭ୍ୟନ୍ତରୀଣ ଆତଙ୍କଭାବ ଯୋଗୁ ହେଉ, ବା ଏତେ ଏତେ ବୀର 'ମଦର୍ଥେ ତ୍ୟକ୍ତଜୀବିତାଃ' କହି ନିଜର ସମରାଡ଼ମ୍ବର ଦେଖାଇବା ପାଇଁ ହେଉ, ସେ ଧାଇଁ ଆସିଲେ ଦ୍ରୋଣଙ୍କ ପାଖକୁ, ଅନାବଶ୍ୟକ ଉପଦେଶ ଶୁଣାଇବାପାଇଁ ।

ଅହମିକାପୂର୍ଣ୍ଣ, ଏକଛତ୍ରବାଦୀ ଦୁର୍ଯ୍ୟୋଧନଙ୍କ ଚରିତ୍ରପ୍ରତି, ଯୁଦ୍ଧାରମ୍ଭରେହିଁ, ଗୀତାକାରଙ୍କର ଏହି ବର୍ଣ୍ଣନା ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ ମନେ ହେଉଛି ।

ପୁଣି ଦୁର୍ଯ୍ୟୋଧନ, ସର୍ବାଧ୍ୟକ୍ଷ ସେନାପତି ଭୀଷ୍ମଦେବଙ୍କ ପାଖକୁ ଗଲେ ନାହିଁ କାହିଁକି ? ସେ ଜାଣିଥିଲେ ଯେ, ଅପ୍ରତିଦ୍ୱନ୍ଦ୍ୱୀ ସମର-ନାୟକ ଓ ନ୍ୟାୟ-ପରାୟଣ ଭୀଷ୍ମଙ୍କ ପାଖରେ ଏପ୍ରକାର ଦାମ୍ଭିକତାର ସ୍ଥାନ ନାହିଁ ଏବଂ ଗୁରୁ ହେଲେହେଁ ଦ୍ରୋଣ ଥିଲେ ଚାକିରିଆ । କିଞ୍ଚିତ୍ ପରେ କ୍ଷତ୍ରିୟ ଦୁର୍ଯ୍ୟୋଧନ ଦ୍ରୋଣଙ୍କର ଜାତିଗତ ଦୁର୍ବଳତା ସୂଚିତ କରି, ତାଙ୍କୁ 'ହେ ବ୍ରାହ୍ମଣଶ୍ରେଷ୍ଠ' ବୋଲି ମଧ୍ୟ ସମ୍ବୋଧନ କରିଛନ୍ତି ।

### ୪-୫-୬

ଅତ୍ର ଶୂରା ମହେଷ୍ୱାସା ଭୀମାର୍ଜୁନସମା ଯୁଧି
ଯୁଯୁଧାନୋ ବିରାଟଶ୍ଚ ଦ୍ରୁପଦଶ୍ଚ ମହାରଥଃ । ୪ ।
ଧୃଷ୍ଟକେତୁଶ୍ଚେକିତାନଃ କାଶୀରାଜଶ୍ଚ ବୀର୍ଯ୍ୟବାନ୍
ପୁରୁଜିତ୍ କୁନ୍ତିଭୋଜଶ୍ଚ ଶୈବ୍ୟଶ୍ଚ ନରପୁଂଗବଃ । ୫ ।
ଯୁଧାମନ୍ୟୁଶ୍ଚ ବିକ୍ରାନ୍ତ ଉତ୍ତମୌଜାଶ୍ଚ ବୀର୍ଯ୍ୟବାନ୍
ସୌଭଦ୍ରୋ ଦ୍ରୌପଦେୟାଶ୍ଚ ସର୍ବ ଏବ ମହାରଥାଃ । ୬ ।

ଅତ୍ର (ଏହି ପାଣ୍ଡବସେନାଭିତରେ), ଯୁଧି (ଯୁଦ୍ଧରେ) ଭୀମାର୍ଜ୍ଜୁନସମାଃ ମହେଷ୍ୱାସାଃ ଶୂରାଃ (ଭୀମ ଓ ଅର୍ଜ୍ଜୁନଙ୍କ ପରି ମହାଧନୁର୍ଦ୍ଧର ବୀରଗଣ) (ଯଥା) ଯୁଯୁଧାନଃ (ସାତ୍ୟକି), ବିରାଟଃ ଚ (ପୁଣି ବିରାଟ) ମହାରଥଃ ଦ୍ରୁପଦଃ ଚ (ଓ ମହାରଥୀ ଦ୍ରୁପଦ) ଧୃଷ୍ଟକେତୁଃ (ଧୃଷ୍ଟକେତୁ) ଚେକିତାନଃ (ଚେକିତାନ) ବୀର୍ଯ୍ୟବାନ୍ କାଶୀରାଜଃ (ପୁଣି ବଳଶାଳୀ କାଶୀରାଜ), ପୁରୁଜିତ୍, କୁନ୍ତିଭୋଜଃ ଚ, ନରପୁଂଗବ ଶୈବ୍ୟଃ ଚ (ପୁରୁଜିତ୍, କୁନ୍ତିଭୋଜ ଏବଂ ନରଶ୍ରେଷ୍ଠ ଶୈବ୍ୟ ମଧ୍ୟ) ବିକ୍ରାନ୍ତଃ ଯୁଧାମନ୍ୟୁଃ ଚ (ବିକ୍ରମଶାଳୀ ଯୁଧାମନ୍ୟୁ) ବୀର୍ଯ୍ୟବାନ୍ ଉତ୍ତମୌଜାଃ ଚ (ପୁଣି ଶକ୍ତିଶାଳୀ ଉତ୍ତମୌଜା ), ସୌଭଦ୍ରଃ (ସୁଭଦ୍ରାପୁତ୍ର ଅଭିମନ୍ୟୁ) ଦ୍ରୌପଦେୟାଃ ଚ (ପୁଣି ଦ୍ରୌପଦୀଙ୍କର ପୁଅମାନେ) ସର୍ବେ ଏବ ମହାରଥାଃ (ଏ ସମସ୍ତେ ଜଣେ ଜଣେ ମହାରଥ) ।

**ଅନୁବାଦ**

ଦୁର୍ଯ୍ୟୋଧନ କହିଲେ, "ସେପକ୍ଷେ କେବଳ ଭୀମ ଓ ଅର୍ଜ୍ଜୁନ ତ ନାହାନ୍ତି, ଲଢ଼େଇରେ ଭୀମ ଓ ଅର୍ଜ୍ଜୁନଙ୍କ ପରି ସମ-ବିଶିଷ୍ଟତାସଂପନ୍ନ ଅନ୍ୟ ବହୁ ପ୍ରବୀଣ ଧନୁର୍ବିଦ୍ ବୀର ମଧ୍ୟ ଅଛନ୍ତି । ଯଥା— ସାତ୍ୟକି, ବିରାଟ, ମହାରଥୀ ଦ୍ରୁପଦ, ଧୃଷ୍ଟକେତୁ, ଚେକିତାନ, ବଳପାଇଁ-ବିଖ୍ୟାତ କାଶୀରାଜ, ପୁରୁଜିତ୍, କୁନ୍ତିଭୋଜ ଏବଂ ନରଶ୍ରେଷ୍ଠ ଶୈବ୍ୟ ମଧ୍ୟ । ବିକ୍ରମଶାଳୀ ଯୁଧାମନ୍ୟୁ, ଶକ୍ତିଶାଳୀ ଉତ୍ତମୌଜା, ଅର୍ଜ୍ଜୁନପୁତ୍ର ଅଭିମନ୍ୟୁ, ପୁଣି ଦ୍ରୌପଦୀଙ୍କ ପାଞ୍ଚ ପୁଅଯାକ ମଧ୍ୟ ଅଛନ୍ତି । ଏମାନେ ନିଃସନ୍ଦେହରେ ପ୍ରତ୍ୟେକେ ଏକେ ଏକେ ମହାରଥୀ ।"

୭-୮

ଅସ୍ମାକନ୍ତୁ ବିଶିଷ୍ଟା ଯେ ତାନ୍ନିବୋଧ ଦ୍ୱିଜୋତ୍ତମ
ନାୟକା ମମ ସୈନ୍ୟସ୍ୟ ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ । ୭।
ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ କୃପଶ୍ଚ ସମିତିଂଜୟଃ
ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ ସୌମଦତ୍ତିର୍ଜୟଦ୍ରଥଃ । ୮ ।

[ହେ] ଦ୍ୱିଜୋତ୍ତମ (ବ୍ରାହ୍ମଣଶ୍ରେଷ୍ଠ) ଅସ୍ମାକଂ ତୁ (ଆମ୍ଭମାନଙ୍କ ମଧ୍ୟରେ) ଯେ (ଯେଉଁମାନେ) ମମସୈନ୍ୟସ୍ୟ ବିଶିଷ୍ଟାଃ ନାୟକାଃ (ମୋ ସୈନ୍ୟଙ୍କର ମୁଖ୍ୟ ସେନାପତି) ତାନ୍ ନିବୋଧ(ସେମାନଙ୍କୁ ଜାଣିରଖ) । ତେ (ତୁମ୍ଭର) ସଂଜ୍ଞାର୍ଥଂ (ଗୋଚରାର୍ଥେ) ତାନ୍ ବ୍ରବୀମି (ସେମାନଙ୍କ ନାମ କହୁଅଛି) ।

[ସେମାନେ ହେଲେ] ଭବାନ୍ (ଆପଣ ନିଜେ) ଭୀଷ୍ମଃ ଚ (ପୁଣି ଭୀଷ୍ମ)

କର୍ଣ୍ଣଃ ଚ (ପୁଣି କର୍ଣ୍ଣ) ସମିତିଂଜୟଃ କୃପଃ ଚ (ପୁଣି ଯୁଦ୍ଧଜୟୀ କୃପ) ଅଶ୍ୱତ୍ଥାମା (ଅଶ୍ୱତ୍ଥାମା), ବିକର୍ଣ୍ଣଃ ଚ (ପୁଣି ବିକର୍ଣ୍ଣ) ସୌମଦତ୍ତିଃ ଜୟଦ୍ରଥଃ (ସୋମଦତ୍ତଙ୍କ ପୁଅ ସୌମଦତ୍ତି ବା ଭୂରିଶ୍ରବା ଓ ଜୟଦ୍ରଥ) ।

## ଅନୁବାଦ

"କିନ୍ତୁ ହେ ଦ୍ୱିଜୋତ୍ତମ ଆଚାର୍ଯ୍ୟଦେବ, ଆମ ପକ୍ଷେ ଯେଉଁମାନେ ମୁଖ୍ୟ ହେଲେ, ଆପଣ ଜାଣିରଖିବା ପାଇଁ ମୁଁ ସେମାନଙ୍କ ନାମ ମଧ୍ୟ କହିରଖେ । ଆପଣ ନିଜେ, ଭୀଷ୍ମଦେବ ଓ କର୍ଣ୍ଣ ତ ଅଛନ୍ତି । ତା ଛଡ଼ା ଅଛନ୍ତି ସର୍ବଦା ଯୁଦ୍ଧ-ଜୟୀ କୃପ, ଅଶ୍ୱତ୍ଥାମା, ବିକର୍ଣ୍ଣ, ଭୂରିଶ୍ରବା ଓ ଜୟଦ୍ରଥ ।"

## ବିଶେଷ ଭାଷ୍ୟ

ଏ ଶ୍ଳୋକରେ "ଆପଣଙ୍କ ଜାଣିବାପାଇଁ ସେମାନଙ୍କ ନାମସବୁ କହିରଖେ" —ଏ ବାକ୍ୟ ନିତାନ୍ତ ଅସଂଗତ ଓ ଅପ୍ରାସଙ୍ଗିକ । ସମରପ୍ରାଙ୍ଗଣରେ ଉପସ୍ଥିତ ହୋଇସାରିଥିବା ଉଚ୍ଚତମ ସେନାପତି, ତାଙ୍କ ତଳେ ଥିବା ଅନ୍ୟ ବୀର ଓ ସେନାପତି ସବୁ କିଏ, ତାହା କଣ ସେ ଜାଣନ୍ତି ନାହିଁ ଯେ, ଠିକ୍ ଲଢ଼େଇ ଆରମ୍ଭ ହେଲା-ବେଳକୁ ଜଣେ ଆସି ତାଙ୍କ ଆଗରେ ତାଲିକା ପଢ଼ି ଶୁଣାଇବ ?

ଏହାହିଁ ହୁଏତ ଏକ ବଡ଼ ପ୍ରମାଣ ଯେ, ଗୀତା ଏକ ସ୍ୱତନ୍ତ୍ର ପୁସ୍ତକ ଭାବରେ ମହାଭାରତପରେହିଁ ରଚିତ ହୋଇଛି । ମୂଳରୁ ଏହା ମହାଭାରତର ଅଂଶ ଥିଲେ ଏପ୍ରକାର ଅବାନ୍ତର ଓ ଅପ୍ରାସଙ୍ଗିକ ପୁନରାବୃତ୍ତିସବୁ ହୁଏତ ନ ଥାନ୍ତା ।

### ୯-୧୦

ଅନ୍ୟେଚ ବହବଃ ଶୂରାଃ ମଦର୍ଥେ ତ୍ୟକ୍ତଜୀବିତାଃ
ନାନାଶସ୍ତ୍ରପ୍ରହରଣାଃ ସର୍ବେ ଯୁଦ୍ଧବିଶାରଦାଃ । ୯ ।
ଅପର୍ଯ୍ୟାପ୍ତଂ ତଦସ୍ମାକଂ ବଳଂ ଭୀଷ୍ମାଭିରକ୍ଷିତମ୍
ପର୍ଯ୍ୟାପ୍ତଂ ତ୍ୱିଦମେତେଷାଂ ବଳଂ ଭୀମାଭିରକ୍ଷିତମ୍ । ୧୦ ।

ଚ (ପୁଣି) ନାନାଶସ୍ତ୍ରପ୍ରହରଣାଃ (ନାନା ଶସ୍ତ୍ରଦେଇ ଶତ୍ରୁପ୍ରହାରରେ ନିପୁଣ) ସର୍ବେ ଯୁଦ୍ଧବିଶାରଦାଃ (ସମସ୍ତେ ରଣକୁଶଳ) ଅନ୍ୟେ ବହବଃ ଶୂରାଃ (ଅନ୍ୟ ବହୁ ବୀର) ମଦର୍ଥେ ତ୍ୟକ୍ତଜୀବିତାଃ [ସନ୍ତି] (ମୋପାଇଁ ଜୀବନକୁ ଉତ୍ସର୍ଗୀ-କୃତ କରି ରହିଛନ୍ତି) । [ପୁଣି], ଅସ୍ମାକଂ ତତ୍ ଭୀଷ୍ମାଭିରକ୍ଷିତଂ ବଳଂ ଅପର୍ଯ୍ୟାପ୍ତଂ (ଏପରି ଉତ୍ସର୍ଗୀକୃତପ୍ରାଣ ରଣକୁଶଳ ବୀରମାନଙ୍କ ଗଠିତ ଆମ ପକ୍ଷୀୟ ସେନା ଅଗଣିତ ଏବଂ ଭୀଷ୍ମଙ୍କ ପରି ମହାବୀର-ପରିରକ୍ଷିତ) । ଏତେଷାଂ ତୁ (କିନ୍ତୁ

ସେମାନଙ୍କର) ଭୀମାଭିରକ୍ଷିତଂ ଇଦଂ ବଳଂ (ଭୀମ-ପରିରକ୍ଷିତ ସେନା) ପର୍ଯ୍ୟାପ୍ତଂ (ଗଣନାପୂର୍ତ୍ତ, ଅର୍ଥାତ୍ ଅଳ୍ପ)। [ତେଣୁ ଆଶଙ୍କା କରିବାର କିଛି ନାହିଁ।]

## ଅନୁବାଦ

ଦୁର୍ଯ୍ୟୋଧନ ପୁଣି କହିଲେ—"ଏମାନଙ୍କ ପରି ନାନା ଅସ୍ତ୍ର-ଶସ୍ତ୍ରରେ ସଜ୍ଜିତ ଯୁଦ୍ଧ-ବିଶାରଦ ଅନ୍ୟ ଅନେକ ବୀର ମଧ୍ୟ ମୋପାଇଁ ଜୀବନକୁ ଉତ୍ସର୍ଗୀକୃତ କରିଦେଇ ଏଠାରେ ଉପସ୍ଥିତ। ଭୀଷ୍ମ ପରିରକ୍ଷିତ ମୋ ସୈନ୍ୟ-ବଳ ଅଗଣିତ। ସେ ପକ୍ଷର ସୈନ୍ୟ, ଭୀମ-ପରିରକ୍ଷିତ ହେଲେହେଁ, ଜଣାଶୁଣାଭାବରେ ଅଳ୍ପସଂଖ୍ୟକ।"

## ବିଶେଷ ଭାଷ୍ୟ

ମହାଭାରତ ଅନୁସାରେ ଦୁର୍ଯ୍ୟୋଧନଙ୍କର ସୈନ୍ୟସଂଖ୍ୟା ଥିଲା ଏକାଦଶ ଅକ୍ଷୌହିଣୀ। ପାଣ୍ଡବ-ସେନା ଥିଲେ ମାତ୍ର ସାତ ଅକ୍ଷୌହିଣୀ। ପ୍ରତି ଅକ୍ଷୌହିଣୀରେ ଆନୁପାତିକଭାବରେ ଗଜ-ରଥ-ଅଶ୍ୱ-ପଦାତିକ ମିଶି ସୈନ୍ୟସଂଖ୍ୟା ହେଲା ୨୧୭ ହଜାର।

କିନ୍ତୁ ପ୍ରଚୁର ରଥ-ଗଜ-ଅଶ୍ୱ-ସମନ୍ୱିତ ଓ ସଂଖ୍ୟାଗରିଷ୍ଠ-ସେନା-ସମର୍ଥିତ ଦୁର୍ଯ୍ୟୋଧନ, ସଂଖ୍ୟାଲଘୁ ପାଣ୍ଡବ-ବାହିନୀଦ୍ୱାରା ଶେଷରେ ପରାସ୍ତ ଓ ବିନଷ୍ଟ ହୋଇପଡ଼ିଲେ। ଏହାର କାରଣ, ପାଣ୍ଡବ ପକ୍ଷେ ଥିଲା ନ୍ୟାୟରେ ଓ ଧର୍ମରେ ଦୃଢ଼ ବିଶ୍ୱାସ ଏବଂ କୌରବ ପକ୍ଷେ ଥିଲା କେବଳ ବାହାରର ସୈନ୍ୟ-ସଂଖ୍ୟା ଓ ଯୁଦ୍ଧଦ୍ରବ୍ୟଉପରେ ବିଶ୍ୱାସ।

ଏପ୍ରକାର ଜୟ-ପରାଜୟ, ସବୁ ଦେଶ ଓ ସବୁ କାଳରେ, ରାଷ୍ଟ୍ର, ଗୋଷ୍ଠୀ ଓ ବ୍ୟକ୍ତି ସମସ୍ତଙ୍କପ୍ରତି ଆରୋପ୍ୟ। ମହାଭାରତ ଯୁଦ୍ଧାରମ୍ଭରେ ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କୁ ଛାଡ଼ି ତାଙ୍କର ନାରାୟଣୀ ସେନାକୁ ବାଛିନେବା ଏହି ମନୋଭାବର ଚୂଡ଼ାନ୍ତ ପରିଚାୟକ। ଅଥଚ ଅର୍ଜ୍ଜୁନ ଚାହିଁଥିଲେ କେବଳ ନିରସ୍ତ୍ର ଶ୍ରୀକୃଷ୍ଣଙ୍କୁ, ଅର୍ଥାତ୍ କେବଳ ସତ୍ୟ, ନ୍ୟାୟ ଓ ଧର୍ମକୁ। ଗୀତାର ଶେଷତମ ଶ୍ଲୋକରେ "ଯେଉଁ ପକ୍ଷେ ଶ୍ରୀକୃଷ୍ଣ, ସେହି ପକ୍ଷର ଜୟହିଁ ସୁନିଶ୍ଚିତ" ବୋଲି ଯାହା କୁହାଯାଇଛି, ତାର ମଧ୍ୟ ଗଭୀର ତାତ୍ପର୍ଯ୍ୟ ଏହି ଯେ, ଶେଷ ଜୟ ସବୁବେଳେ ନ୍ୟାୟ, ଧର୍ମ ଓ ସତ୍ୟର।

୧୧

ଅୟନେଷୁ ଚ ସର୍ବେଷୁ ଯଥା ଭାଗମବସ୍ଥିତାଃ
ଭୀଷ୍ମମେବାଭିରକ୍ଷନ୍ତୁ ଭବନ୍ତଃ ସର୍ବ ଏବ ହି । ୧୧ ।

[ବର୍ତ୍ତମାନ] ସର୍ବେଷୁ ଚ ଅୟନେଷୁ [ବ୍ୟୂହମାନଙ୍କ ଭିତରେ ପଶି-ଯିବାର] (ସମସ୍ତ ପଥରେ) ଯଥାଭାଗମ୍ (ନିଜ ନିଜ ବିଭାଗ ଅନୁସାରେ) ଅବସ୍ଥିତାଃ (ଅବସ୍ଥିତ ହୋଇ) ସର୍ବେ ଭବନ୍ତଃ (ଆପଣମାନେ ସମସ୍ତେ) ଏବ ହି (ନିଶ୍ଚିତ-ଭାବରେ) ଭୀଷ୍ମମ୍ ଏବ (ଆମର ଅଧିନାୟକ ଭୀଷ୍ମଙ୍କୁ ହିଁ) ଅଭିରକ୍ଷନ୍ତୁ (ବିଶେଷ-ଭାବରେ ରକ୍ଷା କରନ୍ତୁ) ।

## ଅନୁବାଦ

ବର୍ତ୍ତମାନ ଆପଣମାନେ ସମସ୍ତେ, ଆମ ପକ୍ଷର ସଂଗଠିତ ରଣ-ବ୍ୟୂହ-ମାନଙ୍କ ଭିତରେ ଯେପରି ବିପକ୍ଷ-ସୈନ୍ୟମାନେ ପ୍ରବେଶ ନ କରିପାରିବେ, ସେଥିପାଇଁ ସବୁ ବାଟ ରୋଧ କରି ନିଜ ନିଜ ବିଭାଗ ଅନୁସାରେ ଅବସ୍ଥିତ ରହିହିଁ, ଆମର ଅଧିନାୟକ ଭୀଷ୍ମଦେବଙ୍କୁ ବିଶେଷଭାବରେ ରକ୍ଷା କରନ୍ତୁ ।

## ବିଶେଷ ଭାଷ୍ୟ

ସାରଗ୍ରଣୀ ଭୀଷ୍ମଙ୍କୁ ଅନ୍ୟମାନେ ରକ୍ଷା କରନ୍ତୁ ବୋଲି କହିବାର ତାତ୍ପର୍ଯ୍ୟ ଏହିକି, ଭୀଷ୍ମ, ସ୍ତ୍ରୀ ବା ନପୁଂସକ ଜନର ଶରରେ ନିଜେ ନିହତ ହେବେ ପଛେ ସେମାନଙ୍କପ୍ରତି କୌଣସିପ୍ରକାର ଅସ୍ତ୍ରଚାଳନା ଯେ କରିବେ ନାହିଁ, ତାଙ୍କର ଏ ପ୍ରତିଜ୍ଞା ସମସ୍ତଙ୍କୁ ଜଣା ଥିଲା । ପାଣ୍ଡବସେନାଙ୍କ ଭିତରେ ଜଣେ ପୁଣି ଜଣାଶୁଣା ନପୁଂସକ ଯୋଦ୍ଧା ଥିଲେ । ସେ ହେଉଛନ୍ତି, ଦ୍ରୁପଦରାଜାଙ୍କ ଅନ୍ୟତମ ପୁତ୍ର, ଦ୍ରୌପଦୀଙ୍କର ସାନଭାଇ, ଶିଖଣ୍ଡୀ । ଦୁର୍ଯ୍ୟୋଧନ ତେଣୁ ନିଜ ସେନାପତିମାନଙ୍କୁ ସର୍ବାଦୌ ସାବଧାନ କରାଇଗଲେ ଯେ, ଭୀଷ୍ମଙ୍କୁ ତାଙ୍କର ଏହି ଦୁର୍ବଳତାରୁ ସମସ୍ତେ ଯେପରି ରକ୍ଷା କରନ୍ତି । ଅର୍ଥାତ୍, ସମସ୍ତେ ଦେଖିବେ, ଯେପରି ଶିଖଣ୍ଡୀ ଭୀଷ୍ମଙ୍କର ସାମନାସାମନି ନ ହୁଏ । ୧୭ଶ ଶ୍ଳୋକରେ ନପୁଂସକ ହେଲେହେଁ ଶିଖଣ୍ଡୀ ଏକ ମହାରଥୀ ବୋଲି ମଧ୍ୟ ବର୍ଣ୍ଣିତ ।

୧୨

ତସ୍ୟ ସଂଜନୟନ୍ ହର୍ଷଂ କୁରୁବୃଦ୍ଧ ପିତାମହଃ
ସିଂହନାଦଂ ବିନଦ୍ୟୋଚ୍ଚୈଃ ଶଙ୍ଖଂ ଦଧ୍ମୌ ପ୍ରତାପବାନ୍ । ୧୨ ।

( ଯ୍ଥା ଶୁଣି) ପ୍ରତାପବାନ୍ (ପ୍ରତାପଶାଳୀ) କୁରୁବୃଦ୍ଧଃ (ଜ୍ୟେଷ୍ଠତମ କୌରବ) ପିତାମହ (ପିତାମହଃ ଭୀଷ୍ମ) ତସ୍ୟ ହର୍ଷଂ ସଞ୍ଜନୟନ୍ (ତାହାଙ୍କର, ଅର୍ଥାତ୍ ଦୁର୍ଯ୍ୟୋଧନଙ୍କର ଆନନ୍ଦ ଜାତ କରାଇ) ଉଚ୍ଚୈଃ (ଅତ୍ୟୁଚ୍ଚରେ) ସିଂହନାଦଂ ବିନଦ୍ୟ (ସିଂହନାଦପୂର୍ବକ) ଶଙ୍ଖଂ ଦଧ୍ମୌ (ଶଙ୍ଖଧ୍ୱନି କଲେ) ।

**ଅନୁବାଦ**

ଦୁର୍ଯ୍ୟୋଧନଙ୍କୁ ଆଦୌ ଅପେକ୍ଷା ନ କରି, ଅଥଚ ତାଙ୍କ ଚିତ୍ତରେ ଆନନ୍ଦ ଜାତ କରାଇ ସର୍ବାଧ୍ୟକ୍ଷ ସେନାପତି ଏବଂ କୁରୁବୃଦ୍ଧ ଓ ପିତାମହ ହେଲେହେଁ ତଥାପି ପ୍ରତାପବାନ୍ ଭୀଷ୍ମ, ଯୁଦ୍ଧାରମ୍ଭର ସୂଚନାରୂପେ ଏପରି ଜୋର୍‌ରେ ଶଙ୍ଖଧ୍ୱନି କଲେ, ଯେପରି ଜଣାପଡ଼ିଲା, ଏକ ସିଂହ ଗର୍ଜନ କରୁଛି ।

୧୩

ତତଃ ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ ପଣବାନକଗୋମୁଖାଃ
ସହସୈବାଭ୍ୟହନ୍ୟନ୍ତ ସ ଶବ୍ଦସ୍ତୁମୁଲୋଽଭବତ୍ । ୧୩ ।

ତତଃ (ତାପରେ) ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ (ଶଙ୍ଖ ଓ ଭେରୀସମୂହ) ପଣବାନକ-ଗୋମୁଖାଃ (ପଣବ=ମୃଦଙ୍ଗ, ଆନକ=ନାଗରା, ଗୋମୁଖାଃ=ଶିଙ୍ଗା) ସହସା ଏବ (ହଠାତ୍ ଏକସମୟରେ) ଅଭ୍ୟହନ୍ୟନ୍ତ (ବାଜିଉଠିଲେ) । ସଃ ଶବ୍ଦଃ (ସେହି ମିଳିତଧ୍ୱନି) ତୁମୁଲଃ ଅଭବତ୍ (ଭୟାବହ ହେଲା) ।

**ଅନୁବାଦ**

ଭୀଷ୍ମଦେବଙ୍କର ସେହି ସିଂହନାଦ ଶୁଣି ସମରାଙ୍ଗଣର ଚତୁଃପାର୍ଶ୍ୱରୁ ଶଙ୍ଖ, ଭେରୀ, ମୃଦଙ୍ଗ, ନାଗରା, ଶିଙ୍ଗା, ଆଦି ନାନା ଉନ୍ମାଦକ ବାଦ୍ୟଯନ୍ତ୍ର ବାଜି-ଉଠିଲା ଏବଂ ସ୍ୱାଭାବିକଭାବରେ, ସେହି ମିଳିତ ବାଦ୍ୟଧ୍ୱନି ତୁମୁଳ ହୋଇ-ଉଠିଲା ।

୧୪

ତତଃ ଶ୍ୱେତୈର୍ହୟୈର୍ଯୁକ୍ତେ ମହତି ସ୍ୟନ୍ଦନେ ସ୍ଥିତୌ
ମାଧବଃ ପାଣ୍ଡବଶ୍ଚୈବ ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ । ୧୪ ।

ତତଃ (ତାପରେ) ଶ୍ୱେତୈଃ ହୟୈଃ ଯୁକ୍ତେ (ଧଳା ଘୋଡ଼ା ଯୋଚା ହୋଇଥିବା) ମହତି ସ୍ୟନ୍ଦନେ (ବଡ଼ ରଥରେ) ସ୍ଥିତୌ (ଅବସ୍ଥିତ) ମାଧବଃ ପାଣ୍ଡବଃ ଚ ଏବ (ଶ୍ରୀକୃଷ୍ଣ ଓ ଅର୍ଜୁନ ମଧ୍ୟ) ଦିବ୍ୟୌ ଶଙ୍ଖୌ (ଦୁଇଗୋଟି ଦିବ୍ୟ ଶଙ୍ଖ) ପ୍ରଦଧ୍ମତୁ (ବଜାଇଲେ) ।

## ଅନୁବାଦ

ତାପରେ ପାଣ୍ଡବ ପକ୍ଷରେ, ଭୀଷ୍ମଙ୍କ ଶଙ୍ଖାହ୍ୱାନର ପ୍ରତିକ୍ରିୟା ଭାବରେ, ଶ୍ୱେତ ଅଶ୍ୱ-ବାହିତ ବୃହତ୍ ରଥରେ ବସିଥିବା ଉଭୟ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ସେମାନଙ୍କର ନିଜ ନିଜର ଦିବ୍ୟ ଶଙ୍ଖ ବଜାଇଲେ ।

୧୫

ପାଞ୍ଚଜନ୍ୟଂ ହୃଷୀକେଶୋ ଦେବଦତ୍ତଂ ଧନଞ୍ଜୟଃ
ପୌଣ୍ଡ୍ରଂ ଦଧ୍ମୌ ମହାଶଙ୍ଖମ୍ ଭୀମକର୍ମା ବୃକୋଦରଃ । ୧୫ ।

ହୃଷୀକେଶଃ (ଶ୍ରୀକୃଷ୍ଣ) ପାଞ୍ଚଜନ୍ୟଂ (ପାଞ୍ଚଜନ୍ୟ ନାମକ ଶଙ୍ଖ), ଧନଞ୍ଜୟଃ (ଅର୍ଜ୍ଜୁନ) ଦେବଦତ୍ତଂ (ଦେବଦତ୍ତ ନାମକ ଶଙ୍ଖ), ଭୀମକର୍ମା (ଭୀଷଣ, ଭୟୋତ୍-ପାଦକ କର୍ମ ଯେ କରିପାରନ୍ତି ସେପରି) ବୃକୋଦରଃ (ଭୀମ) ପୌଣ୍ଡ୍ରଂ ମହାଶଙ୍ଖମ୍ (ପୌଣ୍ଡ୍ର ନାମକ ମହାଶଙ୍ଖ) ଦଧ୍ମୌ (ବଜାଇଲେ) ।

## ଅନୁବାଦ

ଶ୍ରୀକୃଷ୍ଣ ଯେଉଁ ଦିବ୍ୟ ଶଙ୍ଖ ବଜାଇଲେ, ତାର ନାମ ପାଞ୍ଚଜନ୍ୟ । ଅର୍ଜ୍ଜୁନ ଯେଉଁ ଶଙ୍ଖ ବଜାଇଲେ, ତାହାର ନାମ ଦେବଦତ୍ତ । ଭୀମକର୍ମା ବୃକୋଦର ଯେଉଁ ମହାଶଙ୍ଖ ବଜାଇଲେ, ତାହାର ନାମ ଥିଲା ପୌଣ୍ଡ୍ର ।

## ବିଶେଷ ଭାଷ୍ୟ

ହୃଷୀକେଶ—ହୃଷୀକ+ଈଶ, ଇନ୍ଦ୍ରିୟଜୟୀ କାହ୍ନ । ଏହା ଶ୍ରୀକୃଷ୍ଣଙ୍କର ଏକ ନାମ ।

ଧନଞ୍ଜୟ—ଅର୍ଜ୍ଜୁନ । ପାଣ୍ଡବମାନଙ୍କର ଯଜ୍ଞାର୍ଥେ ଭାରତର ସକଳ ରାଜାଙ୍କୁ ପରାସ୍ତ କରି ବିପୁଳ ଧନ ଆଣି ଜମା କରିଥିବାରୁ ସେ ଏପରି ନାମ ପାଇଥିଲେ ।

ବୃକୋଦର—ବୃକ (ଗଧିଆ ବାଘ ଓ ଜଠରସ୍ଥ ଏକ ଅଗ୍ନି) । ଭୀମ ବହୁତ ଖାଉଥିବାରୁ ତାଙ୍କର ଏପରି ନାମ ହୋଇଥିଲା । ଅର୍ଥାତ୍, ଯାହାର ପେଟ ଗଧିଆ ବାଘର ପେଟ ପରି ସବୁବେଳେ ଖାଦ୍ୟ ଲୋଡ଼ୁଥାଏ ଓ ସବୁ ଖାଇ ହଜମ କରିପାରେ ।

ପାଞ୍ଚଜନ୍ୟ—ନିମ୍ନରେ 'କୁଳଧର୍ମ' ବ୍ୟାଖ୍ୟା ଦେଖ । ପଞ୍ଚଜନ ନାମକ ଦୈତ୍ୟକୁ ବିନାଶ କରି ତାର ଅସ୍ଥିରେ ନିର୍ମିତ ହୋଇଥିବ ଶଙ୍ଖ ।

୧୬-୧୭-୧୮

ଅନନ୍ତବିଜୟଂ ରାଜା କୁନ୍ତୀପୁତ୍ରୋ ଯୁଧିଷ୍ଠିରଃ
ନକୁଲଃ ସହଦେବଶ୍ଚ ସୁଘୋଷମଣିପୁଷ୍ପକୌ । ୧୬ ।
କାଶ୍ୟଶ୍ଚ ପରମେଷ୍ୱାସଃ ଶିଖଣ୍ଡୀ ଚ ମହାରଥଃ
ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍ଚ ସାତ୍ୟକିଶ୍ଚାପରାଜିତଃ । ୧୭ ।
ଦ୍ରୁପଦୋ ଦ୍ରୌପଦେୟାଶ୍ଚ ସର୍ବଶଃ ପୃଥିବୀପତେ
ସୌଭଦ୍ରଶ୍ଚ ମହାବାହୁଃ ଶଂଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍ । ୧୮ ।

[ହେ] ପୃଥିବୀପତେ (ହେ ମହାରାଜ ଧୃତରାଷ୍ଟ୍ର), ପରମେଷ୍ୱାସଃ (ମହା ଧନୁର୍ଦ୍ଧର—ପରମ ଇଷ୍ୱାସ=ଧନୁ, ଯାହାର), କାଶ୍ୟଃ ଚ (କାଶୀରାଜ ମଧ୍ୟ) ମହାରଥଃ ଶିଖଣ୍ଡୀ ଚ (ମହାରଥ ଶିଖଣ୍ଡୀ ମଧ୍ୟ) ଧୃଷ୍ଟଦ୍ୟୁମ୍ନଃ ବିରାଟଃ ଚ (ଏବଂ ଧୃଷ୍ଟଦ୍ୟୁମ୍ନ ଓ ବିରାଟ), ଅପରାଜିତଃ ସାତ୍ୟକିଃ ଚ (ଅଜେୟ ସାତ୍ୟକି ମଧ୍ୟ), ଦ୍ରୁପଦଃ, ଦ୍ରୌପଦେୟାଶ୍ଚ (ରାଜା ଦ୍ରୁପଦ ନିଜେ ଓ ତାଙ୍କ କନ୍ୟା ଦ୍ରୌପଦୀଙ୍କ ପାଞ୍ଚ ପୁଅ ଅର୍ଥାତ୍ ତାଙ୍କ ନାତିମାନେ) ମହାବାହୁଃ ସୌଭଦ୍ରଃ ଚ (ପୁଣି ମହାଯୋଦ୍ଧା ସୁଭଦ୍ରାପୁତ୍ର ଅଭିମନ୍ୟୁ ସର୍ବଶଃ (ସମସ୍ତେ ମିଶି) ପୃଥକ୍ ପୃଥକ୍ ଶଙ୍ଖାନ୍ ଦଧ୍ମୁଃ (ପୃଥକ୍ ପୃଥକ୍ ଶଙ୍ଖ ବଜାଇଲେ) ।

## ଅନୁବାଦ

ହେ ମହାରାଜ, ଶ୍ରୀକୃଷ୍ଣ, ଅର୍ଜୁନ ଓ ଭୀମଙ୍କ ଶଙ୍ଖଧ୍ୱନି ଶୁଣି ପଛେ ପଛେ ମହା-ଧନୁର୍ଦ୍ଧର କାଶୀରାଜ, ମହାରଥ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ, ବିରାଟ ରାଜା, ଚିର-ଅପରାଜିତ ସାତ୍ୟକି, ରାଜା ଦ୍ରୁପଦ ଓ ଦ୍ରୌପଦୀଙ୍କର ପୁତ୍ରମାନେ ( ଅର୍ଥାତ୍ ଦ୍ରୁପଦଙ୍କର ନାତିମାନେ), ସୁଭଦ୍ରାଙ୍କ ପୁତ୍ର ମହାବୀର ଅଭିମନ୍ୟୁ ସମସ୍ତେ ମିଶି ନିଜ ନିଜର ଭିନ୍ନ ଭିନ୍ନ ଶଙ୍ଖ ବଜାଇଲେ ।

## ବିଶେଷ ଭାଷ୍ୟ

କୌରବ ପକ୍ଷେ ସର୍ବାଧିନାୟକ ଭୀଷ୍ମ ପ୍ରଥମେ ଶଙ୍ଖ ବାଦନ କଲେ । କିନ୍ତୁ ପାଣ୍ଡବ ପକ୍ଷେ ସାରଥି-ମାତ୍ର-ଥିବା ଶ୍ରୀକୃଷ୍ଣ କିପରି ପ୍ରଥମେ ଶଙ୍ଖବାଦନ କରିବେ ? ଉପରେ, ପାଣ୍ଡବ-ବାହିନୀ 'ବ୍ୟୂଢ଼ାଂ ଦ୍ରୁପଦପୁତ୍ରେଣ' (୩ୟ ଶ୍ଳୋକ) ଦ୍ରୁପଦପୁତ୍ରଙ୍କଦ୍ୱାରା ବ୍ୟୂହ ଗଠିତ ହୋଇଛି ବୋଲି କୁହାଯାଇଛି । ଅର୍ଥାତ୍, ଧୃଷ୍ଟଦ୍ୟୁମ୍ନଙ୍କ ସ୍ଥାନ (status) ଅର୍ଜୁନଙ୍କ ପଛକୁ । କିନ୍ତୁ ତାଙ୍କ ଶଙ୍ଖବାଦନକୁ ଅନ୍ୟ ବିହୁଙ୍କ ଭିତରେ ମିଶାଇଦିଆଯାଇଛି କିପରି ? ଏହା ଗୀତାକାରଙ୍କ ସାମାନ୍ୟ ଅନ୍ୟମନସ୍କତା ହୋଇପାରେ କି ?

୧୯

ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍‌
ନଭଶ୍ଚ ପୃଥିବୀଂ ଚୈବ ତୁମୁଲୋଽଭ୍ୟନୁନାଦୟନ୍‌ । ୧୯ ।

ସଃ (ସେହି) ତୁମୁଲଃ (ବିପୁଳ) ଘୋଷଃ (ମିଳିତ ଧ୍ୱନି) ନଭଃ (ଆକାଶ) ପୃଥିବୀଂ ଚ ଏବ (ଏବଂ ପୃଥିବୀକୁ), ଅଭ୍ୟନୁନାଦୟନ୍‌ (ପ୍ରତିଧ୍ୱନିତ କରି) ଧାର୍ତ୍ତରାଷ୍ଟ୍ରାଣାଂ (ଧୃତରାଷ୍ଟ୍ରପୁତ୍ରମାନଙ୍କର) ହୃଦୟାନି ବ୍ୟଦାରୟତ୍‌ [ଯେପରି](ହୃଦୟ-ସବୁକୁ ବିଦୀର୍ଣ୍ଣ କରିପକାଇଲା) ।

## ଅନୁବାଦ

ଦୁଇ ପଟର ସେହି ସମ୍ମିଳିତ ଶଙ୍ଖ ଓ ବିବିଧ ବାଦ୍ୟଧ୍ୱନି ତୁମୁଳ ହୋଇ-ଉଠି, ଆକାଶ ଓ ପୃଥିବୀକୁ ପ୍ରତିଧ୍ୱନିତ କଲା ଏବଂ ତାହା (ସଂଖ୍ୟାଲଘୁ ହେଲେହେଁ ପାଣ୍ଡବସେନାର ସେହି ଅପ୍ରତ୍ୟାଶିତ ଉତ୍ସାହପୂର୍ଣ୍ଣ ମିଳିତ ମହାଧ୍ୱନି) କୌରବ-ମାନଙ୍କର ହୃଦୟକୁ ବିଦୀର୍ଣ୍ଣ କଲାପରି ବୋଧ ହେଲା ।

## ବିଶେଷ ଦ୍ରଷ୍ଟବ୍ୟ

ଏଠାରେ 'କୌରବ' ଶବ୍ଦ ସ୍ଥାନରେ 'ଧାର୍ତ୍ତରାଷ୍ଟ୍ର' ଶବ୍ଦ ଖୁବ୍ ସମ୍ଭବତଃ କେବଳ ଛାନ୍ଦସିକ ଆବଶ୍ୟକତା ଯୋଗୁଁ ହୁଏତ ବସାଇଦିଆଯାଇଛି । ସେହିପରି ମଧ୍ୟ ଘଟିଛି ପରବର୍ତ୍ତୀ ଶ୍ଳୋକରେ । ରିପୋର୍ଟର୍ (reporter)ସଞ୍ଜୟ, ସମଗ୍ର ଗୀତାକୁ ସ୍ୱୟଂ ଧୃତରାଷ୍ଟ୍ରଙ୍କ ଆଗରେହିଁ ବର୍ଣ୍ଣନା କରୁଥିଲାବେଳେ, "ଧୃତରାଷ୍ଟ୍ରଙ୍କ ପୁଅ-ପକ୍ଷର ସମସ୍ତଙ୍କର ଛାତି ଫଟାଇଦେଲା" ବୋଲି ବର୍ଣ୍ଣନା ଏକାନ୍ତ ଅସଙ୍ଗତ ଜଣାଯାଉଛି ।

କେବଳ କାବ୍ୟର ଟେକ୍‌ନିକ୍ (technique) ଭାବରେହିଁ ଧୃତରାଷ୍ଟ୍ର-ସଞ୍ଜୟ-କଥୋପକଥନରୂପେ ଗୀତାକୁ ଆରମ୍ଭ କରିଦେଲାପରେ, 'ଇନ୍‌ସ୍ପାୟାର୍ଡ଼' (inspired) ଗୀତାକାର ତେଣିକି ହୁଏତ, ସୃଜନସ୍ରୋତରେ ଭାସିଯାଇ, ବୋଧହୁଏ ସ୍ୱ-ଯୋଜିତ ସେହି ସୀମାବଦ୍ଧତାକୁ ସମ୍ପୂର୍ଣ୍ଣ ଭୁଲିଯାଇଛନ୍ତି ।

ପରବର୍ତ୍ତୀ ଶ୍ଳୋକରେ ଧୃତରାଷ୍ଟ୍ରଙ୍କୁ, ତାଙ୍କର ତତ୍‌କାଳୀନ ଅବସ୍ଥାରେ, 'ମହୀପତି' ସମ୍ବୋଧନ ମଧ୍ୟ ଅପ୍ରାସଙ୍ଗିକ । ତାହା ଏକାନ୍ତରେ ଛାନ୍ଦସିକ ଆବଶ୍ୟକତା-ପୂରଣ ଛଡ଼ା ଆଉ କିଛି ବୋଲି ବୋଧ ହେଉନି । ଗୀତାରେ ଆମେ ଅନେକ ସ୍ଥାନରେ ଏହିପ୍ରକାର କେବଳ ପଦ-ପୂରଣ-ବ୍ୟବସ୍ଥାକୁହିଁ ଭେଟିବାକୁ ପାଇବା ।

### ୨୦-୨୧

ଅଥ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ
ପ୍ରବୃତ୍ତେ ଶସ୍ତ୍ରସଂପାତେ ଧନୁରୁଦ୍ୟମ୍ୟ ପାଣ୍ଡବଃ । ୨୦ ।
ହୃଷୀକେଶଂ ତଦା ବାକ୍ୟମିଦମାହ ମହୀପତେ
ଅର୍ଜ୍ଜୁନ ଉବାଚ
ସେନୟୋରୁଭୟୋର୍ମଧ୍ୟେ ରଥଂ ସ୍ଥାପୟ ମେଽଚ୍ୟୁତ । ୨୧ ।

[ହେ] ମହୀପତେ (ହେ ରାଜା ଧୃତରାଷ୍ଟ୍ର) ଅଥ (ଅନନ୍ତର) କପିଧ୍ୱଜଃ ପାଣ୍ଡବଃ (ଯାହାଙ୍କ ପତାକା ହନୁମାନଙ୍କ ଚିହ୍ନ ବହନ କରୁଛି; ସେହି ପାଣ୍ଡବ, ଅର୍ଜ୍ଜୁନ) ଧାର୍ତ୍ତରାଷ୍ଟ୍ରାନ୍(କୌରବପକ୍ଷୀୟମାନଙ୍କୁ) ବ୍ୟବସ୍ଥିତାନ୍ (ଯୁଦ୍ଧପାଇଁ ଯଥାବସ୍ଥିତ) [ଏବଂ] ଶସ୍ତ୍ରସଂପାତେ ପ୍ରବୃତ୍ତେ (ଶସ୍ତ୍ର ନିକ୍ଷେପପାଇଁ ପ୍ରବୃତ୍ତ ହୋଇଆସୁଥିବାର) ଦୃଷ୍ଟ୍ୱା (ଦେଖି) ଧନୁଃ ଉଦ୍ୟମ୍ୟ (ନିଜ ଧନୁକୁ ସଜାଇଧରି) ତଦା (ସେ-ସମୟରେ) ହୃଷୀକେଶଂ (ଶ୍ରୀକୃଷ୍ଣଙ୍କୁ) ଇଦଂ (ଏହି) ବାକ୍ୟଂ (ବାକ୍ୟ) ଆହ (କହିଲେ) । ଅର୍ଜ୍ଜୁନଃ ଉବାଚ (ଅର୍ଜ୍ଜୁନ କହିଲେ) [ହେ] ଅଚ୍ୟୁତ (ହେ ଶ୍ରୀକୃଷ୍ଣ) ଉଭୟୋଃ ସେନୟୋଃ ମଧ୍ୟେ (ଉଭୟ ସୈନ୍ୟବାହିନୀମଧ୍ୟରେ) ମେ (ମୋର) ରଥଂ (ରଥକୁ) ସ୍ଥାପୟ (ସ୍ଥାପନ କର) ।

## ଅନୁବାଦ

ହେ ରାଜନ୍ ! ଅନନ୍ତର କପିଧ୍ୱଜ ପାଣ୍ଡବ ଅର୍ଜ୍ଜୁନ, ଧାର୍ତ୍ତରାଷ୍ଟ୍ରୀୟ ସେନାକୁ ଯୁଦ୍ଧାରମ୍ଭପାଇଁ ପ୍ରସ୍ତୁତ ଏବଂ ସେପକ୍ଷରୁ ଶସ୍ତ୍ରନିକ୍ଷେପ ଏଇ ଆରମ୍ଭ ହେଲା ବୋଲି ଅନୁଭବକରି, ନିଜର ଧନୁକୁ ସଜାଡ଼ି ଧରିଲେ ଏବଂ ସାରଥି ଶ୍ରୀକୃଷ୍ଣଙ୍କୁ କହିଲେ, "ହେ ଅଚ୍ୟୁତ, ମୋର ରଥକୁ ବର୍ତ୍ତମାନ ଉଭୟ ସେନାର ମଧ୍ୟରେ ନେଇ ରଖ ।"

## ବିଶେଷ ଭାଷ୍ୟ

ଅଚ୍ୟୁତ = ଯାହାଙ୍କର ଚ୍ୟୁତି ଅର୍ଥାତ୍ ପତନ ବା କ୍ଷୟ ନାହିଁ । ଯେ ଚିରକାଳ ସମାନ, ଅକ୍ଷୟ ଓ ଅବ୍ୟୟ । ଅନ୍ୟ ଅର୍ଥରେ, ଯେଉଁ ଲୋକ କୌଣସି-ପ୍ରକାର ପ୍ରଲୋଭନରେ ଭାସିଯାନ୍ତି ନାହିଁ । ଅଟଳ, ଧ୍ରୁବ, ସ୍ଥିର ।

### ୨୨-୨୩

ଯାବଦେତାନ୍ ନିରୀକ୍ଷେଽହଂ ଯୋଦ୍ଧୁକାମାନବସ୍ଥିତାନ୍
କୈର୍ମୟା ସହ ଯୋଦ୍ଧବ୍ୟମସ୍ମିନ୍ ରଣସମୁଦ୍ୟମେ । ୨୨ ।
ଯୋତ୍ସ୍ୟମାନାନବେକ୍ଷେଽହଂ ଯ ଏତେଽତ୍ର ସମାଗତାଃ
ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେର୍ଯୁଦ୍ଧେ ପ୍ରିୟଚିକୀର୍ଷବଃ । ୨୩ ।

ଯାବତ୍ (ଯେଉଁ ସମୟଭିତରେ)** ଅହଂ (ମୁଁ) ଯୋଦ୍ଧୁକାମାନ୍ ଅବସ୍ଥିତାନ୍ ଏତାନ୍ (ଲଢ଼େଇ ଇଚ୍ଛା କରୁଥିବା ସେହି ସମସ୍ତଙ୍କୁ) ନିରୀକ୍ଷେ (ଦେଖିନିଏଁ) ଅସ୍ମିନ୍ ରଣସମୁଦ୍ୟମେ (ଏହି ବିରାଟ ଯୁଦ୍ଧ ବ୍ୟାପାରରେ) କୈଃ ସହ (କାହା କାହା ସାଥିରେ) ମୟା ଯୋଦ୍ଧବ୍ୟଂ (ମତେ ଲଢ଼ିବାକୁ ହେବ) । ଅହ ଯୁଦ୍ଧେ (ଏହି ଯୁଦ୍ଧରେ) ଦୁର୍ବୁଦ୍ଧେଃ ଧାର୍ତ୍ତରାଷ୍ଟ୍ରସ୍ୟ (ଦୁଷ୍ଟବୁଦ୍ଧି ଦୁର୍ଯ୍ୟୋଧନର ମଧ୍ୟ) ପ୍ରିୟଚିକୀର୍ଷବଃ (ଉପକାର କରିବାପାଇଁ ଇଚ୍ଛୁକ) ଯେ ଏତେ (ଯେଉଁ ଏହି ସମସ୍ତେ) ଅତ୍ର (ଏଠାରେ) ସମାଗତାଃ (ଆସି ଉପସ୍ଥିତ ହୋଇଛନ୍ତି) ଯୋତ୍ସ୍ୟମାନାନ୍ [ତାନ୍] (ସଂଗ୍ରାମେଚ୍ଛୁ ସେହିମାନଙ୍କୁ) ଅହଂ (ମୁଁ) ଅବେକ୍ଷେ (ଦେଖେଁ) ।

**ଅନୁବାଦ**

ମତେ ଯେଉଁମାନଙ୍କ ସହିତ ଲଢ଼ିବାକୁ ହେବ, ସମରେଚ୍ଛୁ ହୋଇ ଏଠାରେ ଦଣ୍ଡାୟମାନ ଥିବା ସେହିମାନଙ୍କୁ ମୁଁ ଥରେ ଦେଖିନିଏଁ । ଭଲକରି ମଧ୍ୟ ଦେଖିନିଏ ସେହିମାନଙ୍କୁ, ଯେଉଁମାନେ, ଦୁର୍ଯ୍ୟୋଧନପରି ଏକ ଦୁର୍ବୁଦ୍ଧି ଲୋକର କଥାରେ ପଡ଼ି, ଏଠି ଆମ ସାଥିରେ ଲଢ଼େଇପାଇଁ ସମାଗତ ।

## ୨୪-୨୫

ସଂଜୟ ଉବାଚ

ଏବମୁକ୍ତୋ ହୃଷୀକେଶୋ ଗୁଡ଼ାକେଶେନ ଭାରତ,
ସେନୟୋରୁଭୟୋର୍ମଧ୍ୟେ ସ୍ଥାପୟିତ୍ୱା ରଥୋତ୍ତମଂ । ୨୪ ।
ଭୀଷ୍ମଦ୍ରୋଣପ୍ରମୁଖତଃ ସର୍ବେଷାଂ ଚ ମହୀକ୍ଷିତାମ୍
ଉବାଚ ପାର୍ଥ ପଶ୍ୟୈତାନ୍ ସମବେତାନ୍ କୁରୂନିତି । ୨୫ ।

ସଂଜୟ ଉବାଚ (ସଂଜୟ କହିଲେ) [ହେ] ଭାରତ (ଭରତବଂଶୀୟ ଧୃତରାଷ୍ଟ୍ର) ଗୁଡ଼ାକେଶେନ (ଅର୍ଜୁନଙ୍କଦ୍ୱାରା) ଏବଂ (ଏହିପରିଭାବରେ) ଉକ୍ତଃ (ଅଭିହିତ ହୋଇ) ହୃଷୀକେଶଃ (ଶ୍ରୀକୃଷ୍ଣ) ଉଭୟୋଃ ସେନୟୋଃ ମଧ୍ୟେ (ଉଭୟ ବାହିନୀମଧ୍ୟରେ) ଭୀଷ୍ମଦ୍ରୋଣ (ଭୀଷ୍ମ ଓ ଦ୍ରୋଣ) ସର୍ବେଷାଂ ଚ ମହୀକ୍ଷିତାଂ (ଓ ସକଳ ରାଜାମାନଙ୍କର) ପ୍ରମୁଖତଃ (ସମ୍ମୁଖରେ) ରଥୋତ୍ତମଂ (ଶ୍ରେଷ୍ଠ ରଥକୁ) ସ୍ଥାପୟିତ୍ୱା (ସ୍ଥାପନା କରି) ଇତି ଉବାଚ (ଏହା କହିଲେ) [ହେ] ପାର୍ଥ (ଅର୍ଜୁନ) ଏତାନ୍ ସମବେତାନ୍ କୁରୂନ୍ (ଏହି ସମ୍ମିଳିତ କୌରବପକ୍ଷୀୟମାନଙ୍କୁ) ପଶ୍ୟ (ଦେଖ) ।

## ଅନୁବାଦ

ସଞ୍ଜୟ କହିଲେ, ହେ ଭରତବଂଶୀୟ ଧୃତରାଷ୍ଟ୍ର, ଅର୍ଜ୍ଜୁନଙ୍କଦ୍ୱାରା ଏହିପରିଭାବରେ ସମ୍ବୋଧିତ ହୋଇ ଶ୍ରୀକୃଷ୍ଣ ଉଭୟ ବାହିନୀମଧ୍ୟରେ କୌରବ-ପକ୍ଷର ଭୀଷ୍ମ, ଦ୍ରୋଣ ଓ ଅନ୍ୟାନ୍ୟ ରାଜାଙ୍କ ଆଗରେ ରଥକୁ ନେଇ ରଖି ଅର୍ଜ୍ଜୁନଙ୍କୁ କହିଲେ, "ହେ ଅର୍ଜ୍ଜୁନ, କୌରବପକ୍ଷର ସମବେତ ସମସ୍ତଙ୍କୁ ବର୍ତ୍ତମାନ ଦେଖ ।"

## ବିଶେଷ ଭାଷ୍ୟ

ଗୁଡ଼ାକେଶ—ଗୁଡ଼ାକା (ନିଦ୍ରା ବା ଆଳସ୍ୟ)+ଈଶ=ଅର୍ଜ୍ଜୁନ, ଅର୍ଥାତ୍ ଆଳସ୍ୟହୀନ କର୍ମଠ ପୁରୁଷ ।

ଭାରତ—ଏହି ଅଧ୍ୟାୟର ପ୍ରଥମ ଶ୍ଳୋକର 'ବିଶେଷ ଭାଷ୍ୟ' ଦେଖ ।

### ୨୬-୨୭

ତତ୍ରାପଶ୍ୟତ୍ ସ୍ଥିତାନ୍ ପାର୍ଥଃ ପିତୃନଥପିତାମହାନ୍
ଆଚାର୍ଯ୍ୟାନ୍ ମାତୁଳାନ୍ ଭ୍ରାତୃନ୍ ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍ତଥା
ଶ୍ୱଶୁରାନ୍ ସୁହୃଦଶ୍ଚୈବ ସେନୟୋରୁଭୟୋରପି । ୨୬ ।
ତାନ୍ ସମୀକ୍ଷ୍ୟ ସ କୌନ୍ତେୟଃ ସର୍ବାନ୍ ବନ୍ଧୂନବସ୍ଥିତାନ୍
କୃପୟା ପରୟାବିଷ୍ଟୋ ବିଷୀଦନ୍ନିଦମବ୍ରବୀତ୍ । ୨୭ ।

ପାର୍ଥଃ (ଅର୍ଜ୍ଜୁନ) ତତ୍ର (ସେଠାରେ) ଉଭୟୋଃ ସେନୟୋଃ ଅପି (ଉଭୟ ସେନାଙ୍କ ଭିତରେ ମଧ୍ୟ ଅର୍ଥାତ୍ ନିଜର ଓ କୌରବସେନାଙ୍କ ମଧ୍ୟରେ ମଧ୍ୟ) ପିତୃନ୍ ଅଥ ପିତାମହାନ୍ (ପିତା ଓ ପିତାମହସ୍ଥାନୀୟ ଲୋକଙ୍କୁ) ତଥା (ସେହିପରି) ଆଚାର୍ଯ୍ୟାନ୍ ମାତୁଳାନ୍ ଭ୍ରାତୃନ୍ ପୁତ୍ରାନ୍ ପୌତ୍ରାନ୍ ତଥା ସଖୀନ୍ (ଗୁରୁଜନ, ମାମୁଁ, ଭାଇ, ପୁଅ, ନାତି ଏବଂ ବନ୍ଧୁଗଣଙ୍କୁ) ଶ୍ୱଶୁରାନ୍ ସୁହୃଦଃ ଚ ଏବ (ଏବଂ ଶ୍ୱଶୁର ଓ ମିତ୍ରମାନଙ୍କୁ ମଧ୍ୟ) ସ୍ଥିତାନ୍ (ଅବସ୍ଥିତ ଥିବାର) ଅପଶ୍ୟତ୍ (ଦେଖିଲେ) । ସଃ କୌନ୍ତେୟଃ (ସେ ଅର୍ଜ୍ଜୁନ) ଅବସ୍ଥିତାନ୍ (ଯୁଦ୍ଧପାଇଁ ସଜ ହୋଇ ଯଥାଯଥ ସ୍ଥାନରେ ଓ ଯଥାଯଥଭାବରେ ରହିଥିବା) ତାନ୍ ସର୍ବାନ୍ବନ୍ଧୂନ୍ (ସେହିସବୁ ବନ୍ଧୁଜନଙ୍କୁ) ସମୀକ୍ଷ୍ୟ (ଚାରିଆଡ଼େ ଆଖି ବୁଲେଇ ଦେଖିସାରିଲାପରେ) ପରୟା କୃପୟା ଆବିଷ୍ଟଃ (ପରମ କରୁଣାରେ ଦ୍ରବୀଭୂତ-ଚିତ୍ତ ହୋଇ) ବିଷୀଦନ୍ (ବିଷଣ୍ଣ ହୋଇ) ଇଦଂ (ଏହା) ଅବ୍ରବୀତ୍ (କହିଲେ) ।

**ଅନୁବାଦ**

ଅର୍ଜ୍ଜୁନ ସେଠାରେ ଗୃହଆଡ଼େ ଆଖି ବୁଲେଇ ନିଜ ଓ କୌରବ, ଉଭୟ ପକ୍ଷରେ, ଏକନ୍ତ ସମବେତ ଥିବାର ଦେଖିବାକୁ ପାଇଲେ—ନିଜର ପିତୃପିତାମହମାନଙ୍କୁ, ଗୁରୁସ୍ଥାନୀୟ ବ୍ୟକ୍ତିମାନଙ୍କୁ, ପୁଣି ମାମୁଁ, ଭାଇ, ପୁଅ, ନାତି, ଶ୍ୱଶୁର ଓ ବନ୍ଧୁମାନଙ୍କୁ । ଯୁଦ୍ଧପାଇଁ ସଜବାଜହୋଇ ସେଠାରେ ଠିଆ ହୋଇ-ଥିବା ଏହିପରି ନାନା ଶ୍ରେଣୀର ବନ୍ଧୁ-କୁଟୁମ୍ବଙ୍କୁ ଦେଖି ଅର୍ଜ୍ଜୁନ ହଠାତ୍ ଗଭୀର କରୁଣାରେ ଦ୍ରବୀଭୂତ ହୋଇ, ଶ୍ରୀକୃଷ୍ଣଙ୍କୁ ଏହିପ୍ରକାର ବିଷଣ୍ଣବଚନସବୁ କହିବାକୁ ଲାଗିଲେ ।

୨୮-୨୯-୩୦

ଅର୍ଜ୍ଜୁନ ଉବାଚ

ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣ ଯୁଯୁତ୍ସୂନ୍ ସମୁପସ୍ଥିତାନ୍ । ୨୮ ।
ସୀଦନ୍ତି ମମ ଗାତ୍ରାଣି ମୁଖଂ ଚ ପରିଶୁଷ୍ୟତି
ବେପଥୁଶ୍ଚ ଶରୀରେ ମେ ରୋମହର୍ଷଶ୍ଚ ଜାୟତେ । ୨୯ ।
ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍ ତ୍ୱକ୍ ଚୈବ ପରିଦହ୍ୟତେ
ନ ଚ ଶକ୍ନୋମ୍ୟବସ୍ଥାତୁଂ ଭ୍ରମତୀବ ଚ ମେ ମନଃ । ୩୦ ।

ଅର୍ଜ୍ଜୁନଃ ଉବାଚ (ଅର୍ଜ୍ଜୁନ କହିଲେ) [ହେ] କୃଷ୍ଣ (ହେକୃଷ୍ଣ) ଯୁଯୁତ୍ସୂନ୍ (ଯୁଦ୍ଧ କରିବାକୁ ଉଦ୍ୟତ) ଇମାନ୍ (ଏହିସବୁ) ସମୁପସ୍ଥିତାନ୍ ସ୍ୱଜନାନ୍ (ଉପସ୍ଥିତ ଆତ୍ମୀୟ ଲୋକଙ୍କୁ) ଦୃଷ୍ଟ୍ୱା (ଦେଖି) ମମ ଗାତ୍ରାଣି (ମୋର ସାରା ଦେହଟା) ସୀଦନ୍ତି (ଅବସନ୍ନ ହୋଇଯାଉଛି) ମୁଖଂ ଚ ପରିଶୁଷ୍ୟତି (ପାଟି ମଧ୍ୟ ଶୁଖିଆସୁଛି) ମେ ଶରୀରେ (ମୋର ଶରୀରରେ) ବେପଥୁଃ ଚ (ପୁଣି କଂପ ଦେଖା-ଦେଲାଣି) ରୋମହର୍ଷଃ ଚ ଜାୟତେ (ଏବଂ ଲୋମ ଟାଙ୍କୁରିଉଠୁଛି) । ହସ୍ତାତ୍ (ହାତରୁ) ଗାଣ୍ଡୀବଂ (ଗାଣ୍ଡୀବ ଧନୁ) ସ୍ରଂସତେ (ଖସିପଡ଼ୁଛି) । ତ୍ୱକ୍ ଚ ଏବ ପରିଦହ୍ୟତେ (ଦେହର ଚମ ଜଳିଉଠିଲାପରି ଲାଗିଲାଣି) । ନ ଚ ଶକ୍ନୋମି ଅବସ୍ଥାତୁଂ (ଏପରିକ ମୁଁ ସ୍ଥିର ହୋଇ ଠିଆ ହୋଇପାରୁ ନାହିଁ) । ମେ ମନଃ ଚ ଭ୍ରମତି ଇବ (ମୋ ମନ ମଧ୍ୟ ଘୂରିବୁଲିଲାଣି) ।

**ଅନୁବାଦ**

ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ଅନାଇ କହିଲେ—"ହେ କୃଷ୍ଣ, ଯୁଦ୍ଧରେ ନିଜ-ନିଜର ପ୍ରାଣଟିମାନ ଦେଇଦେବାପାଇଁ ଆସିଥିବା (ଏଇ ଶତ୍ରୁ-ସୁହୃଦ୍-ବର୍ଗ)

ଆମ ନିଜର ଲୋକଗୁଡ଼ାକୁ ଦେଖି ମୋ ଦେହ ଯେ ବର୍ତ୍ତମାନ ଅବସନ୍ନ ହୋଇ-ଯାଉଛି । ମୋର ପାଟି ଶୁଖିଆସୁଛି । ମୋର ସ୍ନାୟୁସବୁ କମ୍ପିତ ହୋଇଉଠୁଛନ୍ତି । ରୋମ ମଧ୍ୟ ଟାଙ୍କୁରିଉଠୁଛି । ମୋହାତରୁ ମୋର ଧନୁ ଗାଣ୍ଡୀବ ଖସିପଡ଼ୁଛି । ଦେହର ଚମ ଜଳିଗଲାପରି ଲାଗୁଛି । ମୋର ଦେହ ବର୍ତ୍ତମାନ ଅସ୍ଥିର ଓ ମନ ବିଭ୍ରାନ୍ତ ।

୩୧

ନିମିତ୍ତାନି ଚ ପଶ୍ୟାମି ବିପରୀତାନି କେଶବ
ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନମାହବେ । ୩୧ ।

[ହେ] କେଶବ (ହେକୃଷ୍ଣ) [ମୁଁ] ବିପରୀତାନି ନିମିତ୍ତାନି ଚ (ପ୍ରତିକୂଳ ଲକ୍ଷଣ-ସବୁ ମଧ୍ୟ) ପଶ୍ୟାମି (ଦେଖିବାକୁ ପାଉଛି) । [ମୁଁ] ଆହବେ (ଯୁଦ୍ଧରେ) ସ୍ୱଜନଂ ହତ୍ୱା (ନିଜ ଲୋକଙ୍କୁ ମାରି) ଶ୍ରେୟଃ ଚ (କିଛି ମଙ୍ଗଳ ମଧ୍ୟ) ନ ଅନୁପଶ୍ୟାମି (ଦେଖିପାରୁ ନାହିଁ) ।

## ଅନୁବାଦ

ହେ କେଶବ, ମୁଁ ଯେପରିକି ଅଶୁଭ ଚିହ୍ନସବୁ ଦେଖିବାକୁ ପାଉଛି । ହେ ଶ୍ରୀକୃଷ୍ଣ, ଏ ଯୁଦ୍ଧରେ ଏଇ ନିଜ ଲୋକଗୁଡ଼ାକୁ ହତ୍ୟା କରି, ଆମେ କି ମଙ୍ଗଳ ଲାଭ କରିବା, ମୁଁ ତ ଦେଖିପାରୁ ନାହିଁ ।

## ବିଶେଷ ଭାଷ୍ୟ

କେଶବ—ଶ୍ରୀକୃଷ୍ଣଙ୍କ ମସ୍ତକରେ ପ୍ରଚୁର ଓ ସୁନ୍ଦର କେଶ ଥିବାରୁ ତାଙ୍କର ଏପରି ନାମ ହୋଇଥିଲା ।

୩୨-୩୩-୩୪-୩୫

ନ କାଙ୍‌କ୍ଷେ ବିଜୟଂ କୃଷ୍ଣ ନ ଚ ରାଜ୍ୟଂ ସୁଖାନି ଚ
କିଂ ନୋ ରାଜ୍ୟେନ ଗୋବିନ୍ଦ କିଂ ଭୋଗୈର୍ଜୀବିତେନ ବା । ୩୨ ।
ଯେଷାମର୍ଥେ କାଙ୍‌କ୍ଷିତଂ ନୋ ରାଜ୍ୟଂ ଭୋଗାଃ ସୁଖାନି ଚ
ତ ଇମେଽବସ୍ଥିତାଃ ଯୁଦ୍ଧେ ପ୍ରାଣାଂସ୍ତ୍ୟକ୍ତ୍ୱା ଧନାନି ଚ । ୩୩ ।
ଆଚାର୍ଯ୍ୟାଃ ପିତରଃ ପୁତ୍ରାସ୍ତଥୈବ ଚ ପିତାମହାଃ
ମାତୁଳାଃ ଶ୍ୱଶୁରାଃ ପୌତ୍ରାଃ ଶ୍ୟାଳାଃ ସମ୍ବନ୍ଧିନସ୍ତଥା । ୩୪ ।
ଏତାନ୍ନ ହନ୍ତୁମିଚ୍ଛାମି ଘ୍ନତୋଽପି ମଧୁସୂଦନ
ଅପି ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ କିଂ ନୁ ମହୀକୃତେ । ୩୫ ।

[ହେ] କୃଷ୍ଣ (ହେ କୃଷ୍ଣ) [ମୁଁ] ବିଜୟଂ ନ କାଙ୍କ୍ଷେ (ବିଜୟ ଇଚ୍ଛା କରେ ନାହିଁ)। ନ ଚ ରାଜ୍ୟଂ ସୁଖାନି ଚ (ରାଜ୍ୟ ବା ଐହିକ ସୁଖାଦି ମଧ୍ୟ ଇଚ୍ଛା ନାହିଁ)। [ହେ] ଗୋବିନ୍ଦ, (ହେକୃଷ୍ଣ) ନଃ(ଆମ୍ଭମାନଙ୍କର)ରାଜ୍ୟେନ କିଂ (ରାଜ୍ୟରେ କି ପ୍ରୟୋଜନ ?) ଭୋଗୈଃ ଜୀବିତେନ ବା କିଂ (ସୁଖଭୋଗ ଏବଂ ଏପରିକି ଏହି ଜୀବନରେ ବା କି ବିଶେଷ ପ୍ରୟୋଜନ ?) ଯେଷାମର୍ଥେ (ଯେଉଁମାନଙ୍କ ପାଇଁ) ନଃ (ଆମର ବା ସାଧାରଣ ଲୋକଙ୍କର)· ରାଜ୍ୟଂ ଭୋଗାଃ ସୁଖାନି ଚ କାଙ୍କ୍ଷିତଂ (ରାଜ୍ୟ ବା କ୍ଷମତା ଏବଂ ସେହି ସୂତ୍ରରେ ଆସୁଥିବା ଭୋଗ ଓ ସୁଖାଦି ଅଭିଳଷିତ ହୋଇଥାନ୍ତି), ତେ (ସେମାନେ) ଇମେ (ଏହି) ଆଚାର୍ଯ୍ୟାଃ (ଗୁରୁବର୍ଗ) ପିତରଃ (ପିତୃସ୍ଥାନୀୟ ଲୋକେ) ପୁତ୍ରାଃ (ପୁତ୍ରସ୍ଥାନୀୟମାନେ) ତଥା ଏବ ଚ ପିତାମହାଃ (ସେହିପରି ମଧ୍ୟ ପିତାମହଗଣ) ତଥା (ପୁଣି) ମାତୁଳାଃ (ମାମୁମାନେ) ଶ୍ୱଶୁରାଃ (ଶଶୁରମାନେ) ପୌତ୍ରାଃ (ନାତିମାନେ) ଶ୍ୟାଳାଃ (ଶଳାମାନେ) [ଏବଂ] ସମ୍ବନ୍ଧିନଃ (ସମୁଧିମାନେ) ପ୍ରାଣାନ୍ (ପ୍ରାଣକୁ) ଧନାନି ଚ (ଏବଂ ସ୍ୱସ୍ୱ ସମ୍ପଦକୁ ମଧ୍ୟ) ତ୍ୟକ୍ତ୍ୱା (ଛାଡ଼ିଦେଇ) [ଏଠାରେ] ଯୁଦ୍ଧେ ଅବସ୍ଥିତାଃ (ଯୁଦ୍ଧଭୂମିରେ ଆସି ଆମ ସାଥିରେ ଲଢ଼େଇପାଇଁ ଠିଆ ହୋଇଛନ୍ତି।) [ହେ]ମଧୁସୂଦନ (ହେ କୃଷ୍ଣ)ଘ୍ନତଃ ଅପି (ମତେ ସେମାନେ ମାରିଦିଅନ୍ତୁ ପଛେ) [ମୁଁ] ଏତାନ୍ (ଏମାନଙ୍କୁ) ହନ୍ତୁମ୍ (ମାରିବାକୁ) ନ ଇଚ୍ଛାମି (ଇଚ୍ଛା କରୁ ନାହିଁ, ମୋ ମନ ବଳୁନାହିଁ)। ମହୀକୃତେ କିଂ ନୁ (ଏହି ପୃଥିବୀପାଇଁ କି କଥା) [ମୁଁ] ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ ଅପି (ତିନି ଲୋକର ଅଧିକାରପାଇଁ ମଧ୍ୟ ) [ଏମାନଙ୍କୁ ମାରିବାକୁ ଯିବି ନାହିଁ]।

**ଅନୁବାଦ**

ହେ କୃଷ୍ଣ, ମୁଁ ଏପରି ଏକ ଯୁଦ୍ଧରେ ବିଜୟ ମଧ୍ୟ ଇଚ୍ଛା ନାହିଁ। ଏପରି ଏକ ଯୁଦ୍ଧ କରି, ଜୟର ପୁରସ୍କାରରୂପେ ରାଜ୍ୟ ବା ସାଂସାରିକ ସୁଖାଦି କିଛି ହେଲେ ମୁଁ ଇଚ୍ଛା ନାହିଁ। ହେ ଗୋବିନ୍ଦ, ଏ ଯୁଦ୍ଧରୁ ପ୍ରାପ୍ତବ୍ୟ ବୋଲି କଳ୍ପିତ ରାଜ୍ୟରେ ବା ଭୋଗ୍ୟ-ପ୍ରାଚୁର୍ଯ୍ୟରେ ବା ଏପରିକି ଖାଲି ବଞ୍ଚିରହିବାରେ ବା କି ଲାଭ ? କାରଣ, ଯେଉଁ ସମାଜରେ ରହିହିଁ ଲୋକ ରାଷ୍ଟ୍ରୀୟ କ୍ଷମତା ବା ସୁଖାଦି ଭୋଗିବାକୁ ଇଚ୍ଛା କରିବେ, ସେହି ସମାଜରୂପକ ଗୁରୁ, ପିତୃ ଓ ପୁତ୍ରସ୍ଥାନୀୟ ଲୋକେ ଏବଂ ମାମୁ, ଶ୍ୱଶୁର, ନାତି, ଶଳା, ସମୁଧିମାନେ ଯେ ଏହି ଯୁଦ୍ଧଭୂମିରେ ମରିବାପାଇଁହିଁ ଏଠି ଉପସ୍ଥିତ। ହେ ଶ୍ରୀକୃଷ୍ଣ, ସେମାନେ ବରଂ ମତେ ମାରିଦିଅନ୍ତୁ, କିନ୍ତୁ ରାଜ୍ୟ-ସୁଖାଶାରେ ସେମାନଙ୍କୁ ମାରିବାକୁ ମୋର ଆଦୌ ଇଚ୍ଛା ହେଉ ନାହିଁ। ପାର୍ଥିବ ରାଜ୍ୟକଥା ଛାଡ଼, ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଏଇ ତିନିଭୁବନର ଅଧିକାର କିଏ ଯାଚିଲେ ମଧ୍ୟ ଏମାନଙ୍କୁ ମୁଁ ମାରିପାରିବି ନାହିଁ।

## ବିଶେଷ ବିଷୟ

ଗୋବିନ୍ଦ—ଶ୍ରୀକୃଷ୍ଣଙ୍କର ଏକ ନାମ । ପିଲାଦିନେ ବୃନ୍ଦାବନରେ ଗୋ ବା ଗୋରୁ ପାଳନ କରୁଥିବାରୁ ଏପରି ନାମ ରହିଯାଇଛି । ଅନ୍ୟ ଅର୍ଥ ହେଲା— ଗୋ ବା ଜୀବନବନ୍ତ ସକଳ ପ୍ରାଣୀଙ୍କୁ ଯେ ଜାଣନ୍ତି ।

**୩୬**

ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ କା ପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ
ପାପମେବାଶ୍ରୟେଦସ୍ମାନ୍ ହତ୍ୱୈତାନାତତାୟିନଃ । ୩୬ ।

[ହେ] ଜନାର୍ଦ୍ଦନ (ହେ ଶ୍ରୀକୃଷ୍ଣ) ଧାର୍ତ୍ତରାଷ୍ଟ୍ରାନ୍ ନିହତ୍ୟ (ଧୃତରାଷ୍ଟ୍ରଙ୍କ ପୁଅ-ଗୁଡ଼ାଙ୍କୁ ମାରିପକାଇଲେ) **ନଃ** (ଆମର) କା ପ୍ରୀତିଃ ସ୍ୟାତ୍ ? (କିପ୍ରକାର ସନ୍ତୋଷ-ଲାଭ ହେବ ?) ଆତତାୟିନଃ ଏତାନ୍ ହତ୍ୱା (ଏହି ଆତତାୟୀଗୁଡ଼ାଙ୍କୁ ମାରି ମଧ୍ୟ) ଅସ୍ମାନ୍ (ଆମକୁ) ପାପମ୍ ଏବ ଆଶ୍ରୟେତ୍ (କେବଳ ପାପହିଁ ଲାଗିବ ସିନା !)

**୩୭**

ତସ୍ମାନ୍ନାର୍ହାଃ ବୟଂ ହନ୍ତୁଂ ଧାର୍ତ୍ତରାଷ୍ଟ୍ରାନ୍ ସ୍ୱବାନ୍ଧବାନ୍
ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବ । ୩୭ ।

ତସ୍ମାତ୍ (ସେହି ହେତୁରୁ) ବୟଂ (ଆମ୍ଭେମାନେ) ସ୍ୱବାନ୍ଧବାନ୍ ଧାର୍ତ୍ତରାଷ୍ଟ୍ରାନ୍ (ନିଜର ଜ୍ଞାତି ଏହି କୌରବମାନଙ୍କୁ) ହନ୍ତୁଂ ନ ଅର୍ହାଃ (ମାରିପକେଇବା ଆମର ଯୋଗ୍ୟକର୍ମ ହେବ ନାହିଁ) । ହି (ଯେହେତୁ) [ହେ] ମାଧବ (ହେ କୃଷ୍ଣ) ସ୍ୱଜନଂ ହତ୍ୱା (ନିଜ ଲୋକଙ୍କୁ ମାରି) କଥଂ (କିପରି) ସୁଖିନଃ ସ୍ୟାମ (ଆମେ ସୁଖୀ ହେବାକୁ ଆଶା କରିବା ?)

## ଅନୁବାଦ

ହେ ଜନାର୍ଦ୍ଦନ, (ଆମର ଭାଇ) ଧୃତରାଷ୍ଟ୍ରଙ୍କର ଏହି ପୁଅମାନଙ୍କୁ ମାରିପକାଇଲେ ବା ଆମର କି ବିଶେଷ ସନ୍ତୋଷ ଲାଭ ହେବ ? ଏମାନେ ଆତତାୟୀ ହେଲେ ମଧ୍ୟ ସ୍ୱଜନ ତ ! ଏହି ସ୍ୱଜନମାନଙ୍କୁ ମାରିଲେ ଆମର ପାପ ହେବ ସିନା ! ତେଣୁ ସ୍ୱବାନ୍ଧବ ଏହି ଧୃତରାଷ୍ଟ୍ର-ପୁତ୍ରମାନଙ୍କୁ ହତ୍ୟା କରିବା କଣ ଆମର ଉପଯୁକ୍ତ କର୍ମ ହେବ ? ହେ ଶ୍ରୀକୃଷ୍ଣ, ନିଜ ଲୋକଙ୍କୁ ହତ୍ୟା କରି ଆମେ ବା ସୁଖୀ ହେବା ବୋଲି କିପରି ଆଶା କରିବା ?

## ବିଶେଷ ଭାଷ୍ୟ

(୧) ଜନାର୍ଦ୍ଦନ—ଜନ ନାମକ ଅସୁରକୁ ଅର୍ଦ୍ଦନ ବା ବଧ କରିଥିବାରୁ ବିଷ୍ଣୁଙ୍କର ଏକ ନାମ । ଅନ୍ୟ ଅର୍ଥ—ଜନ ବା ଜନ୍ମ ଅର୍ଥାତ୍ ଜନ୍ମାନ୍ତରକୁ ଯେ ଧ୍ୱଂସ କରନ୍ତି ସେ ।

(୨) ମାଧବ—ମଧୁ ନାମକ ଅସୁରକୁ ହତ୍ୟା କରିଥିବାରୁ ବିଷ୍ଣୁଙ୍କର ଆଉ ଏକ ନାମ ।

ବେଦ ବା ବିହୁ ପରର ଉପନିଷଦ୍ ଯୁଗରେ ମଧ୍ୟ ଏବର ହିନ୍ଦୁ-ଦେବତା 'ବିଷ୍ଣୁ' ଏବର ପ୍ରାଧାନ୍ୟ ପାଇ ନ ଥିଲେ । ତାହା ଘଟିଲା, ବୌଦ୍ଧ-ପର ପୌରାଣିକ ଯୁଗରେ, ଖ୍ରିଷ୍ଟଠାରୁ ଅଷ୍ଟମ ଶତାବ୍ଦୀମଧ୍ୟରେ । ଉପନିଷଦ୍‌ସବୁ କେବଳ 'ବ୍ରହ୍ମ'ଜିଜ୍ଞାସାରେ ପୂର୍ଣ୍ଣ । ସେତେବେଳେ ବ୍ରହ୍ମ ଥିଲେ କ୍ଳୀବ । କ୍ଳୀବ ବ୍ରହ୍ମ, ପୁଂଲିଙ୍ଗ 'ବ୍ରହ୍ମା' ହେଲେ ଯାଇ ପୌରାଣିକ ଯୁଗରେ । କିନ୍ତୁ ବେଶୀ ଦିନ ସେ ସେପରି ରହିପାରିଲେ ନାହିଁ—ତାଙ୍କ ସ୍ଥାନ ଅଧିକାର କରିନେଲେ 'ବିଷ୍ଣୁ' । କିନ୍ତୁ ବିଷ୍ଣୁଙ୍କୁ ତୀବ୍ର ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ହୋଇଥିଲା ଓ ହୋଇଆସୁଛି, ଦ୍ରାବିଡ଼-ଦେବତା ଶିବଙ୍କ ସହିତ । ଯେକି ଶ୍ୱେତାଶ୍ୱତର ଉପନିଷଦ୍, ଶିବଙ୍କୁ କେନ୍ଦ୍ର କରିହିଁ ରଚିତ । ଖୁବ ସମ୍ଭବତଃ 'ବିଷ୍ଣୁ'-କୈନ୍ଦ୍ରିକ ଭଗବଦ୍‌ଗୀତା, ଶ୍ୱେତାଶ୍ୱତର ଉପନିଷଦର ପ୍ରତିଯୋଗୀ ଗ୍ରନ୍ଥ । "ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ" —ଏହି ବାକ୍ୟହିଁ ଗୀତା ଯେ ପ୍ରଥମେ ଏକ 'ଉପନିଷଦ୍'ଭାବରେହିଁ ଲେଖା-ଯାଇଥିଲା, ତାହା ପ୍ରମାଣିତ କରୁଛି । ଅର୍ଥାତ୍ ଏହା ଥିଲା ବିଷ୍ଣୁ-ମହିମା-ପ୍ରଚାରକ ଉପନିଷଦ୍ । ସେ ବିଷ୍ଣୁ, ପୁଣି, କେବଳ ଶ୍ରୀକୃଷ୍ଣ । ତେଣୁ ଗୀତାକୁ "କୃଷ୍ଣୋପନିଷଦ୍" ବୋଲି ମଧ୍ୟ କୁହାଯାଏ । ଗୀତାରେ ଆମେ ପୌରାଣିକ ବିଷ୍ଣୁଙ୍କର ଗଦା-ପଦ୍ମ-ଶଙ୍ଖ-ଚକ୍ର ସମନ୍ୱିତ ପ୍ରତିମା ସହିତ, 'ମାଧବ', 'ମଧୁସୂଦନ' ଇତ୍ୟାଦି ଏବର ପରିଚିତ ପୌରାଣିକ ବିଶେଷଣ ଆଦିଙ୍କୁ ମଧ୍ୟ ଭେଟୁ । ଏସବୁ ବିଶେଷଣ ଗୀତାର ବିଷୟସବୁ ବହୁତ କମେଇଦେଉଛନ୍ତି ବୋଲି ବିଶ୍ୱାସ ।

(୩) ଆତତାୟୀ—ଅନିଷ୍ଟକାରୀ । ଘର ପୋଡ଼ିବା, ବିଷ ଦେବା, ହାତିଆର-ନେଇ ମାରିବାକୁ ଆସିବା, ଚୋରି କରିବା, ସ୍ତ୍ରୀ ହରଣ କରିବା ଏବଂ କୌଶଳରେ ଅନ୍ୟର ଜମିବାଡ଼ି ମାରିନେବା, ଏପରି ଛଅ ଶ୍ରେଣୀର ଲୋକଙ୍କୁ ଶାସ୍ତ୍ରାନୁସାରେ ଆତତାୟୀ କୁହାଯାଏ ।

ଗୀତାକାର ଏଠାରେ ବୋଧହୁଏ ମନୁସ୍ମୃତିର ସମ୍ପୃକ୍ତ ଶ୍ଳୋକକୁ ମନରେ ରଖିହିଁ 'ଆତତାୟୀ' ଶବ୍ଦ ବ୍ୟବହାର କରିଛନ୍ତି । ମନୁଙ୍କ ମତରେ "ନାତତାୟିବଧେ

ଦୋଷୋହନୁର୍ଭବତ କଶ୍ଚନ”—ଆତତାୟୀମାନଙ୍କୁ ବଧ କରିବାରେ କୌଣସି-ପ୍ରକାର ଅପରାଧ କାହାର ହେବ ନାହିଁ ।

କିନ୍ତୁ ଯେକୌଣସି ପାପ ବା ଅବାଞ୍ଛନୀୟ କର୍ମକୁ ତାର ବିପରୀତାତ୍ମକ କର୍ମଦ୍ୱାରା ଜିଣିବାର ସଭ୍ୟ-ଶୋଭନୀୟ ଆଦର୍ଶ ମହାଭାରତ-କାଳରେ ମଧ୍ୟ ଅବିଦିତ ନ ଥିଲା ଏବଂ ତାହା ଅର୍ଜୁନଙ୍କ ପରି ବିଜ୍ଞ ଜନଙ୍କୁ ମଧ୍ୟ ଅବିଦିତ ନ ଥିବ । କାରଣ ମହାଭାରତ ଉଦ୍ୟୋଗପର୍ବ(୩୮, ୭୩, ୭୪)ରେହିଁ କୁହାଯାଇଛି—

ଅକ୍ରୋଧେନ ଜୟେତ୍ କ୍ରୋଧଂ
ଅସାଧୁଂ ସାଧୁନା ଜୟେତ୍
ଜୟେତ୍ କଦର୍ଯ୍ୟଂ ଦାନେନ
ଜୟେତ୍ ସତ୍ୟେନ ଚାନୃତମ୍ ।

(କ୍ରୋଧକୁ ଅକ୍ରୋଧଦ୍ୱାରା, ଅସାଧୁତାକୁ ସାଧୁତାଦ୍ୱାରା, କୃପଣକୁ ଦାନଦ୍ୱାରା ଏବଂ ଅସତ୍ୟକୁ ସତ୍ୟଦ୍ୱାରାହିଁ ଜୟ କରାଯିବା ଉଚିତ । )

ଅର୍ଜୁନଙ୍କର ସ୍ୱଜନହନନ-ପରାଙ୍ମୁଖତା ହୁଏତ ସମସାମୟିକ କାଳର ଏହି ଭାବଧାରା-ପ୍ରଭାବିତ ହେବା ଫଳରେହିଁ ଆସିଥିବ।

ବୌଦ୍ଧ “ଧମ୍ମପଦ”ରେ ମଧ୍ୟ ମହାଭାରତର ଉପର୍ଯ୍ୟୁକ୍ତ ଶ୍ଲୋକର ଭାବ ଆମେ ଅବିକଳ ଦେଖିବାକୁ ପାଉ ।

ନ ହି ବେରେନ ବେରାନି ସମ୍ମନ୍ତୀଧ କୁଦାଚନଂ
ଅବେରେନ ଚ ସମ୍ମନ୍ତି ଏସ ଧମ୍ମୋ ସନନ୍ତନୋ । ୧/୫ ।

(ବୈରଭାବଦ୍ୱାରା ବୈରଭାବ ଶାନ୍ତ ହୁଏ ନାହିଁ । ଅବୈରଦ୍ୱାରାହିଁ ବୈରଭାବ ଯେ ଶାନ୍ତ ହୁଏ, ତାହାହିଁ ସନାତନ ଧର୍ମ । )

ମହାଭାରତ ପ୍ରାୟ ହଜାରେ ବର୍ଷ ଧରି ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇ ଚାଲି ଚାଲି ବର୍ତ୍ତମାନ ଅବସ୍ଥାରେ ପହଞ୍ଚିଛି । ପଣ୍ଡିତମାନେ ତେଣୁ ମହାଭାରତରେ ଦେଖା ଦେଉଥିବା ଏପ୍ରକାର ବହୁ ବୌଦ୍ଧଭାବ, ପରକାଳରେ ସେହି ମହାଗ୍ରନ୍ଥଦ୍ୱାରା ଆତ୍ମୀକୃତ ହୋଇଯାଇଛି ବୋଲି ମନେ କରିଥାନ୍ତି ।

**୩୮-୩୯**

ଯଦ୍ୟପ୍ୟେତେ ନ ପଶ୍ୟନ୍ତି ଲୋଭୋପହତଚେତସଃ
କୁଳକ୍ଷୟକୃତଂ ଦୋଷଂ ମିତ୍ରଦ୍ରୋହେ ଚ ପାତକମ୍ । ୩୮ ।
କଥଂ ନ ଜ୍ଞେୟମସ୍ମାଭିଃ ପାପାଦସ୍ମାନ୍ନିବର୍ତ୍ତିତୁମ୍
କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିର୍ଜନାର୍ଦ୍ଦନ । ୩୯ ।

ଯଦ୍ୟପି (ଯଦ୍ଧବା) ଲୋଭୋପହତଚେତସଃ (ଲୋଭାଭିଭୂତଚିତ୍ତ) ଏତେ (ଏମାନେ) କୁଳକ୍ଷୟକୃତଂ ଦୋଷଂ (କୁଳକ୍ଷୟରୁ ଜାତ ଯେଉଁ ପାପ) ମିତ୍ରଦ୍ରୋହେ ଚ ପାତକମ୍ (ପୁଣି ମିତ୍ରଦ୍ରୋହରେ ଯେଉଁ ପାପ ହୁଏ, ତାକୁ) ନ ପଶ୍ୟନ୍ତି (ଦେଖି ନ ପାରୁଛନ୍ତି) କଥଂ (କି କାରଣରୁ) [ହେ] ଜନାର୍ଦ୍ଦନ (ହେ ଶ୍ରୀକୃଷ୍ଣ) କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିଃ ଅସ୍ମାଭିଃ (କୁଳକ୍ଷୟରୁ କି ପାପ ତାହା ଭଲକରି ଦେଖିପାରୁଥିବା ଆମେ) ଅସ୍ମାତ୍ ପାପାତ୍ (ଏହି ପାପରୁ) ନିବର୍ତ୍ତିତୁଂ (ନିବୃତ୍ତ ହେବାପାଇଁ) ନ ଜ୍ଞେୟଂ (ନ ଜାଣିପାରିଲେ) [ବୋଲି ଧରାଯିବ] ?

## ଅନୁବାଦ

ଯଦିବା ଲୋଭାଭିଭୂତ କୌରବମାନେ, ମିତ୍ରଦ୍ରୋହ ବା କୁଳକ୍ଷୟଜନିତ ପାପକୁ, ଲୋଭପରବଶ ହୋଇ ଦେଖି ମଧ୍ୟ ଦେଖିପାରୁ ନାହାନ୍ତି, ହେ କୃଷ୍ଣ, ଆମେ ଯେତେବେଳେ ତାହା ସ୍ପଷ୍ଟ ଦେଖିପାରୁଛୁ, ଆମେ ସେସବୁ ପାପରୁ ନିବୃତ୍ତ ହେବାର ମଧ୍ୟ ନ ଜାଣିବା କିପରି ?

୪୦

କୁଳକ୍ଷୟେ ପ୍ରଣଶ୍ୟନ୍ତି କୁଳଧର୍ମାଃ ସନାତନାଃ
ଧର୍ମେ ନଷ୍ଟେ କୁଳଂ କୃତ୍ସ୍ନମଧର୍ମୋଽଭିଭବତ୍ୟୁତ । ୪୦ ।

କୁଳକ୍ଷୟେ (ବଂଶନାଶ ହେଲେ) ସନାତନାଃ କୁଳଧର୍ମାଃ (ପରଂପରା-କ୍ରମେ ଚାଲିଆସୁଥିବା କୁଳଧର୍ମସବୁ) ପ୍ରଣଶ୍ୟନ୍ତି (ନଷ୍ଟ ହୋଇଯାନ୍ତି) ଉତ (ପୁଣି) ଧର୍ମେ ନଷ୍ଟେ (ଧର୍ମ ନଷ୍ଟ ହେଲେ) ଅଧର୍ମଃ (ପାପ) କୃତ୍ସ୍ନଂ କୁଳଂ (ସମଗ୍ର କୁଳ ବା ଗୋଷ୍ଠୀକୁ) ଅଭିଭବତି (ବ୍ୟାପିଯାଏ ) ।

## ଅନୁବାଦ

ଏ ଯୁଦ୍ଧ ସଂପୂର୍ଣ୍ଣ କୁଳକ୍ଷୟରେହିଁ ପର୍ଯ୍ୟବସିତ ହେବ । କୁଳନାଶ ହେଲେ ପରଂପରବାହୀ ପ୍ରାଚୀନ କୁଳଧର୍ମ ନଷ୍ଟ ହୁଏ ଏବଂ ଧର୍ମ ନଷ୍ଟ ହେଲେ ସମଗ୍ର-ଗୋଷ୍ଠୀରେ ଅଧର୍ମହିଁ ଯେ ବ୍ୟାପିଯାଏ, ଏହା ତ ଜଣା କଥା ।

## ବିଶେଷ ଭାଷ୍ୟ

ଧର୍ମ—ପାଠକେ ମନେ ରଖନ୍ତୁ ଯେ ଗୀତା 'ଧର୍ମକ୍ଷେତ୍ର' ଶବ୍ଦପରେ ଏହିଠାରେ ପ୍ରଥମ କରିହିଁ 'ଧର୍ମ'ଶବ୍ଦ ଉଚ୍ଚାରଣ କରିଛନ୍ତି ।

"ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ"—ଅବତାରବାଦକୁ ସମର୍ଥନ କରୁଥିବା ଗୀତାରେ ଶ୍ରୀକୃଷ୍ଣଙ୍କର ଏହି ବାଣୀ (ଗୀତା ୪,୮) ସାଧାରଣ

ହିନ୍ଦୁର ଧର୍ମବନ୍ଧା ଗତ । ତେବେ ପ୍ରଶ୍ନ ଏହି ଯେ, କେଉଁ 'ଧର୍ମ' ବା 'କ୍ଷତ୍ର' ଧର୍ମ ସଂସ୍ଥାପନା କରିବାକୁ ଈଶ୍ୱର ବାରମ୍ବାର ପୃଥିବୀକୁ ଆସନ୍ତି, ବା ଶ୍ରୀକୃଷ୍ଣ ନିଜେ ଆସିଥିଲେ ? ଭଗବଦ୍‌ଗୀତା ସେହି 'ଧର୍ମ' ପରିବେଷିତ କରୁଛି ବୋଲି ଧରିନିଆଯାଉଛି । ଏଠାରେ କିନ୍ତୁ ଅର୍ଜ୍ଜୁନଙ୍କଦ୍ୱାରା 'କୁଳଧର୍ମ'ହିଁ ପ୍ରସ୍ତାବିତ ହେଉଛି । ଏହି 'କୁଳଧର୍ମ' ହେଲା ଏକାନ୍ତରେ ଭାରତବର୍ଷର ହିନ୍ଦୁସମାଜର ଜାତି(caste)ଗତ ବ୍ୟବସାୟ ଓ ରୀତିନୀତି । ଏଥିରେ ସାର୍ବଜନୀନତା ନାହିଁ । ଗୀତା କଣ ତେବେ ଏହି ଧର୍ମ ସଂସ୍ଥାପନାପାଇଁ ଲେଖାଯାଇଥିଲା ? ଏହାର ବିଶଦ ଆଲୋଚନା ପରେ ହେବ ଯଥାସ୍ଥାନରେ (ଗୀ. ୩।୮ ଦେଖ) ।

କୁଳଧର୍ମ—ଏଠାରେ କିନ୍ତୁ ଭାରତୀୟ ଆର୍ଯ୍ୟସଂସ୍କୃତିରେ 'କୁଳଧର୍ମ'ର ପ୍ରାଧାନ୍ୟ ଜାଣିରଖିବା କଥା । ନଚେତ୍ ଅର୍ଜ୍ଜୁନ ତାଙ୍କର ଏହି ନୈତିକ ସଙ୍କଟ-ବେଳେ କେବଳ 'କୁଳଧର୍ମ'ପାଇଁ ଏପରି ଉଦ୍‌ବେଗ ପ୍ରକାଶ କରି ନ ଥାନ୍ତେ । ଗୀତାରେ, ଅର୍ଜ୍ଜୁନଙ୍କୁ ବୈଦିକ ବ୍ରାହ୍ମଣ୍ୟସଂସ୍କୃତିର ଗତାନୁଗତିକ ପ୍ରତୀକ ଓ ଶ୍ରୀକୃଷ୍ଣଙ୍କୁ, ବୁଦ୍ଧ-ଗୌତମଙ୍କପରି ସେହି ପ୍ରାଚୀନ ସଂସ୍କୃତିର ସଂସ୍କାରକ-ରୂପେ କଳ୍ପନା କରିବାହିଁ ଯଥାର୍ଥ ଦୃଷ୍ଟିଭଙ୍ଗୀ ।

ଭାରତୀୟ ଆର୍ଯ୍ୟମାନେ ଏବର ଶ୍ୱେତଚର୍ମୀ ଆମେରିକାନ୍ ଯୁାଂକ ଓ ଦକ୍ଷିଣଆଫ୍ରିକୀୟ ଗୋରାମାନଙ୍କ ପରି ନିଜର ଧଳା ଚମଡ଼ା ନେଇ ଅତ୍ୟନ୍ତ ସଚେତନ ଥିଲେ । ସେମାନେ ଭାରତରେ ଭେଟିଲେ କୃଷ୍ଣଚର୍ମା ଦ୍ରାବିଡ଼ ବା ଆଦିବାସୀଙ୍କୁ, ଯାହାଙ୍କୁ କି ସେମାନେ ତାଚ୍ଛଲ୍ୟରେ ଋଗ୍‌ବେଦରେ ବର୍ଣ୍ଣନା କରିଛନ୍ତି ଦାସ ବା ଦସ୍ୟୁ ବୋଲି । ଏମାନଙ୍କଠାରୁ ନିଜକୁ ଭିନ୍ନ ରଖିବା-ପାଇଁହିଁ ସେମାନେ ଠିକ୍ ଏବର ଆମେରିକା ବା ଦକ୍ଷିଣଆଫ୍ରିକା ପରି ଭାରତରେ 'ବର୍ଣ୍ଣ-ବୈଷମ୍ୟ'କୁ ବଞ୍ଚେଇ ରଖିଥିଲେ । ଏହି ବର୍ଣ୍ଣଭେଦହିଁ ପରେ ଜାତିଭେଦରୂପେ ଦେଖା ଦେଲା । ଏବେ ବି ଆମେ କାହାର ଜାତି କଣ ବୁଝିବାକୁ ଗଲେ ପଚାରୁ—ଆପଣଙ୍କ 'ବର୍ଣ୍ଣ' କଣ ?

ବର୍ଣ୍ଣ ପରେ ଆସିଲା 'ଜନ' ବା ଟ୍ରାଇବ୍ (tribe) ବା ଗୋଷ୍ଠୀର ଭେଦ । ଏଥିରୁ ହେଲା 'ଜନପଦ' ବା ରାଜ୍ୟର ସୃଷ୍ଟି । ଋଗ୍‌ବେଦରେ ସପ୍ତ-ସିନ୍ଧୁ ବା ସାତ ନଦୀର ଦେଶ ବା ଆଧୁନିକ ପଞ୍ଜାବ ଅଞ୍ଚଳରେ, ପଞ୍ଚ-ଜନ ବା ପାଞ୍ଚଟି ଆର୍ଯ୍ୟ-ଗୋଷ୍ଠୀ ଥିବାର ବର୍ଣ୍ଣନା ଅଛି । ସେତେବେଳର ସରସ୍ୱତୀ ଓ ଦୃଷଦ୍‌ବତୀ ନଦୀ ଏବକୁ ଆଉ ନାହାନ୍ତି । ତା ଫଳରେହିଁ ପରେ ସାତ-ନଦୀର ସେହି ଦେଶ, ପଞ୍ଜାବ ବା 'ପାଞ୍ଚ-ନଦୀର ଦେଶ' ହୋଇଗଲା ।

'ଜନ'ପରେ ଆସିଲା 'କୁଳ', ଯାହାହିଁ ଥିଲା ଆର୍ଯ୍ୟସଂସ୍କୃତିର ପ୍ରକୃତ କେନ୍ଦ୍ର । କୁଳ ବା ପରିବାରରେ କେନ୍ଦ୍ର ଓ ମୁଖ୍ୟ ଥିଲେ 'ପିତା ବା ପିତୃଦେବ' । ତାଙ୍କର ପ୍ରଭାବ ଜୀବନର ଆର ପଟ୍ଟ ମଧ୍ୟ ସ୍ୱୀକୃତ ହେଉଥିଲା । ସମଗ୍ର ପୂର୍ବ-ପୁରୁଷଙ୍କୁ ତେଣୁ କେବଳ 'ପିତରଃ'ହିଁ କୁହାଯାଉଥିଲା । ବୃଦ୍ଧପ୍ରପିତାମହଙ୍କଠାରୁ ପଣନାତିପର୍ଯ୍ୟନ୍ତ ସାତପୁରୁଷ ଏକ ଅଚ୍ଛିନ୍ନ ସୂତ୍ରରେ ଗ୍ରଥିତ ଥିଲେ । ଶ୍ରାଦ୍ଧ-ଦିବସମାନଙ୍କରେ ଏବେ ବି ହିନ୍ଦୁ ପଣନାତି ତାର ବୃଦ୍ଧପ୍ରପିତାମହପର୍ଯ୍ୟନ୍ତ ସାତପୁରୁଷଙ୍କୁ ସ୍ମରଣ କରେ ଏବଂ କେବଳ ଶ୍ରାଦ୍ଧଦିବସମାନଙ୍କରେ ନୁହେଁ, ଅଗ୍ନି-ବୈଦିକ-ଆର୍ଯ୍ୟ ଗୃହସ୍ଥ ପ୍ରତ୍ୟହହିଁ ପିତୃତର୍ପଣପୂର୍ବକ ପିତୃ-ଯଜ୍ଞ ମଧ୍ୟ କରିବାର ବିଧି ଥିଲା । ତାଛଡ଼ା ତ ଥିଲା ବାର୍ଷିକ ଶ୍ରାଦ୍ଧର ବ୍ୟବସ୍ଥା । ଏବେ ବି କୋଟି କୋଟି ହିନ୍ଦୁ-ଗୃହସ୍ଥର ପ୍ରାଙ୍ଗଣ ସେହି ଶ୍ରାଦ୍ଧଦିବସମାନଙ୍କରେ ସ୍ୱର୍ଗତ ପିତା, ପିତାମହ, ପ୍ରପିତାମହ ଓ ବୃଦ୍ଧପ୍ରପିତାମହଙ୍କ ସଶ୍ରଦ୍ଧ ନାମୋଚ୍ଚାରଣରେ ମୁଖରିତ ହୋଇଉଠେ । ସହସ୍ର ସହସ୍ର ବର୍ଷ ଧରି ଏହିପ୍ରକାର 'କୌଳିକ' ଐକ୍ୟ-ବୋଧହିଁ ଯେ ହିନ୍ଦୁସଂସ୍କୃତିକୁ ପ୍ରକୃତରେ ଏପର୍ଯ୍ୟନ୍ତ ଜୀବନ୍ତ ରଖିଆସିଛି, ଏଥିରେ ସନ୍ଦେହ ନାହିଁ । ଗ୍ରୀକ୍ ଓ ରୋମାନ୍‌ମାନଙ୍କ ଭିତରେ ଏବଂ ଏବରଉଚ୍ଚଶ୍ରେଣୀର ୟୁରୋପୀୟ-ଆମେରିକାନ୍‌ମାନଙ୍କ ଭିତରେ ମଧ୍ୟ, 'ଫାମିଲି' (family) ବା କୁଳର-ମର୍ଯ୍ୟାଦାପ୍ରତି-ସଚେତନତା କମ୍ ନ ଥିଲା ବା ନାହିଁ । ଚୀନ, କମ୍ୟୁନିଷ୍ଟ ହେବାପୂର୍ବରୁ ଏବଂ ବର୍ତ୍ତମାନ ଏସିଆର ଅଗ୍ରଣୀ ଦେଶ ଜାପାନରେ ମଧ୍ୟ, କୌଳିକ-ସଚେତନତା ସହଜେ ଲକ୍ଷଣୀୟ । ବହୁ ସହସ୍ର ବର୍ଷପୂର୍ବେ ଆର୍ଯ୍ୟ-ବୈଦିକ ସଭ୍ୟତାର ପ୍ରତୀକ ଅର୍ଜୁନ, ତେଣୁ, 'କୁଳଧର୍ମ' ବିନାଶର ଆଶଙ୍କାରେ ଉଦ୍‌ବିଗ୍ନ ହୋଇଉଠିବା ଏକାନ୍ତ ସ୍ୱାଭାବିକ । କିନ୍ତୁ ପରେ ଆମେ ଦେଖିବା ଯେ, ଶ୍ରୀକୃଷ୍ଣ ଏହି 'କୁଳଧର୍ମ'କୁ ଆଦୌ ଆଘାତ ନ ଦେଇ ମଧ୍ୟ, କିପରି ଉଦାର ଆଧ୍ୟାତ୍ମିକତା ପ୍ରଚାର କରିପାରିଛନ୍ତି । ଆମେ ଦେଖିବା ଯେ, ଗୀତାର ଶେଷରେ, କ୍ଷତ୍ରିୟ ଅର୍ଜୁନ 'କ୍ଷତ୍ରିୟ'ହିଁ ରହି କ୍ଷତ୍ରିୟ-କର୍ମ କରିବେ, ବାବାଜି ହୋଇ ଯିବେନି, ଅଥଚ ସେତେବେଳକୁ ସେ ପ୍ରତ୍ୟହ ନରହତ୍ୟା କରି ମଧ୍ୟ ହୋଇ-ସାରିବେଣି ସ୍ଥିତପ୍ରଜ୍ଞ ଓ ବୁଦ୍ଧ । ଏହାହିଁ ଗୀତାର ପରମ ସୌନ୍ଦର୍ଯ୍ୟ । ନିମ୍ନରେ 'ବର୍ଣ୍ଣସଙ୍କର' ଟୀକାର ବ୍ୟାଖ୍ୟା ଦେଖ ।

**୪୧-୪୨**

ଅଧର୍ମାଭିଭବାତ୍ କୃଷ୍ଣ ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ
ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ଜାୟତେ ବର୍ଣ୍ଣସଙ୍କରଃ । ୪୧ ।
ସଙ୍କରୋ ନରକାୟୈବ କୁଳଘ୍ନାନାଂ କୁଳସ୍ୟ ଚ
ପତନ୍ତି ପିତରୋ ହ୍ୟେଷାଂ ଲୁପ୍ତପିଣ୍ଡୋଦକକ୍ରିୟାଃ । ୪୨ ।

[ହେ] କୃଷ୍ଣ, (ହେ କୃଷ୍ଣ) ଅଧର୍ମାଭିଭବାତ୍ (ଅଧର୍ମ ବ୍ୟାପିବାଫଳରେ) କୁଳସ୍ତ୍ରିୟଃ ପ୍ରଦୁଷ୍ୟନ୍ତି (ଘରର ବୋହୂମାନେ ବ୍ୟଭିଚାରିଣୀ ହୋଇଯାନ୍ତି) । [ହେ] ବାର୍ଷ୍ଣେୟ (ହେ ବୃଷ୍ଣି ବଂଶୋଦ୍ଭବ ଶ୍ରୀକୃଷ୍ଣ) ସ୍ତ୍ରୀଷୁ ଦୁଷ୍ଟାସୁ (ସ୍ତ୍ରୀମାନେ ଦୂଷିତା ହେଲେ) ବର୍ଣ୍ଣସଙ୍କରଃ ଜାୟତେ (ମିଶ୍ରିତ ବର୍ଣ୍ଣର ପିଲାସବୁ ଜାତ ହୁଅନ୍ତି) । ସଙ୍କରଃ (ବର୍ଣ୍ଣସଙ୍କର ପିଲେ) କୁଳଘ୍ନାନାଂ କୁଳସ୍ୟ ଚ (ଅନ୍ୟ କୁଳନାଶକାରୀମାନଙ୍କର କୁଳକୁ ମଧ୍ୟ) ନରକାୟ ଏବ (ନରକକୁ ଟାଣିନିଅନ୍ତି) ; ହି (ଯେହେତୁ) ଏଷାଂ (ଏମାନଙ୍କର) ପିତରଃ (ସ୍ୱର୍ଗତ ପିତା-ପିତାମହମାନେ) ଲୁପ୍ତପିଣ୍ଡୋଦକକ୍ରିୟାଃ (ପିଣ୍ଡ ଓ ତର୍ପଣ ଜଳ ନ ପାଇ) ପତନ୍ତି (ନରକରେ ପଡ଼ନ୍ତି) ।

**ଅନୁବାଦ**

ହେ କୃଷ୍ଣ, ଅଧର୍ମ ବ୍ୟାପିବାଫଳରେ ବିଶେଷରେ କୁଳବଧୂମାନେ ବ୍ୟଭିଚାରିଣୀ ହୋଇଯାନ୍ତି । ଦୂଷିତା ସ୍ତ୍ରୀମାନଙ୍କଠାରୁ ବର୍ଣ୍ଣସଙ୍କର ଜାତ ହୁଅନ୍ତି । ବର୍ଣ୍ଣସଙ୍କରମାନେ କୁଳଧର୍ମକୁ କି ସମ୍ମାନ ଦେଇପାରିବେ ? ଏହି ମାରାତ୍ମକ ସାଂକର୍ଯ୍ୟ, ସମ୍ପୃକ୍ତ କୁଳ ଓ କୁଳନାଶକାରୀ ଉଭୟଙ୍କୁହିଁ ନରକକୁ ଟାଣିନିଏ । ଏମାନଙ୍କର ପିତୃପିତାମହମାନେ ପିଣ୍ଡ ଓ ପିଣ୍ଡଜଳ ନ ପାଇ ନରକଗାମୀ ହୋଇଥାନ୍ତି ।

**ବିଶେଷ ଭାଷ୍ୟ**

ବର୍ଣ୍ଣସଙ୍କର—ମହାଭାରତ-କାଳକୁ ବା ଗୀତାରଚନା-କାଳକୁ ଭାରତର ମାଟିରେ, ଆର୍ଯ୍ୟ-ଅନାର୍ଯ୍ୟର ରକ୍ତ ସମାଜର ଉଚ୍ଚତମ ସ୍ଥାନରେ ମଧ୍ୟ ମିଶି-ସାରିଲାଣି । ନଚେତ୍, ଗୋରା ଆର୍ଯ୍ୟସମାଜରେ, ଏହି ମହାଭାରତ-ମହାକାବ୍ୟରହିଁ ରଚୟିତା କୃଷ୍ଣ(କାଳିଆ)-ଦ୍ୱୈପାୟନ (ବ୍ୟାସ) ଆସିଲେ କୁଆଡ଼ୁ ? ଭୀମ-ଅର୍ଜ୍ଜୁନାଦି ଦେଶଦେଶାନ୍ତରରେ ବୁଲୁ ବୁଲୁ ଉଲୂପୀ, ହିଡ଼ିମ୍ବିକା ପ୍ରଭୃତି ଯେଉଁ ସ୍ତ୍ରୀରତ୍ନମାନଙ୍କୁ ଗ୍ରହଣ କରିନେଇଥିଲେ, ସେମାନେ କି ଆର୍ଯ୍ୟ ? କିନ୍ତୁ ପାଣ୍ଡବ-ବୀରମାନଙ୍କର ଏପ୍ରକାର ମିଳନଜାତ ସନ୍ତାନମାନେ, ମହାଭାରତରେ କଣ ଘୃଣ୍ୟ 'ବର୍ଣ୍ଣସଙ୍କର'ବୋଲି କେଉଁଠି କୁହାଯାଇଛନ୍ତି ? ବରଂ ବର୍ଣ୍ଣସଙ୍କର

କୃଷ୍ଣ-ଦ୍ୱୈପାୟନ (କାଳିଆ ବ୍ୟାସଦେବ) ସମଗ୍ର ହିନ୍ଦୁସଂସ୍କୃତିର ବରିଷ୍ଠ ମହାନ୍ ପ୍ରତିଷ୍ଠାତା ବୋଲି ଧରାଯାଉଛନ୍ତି । ଏପରିକି, ଏହି 'ବର୍ଣ୍ଣସଂକରତା' ନାମକ 'ଅଧର୍ମ' ବିରୁଦ୍ଧରେ ଯିଏ ଏଠି କହୁଛନ୍ତି, ସେହି ଅର୍ଜୁନ ନିଜେହିଁ ଏକ 'ବର୍ଣ୍ଣ-ସଂକର' । ଆର୍ଯ୍ୟରାଜା ଶାନ୍ତନୁଙ୍କ-ଔରସ-ଓ-କେଉଟୁଣୀ-ସତ୍ୟବତୀଙ୍କ-ଗର୍ଭ-ଜାତ ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ହେଉଛନ୍ତି ତାଙ୍କର ପ୍ରତ୍ୟକ୍ଷ ଗୋସେଇଁବାପ । ତଥା-କଥିତ 'ପାଣ୍ଡବମାନେ' ପୁଣି ବାପ ପଣ୍ଡୁଙ୍କ ଆଉ୍ରୁ ଜନ୍ମ ନ ହୋଇ ପାଞ୍ଚଟି ଭିନ୍ନ ଭିନ୍ନ ବାପଠୁ ଜାତ । ତେଣୁ ଅର୍ଜୁନ ନିଜେ 'ବର୍ଣ୍ଣସଂକର' ଥାଇ ସେ ଦୋଷ-ପାଇଁ ଆତଙ୍କିତ ହେଉଛନ୍ତି କାହିଁକି ? ଛାନ୍ଦୋଗ୍ୟୋପନିଷଦର ପ୍ରସିଦ୍ଧ ଓ ମନୋଜ୍ଞ ସତ୍ୟକାମ-ଜାବାଲର କାହାଣୀ ମଧ୍ୟ ପାଠକେ ସ୍ମରଣ କରନ୍ତୁ । ଏହି ଜାବାଲ ଦାସୀପୁତ୍ର, ଅର୍ଥାତ୍ ଇଂରାଜୀରେ ଯାହାକୁ କୁହାଯାଏ ବାଷ୍ଟାର୍ଡ଼ (bastard) । କିନ୍ତୁ ସେ ନିଜର ଜନ୍ମସମ୍ପର୍କରେ ଏହି ସତ୍ୟକଥା କହିବାରୁହିଁ ମହାପ୍ରାଣ ବ୍ରାହ୍ମଣ ଆଚାର୍ଯ୍ୟ ଗୌତମ 'ସତ୍ୟକାମ' ନାମ ଦେଇ ତାକୁ ବ୍ରାହ୍ମଣବାଳକର ସମ୍ମାନ କେବଳ ଦେଲେନି, ଅଣବାବୁଆ ସେହି ଜାବାଳ, ପରେ ଜଣେ ମହାତ୍ମା, ମହାଋଷି ହୋଇଉଠିଲେ । ଏଥିରୁ ଜଣାପଡୁଛି ଯେ, ପ୍ରଜନନ ଦିଗରୁ 'ବର୍ଣ୍ଣ-ସଂକରତା' ହୁଏତ ଆଦୌ ଦୋଷ ନୁହେଁ । ସମଗ୍ର ଇଂରେଜ ଜାତିଟାହିଁ ହେଲା ଏକ 'ବର୍ଣ୍ଣସଂକର' ଜାତି ।

'ଲୁପ୍ତପିଣ୍ଡୋଦକକ୍ରିୟା'ର ତାତ୍ପର୍ଯ୍ୟ ଏହି ଯେ, ପିତୃପୁରୁଷମାନେ କେବଳ ପ୍ରକୃତ କୁଳନନ୍ଦନର ଶ୍ରଦ୍ଧାସହିତ ନିବେଦିତ (ଶ୍ରାଦ୍ଧ) ପିଣ୍ଡ ଓ ଜଳହିଁ ଗ୍ରହଣ କରିଥାନ୍ତି । କୁଳ-ବହିର୍ଗତ ଯୌନ-ସମ୍ପର୍କ-ଜାତ ବାଷ୍ଟାର୍ଡ ବା ସଂକର-ସନ୍ତାନର ପିତୃପୁରୁଷଙ୍କୁ ପିଣ୍ଡୋଦକ ଦାନର ଅଧିକାର ନାହିଁ । ମାନିବାକୁ ହେବ ଯେ, ଏପ୍ରକାର ବିଧାନ 'କୁଳ-ଧର୍ମ' ବା ପାରିବାରିକ ପରଂପରାର ବିଶୁଦ୍ଧତା ରକ୍ଷା କରିବାରେ ବିଶେଷ ସହାୟକ । ଏଥିରେ, ବିଶେଷକରି ନାରୀ-ଜନମାନଙ୍କର ଗୃହସ୍ଥିକ ଶୁଦ୍ଧତାପ୍ରତି ଦୃଷ୍ଟି ରଖାଯାଇଛି ଏବଂ ଇତିହାସର ସବୁ ଯୁଗରେ ଏବଂ ସବୁ ଦେଶ ଓ ସମାଜରେ ଜାତୀୟ ଓ ପାରିବାରିକ ଜୀବନର ଶୁଦ୍ଧତା ଓ ଶୋଭନୀୟତା ଯେ ନାରୀର ସଂଯମ ଓ ସମ୍ଭ୍ରମ-ବୋଧ ଏବଂ ପରମ୍ପରା-ବହନ-କରି-ରଖିବାର-ପ୍ରବୃତ୍ତିଉପରେହିଁ ଏକାନ୍ତ ନିର୍ଭର କରେ, ଏହା ମଧ୍ୟ ନିଃସନ୍ଦେହ । ତେଣୁ ଅର୍ଜୁନଙ୍କ ମୁଖରେ, ଗୀତା ଏଠାରେ ଯେ ଏକ ଶାଶ୍ୱତ ଓ ସାର୍ବଜନୀନ ସାମାଜିକ ସତ୍ୟ ଘୋଷଣା କରିଛନ୍ତି, ଏଥିରେ ଦ୍ୱିମତ ନ ଥାଇପାରେ ।

କିନ୍ତୁ ଜୈବ ସାଂକର୍ଯ୍ୟ ସ୍ଥାନରେ 'ସାଂସ୍କୃତିକ ସାଂକର୍ଯ୍ୟ'ହିଁ ଜାତିର ଅଧଃପତନର କପର ପ୍ରତ୍ୟକ୍ଷ କାରଣ ହୋଇଉଠେ, ସ୍ୱାଧୀନତୋତ୍ତର ଭାରତବର୍ଷହିଁ ତାର ଉତ୍କୃଷ୍ଟ ପ୍ରମାଣ । ଭାରତର ବର୍ଣ୍ଣାଶ୍ରମ ଏକ ମନୋଜ୍ଞ ଓ ସ୍ୱାସ୍ଥ୍ୟସମ୍ପନ୍ନ ସାମାଜିକ ସଂସ୍କୃତିର ପ୍ରତୀକ ଥିଲା । ସ୍ତ୍ରୀଜୀବନର ପବିତ୍ରତା ଓ ତରୁଣ ସମାଜର ଗୁରୁଜନମାନଙ୍କୁ ସମ୍ମାନ ଯେକୌଣସି ସୁସ୍ଥ ସମାଜର ଆଦ୍ୟ ଲକ୍ଷଣ । ଅଥଚ, ଅର୍ଜ୍ଜୁନ ବର୍ତ୍ତମାନ ଗୁରୁଜନମାନଙ୍କୁ ଆଘାତ ଓ ହତ୍ୟା କରିବାକୁ ଯାଉଛନ୍ତି । ପୁଣି ଗତ ଦୁଇ ବିଶ୍ୱଯୁଦ୍ଧ ପରିଷ୍କାର ପ୍ରମାଣ କରିଦେଉଛି ଯେ, ଯୁଦ୍ଧଫଳରେ ସର୍ବତ୍ର ଓ ସବୁ କାଳରେ, ଯୌନ ବ୍ୟଭିଚାର ପରିବ୍ୟାପ୍ତ ହୋଇଉଠେ ଏବଂ ଘୋର ସାମାଜିକ ଅସ୍ଥିରତା ଦେଖା ଦିଏ । ଧୀମାନ୍ ଅର୍ଜ୍ଜୁନ ସାଧାରଣ ସୈନିକ ବା ସେନାପତି ନ ଥିଲେ । ସେ କେବଳ ଭାରତୀୟ ସଂସ୍କୃତିର ନୁହେଁ, ଜିଜ୍ଞାସାକାତର ନିଖିଳ ମନୁଷ୍ୟଜାତିର ମଧ୍ୟ ପ୍ରତୀକରୂପେ ଦଣ୍ଡାୟମାନ । ଆମର ଆଧ୍ୟାତ୍ମିକ ଜ୍ଞାନ, ଆମର ଦୈନନ୍ଦିନ ଜୀବନ ବା ଆମର ଦେଶ ଓ କାଳର ଅଭିଜ୍ଞତାରୁହିଁ ଜାତ ହୁଏ । ଅର୍ଜ୍ଜୁନ ଯେଉଁ ସମାଜ ଓ ସଭ୍ୟତାରେ ଜାତ ହୋଇଛନ୍ତି, ଯେଉଁ ସଂକଟର ସେ ବର୍ତ୍ତମାନ ସମ୍ମୁଖୀନ, ତାଙ୍କର ଜିଜ୍ଞାସାସବୁ ସେହି ଭାବକଳ୍ପ ଓ ଘଟଣାମାନଙ୍କୁ ଧରି ଉଠିବାହିଁ ଏକାନ୍ତ ସ୍ୱାଭାବିକ ।

ପ୍ରତ୍ୟେକ ଧର୍ମରେ ସାଧାରଣଙ୍କପାଇଁ ଗୁଡ଼ାଏ 'ଆଚାର' ଥାଏ । ଏଠାରେ ଅର୍ଜ୍ଜୁନ-କଥିତ 'ପିଣ୍ଡୋଦକକ୍ରିୟା' ସେହି ଶ୍ରେଣୀର । କିନ୍ତୁ ପ୍ରକୃତ ଆଧ୍ୟାତ୍ମିକ ବିକାଶ ସମ୍ଭବ ହୁଏ ଆଚାର-ପାଳନଦ୍ୱାରା ନୁହେଁ— କେବଳ 'ବିଚାର' ଓ ବିଚାର-ପ୍ରତିଷ୍ଠ କ୍ରିୟା ଦେଇ । ଦୁଇଟିମାତ୍ର ଶ୍ଳୋକପରେ, ଅର୍ଜ୍ଜୁନଙ୍କର "ଇତି ଅନୁଶୁଶ୍ରୁମ" (ମୁଁ ଏହା ଶୁଣିଛି) କଥାଟି, କେବଳ ଲୋକାଚାର ବା ଜନତା-ବିଶ୍ୱାସକୁହିଁ ବୁଝାଉଛି । କିନ୍ତୁ ଭଗବଦ୍‌ଗୀତା ଲୋକ-ବିଶ୍ୱାସ ବା ଲୋକାଚାରକୁ ପ୍ରଶ୍ରୟ ଦେଉଥିବା ଏକ ତଥାକଥିତ ଧର୍ମଶାସ୍ତ୍ରମାତ୍ର ନୁହେଁ । ଏହା ନିଖିଳ ମାନବାତ୍ମାର ଉଦାରମୁକ୍ତିର ଗାଥା । ସର୍ବତ୍ର, ଏପ୍ରକାର ମୁକ୍ତିର ପ୍ରାକ୍-ଅବସ୍ଥାହିଁ ହେଉଛି ବିଷାଦ, ନୈରାଶ୍ୟ, ପ୍ରଶ୍ନ ଓ ଜଡ଼ତା । ସକଳ ମହାପୁରୁଷଙ୍କ ଜୀବନର ପ୍ରମାଣ ଏହି ଯେ, ତାଙ୍କ ଜୀବନରେ ପରେ ଦେଖା ଦେଇଥିବା ଦିବ୍ୟାଲୋକ ତାଙ୍କର ସେହି ବ୍ୟକ୍ତିଗତ ପ୍ରାଣମୟ ବିଷାଦ ଓ ବ୍ୟାକୁଳ ଜିଜ୍ଞାସାର ଅନ୍ଧକାରରୁହିଁ ଫୁଟିଉଠିଛି । ସାରା ଗୀତାଟି ତେଣୁ ଅର୍ଜ୍ଜୁନଙ୍କ ପ୍ରତୀକ-ବିଷାଦରୁ-ଉଦ୍‌ଭୂତ ଏକ ଦିବ୍ୟାଲୋକର ମହାଗ୍ରନ୍ଥ । ଏହା ନିଷ୍ଠୁର କୁଳଧର୍ମ ବା ଆଚାରସର୍ବସ୍ୱ ଧର୍ମ-ସଂସ୍ଥାପନା କରିବାପାଇଁ ଲେଖା ହୋଇ ନ ଥିଲା ।

**୪୩-୪୪**

ଦୋଷୈରେତୈଃ କୁଳଘ୍ନାନାଂ ବର୍ଣ୍ଣସଙ୍କରକାରକୈଃ
ଉତ୍ସାଦ୍ୟନ୍ତେ ଜାତିଧର୍ମାଃ କୁଳଧର୍ମାଶ୍ଚ ଶାଶ୍ୱତାଃ । ୪୩ ।
ଉତ୍ସନ୍ନକୁଳଧର୍ମାଣାଂ ମନୁଷ୍ୟାଣାଂ ଜନାର୍ଦ୍ଦନ
ନରକେ ନିୟତଂ ବାସୋ ଭବତୀତ୍ୟନୁଶୁଶ୍ରୁମ । ୪୪ ।

କୁଳଘ୍ନାନାଂ (କୁଳନାଶକାରୀମାନଙ୍କର) ଏତୈଃ (ଏହିସବୁ) ବର୍ଣ୍ଣସଂକର-କାରକୈଃ ଦୋଷୈଃ (ଦୋଷ, ଯାହା ସମାଜରେ ବର୍ଣ୍ଣସଙ୍କର ସୃଷ୍ଟି କରନ୍ତିଲେ) [ତା ଫଳରେ] ଶାଶ୍ୱତାଃ (ସନାତନ) ଜାତିଧର୍ମାଃ କୁଳଧର୍ମାଃ ଚ (ଜାତିଧର୍ମ ଓ କୁଳଧର୍ମ ଆଦି) ଉତ୍ସାଦ୍ୟନ୍ତେ (ଲୁପ୍ତ ହୁଅନ୍ତି) । [ହେ] ଜନାର୍ଦ୍ଦନ (ଶ୍ରୀକୃଷ୍ଣ) ଉତ୍ସନ୍ନକୁଳଧର୍ମାଣାଂ (ଯେଉଁମାନଙ୍କର କୁଳଧର୍ମ ଉତ୍ସନ୍ନ ହୋଇଯାଏ) ମନୁଷ୍ୟାଣାଂ (ଏପରି ଲୋକମାନଙ୍କର) ନିୟତଂ (ଚିରକାଳ) ନରକେ ବାସଃ ଭବତି (ନରକରେ ରହଣି ହୁଏ), ଇତି ଅନୁଶୁଶ୍ରୁମ (ଏହାହିଁ ଆମ୍ଭେମାନେ ଶୁଣିଛୁଁ) ।

**ଅନୁବାଦ**

ଏହିସବୁ ଦୋଷ, ଯାହାହିଁ ସମାଜରେ (ଧର୍ମୀୟ, ସାଂସ୍କୃତିକ ଓ ଦୈହିକ) 'ସାଙ୍କର୍ଯ୍ୟ' ସୃଷ୍ଟି କରିଥାଏ, ଯା ଫଳରେ କ ସନାତନ ଜାତିଧର୍ମ ଓ କୁଳଧର୍ମ ଉଭୟ ବିଲୋପପ୍ରାପ୍ତ ହୋଇଯାଏ । ହେ ଶ୍ରୀକୃଷ୍ଣ, ଏପ୍ରକାର ନଷ୍ଟ-କୁଳଧର୍ମ ଲୋକମାନଙ୍କର ଚିରକାଳ ନରକବାସ ହୋଇଥିବାରହିଁ, ମୁଁ ଶୁଣିଛି ।

**୪୫-୪୬**

ଅହୋବତ ମହତ୍ ପାପଂ କର୍ତ୍ତୁଂ ବ୍ୟବସିତା ବୟଂ
ଯଦ୍ରାଜ୍ୟସୁଖଲୋଭେନ ହନ୍ତୁଂ ସ୍ୱଜନମୁଦ୍ୟତାଃ । ୪୫ ।
ଯଦି ମାମପ୍ରତୀକାରମଶସ୍ତ୍ରଂ ଶସ୍ତ୍ରପାଣୟଃ
ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍ତନ୍ମେ କ୍ଷେମତରଂ ଭବେତ୍ । ୪୬ ।

ଅହୋବତ (ଓହୋ), ବୟଂ (ଆମେ) ମହତ୍ ପାପଂ କର୍ତ୍ତୁଂ ବ୍ୟବସିତାଃ (ମହାପାପ ଯେ କରିବାକୁ ବସିଛେଁ ! ) ଯତ୍ (ଯେହେତୁ) ରାଜ୍ୟସୁଖଲୋଭେନ (ରାଜ୍ୟ ଓ ସୁଖ ଲୋଭରେ) [ଆମେ] ସ୍ୱଜନଂ (ନିଜ ଲୋକଙ୍କୁ) ହନ୍ତୁମ୍ ଉଦ୍ୟତାଃ (ମାରିପକେଇବାକୁ ଉଦ୍ୟତ) । ଯଦି ଅପ୍ରତୀକାରମ୍ (ପ୍ରତିରୋଧ କରୁ ନ ଥିବା) [ଏବଂ] ଅଶସ୍ତ୍ରଂ (କୌଣସି ଶସ୍ତ୍ର ବା ହତିଆର ଧାରଣ କରୁ ନ ଥିବା) ମାଂ (ମତେ) ଶସ୍ତ୍ରପାଣୟଃ ଧାର୍ତ୍ତରାଷ୍ଟ୍ରାଃ (ନାନା ହତିଆରରେ ସଜ୍ଜିତ ଧୃତରାଷ୍ଟ୍ରଙ୍କ

ପୁତ୍ରମାନେ) ରଣେ ହନ୍ୟୁଃ (ଏହି ଯୁଦ୍ଧରେ ମାରିପକାନ୍ତି) ତତ୍ ମେ (ତାହା, ମୋର) କ୍ଷେମତରଂ ଭବେତ୍ (ଅଧିକତର କଲ୍ୟାଣଜନକ ହେବ )।

## ଅନୁବାଦ

ଆହା, ଆମେ ତା ହେଲେ କି ବଡ଼ ପାପ କରିବାକୁ ନ ବସିଛୁଁ ! ଆମେ ରାଜ୍ୟ ଓ ବଞ୍ଚିବାର ସୁଖାଶାରେହିଁ, ନିଜ ପରିବାରର ଲୋକଙ୍କୁ ମଧ୍ୟ ମାରିବାକୁ ଯାଉଛୁଁ । ଏହା ଅପେକ୍ଷା ଆମେ ବରଂ ଶସ୍ତ୍ର ତ୍ୟାଗ କରୁଁ, ଏବଂ ଶସ୍ତ୍ରଧାରୀ ଧାର୍ତ୍ତରାଷ୍ଟ୍ରମାନେ ଆସନ୍ତୁ, ଅପ୍ରତିରୋଧକାରୀ ଓ ଅଶସ୍ତ୍ର ଆମ୍ଭମାନଙ୍କୁ ଅବାଧରେ ମାରିପକାନ୍ତୁ । ହେ ଶ୍ରୀକୃଷ୍ଣ, ତାହା ବରଂ ଅଧିକ କଲ୍ୟାଣପ୍ରଦ କର୍ମ ହୁଅନ୍ତା ବୋଲି ମୁଁ ଭାବୁଛି ।

### ୪୭

ସଞ୍ଜୟ ଉବାଚ

ଏବମୁକ୍ତ୍ୱାର୍ଜ୍ଜୁନଃ ସଂଖ୍ୟେ ରଥୋପସ୍ଥ ଉପାବିଶତ୍
ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ । ୪୭ ।

ସଞ୍ଜୟ ଉବାଚ (ସଞ୍ଜୟ କହିଲେ) । ଅର୍ଜ୍ଜୁନଃ (ଅର୍ଜ୍ଜୁନ) ଏବଂ (ଏପ୍ରକାର) ଉକ୍ତ୍ୱା (କହି) ସଂଖ୍ୟେ (ଯୁଦ୍ଧରେ) ସଶରଂ (ଶରସହିତ) ଚାପଂ (ଧନୁକୁ) ବିସୃଜ୍ୟ (ତ୍ୟାଗ କରି) ଶୋକସଂବିଗ୍ନମାନସଃ (ଶୋକାକୁଳଚିତ୍ତ ହୋଇ) ରଥୋପସ୍ଥ (ରଥରେ ଥିବା ଆସନଉପରେ) ଉପାବିଶତ୍ (ବସିପଡ଼ିଲେ) ।

## ଅନୁବାଦ

ସଂଜୟ କହିଲେ, ହେ ରାଜନ୍, ଅର୍ଜ୍ଜୁନ ଏପ୍ରକାର ବଚନସବୁ କହି ନିଜର ଉଠେଇଥିବା ଧନୁ ଓ ଶରକୁ ପୁଣି ତଳେ ଥୋଇଦେଇ, ଶୋକାଭିଭୂତ ହୋଇ ସେହି ରଥରେ ଚୁପ୍ ହୋଇ ବସିରହିଲେ ।

---

ଇତି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ଅର୍ଜ୍ଜୁନବିଷାଦଯୋଗୋନାମ ପ୍ରଥମୋଽଧ୍ୟାୟଃ ।

## ବିଶେଷ ଭାଷ୍ୟ

ଏହି ବାକ୍ୟ, ଗୀତାର ପ୍ରତି ଅଧ୍ୟାୟର ଶେଷରେ ଥିବାର ପାଠକେ ଦେଖିବେ । କିନ୍ତୁ ଏହା କେବଳ ଏକ ଆଚାରଗତ ବିଧିମାତ୍ର ନୁହେଁ । ଏହା ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ।

ଏହି ବାକ୍ୟଟି, ଗୀତା କଣ ଏବଂ କାହିଁକି ଗମ୍ଭୀରଭାବରେ ଅଧୀତବ୍ୟ, ତାହାରହିଁ ବ୍ୟାପକ ସୂଚନା ।

ଗୀତା କଣ ? କି ବିଦ୍ୟା ସେ ? ଗଣିତ, ସାହିତ୍ୟ, ବିଜ୍ଞାନ ନା ଭୂଗୋଳ ? ସେ ବିଦ୍ୟା ପଢ଼ି ବା ପାଠକର କି ଲାଭ ? ଏହି ଗୋଟିଏ ବାକ୍ୟରେହିଁ ସବୁ ଉତ୍ତର ପାଇବେ ପାଠକେ ।

ଗୀତା ହେଲା 'ବ୍ରହ୍ମବିଦ୍ୟା' । ବ୍ରହ୍ମବିଦ୍ୟା ବା ଉପନିଷଦ୍, ଏ ଜୀବନ ଓ ଏ ସୃଷ୍ଟିର ମୂଳ ରହସ୍ୟ ଉଦ୍‌ଘାଟନ କରେ । ଏଇ ଯେ ଚିର-ପ୍ରବହମାନ ସଂସାର-ଶୋଭାଯାତ୍ରା ଉତ୍‌ଥାନ ଓ ବିଲୟ ନେଇ ଅବିଚ୍ଛିନ୍ନଭାବରେ ଚାଲିଛି, କଣ ଏହାର ତାତ୍ପର୍ଯ୍ୟ ? ଅହରହ-ଲୟ-ପ୍ରାପ୍ତ ଏହି ସୃଜନ-ଲୀଳା ପଛରେ ଆଉ କିଛି ପ୍ରକୃତ ଓ ଚିରନ୍ତନ ସତ୍ୟ ଅଛି କି ?

ଭାରତୀୟ ଋଷିମାନେ ଚିରକ୍ଷୟିଷ୍ଣୁ ସଂସାରର ପଛରେ ଏକ ଶାଶ୍ୱତ ସତ୍ୟ ଆବିଷ୍କାର କରିଥିଲେ ଏବଂ ଅଦୃଶ୍ୟ ରହିଥିବା ସେହି ଚିରନ୍ତନ ସତ୍ୟର ନାମ ଦେଇଥିଲେ "ବ୍ରହ୍ମ" । ଉପନିଷଦ୍‌ସବୁ ସେହି ବ୍ରହ୍ମାଲୋଚନାର ଗ୍ରନ୍ଥମାଳା । "ଅଥାତୋ ବ୍ରହ୍ମଜିଜ୍ଞାସା ।" ଚାଲ, ଏଥର 'ବ୍ରହ୍ମ କଣ', ଜାଣିବାକୁ ଚେଷ୍ଟା କରିବା । ସମଗ୍ର ଉପନିଷଦ୍‌ମାଳା ଏହି 'ବ୍ରହ୍ମ-ଜିଜ୍ଞାସା'ରହିଁ ଉତ୍ତର ।

ଗୀତା ଏକ ଉପନିଷଦ୍ ଏବଂ ଏହା ସକଳ ଉପନିଷଦ୍ ପରି 'ବ୍ରହ୍ମବିଦ୍ୟା'ରହିଁ ଗ୍ରନ୍ଥ ।

'ବ୍ରହ୍ମ' ନିରାକାର ଓ ନିର୍ଗୁଣ । ଭାରତୀୟ ଜନଚିନ୍ତା ବୈଦିକ ଋଷିମାନଙ୍କର ଏହିପ୍ରକାର ନୈର୍ବ୍ୟକ୍ତିକ ଧାରଣାକୁ ବେଶୀ ଦିନ ସହ୍ୟ କରି-ପାରିଲାନି । ତାହା ଏକ ବ୍ୟକ୍ତିତ୍ୱବାନ୍ ଈଶ୍ୱର ଖୋଜିଲା । ଏହି ଅଭିପ୍ସାର ଉତ୍ତର ବୋଧ ହୁଏ ଏହି ଭଗବଦ୍‌ଗୀତା ଓ ଶ୍ୱେତାଶ୍ୱତର ଉପନିଷଦ୍ । ଶ୍ୱେତାଶ୍ୱତର ଉପନିଷଦ୍ ଶିବଙ୍କୁ କେନ୍ଦ୍ର କରି ରଚିତ । ଗୀତା, ବିଷ୍ଣୁଙ୍କୁ ବା ବିଷ୍ଣୁଙ୍କ ଅବତାର ଶ୍ରୀକୃଷ୍ଣଙ୍କୁ କେନ୍ଦ୍ର କରି ରଚିତ । ଶ୍ୱେତାଶ୍ୱତରରେ ଶିବ ବିଶେଷଭାବରେ ଈଶ, ଈଶାଣ ବା ଈଶ୍ୱର ଭାବରେ ବର୍ଣ୍ଣିତ । ଗୀତାର ଦେବତାଙ୍କର ରୂଢ଼ି-ନାମ ହେଲା 'ଭଗବତ୍'—'ଯେ ସକଳ ଐଶ୍ୱର୍ଯ୍ୟମୟ' ବା 'ସକଳ ଐଶ୍ୱର୍ଯ୍ୟର ଉତ୍ସ' । ସେହି ଭଗବାନ ବା ଭଗବତ୍‌ଙ୍କର ମହିମା ଯେଉଁ ଗ୍ରନ୍ଥରେ ଗୀତ ହୋଇଛି, ସେ ହେଲା "ଭଗବଦ୍‌ଗୀତା" । ଗୀତା, ପୂର୍ବର "ବ୍ରହ୍ମ" ଏବଂ ଏହି ନୂତନ "ଭଗବତ୍" ଏକା ବୋଲି ପ୍ରମାଣ ବା ବର୍ଣ୍ଣନା କରିଛି । ତେଣୁହିଁ ତାହା ଏକାଧାରରେ ବ୍ରହ୍ମବିଦ୍ୟା, ଉପନିଷଦ୍ ଏବଂ ଭଗବତ୍-ମହିମା-ପ୍ରଚାରକ

ଗ୍ରନ୍ଥ ବା ଭଗବଦ୍‌ଗୀତା । ଯଦିବା ମାନିଲୁଁ, ବ୍ରହ୍ମ ବା ଭଗବାନ ଅଛନ୍ତି; କିନ୍ତୁ ତାଙ୍କୁ ଆମେ ପାଇବା କିପରି ?

ତାର ପନ୍ଥା ହେଲା 'ଯୋଗ'—ଯାହା ମନୁଷ୍ୟକୁ ଈଶ୍ବରଙ୍କ ସହିତ ବା କ୍ଷୁଦ୍ର ଜୀବାତ୍ମାକୁ ନିଖିଳ ବିଶ୍ୱାତ୍ମା ସହିତ ମିଶାଇ ପାରିଥାଏ । ଏହି 'ଯୋଗ' ତିନିପ୍ରକାର—କର୍ମ, ଜ୍ଞାନ ଓ ଭକ୍ତି । ଭଗବଦ୍‌ଗୀତାରେ ଏ ତ୍ରିବିଧ ଯୋଗର ତାତ୍ପର୍ଯ୍ୟ ବିଶଦଭାବରେ ବତେଇଦିଆଯାଇଛି । ତେଣୁହିଁ ଭଗବଦ୍‌ଗୀତା ଯେପରି ଯଥାର୍ଥରେ 'ବ୍ରହ୍ମବିଦ୍ୟା'ର ଗ୍ରନ୍ଥ ବା 'ଉପନିଷଦ୍', ସେହିପରି ଯଥାର୍ଥରେ ମଧ୍ୟ 'ଯୋଗଶାସ୍ତ୍ର' । ଅର୍ଥାତ୍ ଗୀତା ଆମ ଆଗରେ କେବଳ ନିରର୍ଥକ ବ୍ରହ୍ମଜ୍ଞାନ ଆଲୋଚନା କରୁନି, ଗୀତା ଆମକୁ ବ୍ରହ୍ମୋପଲବ୍‌ଧିର ମାର୍ଗ ମଧ୍ୟ ବତାଇ-ଦେଇଛି ।

ତେଣୁ ପାଠକ-ପାଠିକା ମନେ ରଖିବେ ଯେ, କେବଳ ଗୀତାର ଦୈନନ୍ଦିନ ପାରାୟଣ ଆଦୌ ଯଥେଷ୍ଟ ନୁହେଁ । ଗୀତା-ପ୍ରଦର୍ଶିତ ଯୋଗମାର୍ଗ ଯେପର୍ଯ୍ୟନ୍ତ ଆମେ ଆନ୍ତରିକତାର ସହିତ ଆମ ଦୈନନ୍ଦିନ ଜୀବନରେ ଅନୁସରଣ ନ କରିଛୁଁ, ସେପର୍ଯ୍ୟନ୍ତ କେବଳ ବାଚିକ ପାରାୟଣ ସମ୍ପୂର୍ଣ୍ଣ ଅର୍ଥହୀନ ।

ସେ ଯାହା ହେଉ, ଗୀତାର ପ୍ରତ୍ୟେକଟି ଅଧ୍ୟାୟର ବାଚିକ ପାରାୟଣ ପରେ ମଧ୍ୟ

"ଶ୍ରୀମଦ୍‌ଭଗବଦ୍‌ଗୀତାସୁ, ଉପନିଷତ୍‌ସୁ, ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ" ଇତ୍ୟାଦି ବାକ୍ୟାଂଶଗୁଡ଼ିକର ଗଭୀର ତାତ୍ପର୍ଯ୍ୟ ମଧ୍ୟ ପାଠକେ ବରାବର ଅବବୋଧରେ ରଖିବେ ବୋଲି ଆଶା ।

# ଦ୍ୱିତୀୟ ଅଧ୍ୟାୟ

## ସାଂଖ୍ୟ ଯୋଗ

### ଅଧ୍ୟାୟ-ଦୀପିକା

ଏହି ଅଧ୍ୟାୟଟିର ବିଷୟ ପାଞ୍ଚ ଭାଗରେ ବିଭକ୍ତ । ୧ରୁ ୧୦ ଶ୍ଳୋକରେ ଶ୍ରୀକୃଷ୍ଣ ଅର୍ଜୁନଙ୍କର ଭୟ ଓ ବିଷାଦକୁ ଭର୍ତ୍ସନା କରିଛନ୍ତି । ୧୧ରୁ ୩୦ ଶ୍ଳୋକରେ ମୃତ୍ୟୁର ତାତ୍ପର୍ଯ୍ୟ ଓ ଆମଭିତରେ ଥିବା ଦେହାତ୍ମଭେଦ ବର୍ଣ୍ଣିତ । ୩୧ରୁ ୩୮ ଶ୍ଳୋକ, ଫଳାକାଙ୍କ୍ଷା ନରଖି କର୍ତ୍ତବ୍ୟ କର୍ମ କରିଯିବାର ଉପଦେଶ । ୩୯ରୁ ୭୨ ପର୍ଯ୍ୟନ୍ତ ସ୍ଥିରବୁଦ୍ଧିସଂପନ୍ନ ଆଦର୍ଶ ମାନବର ବର୍ଣ୍ଣନା ।

ଶ୍ରୀକୃଷ୍ଣ, ସହସା ଅର୍ଜୁନଙ୍କଠାରେ, ପ୍ରଥମ ଅଧ୍ୟାୟରେ ବର୍ଣ୍ଣିତ ରଣ-ପରାଙ୍ମୁଖତା ବା ସ୍ୱକର୍ତ୍ତବ୍ୟବିମୁଖତା ଦେଖି, ପ୍ରଥମେ ବିସ୍ମିତ ହେଲେ ଏବଂ ପରେ ଭର୍ତ୍ସନାର ସହିତ ତାଙ୍କୁ ବୁଝେଇବା ଆରମ୍ଭ କଲେ । ସେ ପ୍ରଥମେ 'ମୃତ୍ୟୁ'ର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ, ପ୍ରକୃତରେ କିଏ ବା କଣ ମରେ, ତାହା ବ୍ୟାଖ୍ୟା କଲେ । ସେ କହିଲେ ଯେ, ମୃତ୍ୟୁରେ ନାଶ ହୁଏ କେବଳ ଜୀବର ନଶ୍ୱର ଶରୀରଟା । ଶରୀରତଳେ ଏକ ଶାଶ୍ୱତ ବସ୍ତୁ ଅଛି, ଯାହାହିଁ ପ୍ରକୃତ ଜୀବନ । ତାହା ମରେ ନାହିଁ ବା ତାକୁ କେହି ମାରିଦେଇପାରିବନି । ପରନ୍ତୁ, ଶରୀରଟା ତ ଯେକୌଣସିମତେ ନାଶ ହେବ ହିଁନେ ; ତେଣୁ ତାର ବିନାଶପାଇଁ ଦୁଃଖିତ ହେବାର କଣ ଅଛି ? ବରଂ ସେ (ଅର୍ଜୁନ) ଅନାସକ୍ତଭାବରେ ତାଙ୍କର କର୍ତ୍ତବ୍ୟ କର୍ମ କରିଯିବା ଉଚିତ ଯେପରି ମହାଜନମାନେ ସାଧାରଣତଃ କରିଥାନ୍ତି । ଅର୍ଜୁନ ଏହିପ୍ରକାର ଆଦର୍ଶ ପୁରୁଷମାନଙ୍କର ବର୍ଣ୍ଣନା ଶୁଣିବାକୁ ଚାହିଁଲେ ଶ୍ରୀକୃଷ୍ଣ ତାହା ପୂରଣ କଲେ ଏବଂ ତାଙ୍କୁ, ସେହି ମହାତ୍ମାମାନଙ୍କ ଆଦର୍ଶରେ, "ବୁଦ୍ଧି ଯୋଗ" "କର୍ମ ଯୋଗ"ପାଇଁ ଉତ୍ସାହିତ କଲେ ।

ପ୍ରଥମ ଅଧ୍ୟାୟର ଅଧ୍ୟାୟ-ଦୀପିକାରେ ଗୀତାର ପ୍ରଥମ ଛଅ ଅଧ୍ୟାୟମାନଙ୍କୁ ମୋଟରେ କର୍ମ ଯୋଗ ବୋଲି ଧରିଗଲେ ମଧ୍ୟ ତାହା କପରି ଏକାନ୍ତ-ଭାବରେ ସତ୍ୟ ନୁହେଁ, ତାହା କୁହାଯାଇଛି । ଉଦାହରଣସ୍ୱରୂପ ଏହି ଦ୍ୱିତୀୟ ଅଧ୍ୟାୟର ନାମ ରଖାଯାଇଛି ସାଂଖ୍ୟ ଯୋଗ, ଯାହା ସଂପୂର୍ଣ୍ଣ ବୌଦ୍ଧିକ ବା ଜ୍ଞାନଯୋଗ । ଗୀତାରେ ଏହିପରି ଅନେକ ଶବ୍ଦ ଅନେକ ସ୍ଥାନରେ ଭିନ୍ନ ଭିନ୍ନ ତାତ୍ପର୍ଯ୍ୟରେ ବ୍ୟବହୃତ ହେବାର ଆମେ ଦେଖିବା । ଏହାରି ଯୋଗୁହିଁ ଗୀତାର ଅର୍ଥବିଭ୍ରାଟ ଦେଖାଦେଇଛି ଏବଂ ଏହି ମହାନ୍ ଗ୍ରନ୍ଥ, ସେହି ଯୋଗୁହିଁ, ନିଜ-ଉପରେ ଏତେ ଲୋକଙ୍କୁ ଏତେ ବିଭିନ୍ନ ପ୍ରକାରର ଟୀକାଟିପ୍ପଣୀପାଇଁ ସୁଯୋଗ ଦେଇଆସିଛି । ଏହି ଅଧ୍ୟାୟରେହିଁ ଆମେ 'ସାଂଖ୍ୟ' ଓ 'ଯୋଗ' ଏହି ଉଭୟ ପଦକୁ ସଂପୂର୍ଣ୍ଣ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହେବାର ଦେଖିବା । 'ସାଂଖ୍ୟ' ପ୍ରକୃତରେ 'ଯୋଗ' ନୁହେଁ । ଭାରତୀୟ ଷଡ଼୍‌ଦର୍ଶନଭିତରେ 'ସାଂଖ୍ୟ' ଓ 'ଯୋଗ' ଉଭୟେ ଏକ ଏକ ସ୍ୱତନ୍ତ୍ର ଦର୍ଶନ । ସାଂଖ୍ୟଦର୍ଶନ ଏକାନ୍ତରେ ଚିନ୍ତଜଗତ-ସଂପୃକ୍ତ, କର୍ମ-ଜଗତ ସହିତ ତାର ସଂପର୍କ କ୍ଷୀଣ । ତେଣୁ ଏହି ଦ୍ୱିତୀୟ ଅଧ୍ୟାୟରେ ସାଂଖ୍ୟର ବ୍ୟାଖ୍ୟାକୁ ଆଖି ଆଗରେ ରଖି, ଗୀତାର ପ୍ରଥମ ଛଅ ଅଧ୍ୟାୟକୁ ଆମେ କେବଳ କର୍ମ ଯୋଗ ବୋଲି କପରି ଧରିନେବା ?

ପାଠକେ କିନ୍ତୁ ଜାଣିରଖିବା ଉଚିତ ଯେ, ଭାରତର ବିଶିଷ୍ଟ ଚିନ୍ତାଧାରା ବୋଲି ଯାହା ଧରାଯାଏ, ତାର ମୂଳପତ୍ତନ ହେଉଛି ଏହି ସାଂଖ୍ୟ ଦର୍ଶନ ! କପିଳ ନାମକ ମୁନି ଏହି ଦର୍ଶନର ବିରାଟ ମୌଳିକ ଦ୍ରଷ୍ଟା । ବୁଦ୍ଧଙ୍କ ଦୁଇ ଶତ ବର୍ଷପୂର୍ବରୁ ସେମାନଙ୍କର ଜନ୍ମ ଏବଂ ବୁଦ୍ଧବାଣୀ, କପିଳଙ୍କ ସାଂଖ୍ୟବାଦଦ୍ୱାରା ଗଭୀରଭାବରେ ପ୍ରଭାବିତ ହୋଇଛି ବୋଲି ପଣ୍ଡିତମାନଙ୍କ ମତ । ଅନେକେ ମଧ୍ୟ କହନ୍ତି ଯେ, ବୁଦ୍ଧ-ଜନ୍ମସ୍ଥାନ କପିଳବାସ୍ତୁ କପିଳ ମୁନିଙ୍କ ନାମହିଁ ଧାରଣ କରିଥିଲା ଏବଂ ତରୁଣ ସିଦ୍ଧାର୍ଥ, ହୁଏତ ନିଜ ଜନ୍ମସ୍ଥାନର ବାତାବରଣରୁହିଁ ସାଂଖ୍ୟ ମତର ସାର ଗ୍ରହଣ କରିନେଇଥିଲେ । ବୌଦ୍ଧ ଓ ବ୍ରାହ୍ମଣ୍ୟ, ଉଭୟ ଚିନ୍ତାଧାରା କପିଳଙ୍କ ସାଂଖ୍ୟବାଦଦ୍ୱାରା ଗଭୀରଭାବରେ ପ୍ରଭାବିତ ବୋଲି ଧରିନେବାକୁ ହେବ । ଭାରତତତ୍ତ୍ୱବିତ୍ ରିଚାର୍ଡ ଗାର୍ବେଙ୍କ ଯଥାର୍ଥ ଅଭିମତରେ 'ସମଗ୍ର ମାନବ-ଇତିହାସରେ କପିଳଙ୍କ ସାଂଖ୍ୟଦର୍ଶନଦ୍ୱାରାହିଁ ମନୁଷ୍ୟଚିନ୍ତା ପ୍ରଥମ କରି ନିଜର ପରିପୂର୍ଣ୍ଣ ଆତ୍ମନିର୍ଭର ସ୍ୱାଧୀନତା ଦେଖାଇପାରିଲା ।' (Nehru's Discovery of India Page 191)

ଏହି ସାଂଖ୍ୟ ଦର୍ଶନ, ଆମର ଏହି ବିଶ୍ୱସୃଷ୍ଟି, 'ପ୍ରକୃତି' ଓ 'ପୁରୁଷ' ନାମକ ଦୁଇଟି ମୌଳିକ ତତ୍ତ୍ୱ ବା ଉପାଦାନରୁ ଉଦ୍‌ଗତ ବୋଲି ପ୍ରଥମେ ପ୍ରଚାର କରିଥିବାରୁ, 'ଦ୍ୱୈତ'ବାଦ ନାମରେ ମଧ୍ୟ ପରିଚିତ। କପିଳ, ବୁଦ୍ଧଙ୍କ ପରି ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବ। କପିଳ ବିଷୟ ସୃଷ୍ଟିକୁ ପଞ୍ଚତନ୍‌ମାତ୍ର, ପଞ୍ଚଭୂତ, ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଇତ୍ୟାଦି ସଂଖ୍ୟାନ୍ୱିତ 'ତତ୍ତ୍ୱ'ଦ୍ୱାରା ବୁଝାଇବାକୁ ଯାଇଥିବାରୁ ତାଙ୍କର ସମକାଳୀନ ନିନ୍ଦୁକମାନେହିଁ ଏହି ଦର୍ଶନକୁ 'ସାଂଖ୍ୟ' ନାମ ବ୍ୟଙ୍ଗ ଅର୍ଥରେ ଦେଲେ, ଏବଂ ସେହି ନାମହିଁ ରହିଯାଇଛି। କପିଳଙ୍କ ଆବିଷ୍କୃତ 'ତତ୍ତ୍ୱ'ମାନଙ୍କ ଭିତରେ ମୁଖ୍ୟ ଦୁଇଟି ହେଲେ ପୁରୁଷ ଓ ପ୍ରକୃତି। ପ୍ରକୃତି ସର୍ବଦା କ୍ରିୟାଭିଳାଷିଣୀ, କିନ୍ତୁ ପୁରୁଷର ସମ୍ପର୍କ ନ ପାଇଲାଯାଏ ତାହା 'ଜଡ଼' ଅର୍ଥାତ୍ ଅକର୍ମା। ଅପର ପକ୍ଷରେ ପୁରୁଷ ସ୍ୱଭାବତଃ ନିର୍ବିକାର, ନିଃସ୍ପୃହ ଓ ନିଷ୍କର୍ମା। ପୁରୁଷ କେବଳ ଚେତନାଟି ଯୋଗାଇଦେଇ ପ୍ରକୃତିକୁ କର୍ମଠ କରାଇଦିଏ, କିନ୍ତୁ ନିଜେ କେବଳ ସାକ୍ଷୀ ହୋଇ ରହିଥାଏ। ପ୍ରକୃତି, ପୁରୁଷଠାରୁ ଏହି କର୍ମଶକ୍ତି ପାଇଥିଲେହେଁ ଅହଂକାରଜର୍ଜରିତ ହୋଇହିଁ କାମ କରିଚାଲେ ଏବଂ ଭାବେ, ସେହିହିଁ ସବୁ କରୁଛି, ପୁରୁଷ ବୋଲି କେହି କିଛି ନାହିଁ। ପ୍ରତ୍ୟେକ ମନୁଷ୍ୟ ବା ଜୀବଠାରେ ତାଙ୍କର ଦେହହିଁ ହେଲା ଏହି 'ପ୍ରକୃତି' ଏବଂ ଚିତ୍ ବା ଚେତନା ବା ଆତ୍ମା ହେଲା 'ପୁରୁଷ'। ପ୍ରକୃତିଦ୍ୱାରା ବିମୂଢ଼ୀକୃତ ହୋଇଥିବା ହେତୁହିଁ ଆମେ ସାଧାରଣତଃ 'ମୁଁ' ଅର୍ଥରେ, ଆମର ଦେହଟାକୁହିଁ ଧରିନେଉଁ। କିନ୍ତୁ ପ୍ରକୃତ 'ମୁଁ' ହେଉଛି ଭିତରେ ଥିବା ପୁରୁଷ। ଆମେ ଯେତେବେଳେ ପୁରୁଷକୁ ଅର୍ଥାତ୍ ପ୍ରକୃତ 'ମୁଁ'କୁ ଆମର ପ୍ରତାରକ 'ମୁଁ'ଠାରୁ ଅର୍ଥାତ୍ ଦେହାଭିମାନରୁ ଅଲଗା କରିଦେଇପାରିବା, ସେତିକବେଳେ ଯାଇ ଆମେ ଜାଗତିକ ଦୁଃଖ ପର୍ଯ୍ୟାୟରୁ ମୁକ୍ତି ପାଇବା ବୋଲି ସାଂଖ୍ୟ ମତ।

ଭାରତୀୟ ଚିନ୍ତାଧାରାରେ ଏବର ସର୍ବବ୍ୟାପ୍ତ ଓ ସର୍ବଜନବିଦିତ ଏହି ପ୍ରକୃତି ଓ ପୁରୁଷ ବା ଦେହ ଓ ଆତ୍ମା ରୂପକ ଦ୍ୱନ୍ଦ୍ୱ, ସର୍ବପ୍ରଥମେ ମହାମୁନି କପିଳହିଁ ତାଙ୍କର ସାଂଖ୍ୟ ମତ ଦେଇ ଏହିପରି ଭାବରେ, ଜନ-ଚେତନାରେ ସୁପ୍ରତିଷ୍ଠିତ କରିଗଲେ। ଗୀତାର ଏହି ଅଧ୍ୟାୟରେ ଦେହ ଓ ଆତ୍ମାର ଏହି ସାଂଖ୍ୟ-ପ୍ରଦର୍ଶିତ ସଂପର୍କ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ବିସ୍ତୃତଭାବରେ ବୁଝାଇବସିଛନ୍ତି। ଅର୍ଜ୍ଜୁନ ଗୀତାର ପୂର୍ବ ଅର୍ଥାତ୍ ପ୍ରଥମ ଅଧ୍ୟାୟରେ ଯେ କହିଥିଲେ—''ଏହି କୌରବପକ୍ଷୀୟ ସମସ୍ତେ ଆତତାୟୀ ବୋଲି ଜାଣୁଥିଲେହେଁ ଏବଂ ସର୍ବାବସ୍ଥାରେ ଆତତାୟୀ-ବଧ ଶାସ୍ତ୍ରାନୁମୋଦିତ ଥିଲେହେଁ, ମୁଁ ମୋର ଏହି ବନ୍ଧୁ, କୁଟୁମ୍ବ ଓ

ଗୁରୁଜନମାନଙ୍କୁ କୌଣସି ହେଲେ ଲାଭପାଇଁ ମାରିବାକୁ ଯିବ ନାହିଁ । ବରଂ ସେମାନେ ମତେ ମାରିପକାଇଲେ ମୁଁ ଖୁସି ହେବ ।''—ତାହାର ଯୁକ୍ତିପୂର୍ଣ୍ଣ ପ୍ରତିବାଦହିଁ ଗୀତାର ସମଗ୍ର ଏହି ଦ୍ୱିତୀୟ ଅଧ୍ୟାୟ । ଶ୍ରୀକୃଷ୍ଣ ସାଙ୍ଗେ ସାଙ୍ଗେ ଅର୍ଜ୍ଜୁନଙ୍କୁ, ମାରିବା ଓ ମରିବାର ମୌଳିକ ଓ ତାତ୍ତ୍ୱିକ ବିଷୟରେ ପଢ଼ାଇ-ଦେବାକୁ ଚେଷ୍ଟା କରିଛନ୍ତି । ଅର୍ଥାତ୍—''ରେ ମୂର୍ଖ, କାହାକୁ ମାରିଦେବାର ଅନୁତାପ କରିବା ପୂର୍ବରୁ, କିଏ ମାରେ ଓ କିଏ ମରେ, ତାହା ଜାଣିଛୁ ? କିଏ ମରେ ଓ କଣ ମରେ ? ଜୀବନ କଣ, ମୃତ୍ୟୁ ବା କଣ ? କିଏ ବା କାହାକୁ ମାରେ ? ସେହି ମୂଳକଥାଟି ଆଗ ବୁଝ ।''

ତେଣେ ପୁଣି ବେଦର 'କର୍ମକାଣ୍ଡ'ର ବିପରୀତରେ ସାଂଖ୍ୟ ମତ ହେଲା ପ୍ରଥମ ଜ୍ଞାନ କାଣ୍ଡ ବା ଜ୍ଞାନ ଯୋଗ । ସାଂଖ୍ୟ ଦର୍ଶନ ପ୍ରଚାର କଲା ଯେ, ଯେହେତୁ ଚିର-କର୍ମଶୀଳା 'ପ୍ରକୃତି'ହିଁ ତାର ସତ୍ତ୍ୱ-ରଜ-ତମାଦି ତିନିଗୁଣ ଓ ଜୀବନର ମେରୁଦଣ୍ଡସମ 'ଅହଂକାର' ଦେଇ ମନୁଷ୍ୟକୁ ଅହରହ କର୍ମରତ ରଖି ଜନ୍ମଜନ୍ମାନ୍ତରର କ୍ଳେଶ ଦେଇଚାଲିଛି । ତେଣୁ କର୍ମ ନ କରିବାହିଁ ଦୁଃଖ-ମୁକ୍ତିର ପ୍ରଧାନ ଉପାୟ । ଯାହା ଫଳରେ ଏ ଦେଶରେ ମାରାତ୍ମକ ''ନୈଷ୍କର୍ମ୍ୟ''ରୂପକ ଜୀବନାଦର୍ଶ ଦେଖାଗଲା । ଅର୍ଜ୍ଜୁନ ବର୍ତ୍ତମାନ ସେହି ନୈଷ୍କର୍ମ୍ୟ-ମନୋଭାବର ପ୍ରତୀକରୂପେହିଁ ଦଣ୍ଡାୟମାନ ଏବଂ ମୋଟ ଉପରେ, ସମଗ୍ର ଗୀତାହିଁ ଏହି 'ନୈଷ୍କର୍ମ୍ୟ'ରହିଁ ଦୃଢ଼-ବଳିଷ୍ଠ ପ୍ରତିବାଦ ଏବଂ କର୍ମନିଷ୍ଠତାର ପ୍ରଚାର ।

ସାଂଖ୍ୟ, ଯାହା ହେଉ, ପ୍ରଥମ କରି ପୁରୁଷ ଓ ପ୍ରକୃତି ଦେଇ ଆମର ଦେହ ଓ ଆତ୍ମାର ପ୍ରଭେଦ ବୁଝାଇଦେଇଥିଲା । ମନୁଷ୍ୟର ବ୍ୟକ୍ତିତ୍ୱରେ ଆତ୍ମାହିଁ ପ୍ରଧାନ କଥା, ଦେହ ନୁହେଁ—ସାଂଖ୍ୟର ଏହି ମତ ଅର୍ଜ୍ଜୁନଙ୍କର ସାଂପ୍ରତିକ 'ନୈଷ୍କର୍ମ୍ୟ'-ଭାବକୁ ଦୂରୀଭୂତ କରିବାପାଇଁ ଏକ ଫଳପ୍ରଦ ଯୁକ୍ତି । ଶ୍ରୀକୃଷ୍ଣ ତାହାହିଁ କରିଛନ୍ତି ଏବଂ ସାଂଖ୍ୟଦର୍ଶନ ଦେଇ ତର୍କ ଚାଲିଥିବାରୁ ଏ ଅଧ୍ୟାୟର ନାମ ରଖାଯାଇଛି ସାଂଖ୍ୟ ଯୋଗ ।

ପାଠକେ, ଏ ସଂପୃକ୍ତ ଅଧିକ ଆଲୋଚନା ନିମ୍ନରେ ପଞ୍ଚଦଶ ଶ୍ଳୋକର 'ବିଶେଷ ଭାଷ୍ୟ'ରେ ମଧ୍ୟ ପାଇବେ । ବର୍ତ୍ତମାନ ଶ୍ଳୋକ ବିସ୍ତାର କରିବା ।

୧

ସଂଜୟ ଉବାଚ
ତଂ ତଥା କୃପୟାବିଷ୍ଟମଶ୍ରୁପୂର୍ଣ୍ଣାକୁଳେକ୍ଷଣମ୍
ବିଷୀଦନ୍ତମିଦଂ ବାକ୍ୟମୁବାଚ ମଧୁସୂଦନଃ ।।୧।

ସଞ୍ଜୟଃ ଉବାଚ (ସଞ୍ଜୟ କହିଲେ) । ମଧୁସୂଦନଃ (ଶ୍ରୀକୃଷ୍ଣ) ତଥା (ପୂର୍ବୋକ୍ତରୂପେ) ତମ୍ (ତାହାଙ୍କୁ, ଅର୍ଜ୍ଜୁନଙ୍କୁ) କୃପୟା ବିଷ୍ଟଂ [କୁଟୁମ୍ବବଧ ଚିନ୍ତାରେ] (କାତର ହୋଇପଡ଼ିଥିବାର) ଅଶ୍ରୁପୂର୍ଣ୍ଣାକୁଳେକ୍ଷଣମ୍ (ଚକ୍ଷୁ ଲୋତକରେ ପୂର୍ଣ୍ଣ ଓ ବ୍ୟାକୁଳ ହୋଇଉଠିଥିବାର) [ଓ ତାଙ୍କୁ] ବିଷୀଦନ୍ତଂ (ବିଷଣ୍ଣ) [ଦେଖି] ଇଦଂ ବାକ୍ୟଂ ଉବାଚ (ଏହିପରି କଥା କହିଲେ) ।

## ଅନୁବାଦ

ସଞ୍ଜୟ କହିଲେ, "ଶ୍ରୀକୃଷ୍ଣ, ପୂର୍ବୋକ୍ତରୂପେ ଅର୍ଜ୍ଜୁନଙ୍କୁ କୁଟୁମ୍ବବଧ-ଚିନ୍ତାରେ କାତର ହୋଇ, ବିଷଣ୍ଣ ଓ ଆର୍ଦ୍ରଚକ୍ଷୁ ଦେଖି, ଏହିପରି କହିଲେ ।"

୨

ଶ୍ରୀ ଭଗବାନୁବାଚ
କୁତସ୍ତ୍ୱା କଶ୍ମଳମିଦଂ ବିଷମେ ସମୁପସ୍ଥିତମ୍
ଅନାର୍ଯ୍ୟଜୁଷ୍ଟମସ୍ୱର୍ଗ୍ୟମକୀର୍ତ୍ତିକରମର୍ଜ୍ଜୁନ ॥ ୨ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) । [ହେ] ଅର୍ଜ୍ଜୁନ, [ଏହି] ବିଷମେ (ସଂକଟ କାଳରେ) କୁତଃ (କି ହେତୁରୁ) ଇଦଂ (ଏପ୍ରକାର) ଅନାର୍ଯ୍ୟଜୁଷ୍ଟଂ (ଅନାର୍ଯ୍ୟଜନୋଚିତ) ଅସ୍ୱର୍ଗ୍ୟଂ [ମୃତ୍ୟୁପରେ] (ସ୍ୱର୍ଗଗମନରେ ବାଧାଦାନକାରୀ) [ପୁଣି] ଅକୀର୍ତ୍ତିକରଂ (ଅଯଶସ୍କର) କଶ୍ମଳଂ (ଅନୁତ୍ସାହ) ତ୍ୱା (ତୁମଠାରେ) ସମୁପସ୍ଥିତମ୍ (ଉପସ୍ଥିତ ହେଲା ?)

## ଅନୁବାଦ

ଭଗବାନ୍ ଶ୍ରୀକୃଷ୍ଣ କହିଲେ, "ହେ ଅର୍ଜ୍ଜୁନ, ଏହି ସଂକଟ କାଳରେ, କି ହେତୁରୁ ତୁମର ଏହି ଅନାର୍ଯ୍ୟଜନୋଚିତ ଏବଂ ମୃତ୍ୟୁପରେ ସ୍ୱର୍ଗ-ଗମନ-ବିରୋଧୀ, ପୁଣି ଅକୀର୍ତ୍ତିକର ଏପ୍ରକାର କର୍ତ୍ତବ୍ୟ-କର୍ମରେ-ଅନୁତ୍ସାହ ଦେଖା ଦେଲା ?"

## ବିଶେଷ ବିଷୟ

ଅନାର୍ଯ୍ୟ, ଅସ୍ୱର୍ଗ୍ୟ—ଏହି ଶ୍ଳୋକରୁ ଆମେ ଏଇ ଯେ ଦୁଇଟି ପଦ ଏଠାରେ ଭେଟୁଛୁଁ, ତାହା ଭାରତୀୟ ଆର୍ଯ୍ୟମାନଙ୍କର ସାଧାରଣ ସଂସ୍କାରହିଁ ବହନକରି ଆସିଛନ୍ତି । ପାଠକେ, ପ୍ରଥମ ଅଧ୍ୟାୟରେ 'ବର୍ଣ୍ଣସଙ୍କର' ଶବ୍ଦ ସଂପର୍କରେ ଆମର ଆଲୋଚନା ସ୍ମରଣ କରନ୍ତୁ । ଗୋଟି 'ଆର୍ଯ୍ୟ'ମାନେ ପୃଥିବୀର ସବୁଠି କମ୍-ଗୋଟି ବା

କଳାଚମଡ଼ାର ଲୋକଙ୍କୁ 'ଅନାର୍ଯ୍ୟ' କହି ବରାବର ଘୃଣା କରିଆସିଛନ୍ତି । ଭାରତ-ବର୍ଷରେ 'ବର୍ଣ୍ଣ' (ଶୁକ୍ଳବର୍ଣ୍ଣୀୟ) ନାମ ଧାରଣ କରି ପରେ ହିନ୍ଦୁ-ସମାଜରେ ସୁପ୍ରତିଷ୍ଠିତ ହୋଇଥିବା 'ଜାତି' ପ୍ରଥା, ଏହି ବର୍ଣ୍ଣବିଦ୍ୱେଷ ବା କଳା-ଗୋରା ଭେଦରୁହିଁ ଆରମ୍ଭ ହେଲା ବୋଲି ପଣ୍ଡିତମାନଙ୍କର ମତ । ମହେଞ୍ଜୋଦାରୋ ସଭ୍ୟତା, ଭାରତର ଆଦିମ ସଭ୍ୟତା । ମହେଞ୍ଜୋଦାରୋଠାରେ ବିଶେଷ ଅସ୍ତ୍ରଶସ୍ତ୍ର ମିଳି ନ ଥିବାରୁ ସେ ସଭ୍ୟତା ବହୁ ଶତାବ୍ଦୀ ଧରି ଶାନ୍ତିପୂର୍ଣ୍ଣ ବାତାବରଣଭିତରେ ଗଢ଼ିଉଠିଥିଲା ବୋଲି ପଣ୍ଡିତମାନଙ୍କର ବିଶ୍ୱାସ । ଖୁବ୍ ସମ୍ଭବତଃ, ଋଗ୍‌ବେଦୀୟ ଆର୍ଯ୍ୟ-ଔପନିବେଶିକମାନଙ୍କଦ୍ୱାରାହିଁ ଏହି ମହାନ୍ ସଭ୍ୟତା ଧ୍ୱଂସପ୍ରାପ୍ତ ହୋଇ-ଥିଲା । ମାନବ-ଇତିହାସରେ କେନ୍ଦ୍ର-ଏସିଆର ଦୁର୍ଦ୍ଧର୍ଷ ଯାଯାବର ଗୋଷ୍ଠୀସବୁ ୟୁରୋପ ଓ ଏସିଆର ଦକ୍ଷିଣାଞ୍ଚଳୀୟ କୃଷି-କୈନ୍ଦ୍ରିକ ସ୍ଥାବର ସଭ୍ୟତାର ଚିରନ୍ତନ ଶତ୍ରୁ ହୋଇଆସିଛନ୍ତି । ଆମର ଏହି ଭାରତୀୟ ଉପମହାଦେଶକୁ ବାରମ୍ବାର ଅଭିଯାନରେ ଧ୍ୱସ୍ତବିଧ୍ୱସ୍ତ କରିଆସିଛନ୍ତି, ସେହି କେନ୍ଦ୍ର-ଏସିଆର ଭିନ୍ନ ଭିନ୍ନ କାଳରେ ଭିନ୍ନ ଭିନ୍ନ ଦୁର୍ଦ୍ଧର୍ଷ ଗୋଷ୍ଠୀସବୁ । ଋଗ୍‌ବେଦର ସ୍ରଷ୍ଟା ଆର୍ଯ୍ୟମାନେହିଁ ହେଲେ ଏମାନଙ୍କ ଭିତରେ ପ୍ରଥମ ଅଭିଯାନକାରୀ । ଏମାନେ ମଧ୍ୟ ଦାରୁଣ ଧ୍ୱଂସକାରୀ ଜାତି ଥିଲେ, ଠିକ୍ ଯେପରି ପରେ ଦେଖା ଦେଇଥିଲେ ଇସ୍‌ଲାମ୍‌ର ନବ ପ୍ରେରଣା ନେଇ, ତୁର୍କି ଓ ମଂଗୋଲ ପ୍ରଭୃତି, ସେହି ଅଞ୍ଚଳର ପରବର୍ତ୍ତୀ ଗୋଷ୍ଠୀସବୁ । ଋଗ୍‌ବେଦୀୟ ଆର୍ଯ୍ୟମାନଙ୍କର ଦଳ-ନାୟକର 'ପୁରନ୍ଦର' (ଇନ୍ଦ୍ରର ଅନ୍ୟ ନାମ, କିନ୍ତୁ ଧାତୁଗତ ଅର୍ଥ 'ନଗର-ଧ୍ୱଂସକ') ନାମହିଁ ଏହି ଧ୍ୱଂସାତ୍ମକ ଦୁର୍ଦ୍ଧର୍ଷତା ସୂଚନା କରୁଛି । ସମଗ୍ର ଋଗ୍‌ବେଦ ଓ ଏପରିକି ଉପନିଷଦ୍-ମାଳାର ଅନେକାଂଶ ଶତ୍ରୁ-ଧ୍ୱଂସମୂଳକ ପ୍ରାର୍ଥନାରେହିଁ ପୂର୍ଣ୍ଣ । ଆର୍ଯ୍ୟମାନଙ୍କର ଏଭଳି ସମରପ୍ରିୟ ଐତିହ୍ୟର ପରିପ୍ରେକ୍ଷିତରେ, ଅର୍ଜ୍ଜୁନଙ୍କର ସମରବିମୁଖତା ଆର୍ଯ୍ୟଜନର 'ଅଯୋଗ୍ୟ' ବା 'ଅନାର୍ଯ୍ୟଜନୋଚିତ' ବୋଲି ଅଭିହିତ ହେବା ବିସ୍ମୟକର ନୁହେଁ ।

ଦ୍ୱିତୀୟ ପଦଟି ହେଲା ଅସ୍ୱର୍ଗ୍ୟ,—ସ୍ୱର୍ଗଗମନର ବିରୋଧାତ୍ମକ କର୍ମ ।

ଗୀତାରେ ମୃତଲୋକର ଆତ୍ମା ଇହଜନ୍ମର ଗୁଣ-ଦୋଷନେଇ ପୃଥିବୀରେ ବାରମ୍ବାର ପୁଣି ଜନ୍ମଲାଭ କରିବାଟାକୁ ଧରିନିଆଯାଇଛି । ଏହା ଏବେ ଭାରତୀୟ ବିଶ୍ୱାସର ଅବିଚ୍ଛେଦ୍ୟ ଅଙ୍ଗ । କିନ୍ତୁ ଖ୍ରୀଷ୍ଟିୟାନ୍ ବା ମୁସଲମାନ ଧର୍ମରେ ଏପ୍ରକାର ବିଶ୍ୱାସ ନାହିଁ । ପୂର୍ବପ୍ରଚଳିତ ସମସ୍ତ ଭାରତୀୟ ବିଶ୍ୱାସକୁ ନିଜର ତୀକ୍ଷ୍ଣ, ବିଜ୍ଞାନୋଚିତ ତାର୍କିକତାରେ ପ୍ରତିରୋଧ କରିଥିଲେହେଁ, ଆତ୍ମାର ନୂତନ

ଜନ୍ମଗ୍ରହଣ କଥାଟାକୁ ଯେ ଗୌତମ ବୁଦ୍ଧ ବନାବଗୁରରେ କପଟ ମାନଯାଇଥିଲେ, ସେଥିରେ ସୁପଣ୍ଡିତ ଏଇଚ୍. ଜି. ଓ୍ୱେଲସ୍ ବିଶେଷ ବିସ୍ମୟ ପ୍ରକାଶ କରିଛନ୍ତି। ପାଠକେ ମଧ୍ୟ ଏହା ଜାଣି ସେହିପରି ବିସ୍ମିତ ହେବେ ଯେ, ଋଗ୍‌ବେଦକାଳରେ ଏହି "ପୁନର୍ଜନ୍ମବାଦ" 'ସଂପୂର୍ଣ୍ଣ' ଅଜ୍ଞାତ ଥିଲା। କେବଳ ପରକାଳରେ ରଚିତ ଅଥର୍ବବେଦ ଓ ଶତପଥ ବ୍ରାହ୍ମଣରେ ଏହାର ସାମାନ୍ୟ ସୂଚନାମାତ୍ର ପଣ୍ଡିତମାନେ ପାଉଛନ୍ତି।

ଭାରତୀୟ ଆର୍ଯ୍ୟମାନେ ଥିଲେ ମଧ୍ୟ ଏକ ମଉଜୀ ଜାତି, ଠିକ୍ ଏବର ୟୁରୋପୀୟମାନଙ୍କ ପରି। ସେମାନେ ଆମର ଏହି ପାର୍ଥିବ ଜୀବନକୁହିଁ ପରମ ଉପଭୋଗ୍ୟ ବସ୍ତୁ ବୋଲି ଧରିନେଇଥିଲେ। ଏବେ, ପୁରାଣମାନଙ୍କ ପ୍ରଚ୍ଚର- ଫଳରେହିଁ ଆଧୁନିକ ଭାରତୀୟ ଚେତନାରେ ଯମ ଓ ତାଙ୍କର ନରକ-ଲୋକର ଭୟାବହତା ସୁପ୍ରତିଷ୍ଠିତ ହୋଇଯାଇଛି। କିନ୍ତୁ ଋଗ୍‌ବେଦରେ ମୃତାତ୍ମାମାନେ 'ଯମ' ବୋଲି ପରିଚିତ ଥିଲେ ଏବଂ ଏହି 'ଯମ'ମାନେ ଚିରାଲୋକମୟ ଓ ଚିର- ଉପଭୋଗମୟ ଏକ ଲୋକରେ ଯାଇ ଦେବତାମାନଙ୍କ ସହିତ ବାସ କରୁଥିଲେ ବୋଲି କଳ୍ପନା କରାଯାଉଥିଲା। ବୈଦିକ ଯାଗଯଜ୍ଞସବୁ ଭବିଷ୍ୟତର ଏହି ସୁଖକର କଳ୍ପନାର ପରିପୋଷକ ବୋଲି ଧରାଯାଉଥିଲା। ଯମ ଓ ତାଙ୍କ ରାଜ୍ୟ ଯେ ଆଦୌ ଭୟାବହ ଓ ଅନାକାଂକ୍ଷିତ ନ ଥିଲା, ତାହା ପାଠକେ ସମଗ୍ର କଠୋପନିଷଦରେ ଯମ-ନଚିକେତା ସମ୍ବାଦରୁ ଜାଣିପାରିବେ।

ଗୀତାରେ ସ୍ୱର୍ଗଦ୍ୱାର (୨।୩୨), ସ୍ୱର୍ଗପର (୨।୪୩) ବା ସ୍ୱର୍ଗଲୋକମ୍ (୯।୨୧) ପ୍ରଭୃତି ଶବ୍ଦରେ ଆମେ ଏହି ଋଗ୍‌ବେଦୀୟ ଧାରଣାର ସୂଚନା ପାଇବା ସାଥେ ସାଥେ, ତାହା ଯେ ମନୁଷ୍ୟର ଚରମ କାମ୍ୟ ଅବସ୍ଥା ନୁହେଁ, ତାହା ମଧ୍ୟ ଏଥିରେ ପ୍ରତିପାଦିତ ହେବାର ଦେଖିବା। ଗୀତାର ଆଦର୍ଶ ପାର୍ଥିବ ସୁଖ ବା ସ୍ୱର୍ଗସୁଖ ନୁହେଁ—ତାହା ହେଲା, ବର୍ତ୍ତମାନରେ ସ୍ଥିତପ୍ରଜ୍ଞତା ଓ ମୃତ୍ୟୁପରେ ବ୍ରହ୍ମନିର୍ବାଣ। ଏଠାରେ 'ଅସ୍ୱର୍ଗ୍ୟ' ଶବ୍ଦଟି ତେଣୁ ସଂପୂର୍ଣ୍ଣଭାବରେ ଋଗ୍‌ବେଦୀୟ ଚିନ୍ତାଧାରାର ସୂଚକ ବୋଲି ଧରିବାକୁ ହେବ। ଗୀତାରେ, ପାଠକେ, ଅର୍ଜ୍ଜୁନଙ୍କୁ ପ୍ରଥମେ ସମକାଳୀନ ଋଗ୍‌ବେଦୀୟ-ବିଶ୍ୱାସାବଳୀର ପ୍ରତୀକ ଭାବରେହିଁ ଦେଖିବେ। ଶ୍ରୀକୃଷ୍ଣ ପ୍ରଥମେ ତାଙ୍କୁ ସେହି ସ୍ତରରେ ଭେଟି, ଆସ୍ତେ ଆସ୍ତେ ତାଙ୍କୁ ନେଇ ଉଦାର ଔପନିଷଦିକ ଚିନ୍ତାସ୍ତରକୁ ଟେକିନେବେ। ତାହାହିଁ ଭଗବଦ୍‌ଗୀତା। ଋଗ୍‌ବେଦର ସ୍ୱର୍ଗସୁଖକଳ୍ପନା ଏବଂ ଗୀତାର ଦ୍ୱିତୀୟ ଅଧ୍ୟାୟରେ ସୂଚିତ କପିଳଙ୍କ ସାଂଖ୍ୟଦର୍ଶନଭିତରେ, ବହୁ-ଶତାବ୍ଦୀ-ବ୍ୟାପୀ ଭାରତୀୟ ଚିନ୍ତାର ବ୍ୟବଧାନ।

୩

କ୍ଳୈବ୍ୟଂ ମାସ୍ମଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ । ୩ ।

[ହେ] ପାର୍ଥ (ହେ ଅର୍ଜୁନ) କ୍ଳୈବ୍ୟଂ (କାତରତା, ଅପୌରୁଷ) ମାସ୍ମଗମଃ (ପ୍ରଶ୍ରୟ ଦିଅ ନା) । ଏତତ୍ (ଏହା) ତ୍ୱୟି (ତୁମଠାରେ) ନ ଉପପଦ୍ୟତେ (ଉପଯୁକ୍ତ ଦେଖାଯାଉ ନାହିଁ) । [ହେ] ପରନ୍ତପ (ଶତ୍ରୁ-ଦୁଃଖଦାୟୀ ବୋଲି ପ୍ରସିଦ୍ଧ, ଅର୍ଜୁନ) କ୍ଷୁଦ୍ରଂ (ତୁଚ୍ଛ) [ଏବଂ] ହୃଦୟଦୌର୍ବଲ୍ୟଂ (ଚିତ୍ତର ଏବଂ ଦୁର୍ବଳତାକୁ) ତ୍ୟକ୍ତ୍ୱା (ପରିତ୍ୟାଗ କରି) ଉତ୍ତିଷ୍ଠ (ଉଠ) ।

## ଅନୁବାଦ

"ହେ ଅର୍ଜୁନ, ଅପୌରୁଷକୁ କୌଣସିପ୍ରକାର ପ୍ରଶ୍ରୟ ଦିଅ ନା । ଅନ୍ତତଃ ତୁମପରି ଲୋକଠାରେ ଏହା ଉପଯୁକ୍ତ ଦେଖାଯାଉ ନାହିଁ । ତୁମେ ଅର୍ଜୁନ, ପରନ୍ତପ ବା ଶତ୍ରୁ-ଦୁଃଖଦାୟୀ ବୋଲି ପୃଥିବୀରେ ପରିଚିତ । ତେଣୁ ସାଂପ୍ରତିକ ତୁଚ୍ଛ ଚୈତ୍ତିକ ଦୌର୍ବଲ୍ୟକୁ ପରିତ୍ୟାଗ କରି କର୍ତ୍ତବ୍ୟ କର୍ମପାଇଁ ବଦ୍ଧପରିକର ହୋଇଉଠ ।"

୪

ଅର୍ଜୁନ ଉବାଚ

କଥଂ ଭୀଷ୍ମମହଂ ସଂଖ୍ୟେ ଦ୍ରୋଣଂ ଚ ମଧୁସୂଦନ
ଇଷୁଭିଃ ପ୍ରତିଯୋତ୍ସ୍ୟାମି ପୂଜାର୍ହାବରିସୂଦନ । ୪ ।

ଅର୍ଜୁନଃ ଉବାଚ (ଅର୍ଜୁନ କହିଲେ), [ହେ] ଅରିସୂଦନ ମଧୁସୂଦନ (ହେ ଶତ୍ରୁନାଶକାରୀ ଶ୍ରୀକୃଷ୍ଣ) ଅହଂ (ମୁଁ) କଥଂ (କିପରି) ସଂଖ୍ୟେ (ଯୁଦ୍ଧରେ) ପୂଜାର୍ହୌ (ପୂଜାର ଯୋଗ୍ୟ) ଭୀଷ୍ମଂ ଦ୍ରୋଣଂ ଚ ପ୍ରତି (ଭୀଷ୍ମ ଓ ଦ୍ରୋଣଙ୍କୁ ଲକ୍ଷ୍ୟ କରି) ଇଷୁଭିଃ (ଶରମାନଙ୍କଦ୍ୱାରା) ଯୋତ୍ସ୍ୟାମି (ଲଢ଼ିବି ?)

## ଅନୁବାଦ

ଅର୍ଜୁନ ଉତ୍ତର ଦେଲେ, "ହେ ମଧୁସୂଦନ ଓ ଅରିସୂଦନ ଶ୍ରୀକୃଷ୍ଣ, ହଁ, ମୁଁ ଶତ୍ରୁ ମାରିବି, କିନ୍ତୁ ମୋର ପୂଜ୍ୟ ଗୁରୁଜନ ଭୀଷ୍ମ ଓ ଦ୍ରୋଣଙ୍କୁ ଲକ୍ଷ୍ୟ କରି ମୁଁ ଶର ମାରିବି କିପରି ? (ତୁମେ ଅରିସୂଦନ ଓ ମଧୁସୂଦନ ହୋଇଥିଲେହେଁ ଏପରି ଗୁରୁ-ଦନ ସୂତ କେବେ ହୋଇ ନାହଁ !")



ଗୁରୁନହତ୍ୱା ହି ମହାନୁଭାବାନ୍
ଶ୍ରେୟୋ ଭୋକ୍ତୁଂ ଭୈକ୍ଷ୍ୟମପୀହଲୋକେ
ହତ୍ୱାର୍ଥକାମାଂସ୍ତୁ ଗୁରୁନିହୈବ
ଭୁଞ୍ଜୀୟ ଭୋଗାନ୍ ରୁଧିରପ୍ରଦିଗ୍ଧାନ୍ । ୫ ।

ଇହଲୋକେ (ଏହି ସଂସାରରେ) ମହାନୁଭାବାନ୍ (ମହାନୁଭବ) ଗୁରୂନ୍ (ଗୁରୁଜନମାନଙ୍କୁ) ଅହତ୍ୱା (ବଧ ନ କରି) ଭୈକ୍ଷ୍ୟମ୍ ଅପି ଭୋକ୍ତୁଂ ଶ୍ରେୟଃ (ଭିଖ ପଛେ ଖାଇ ବଞ୍ଚିବା ଭଲ) ତୁ (କିନ୍ତୁ) ଅର୍ଥକାମାନ୍ * ଗୁରୂନ୍ (ଯେଉଁ ଗୁରୁଜନମାନେ ମୋର ହିତ କାମନା କରିଆସିଛନ୍ତି) [ସେମାନଙ୍କୁ] ହତ୍ୱା (ମାରି) ଇହ ଏବ (ଏହି ସଂସାରରେ) ରୁଧିର-ପ୍ରଦିଗ୍ଧାନ୍ ଭୋଗାନ୍ ଭୁଞ୍ଜୀୟ (ମତେ ଶୋଣିତାକ୍ତ ଭୋଗହିଁ ଭୋଗିବାକୁ ହେବ ସିନା ! )

## ଅନୁବାଦ

"ରାଜ୍ୟଭୋଗ ଓ ସୁଖଭୋଗପାଇଁ ମହାନୁଭବ ଗୁରୁଜନମାନଙ୍କୁ ବଧ ନ କରି, ମୁଁ ମନେ କରୁଛି, ଏ ସଂସାରରେ ଭିଖ ମାଗି ଚଳିବା ବରଂ ଶ୍ରେୟସ୍କର। ଯେଉଁ ଗୁରୁଜନମାନେ ମୋର ସବୁବେଳେ ହିତ କାମନା କରିଆସିଛନ୍ତି, ସେମାନଙ୍କୁ ବଧ କରି ଯାହା ପାଇବି, ତାହା ଶୋଣିତାକ୍ତ ଭୋଜନ ଛଡ଼ା ଆଉ କଣ ହୋଇପାରେ ?"

## ବିଶେଷ ଭାଷ୍ୟ

'ମହାନୁଭବ'। ଭାରତୀୟ ଶାସ୍ତ୍ର ଅନୁସାରେ ଶାସ୍ତ୍ର-ଅଧ୍ୟୟନ, ଶାସ୍ତ୍ର-ଶ୍ରବଣ, ଆଗ୍ରହ-ନିଷ୍ଠା ଓ ତପସ୍ୟାଦି ଧାର୍ମିକ ଗୁଣମାନଙ୍କର ସମାହାରହିଁ ବ୍ୟକ୍ତିଙ୍କର 'ମହାନୁଭବତା' ସୂଚିତ କରିଥାଏ । କୌରବପକ୍ଷୀୟ ଭୀଷ୍ମ, ଦ୍ରୋଣ ପ୍ରଭୃତି ଏହି ଶ୍ରେଣୀର ବ୍ୟକ୍ତି ଯେ ଥିଲେ, ଏହା ନିଃସନ୍ଦେହ । ସେପ୍ରକାର ମହାନୁଭବ ଗୁରୁଜନ-ମାନଙ୍କୁ ନିଜ ହାତରେ ମାରିବାର ଚିନ୍ତା, ଅର୍ଜୁନଙ୍କ ପରି ସଂସ୍କୃତିବନ୍ତ ବୀର ପୁରୁଷଙ୍କ ଚିତ୍ତରେ ଉଦ୍‌ବେଳନ ଜାତ କରାଇବା ଏକାନ୍ତ ସ୍ୱାଭାବିକ ।

## * ଅର୍ଥକାମାନ୍

ସାଧାରଣରେ ଅର୍ଥ କରାଯାଇଥାଏ ସଂପତ୍ତି-ଲୋଭୀ ଅର୍ଥାତ୍ ରାଜ୍ୟଲୋଭୀ । କିନ୍ତୁ 'ହିତ' ଅର୍ଥରେ, 'ଅର୍ଥ' ଶବ୍ଦ ଗୀତାରେ ଅନ୍ୟତ୍ର ବ୍ୟବହାର କରାଯାଇଛି ଏବଂ ଅର୍ଜୁନଙ୍କର ବର୍ତ୍ତମାନ ଚିନ୍ତାଧାରା ସହିତ ତାହା ଉତ୍ତମ ଖାପ ଖାଉଥିବାରୁ ଥିଓସଫିକେଲ୍ ସୋସାଇଟିର ଗୀତାନୁସାରେ ସେହି ଅର୍ଥ ଏଠାରେ ରଖାଗଲା ।

୬

ନ ଚୈତଦ୍ୱିଦ୍ମଃ କତରନ୍ନୋଗରୀୟୋ

ଯଦ୍ୱା ଜୟେମ ଯଦିବା ନୋ ଜୟେୟୁଃ

ଯାନେବ ହତ୍ୱା ନ ଜିଜୀବିଷାମ-

ସ୍ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ । ୬ ।

ଯଦ୍ୱା (ଯଦିବା) ଜୟେମ (ଆମେ ଜୟ କରୁଁ) ଯଦିବା (ବା) ନଃ (ଆମ୍ଭମାନଙ୍କୁ) [ସେମାନେ] ଜୟେୟୁଃ (ଜୟ କରନ୍ତି) [ଏ ଦୁଇଟିମଧ୍ୟରେ] ନଃ (ଆମ ପକ୍ଷରେ) କତରତ୍ (କେଉଁଟି) ଗରୀୟଃ (ଗୁରୁତର) ଏତତ୍ ଚ (ଏହା ମଧ୍ୟ) ନ ବିଦ୍ମଃ (ଜଣାପଡ଼ୁନାହିଁ) । ଯାନ୍ ଏବ (ଯେଉଁମାନଙ୍କୁହିଁ) ହତ୍ୱା (ମାରିଦେଲେ) ନ ଜିଜୀବିଷାମଃ (ବଞ୍ଚିବାକୁ ଆମେ ଇଚ୍ଛା କରିବା ନାହିଁ) ତେ (ସେହି) ଧାର୍ତ୍ତରାଷ୍ଟ୍ରାଃ (ଧୃତରାଷ୍ଟ୍ରପକ୍ଷୀୟମାନେ) ପ୍ରମୁଖେ (ସମ୍ମୁଖରେ) [ଲଢ଼େଇପାଇଁ] ଅବସ୍ଥିତାଃ (ଅବସ୍ଥିତ ଅଛନ୍ତି) ।

**ଅନୁବାଦ**

"ଆମେ ଜୟ କରୁଁ ବା ସେମାନେ ଜୟ କରନ୍ତୁ—ଏ ଦୁଇଟିମଧ୍ୟରେ ଆମ ପକ୍ଷରେ କେଉଁଟି ଯେ ଉତ୍ତମତର, ଏହା ତ ମତେ ଜଣାପଡ଼ୁନାହିଁ । ଯେଉଁମାନେ ମଲେ ଆମେ ବଞ୍ଚିବାକୁ ମଧ୍ୟ ଇଚ୍ଛା କରିବା ନାହିଁ, ସେହି ନିଜ-ଲୋକ ଧୃତରାଷ୍ଟ୍ର-ପୁତ୍ରମାନେହିଁ ଲଢ଼େଇପାଇଁ ଏଇ ଆମ ଆଗରେ ଠିଆ ହୋଇଛନ୍ତି ।"

୭

କାର୍ପଣ୍ୟଦୋଷୋପହତସ୍ୱଭାବଃ

ପୃଚ୍ଛାମି ତ୍ୱାଂ ଧର୍ମସଂମୂଢ଼ଚେତାଃ

ଯଚ୍ଛ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ

ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନମ୍ । ୭ ।

କାର୍ପଣ୍ୟଦୋଷୋପହତସ୍ୱଭାବଃ (ଆତ୍ମାନୁକମ୍ପାରୂପକ ଦୁର୍ବଳତାରେ ମୁଁ ଅଭିଭୂତ) [ଏବଂ] ଧର୍ମସଂମୂଢ଼ଚେତାଃ (ଧର୍ମାଧର୍ମ ସଂପର୍କରେ କିଂକର୍ତ୍ତବ୍ୟ-ବିମୂଢ଼) ଅହଂ (ମୁଁ) ତ୍ୱାଂ (ତୁମକୁ) ପୃଚ୍ଛାମି (ପଚାରୁଛି ଯେ) ମେ (ମୋ ପକ୍ଷରେ) ଯତ୍ (ଯାହା) ଶ୍ରେୟଃ ସ୍ୟାତ୍ (ମଙ୍ଗଳଜନକ ହେବ) ତତ୍ (ତାହା) [ଆପଣ] ନିଶ୍ଚିତଂ ବ୍ରୂହି (ନିଶ୍ଚିତ କରି କହିଦିଅନ୍ତୁ) । ଅହଂ ତେ (ମୁଁ ତୁମର) ଶିଷ୍ୟଃ (ଶିଷ୍ୟ) । ତ୍ୱାଂ ପ୍ରପନ୍ନଂ ମାଂ (ତୁମଠାରେ ଶରଣାଗତ ମୋତେ) ଶାଧି (ଉପଦେଶ ଦିଅ) ।

## ଅନୁବାଦ

"ମୁଁ ସତ୍ୟରେ ଆତ୍ମାନୁକମ୍ପା-ରୂପକ ଦୁର୍ବଳତାରେ ଅଭିଭୂତ । ଏଠି କଣ ମୋର ଧର୍ମ କର୍ମ, କଣ ବା ଅଧର୍ମ କର୍ମ, ମୁଁ ଠିକ୍ ଜାଣିପାରୁ ନାହିଁ । ତେଣୁ ମୁଁ ତୁମକୁ ପଚାରୁଛି, ତୁମେ ନିଶ୍ଚିତଭାବରେ କହ, ମୋର ମଙ୍ଗଳକର କର୍ମ କଣ ହେବ ? ମୁଁ ତୁମର ଶିଷ୍ୟପରି । ମୁଁ ତୁମର ଶରଣାଗତ । ମତେ ଉଚିତ ଉପଦେଶ ଦିଅ ।"

୮

ନ ହି ପ୍ରପଶ୍ୟାମି ମମାପନୁଦ୍ୟାଦ୍
ଯଚ୍ଛୋକମୁଚ୍ଛୋଷଣମିନ୍ଦ୍ରିୟାଣାମ୍
ଅବାପ୍ୟ ଭୂମାବସପତ୍ନମୃଦ୍ଧଂ
ରାଜ୍ୟଂ ସୁରାଣାମପି ଚାଧିପତ୍ୟମ୍ । ୮ ।

ଭୂମୌ (ପୃଥିବୀରେ) ଅସପତ୍ନଂ (ଶତ୍ରୁଶୂନ୍ୟ, ନିଷ୍କଣ୍ଟକ) ଋଦ୍ଧଂ ରାଜ୍ୟଂ (ସମୃଦ୍ଧିସଂପନ୍ନ ରାଜ୍ୟ) [କଥା ଛାଡ଼ିଦିଅ ; ବରଂ] ସୁରାଣାମପି ଆଧିପତ୍ୟଂ ଚ (ଦେବତାମାନଙ୍କ ଉପରେ ମଧ୍ୟ ଆଧିପତ୍ୟ) ଅବାପ୍ୟ (ପାଇଲେ) [ଏହି] ଯତ୍ (ଯେଉଁ) ମମ ଇନ୍ଦ୍ରିୟାଣାଂ ଉଚ୍ଛୋଷଣଂ ଶୋକଂ (ମୋର ଇନ୍ଦ୍ରିୟମାନଙ୍କୁ ଶୋଷି-ପକାଉଥିବା ଶୋକ) ଅପନୁଦ୍ୟାତ୍ [ଏହା] (ଅପନୋଦିତ ହୋଇପାରେକି ?) [ତାହା ମଧ୍ୟ] ନ ହି ପ୍ରପଶ୍ୟାମି (ମୁଁ ଉତ୍ତମରୂପେ ଦେଖିପାରୁ ନାହିଁ) ।

## ଅନୁବାଦ

"ସମଗ୍ର ପୃଥିବୀର ନିଷ୍କଣ୍ଟକ, ସମୃଦ୍ଧିସଂପନ୍ନ ରାଜତ୍ୱ କଥା ଛାଡ଼ିଦିଅ, ଦେବତାମାନଙ୍କ ଉପରେ (ଅର୍ଥାତ୍ ଦେବଲୋକରେ) ଅଧିପତି ହେଲେହେଁ, ନିଜ ଲୋକଙ୍କୁ ହତ୍ୟା କରିବାର ଯେଉଁ ଶୋକ, ଏଇ ମୋର ଇନ୍ଦ୍ରିୟମାନଙ୍କଠାରୁ ଜୀବନୀ-ଶକ୍ତି ଶୋଷିନେବା ପରି ଲାଗୁଛି । ତାହା ଅପନୋଦିତ ହେବ ବୋଲି ମତେ ଦିଶୁ ନାହିଁ ।"

୯-୧୦

ସଂଜୟ ଉବାଚ

ଏବମୁକ୍ତ୍ୱା ହୃଷୀକେଶଂ ଗୁଡ଼ାକେଶଃ ପରନ୍ତପଃ
ନ ଯୋତ୍ସ୍ୟ ଇତି ଗୋବିନ୍ଦମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ । ୯ ।

ତମୁବାଚ ହୃଷୀକେଶଃ ପ୍ରହସନ୍ନିବ ଭାରତ
ସେନୟୋରୁଭୟୋର୍ମଧ୍ୟେ ବିଷୀଦନ୍ତମିଦଂ ବଚଃ । ୧୦ ।

ସଂଜୟଃ ଉବାଚ (ସଂଜୟ କହିଲେ) । ପରନ୍ତପଃ (ଶତ୍ରୁ ଦୁଃଖଦାୟକ) ଗୁଡ଼ାକେଶଃ (ଅର୍ଜ୍ଜୁନ) ହୃଷୀକେଶଂ (ଶ୍ରୀକୃଷ୍ଣଙ୍କୁ) ଏବଂ (ଏହିପରି) ଉକ୍ତ୍ୱା (କହି) [ଶେଷରେ] ନ ଯୋତ୍ସ୍ୟେ ଇତି ଗୋବିନ୍ଦଂ ଉକ୍ତ୍ୱା (ମୁଁ ଲଢ଼ିବି ନାହିଁ, ଗୋବିନ୍ଦଙ୍କୁ ଏହା କହି) ତୂଷ୍ଣୀଂ ବଭୂବ ହ (ତୁନି ହୋଇ ରହିଲେ) । [କିନ୍ତୁ ଯାପରେ] ଭାରତ (ହେ ଧୃତରାଷ୍ଟ୍ର), ହୃଷୀକେଶଃ (ଶ୍ରୀକୃଷ୍ଣ) ଉଭୟୋଃ ସେନୟୋଃ ମଧ୍ୟେ (ଉଭୟ ସେନାଙ୍କ ମଧ୍ୟରେ) ବିଷୀଦନ୍ତଂ ତଂ (ସେହି ବିଷାଦଗ୍ରସ୍ତ ଅର୍ଜ୍ଜୁନଙ୍କୁ) ପ୍ରହସନ୍ ଇବ ( ପ୍ରସନ୍ନଭାବରେ ହସିହସିହିଁ ) ଇଦଂ ବଚଃ ଉବାଚ (ଏହିସବୁ କଥା କହିଲେ) ।

## ଅନୁବାଦ

ସଞ୍ଜୟ କହିଲେ, "ଶତ୍ରୁ-ଦୁଃଖ-ଦାୟକଭାବରେ ବିଖ୍ୟାତ ଅର୍ଜ୍ଜୁନ, ଶେଷରେ ଶ୍ରୀକୃଷ୍ଣଙ୍କୁ 'ମୁଁ ଯୁଦ୍ଧ କରିବି ନାହିଁ' ବୋଲି କହି, ଚୁପ୍ ହୋଇ ରହିଲେ । କିନ୍ତୁ ହେ ଭାରତ, ଯା ଦେଖି ଶ୍ରୀକୃଷ୍ଣ ଉଭୟ ପଟେ ଯୁଦ୍ଧସଜ୍ଜିତ ହୋଇ ଠିଆ ରହିଥିବା ସେନାମାନଙ୍କ ମଧ୍ୟରେ ବିଷଣ୍ଣ ସେନାପତି ଅର୍ଜ୍ଜୁନଙ୍କୁ ଏହିପରି ହସିହସି କହିଲେ ।"

## ବିଶେଷ ଭାଷ୍ୟ

ଏଠାରେ ଶ୍ରୀକୃଷ୍ଣ, ଅର୍ଜ୍ଜୁନଙ୍କର, ଠିକ୍-ଯୁଦ୍ଧର-ଆରମ୍ଭ-ବେଳେ, ଯେ କୌଣସି ସେନାପତି ବା ସାମାନ୍ୟ-ସୈନିକର-ଏକାନ୍ତ-ଅଯୋଗ୍ୟ ସମର-ପରାଙ୍ମୁଖତା ଦେଖି ଅତି ସାମାନ୍ୟଭାବରେ ମଧ୍ୟ ବିରକ୍ତ ହେବା ପରିବର୍ତ୍ତେରେ 'ହସିହସି' ଉତ୍ତର ଦେବାର ବର୍ଣ୍ଣନା, ଗଭୀର ଅର୍ଥବ୍ୟଞ୍ଜକ । ଗୀତାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ଯେଉଁ 'ଅନାସକ୍ତ କର୍ମଯୋଗ', ତାହା ଏପ୍ରକାର ଘୋର ସଂକଟବେଳେ ବକ୍ତା ଶ୍ରୀକୃଷ୍ଣଙ୍କର ପରମପ୍ରାଜ୍ଞ ବ୍ୟବହାରରେହିଁ ପୂର୍ଣ୍ଣ ପ୍ରତିଫଳିତ ହୋଇଉଠିଛି । ଅର୍ଥାତ୍ ଘୋର ବିପଦରେ ମଧ୍ୟ ଆମେ ରୋଦନ ନ କରି ବା ଘାବଡ଼େଇ ନ ଯାଇ, ଈଶ୍ୱରଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର ରଖି ହସିହସି କାମ କରିଚାଲିଥିବା । ଖୁବ୍ ସମ୍ଭବ ମହାନୁଭବ ଗୀତାକାର ସାଧାରଣ ଗୀତାପାଠକ-ସମ୍ମୁଖରେ କର୍ମଯୋଗର ଶାଶ୍ୱତ ଆଦର୍ଶ ଥୁଇଦେବା ଲକ୍ଷ୍ୟରେହିଁ ଏହି 'ପ୍ରହସନ୍ନିବ' ଶବ୍ଦଟି ବ୍ୟବହାର କରିଯାଇଛନ୍ତି ।

ଶ୍ରୀ ଭଗବାନୁବାଚ

ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ
ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ । ୧୧ ।

ଶ୍ରୀ ଭଗବାନୁବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) । ତ୍ୱଂ (ତୁମେ, ଅର୍ଜୁନ) ଅଶୋଚ୍ୟାନ୍ (ଯେଉଁମାନଙ୍କପାଇଁ ଶୋକ ଅନୁଚିତ ସେମାନଙ୍କପାଇଁ) ଅନ୍ୱଶୋଚଃ (ଶୋକ କରୁଛ) । ଚ (ଅଥଚ ସେହି ଶୋଚନାଭିତରେ) ପ୍ରଜ୍ଞାବାଦାନ୍ ଭାଷସେ (ପାଣ୍ଡିତ୍ୟପୂର୍ଣ୍ଣ କଥାସବୁ ମଧ୍ୟ କହୁଛ) । [କିନ୍ତୁ] ପଣ୍ଡିତାଃ (ପ୍ରକୃତ ପଣ୍ଡିତ ଲୋକମାନେ) ଗତାସୂନ୍ ଅଗତାସୂନ୍ ଚ (ମୃତ ଓ ଜୀବିତ କାହାରିପାଇଁ) ନ ଅନୁଶୋଚନ୍ତି (ଶୋକ ପ୍ରକାଶ କରନ୍ତି ନାହିଁ) । [ଏହା ତୁମର ଜାଣିରଖିବା ଉଚିତ] ।

## ଅନୁବାଦ

ଭଗବାନ ଶ୍ରୀକୃଷ୍ଣ କହିଲେ, "ହେ ଅର୍ଜୁନ, ତୁମେ ଇତରଜନ ପରି ଶୋଚନା-ନକରିବା ବସ୍ତୁକୁ ଶୋଚନା କଲେ ମଧ୍ୟ, ତୁମ ମୁହଁରୁ ଜ୍ଞାନୀ ଲୋକର ବାଣୀ ମଧ୍ୟ ବାହାରିପଡୁଛି । କିନ୍ତୁ ପ୍ରକୃତ ଜ୍ଞାନୀ ଲୋକ ତ ମୃତ ବା ଜୀବିତ କାହାରିପାଇଁ ଶୋକାଭିଭୂତ ହୋଇ ନ ଥାନ୍ତି ।

ଅସୁ—ପ୍ରାଣ । ଗତ ଅସୁ ଯାହାର ସେ ଗତାସୁ । ନ ଗତାସୁ= ଅଗତାସୁ=ଯେ ମରି ନାହିଁ । ପ୍ରଜ୍ଞା—wisdom । ପ୍ରଜ୍ଞାବାଦ—ପ୍ରାଜ୍ଞଲୋକର କଥା ।

## ବିଶେଷ ଭାଷ୍ୟ

ହିନ୍ଦୁ ପରଂପରା ଅନୁସାରେ ଗୀତାର ପ୍ରତିପାଦ୍ୟ ବିଷୟର ଆରମ୍ଭ ଏହି ଶ୍ଳୋକରୁ । ଏପର୍ଯ୍ୟନ୍ତ କେବଳ ଆମେ ଗୀତାର 'ଇଣ୍ଟ୍ରୋଡକ୍ସନ୍' ବା 'ପ୍ରବେଶିକା'ରେହିଁ ଥିଲୁଁ । ଏହି କାରଣରୁ ଶଙ୍କର ତାଙ୍କର ପ୍ରସିଦ୍ଧ ଗୀତାଭାଷ୍ୟ ଆରମ୍ଭ କରିଛନ୍ତି ଏହି ଶ୍ଳୋକଠାରୁ । ମୂଳରୁ ଏଯାକେ ସମସ୍ତ ଶ୍ଳୋକଉପରେ ସେ ସଂପୂର୍ଣ୍ଣ ନୀରବ ।

ଏହି ଶ୍ଳୋକରେ ଏକ ପ୍ରଚଣ୍ଡ ବିବଦମାନ ପଦାଂଶ ହେଉଛି 'ଗତସୂନ-ଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ' (ପଣ୍ଡିତ ଲୋକମାନେ ମରିଗଲା ଲୋକ ବା ଯେ ମରି ନାହିଁ ଏମାନଙ୍କ ଭିତରୁ କାହାରିପାଇଁ ହେଲେ ଶୋଚନା କରନ୍ତି ନାହିଁ ) ମରିଗଲା ଲୋକପାଇଁ ଶୋଚନା ଏକ ସ୍ୱାଭାବିକ ସାଂସାରିକ କର୍ମ । କିନ୍ତୁ ଜୀଇଥିଲା ଲୋକପାଇଁ ଶୋଚନାର ପ୍ରଶ୍ନ କାହିଁ ? ତେଣୁହିଁ ଏହି ଚରଣାଂଶର ନାନା ଅର୍ଥ କରାଯାଇଛି । କିନ୍ତୁ ଆମେ କୌଣସି କୌଣସି ଜୀବିତ ବ୍ୟକ୍ତିର ଜୀଇରହିବା

ଉପରେ ମଧ୍ଯ ଅନୁଶୋଚନା କରୁଁ ନାହିଁ କି ? ଯେପରି କରିଥାଉଁ କାହାରି ମରିବା ଉପରେ । ଧର୍ମଚକ୍ରପ୍ରବର୍ତ୍ତନ ସୂତ୍ରରେ ଗୌତମ ବୁଦ୍ଧ, ଜୀବନର ଅଗଣିତ ଦୁଃଖରାଶିଭିତରେ ବର୍ଣ୍ଣନା କରିଛନ୍ତି – ପ୍ରିୟବସ୍ତୁର ଅପ୍ରାପ୍ତି ବା ପାଇ ମଧ୍ଯ ତାକୁ ହରାଇବାଟାକୁ ଏବଂ ଯାହା ଅକାମ୍ୟ ଓ ଅପ୍ରିୟ ତାର ପାଇବାଟାକୁ । ଅବାଞ୍ଛନୀୟ ବସ୍ତୁ, ଘଟନା ବା ବନ୍ଧୁ-କୁଟୁମ୍ବ ଆମ ଜୀବନକୁ ଦୁଃଖମୟ କରି-ପକାଇବାର ଏକ ଏକ ଯେ ମହାନ୍ କାରଣ, ଏହା ଆମ ପ୍ରତ୍ୟେକର ଅଭିଜ୍ଞତା । ଚିରରୁଗ୍‌ଣ, ନିର୍ବୋଧ ବା ଦୁଷ୍ଟ ସନ୍ତାନପାଇଁ ଏ ଜଗତରେ କେତେ କେତେ କରୁଣାମୟୀ ଜନନୀ ମଧ୍ଯ ପରମ ଅନୁଶୋଚନାରେ ଦଗ୍‌ଧ ହେଉ ନାହାନ୍ତି ! ସେହିପରି ମଧ୍ଯ ଅଛନ୍ତି ଅବାଞ୍ଛନୀୟ ସ୍ୱାମୀ ବା ସ୍ତ୍ରୀ ବା କୁଟୁମ୍ବଲୋକ ବା ପ୍ରତିବେଶୀ, ଯେଉଁମାନଙ୍କର ବଞ୍ଚିବାହିଁ ଆମର ଅହରହ ଅନୁଶୋଚନାର କାରଣ । ସ୍ତ୍ରୀ ବି ବିରକ୍ତିରେ କହିପକାଇବା ସ୍ୱାଭାବିକ, "ହେ ଭଗବାନ୍ ମୁଁ ବିଧବା ହୁଏ ପଛେ, ଏ ସ୍ୱାମୀଠୁ ମୋତେ ରକ୍ଷା କର ।" ସେହିପରି ମଧ୍ଯ କରୁଣାମୟୀ ଜନନୀ କହିପକାଇଥାନ୍ତି ବେଳେବେଳେ ଦୁଷ୍ଟ ବା ଜଞ୍ଜାଳମୟ ସନ୍ତାନପ୍ରତି । ଅଗତାସୁ ବା ଜୀଇଲ୍‌ଲୋକଙ୍କପାଇଁ ଯେଉଁ ଅନୁଶୋଚନା, ତାହା ଏହିପ୍ରକାର ଅନୁଶୋଚନା । ସ୍ଥିତଧୀ ଲୋକେ, ମୁନିଋଷି ଶ୍ରେଣୀର ଲୋକେ, ପ୍ରିୟର ବିଚ୍ଛେଦ ବା ଅପ୍ରିୟର ସହାବସ୍ଥାନ, କୌଣସିଟିପାଇଁ ଦୁଃଖ ପ୍ରକାଶ କରି ନ ଥାନ୍ତି । ପରେ ପରେ ଆମେ ଦେଖିବା ଯେ, ଏହିପ୍ରକାର ଧୀର, ସ୍ଥିର, ଅବିଚଳିତ ଦୃଷ୍ଟିକୋଣ ଓ ବ୍ୟବହାରହିଁ ଗୀତାର ପ୍ରକୃଷ୍ଟ ଜୀବନାଦର୍ଶ, ଯେଉଁଠି ସୁଖ ଓ ଦୁଃଖ, ପ୍ରିୟ ଓ ଅପ୍ରିୟ, ଜୀବନ ଓ ମରଣ ସମସ୍ତହିଁ ସମାନ ।

୧୨

ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ
ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟମତଃପରମ୍ । ୧୨ ।

ନ ତୁ (ଏହା ନୁହେଁ ଯେ) ଅହଂ (ମୁଁ) [ଏ ଜନ୍ମର ପୂର୍ବରୁ] ଜାତୁ (କେବେହେଲେ) ନ ଆସଂ (ନ ଥିଲି) ତ୍ୱଂ ନ [ଆସୀଃ] (ତୁମେ ବି ନ ଥିଲ), ଇମେ ଜନାଧିପାଃ (ଏହି ରାଜାମାନେ ମଧ୍ଯ) ନ [ଆସନ୍] (ନ ଥିଲେ) । ଅତଃପରଂ ଚ (ଏହାପରେ ମଧ୍ଯ) ବୟଂ ସର୍ବେ (ଆମେ ସମସ୍ତେ) ନ ଭବିଷ୍ୟାମଃ (ନ ଥିବୁଁ) ନ ଏବ (ଏପରି ନୁହେଁ) ।

## ଅନୁବାଦ

"ହେ ଅର୍ଜୁନ, ମନେ ରଖ ଯେ ଏପରି ସମୟ ନ ଥିଲା ଯେବେ ତୁମେ, ମୁଁ ବା ଏଠାରେ-ଦୁଇପକ୍ଷରେ-ଉପସ୍ଥିତ ଏହି ରାଜାମାନେ, ପୂର୍ବେ ଅନ୍ୟ ଦେହରେ ନ ଥିଲେ ବା ଅନ୍ୟ ଦେହ ଧରି ଭବିଷ୍ୟତରେ ମଧ୍ୟ ରହିବେ ନାହିଁ ।

## ବିଶେଷ ଭାଷ୍ୟ

ଏହିଠାରୁ ୩୮ ଶ୍ଲୋକଯାଏ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସାଂଖ୍ୟ ଦର୍ଶନ ଅନୁସାରେ ମୃତ୍ୟୁର ତାତ୍ପର୍ଯ୍ୟ ବୁଝାଇଚାଲିବେ, କାରଣ ସ୍ୱଜନ-ମୃତ୍ୟୁଜନିତ ବିଭୀଷିକାର କଳ୍ପନା କରିହିଁ, ଅର୍ଜୁନ ଯୁଦ୍ଧରେ ପଛଘୁଞ୍ଚା ଦେଇଛନ୍ତି । ତେଣୁ ଦଶମ ଶ୍ଲୋକରେ ଶ୍ରୀକୃଷ୍ଣ "ଜ୍ଞାନୀ ଲୋକେ ଜୀବନ ବା ମୃତ୍ୟୁ କାହାକୁ ଯେମିତି ଅନୁଶୋଚ୍ୟମାନ ହୁଅନ୍ତି ନାହିଁ" କହିଲାପରେ ଏହି ଦ୍ୱାଦଶ ଶ୍ଲୋକରେ କହି-ବସିଲେ—"ମରେ କିଏ ହେ ? 'ମରିବା' ମନୁଷ୍ୟର ଏକ ପରମ ଭ୍ରାନ୍ତ ଧାରଣା ମାତ୍ର । ମୃତ୍ୟୁ ଶେଷ କଥା ନୁହେଁ । କି ଶେଷ ନୁହେଁ । ମୃତ୍ୟୁ ଏକ ରୂପାନ୍ତର ବା ସ୍ଥାନାନ୍ତର ମାତ୍ର । ଜୀବନର ଧାରା ଅବିଚ୍ଛିନ୍ନଭାବରେ ଚାଲିଛି । ମୁଁ, ତୁମେ ଓ ଉଭୟ ପକ୍ଷର ଏହି ରାଜାମାନେ, ପୂର୍ବେ ଏହିପରି କେତେ ଜୀବନ ଯାପନ କରିଛୁଁ ଏବଂ ପୁଣି ଏହିପରି କେତେ ଜୀବନ ଧରି ଦେଖା ଦେବା । ମନେ କରନା ଯେ ଆମର ଏହି ଜୀବନଟାହିଁ ପ୍ରଥମ ଓ ଶେଷ ବା ଏହି ଥରର ମୃତ୍ୟୁ ଶେଷ ମୃତ୍ୟୁ । ମୃତ୍ୟୁପରେ ଯେ ପୁଣି ଜୀବନ ଅଛି, ଏହା ମଧ୍ୟ ଭୁଲିଯାଅନା ।"

ଚତୁର୍ଥ ଅଧ୍ୟାୟ ୫ମ ଶ୍ଲୋକରେ ଶ୍ରୀକୃଷ୍ଣ ଏହି ଭାବ-କଳ୍ପକୁ ଆହୁରି ସ୍ପଷ୍ଟ କରି ମଧ୍ୟ ଏପରି କହିଛନ୍ତି—

ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ । (ହେ ଅର୍ଜୁନ, ତୁମର ଓ ମୋର ବହୁ ଜନ୍ମଜନ୍ମାନ୍ତର ଘଟିଯାଇଛି—ଏ ଆମର ଏକମାତ୍ର ଜୀବନ ନୁହେଁ ।)

୧୩

ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା
ତଥା ଦେହାନ୍ତର-ପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି । ୧୩ ।

ଯଥା ଦେହିନଃ (ଯେପରି ଦେହ ଧାରଣ କରିଥିବା ଜୀବ ବା ମନୁଷ୍ୟମାନେ,) ଅସ୍ମିନ୍ ଦେହେ (ଏହି ଗୋଟିଏ ଜନ୍ମର ଦେହରେ) କୌମାରଂ ଯୌବନଂ ଜରା (କୈଶୋର, ଯୌବନ ଓ ବୃଦ୍ଧାବସ୍ଥା) [ଦେଇ ଦେଇ ଭିନ୍ନ ଭିନ୍ନ ଅବସ୍ଥା ପ୍ରାପ୍ତ

ହୋଇଥାନ୍ତି] ତଥା (ସେହିପରି) [ମଧ୍ୟ ମୃତ୍ୟୁ ଦେଇ] ଦେହାନ୍ତରପ୍ରାପ୍ତିଃ (ଅନ୍ୟ ଦେହ ପାଇଥାନ୍ତି)। [ତେଣୁ] ତତ୍ର (ସେ ବିଷୟରେ, ଅର୍ଥାତ୍ ସେହି ମୃତ୍ୟୁକୁ ଦେହାନ୍ତରପ୍ରାପ୍ତି ମାତ୍ର ବୋଲି ଜାଣି) ଧୀରଃ (ଜ୍ଞାନୀ ଲୋକ) ନ ମୁହ୍ୟତି (ମୋହଗ୍ରସ୍ତ ହୁଅନ୍ତି ନାହିଁ)।

## ଅନୁବାଦ

"ଏହି ଏକ ଜୀବନରେ ମନୁଷ୍ୟମାନେ ଯେପରି କୌମାର, ଯୌବନ ଓ ଜରାଦି ଭିନ୍ନ ଭିନ୍ନ ଅବସ୍ଥା ଗ୍ରହଣ କରିଥାନ୍ତି, ଜୀବରି ମୃତ୍ୟୁଦେଇ ଅନ୍ୟ ଦେହ ଗ୍ରହଣ କରିବା ସେହିପରି ଏକ ସ୍ୱାଭାବିକ କ୍ରିୟାମାତ୍ର । ଜ୍ଞାନୀ ଲୋକେ ଏହି ସତ୍ୟ ଅବବୋଧ କରି, ମୃତ୍ୟୁଉପରେ ଆଦୌ ଶୋଚନା କରି ନ ଥାନ୍ତି ।"

### ୧୪

ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ ଶୀତୋଷ୍ଣସୁଖଦୁଃଖଦାଃ
ଆଗମାପାୟିନୋଽନିତ୍ୟାସ୍ତାଂସ୍ତିତିକ୍ଷସ୍ୱ ଭାରତ । ୧୪ ।

କୌନ୍ତେୟ (ହେ କୁନ୍ତୀପୁତ୍ର ଅର୍ଜୁନ) ମାତ୍ରାସ୍ପର୍ଶାଃ ତୁ (ଆମର ଇନ୍ଦ୍ରିୟମାନଙ୍କ ସହିତ ବିଷୟାଦିର ସଂସ୍ପର୍ଶରୁହିଁ ) ଶୀତୋଷ୍ଣସୁଖଦୁଃଖଦାଃ (ଶୀତ ଓ ଉଷ୍ଣାଦି ସୁଖ ବା ଦୁଃଖ ଆସିଥାଏ) । [ସେସବୁ ସେହି କାରଣରୁହିଁ] ଆଗମାପାୟିନଃ (ଆସନ୍ତି ଓ ଯାଆନ୍ତି ) । ଅନିତ୍ୟାଃ (ଅର୍ଥାତ୍ ଅସ୍ଥାୟୀ) । ଭାରତ (ହେ ଅର୍ଜୁନ) ତାନ୍ (ସେସବୁକୁ, ଅର୍ଥାତ୍ ସୁଖ ଓ ଦୁଃଖ ଉଭୟକୁ ) [ସେହି କାରଣରୁ] ତିତିକ୍ଷସ୍ୱ (ଧୀର ଚିତ୍ତରେ ସହିଯାଅ ) ।

## ଅନୁବାଦ

"ହେ ଅର୍ଜୁନ, ଜାଣିରଖ ଯେ ଶୀତ, ଉଷ୍ଣ ବା ସୁଖ, ଦୁଃଖ ଇତ୍ୟାଦି ଅନୁଭବ ସ୍ୱୟଂ ସ୍ୱତନ୍ତ୍ର-ସତ୍ତା-ହୀନ । ଆମର ଇନ୍ଦ୍ରିୟମାନଙ୍କର ବାହ୍ୟ ବିଷୟମାନଙ୍କ ସହିତ ସଂସ୍ପର୍ଶରୁହିଁ ସେସବୁ ଜାତ ହୁଅନ୍ତି ଏବଂ ଆସନ୍ତି ଓ ଚାଲିଯାନ୍ତି । ତେଣୁ ସେସବୁ ଏକାନ୍ତରେ ଅନିତ୍ୟ । ସେସବୁକୁ ସେହି କାରଣରୁ କେବଳ ଧୀର ଓ ନିର୍ବିକାର ଭାବରେ ସହିଯିବାହିଁ ଉଚିତ । ଆଦୌ ଉଚିତ ନୁହେଁ ସେଥିରେ ମଜ୍ଜି ନିଜକୁ ମିଶାଇଦେବା ।"

## ବିଶେଷ ଭାଷ୍ୟ

ମାତ୍ରାସ୍ପର୍ଶାଃ—(ମାତ୍ରାୟାଃ ସ୍ପର୍ଶାଃ) ମାତ୍ରାମାନଙ୍କର ସ୍ପର୍ଶ ।
ମାତ୍ରା— ବ୍ୟଞ୍ଜନବର୍ଣ୍ଣମାନଙ୍କରେ ସ୍ୱରବର୍ଣ୍ଣର ସଂଯୋଗଚିହ୍ନ ।

ସେହିପରିହିଁ ଆମର ଇନ୍ଦ୍ରିୟସବୁ ନିଜନିଜର ଉପଭୋଗ୍ୟ ବିଷୟସବୁ ସହିତ 'ସ୍ପର୍ଶ' ଦେଇ ପରସ୍ପର ସଂଯୁକ୍ତ। ମାତ୍ରାର ଅନ୍ୟ ଅର୍ଥ—ପ୍ରାକୃତିକ ଉପାଦାନ ବା ବିଷୟ। ମାତ୍ରାସ୍ପର୍ଶ ତେଣୁ "ବିଷୟ ସହିତ ସଂପର୍କ"। ମାତ୍ରାର ଅନ୍ୟ ଅର୍ଥ ମଧ୍ୟ, "ଇନ୍ଦ୍ରିୟସବୁ", ଯାହାଦ୍ୱାରା ବିଷୟକୁ ମପାଯାଏ (ମୀୟନ୍ତେ) ବା ଜାଣିହୁଏ। ଗୀତାରେ ଆମର ସାଂସାରିକ ଅନୁଭବସବୁ ଯେ ବିପରୀତ-ଗୁଣାତ୍ମକ ଦୁଇ ଦୁଇଟି ଅନୁଭବର ସମାହାର ମାତ୍ର ଏହା ବାରମ୍ବାର କୁହା-ଯାଇଛି ଏବଂ ତାହାହିଁ ନିରାଟ ପ୍ରାକୃତିକ ସତ୍ୟ। ଏସବୁ ହେଲା—ସୁଖ-ଦୁଃଖ, ହସ-କାନ୍ଦ, ବିଦ୍ୱେଷ-ଆକର୍ଷଣ, ଉଷ୍ଣ-ଶୀତଳ ଇତ୍ୟାଦି। ଏସବୁ ବାହ୍ୟ ସଂସ୍ପର୍ଶ ବା ବାହ୍ୟ ଘଟଣାବଳୀରୁ ଆସନ୍ତି ଓ ଯାଆନ୍ତି। ପୁଣି, ସେଗୁଡ଼ିକରୁ କେହି ଆଦୌ ଚିରସ୍ଥାୟୀ ନୁହନ୍ତି। ଆମର ଜୀବନ ଓ ମରଣ ମଧ୍ୟ ସେହିପରି ଏକ ଦ୍ୱନ୍ଦ୍ୱ-ଅନୁଭବ ମାତ୍ର ଏବଂ ଏ ମଧ୍ୟ ଯାଉଛନ୍ତି ଓ ଆସୁଛନ୍ତି। ଜ୍ଞାନୀ ଲୋକେ, ତେଣୁ, ଏଗୁଡ଼ିକର ଆପେକ୍ଷିକ ତାତ୍ପର୍ଯ୍ୟ ଗଭୀରଭାବରେ ବୁଝିପାରି, ଏଗୁଡ଼ିକଉପରେ ନିଜର ଧୈର୍ଯ୍ୟ ନ ହରାଇ, ସେଗୁଡ଼ିକ ଯେମିତି ଆସିଥାନ୍ତି ସେମିତି ଗ୍ଳଲିଯିବାପର୍ଯ୍ୟନ୍ତ ଧୀରଚିତ୍ତରେ ଅପେକ୍ଷା କରି ରହନ୍ତି।

୧୫

ଯଂ ହି ନ ବ୍ୟଥୟନ୍ତ୍ୟେତେ ପୁରୁଷଂ ପୁରୁଷର୍ଷଭ
ସମଦୁଃଖସୁଖଂ ଧୀରଂ ସୋଽମୃତତ୍ୱାୟ କଳ୍ପତେ। ୧୫।

ପୁରୁଷର୍ଷଭ (ହେ ପୁରୁଷଶ୍ରେଷ୍ଠ ଅର୍ଜୁନ) ଏତେ (ଏହିସବୁ ମାତ୍ରାସ୍ପର୍ଶଜନିତ ଶୀତୋଷ୍ଣ ଓ ସୁଖଦୁଃଖାଦି) ଯଂ ସମଦୁଃଖସୁଖଂ ଧୀରଂ ପୁରୁଷଂ (ଦୁଃଖ ଓ ସୁଖକୁ ସମଭାବରେ ଦେଖୁଥିବା ଧୈର୍ଯ୍ୟବାନ୍ ଯେଉଁ ପୁରୁଷଙ୍କୁ) ନ ବ୍ୟଥୟନ୍ତି (ବ୍ୟଥା ଦିଅନ୍ତି ନାହିଁ, ବିମୂଢ଼ କରନ୍ତି ନାହିଁ) ସଃ ହି (ସେହିହିଁ) ଅମୃତତ୍ୱାୟ କଳ୍ପତେ (ଅମୃତତ୍ୱର ଅଧିକାରୀ ହୁଅନ୍ତି)।

**ଅନୁବାଦ**

"ହେ ପୁରୁଷଶ୍ରେଷ୍ଠ ଅର୍ଜୁନ, ଏହିସବୁ ମାତ୍ରାସ୍ପର୍ଶ-ଜନିତ ଶୀତୋଷ୍ଣ, ସୁଖ-ଦୁଃଖ, ନିନ୍ଦା-ସ୍ତୁତ୍ୟାଦି ଐହିକ ଅବସ୍ଥାଗୁଡ଼ିକ ଯେଉଁ ଧୀର ପୁରୁଷଙ୍କୁ କୌଣସିଭାବରେ ବିଚଳିତ କରାଇପାରି ନ ଥାନ୍ତି, ସେହିହିଁ ଅମୃତତ୍ୱର ଅଧିକାରୀ ହୋଇଥାନ୍ତି।"

## ବିଶେଷ ଭାଷ୍ୟ

ପୁରୁଷର୍ଷଭ—ପୁରୁଷାଣାଂ (ପୁରୁଷମାନଙ୍କ ମଧ୍ୟରେ) ଋଷଭଃ (ଷଣ୍ଢ ବା ଶ୍ରେଷ୍ଠ) । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏପରି ସମ୍ବୋଧନ କରିବାରେ ବ୍ୟଞ୍ଜନା ଏହିକି ତୁମେ ପୁରୁଷଶ୍ରେଷ୍ଠ ହୋଇ ଏହି ସାମାନ୍ୟ କଥାରେ ବିଚଳିତ ହୋଇଯାଉଛ । ଏ କିପରି କଥା ? ବରଂ ଏସବୁରେ ଯିଏ ବିଚଳିତ ନ ହୋଇ ଧୀରସ୍ଥିରଭାବରେ ସହିଯାନ୍ତି, ସେହିମାନେ ପ୍ରକୃତରେ ଇହଜଗତରେ ପୁରୁଷଶ୍ରେଷ୍ଠ ବୋଲି ଧରାଯାନ୍ତି । କେବଳ ତାହା ନୁହେଁ, ସେ 'ଅମୃତତ୍ୱ'ର ମଧ୍ୟ ଅଧିକାରୀ ହୋଇଉଠନ୍ତି । ଅର୍ଥାତ୍, ତାଙ୍କୁ ଆଉ ପୁଣି ଜନ୍ମ-ମରଣ ଭୋଗ କରିବାକୁ ହୁଏ ନାହିଁ ।

ଭାରତୀୟ ଜୀବନଦର୍ଶନର ଶେଷ ଲକ୍ଷ୍ୟ ହେଲା, 'ସଂସାର' (ସୃ-ଧାତୁରୁ ନିଷ୍ପନ୍ନ, ଅର୍ଥାତ୍, ଯାହା ଜୀବନମରଣ ଦେଇ ଚିର ଚଳମାନ)ରୁ ଅର୍ଥାତ୍ ବାରମ୍ବାର ପାର୍ଥିବ ଜୀବନ ଗ୍ରହଣ କରି ତଜ୍ଜନିତ ଦୁଃଖଜଞ୍ଜାଳ ଯେ ପାଇଚାଲିଛେ ତହିଁରୁ, କିପରି ମୁକ୍ତି ପାଇବା । ସାଂଖ୍ୟଦର୍ଶନ ପ୍ରଥମେ ସୃଷ୍ଟି ଓ ଜୀବନର ରହସ୍ୟ ଉଦ୍‌ଘାଟନ କରିବାକୁ ଯାଇ କହିଲା ଯେ, ଏହି ସୃଷ୍ଟି ପୁରୁଷ ଓ ପ୍ରକୃତିର ସଂଯୋଗ ଦେଇହିଁ ପ୍ରବହମାନ । ପ୍ରକୃତି (Matter) ଚିରକ୍ରିୟାଶୀଳା । ଚିର-କ୍ରିୟମାଣ ରହି 'ପ୍ରକୃତି', ସହସ୍ରଧା ସହସ୍ର ଅନୁଭବ ଖୋଜିଚାଲିଛି । କିନ୍ତୁ ପୁରୁଷ ବା ସ୍ପିରିଟ୍ (Spirit) ବା ଆତ୍ମାର ସଂଯୋଗ ନ ପାଇଲେ ସେ ଅକ୍ରିୟ, ଜଡ଼ମାତ୍ର । ପୁରୁଷକୁ ତେଣୁ ପ୍ରକୃତି ଟାଣିରଖୁଛି ତାର ଦୁଃଖ-ସୁଖ-ମୟ ଅଗଣିତ ଅନୁଭବପାଇଁ । ଏପରିକି ଏହି 'ପ୍ରକୃତି' ବାରଂବାର ମୃତ୍ୟୁକୁ ମଧ୍ୟ ମାନିନେଉଛି, ପୁଣି ଆଉ ଏକ ଏକ ଜନ୍ମରେ ଆଉ ଆଉ ଅନୁଭବପାଇଁ । ବିଚାରା ପୁରୁଷ କ୍ରମେ କ୍ରମେ ଏହି ବାରମ୍ବାର ଜନ୍ମ-ମରଣର ଜଞ୍ଜାଳରେ କ୍ଳାନ୍ତ ହୋଇପଡ଼ିଲେ ମଧ୍ୟ, ଅଭ୍ୟାସବଶତଃ ପ୍ରକୃତିକୁ ଛାଡ଼ିଯାଇପାରେ ନା । ପୁରୁଷ ସ୍ୱୟଂ ଅବିନାଶୀ, ନିର୍ମଳ ଓ ନିରଞ୍ଜନ । ପ୍ରକୃତି ସହିତ ମିଶିବାରୁହିଁ ସେ ପ୍ରକୃତିର 'ତ୍ରିଗୁଣ'ଦ୍ୱାରା ଅନୁରଞ୍ଜିତ ହୋଇଉଠେ ଏବଂ ବ୍ୟାଧି-ଜରା-ମୃତ୍ୟୁର ଦୁଃଖସବୁ ମଧ୍ୟ ଭୋଗ କରେ । ନଚେତ୍ ସ୍ୱକୀୟ ଭାବରେ ପୁରୁଷ ନିଜେ ମୃତ୍ୟୁହୀନ, ଅମୃତ ଓ ଆନନ୍ଦମୟ । ସାଂଖ୍ୟ ଦର୍ଶନାନୁଯାୟୀ, ପୁରୁଷ ଯେତେବେଳେ ନିଜର ନିଜତ୍ୱ ସଂପର୍କରେ ଅବହିତ ହୋଇ ପ୍ରକୃତିଠାରୁ ନିଜକୁ ମୁକ୍ତ କରିଦିଏ, ସେତେବେଳେ ଯାଇ ହୁଏ ଜୀବର ମୋକ୍ଷ । ତାପରେ ପୁରୁଷ ନିଜର ଶାଶ୍ୱତ ଆନନ୍ଦମୟ ଅମୃତ ଅବସ୍ଥାକୁ ପୁଣି ଫେରିଯାଏ । ଏହି ଅମୃତତ୍ୱ-ରୂପକ ସ୍ୱକୀୟ ଅଧିକାରକୁ ଫେରିଯିବା ବା ଫେରିପାଇବାର ଉପାୟ ହେଉଛି, ସଂସାରର ପ୍ରକୃତିଦ୍ୱାରା-ଘଟିତ

ଦୁଃଖ ସୁଖାଦି ଦ୍ୱନ୍ଦ୍ୱପ୍ରତି ସଂପୂର୍ଣ୍ଣ ନିରପେକ୍ଷ, ନିରାସକ୍ତ ରହିବା । ସେହି ସାଧନାହିଁ ପୁରୁଷଉପରେ ଥିବା ପ୍ରକୃତିର ଅଷ୍ଟପାଶ-ବନ୍ଧନକୁ ଆସ୍ତେ ଆସ୍ତେ କୋହଳ କରି, ଶେଷରେ ତାକୁ ସଂପୂର୍ଣ୍ଣ ମୁକ୍ତ ଆଣିଦିଏ । ଅନ୍ୟ ପକ୍ଷରେ ଆମେ ଜାଗତିକ ଦୁଃଖସୁଖାଦିରେ ଯେତିକି ଯେତିକି ଆସକ୍ତ ରହିଥିବା, ଅମୃତତ୍ୱ ବା 'ମୁକ୍ତି' ଠାରୁ ଆମେ ସେତିକି ସେତିକି ଦୂରେଇ ରହିଥିବା । ତାହା ମଧ୍ୟ ଆମ ବ୍ୟକ୍ତିତ୍ୱକୁ ରକ୍ଷିଣ୍ଣରଖିବ ଦୁର୍ବଳ କରି । ସେଇଥିପାଇଁ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଏଠାରେ ପୁରୁଷର୍ଷଭ ସଂବୋଧନ କରିଛନ୍ତି । ସେ ସଂବୋଧନଟିର ତାତ୍ପର୍ଯ୍ୟ ଆମ ପ୍ରତ୍ୟେକଙ୍କ ପାଇଁ ମଧ୍ୟ ପ୍ରଯୋଜ୍ୟ । କାରଣ ଆମେ ପ୍ରତ୍ୟେକେ ଅମୃତତ୍ୱର ଅଧିକାରୀ । କେବଳ ପ୍ରକୃତି ପ୍ରଭାବିତ ଶାରୀରିକ ଦୁର୍ବଳତା ଯୋଗୁଁ ହିଁ ଆମେ ଆମର ସେହି ପୁଣ୍ୟ ଅଧିକାର ଭୁଲିଯାଇ ଏବଂ ସାଧାରଣତଃ ବିମୂଢ଼ ରହି ନିରାନନ୍ଦମୟ ଜୀବନ ଯାପନ କରିଥାଉଁ । ଗୀତା ଚାହାନ୍ତି ଯେ ଆମେ ପ୍ରତ୍ୟେକେ 'ପୁରୁଷର୍ଷଭ'ହିଁ ହେଉଁ, ଧୀର ହେଉଁ, ଏବଂ ମୃତ୍ୟୁପରେ ଅମୃତତ୍ୱର ଅଧିକାରୀ ହେଉଁ ।

୧୬

ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ
ଉଭୟୋରପି ଦୃଷ୍ଟୋଽନ୍ତସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ । ୧୬ ।

ଅସତଃ ଭାବଃ (ଅ-ସତ୍ ଅର୍ଥାତ୍ ମିଥ୍ୟା ବସ୍ତୁର ଭାବ ବା ଅସ୍ତିତ୍ୱ) ନ ବିଦ୍ୟତେ (ନ ଥାଏ) । ସତଃ (ସତ୍‌ବସ୍ତୁର) ଅଭାବଃ ନ ବିଦ୍ୟତେ (ନାଶ ନାହିଁ) । ତତ୍ତ୍ୱଦର୍ଶିଭିଃ ତୁ (ତତ୍ତ୍ୱଜ୍ଞ ପଣ୍ଡିତମାନଙ୍କଦ୍ୱାରା) ଅନୟୋଃ ଉଭୟୋଃ ଅନ୍ତଃ ଅପି (ଏହି ଉଭୟ ଶ୍ରେଣୀର ତାତ୍ପର୍ଯ୍ୟ ମଧ୍ୟ) ଦୃଷ୍ଟଃ (ସ୍ଥିରୀକୃତ ହୋଇଯାଇଛି ) ।

**ଅନୁବାଦ**

"ହେ ଅର୍ଜ୍ଜୁନ, ମିଥ୍ୟା ବସ୍ତୁର ଅସ୍ତିତ୍ୱ କାହିଁ ? ଏବଂ ପ୍ରକୃତ ସତ୍ୟର ବା ବିନାଶ କାହିଁ ? ତତ୍ତ୍ୱଜ୍ଞ ପଣ୍ଡିତ ଲୋକେ ଏହି ସତ୍ ଓ ଅସତ୍‌ର ପ୍ରଭେଦର ତାତ୍ପର୍ଯ୍ୟ ଉତ୍ତମରୂପେ ହୃଦ୍‌ବୋଧ କରି, ସେହି ଅନୁଯାୟୀ ବ୍ୟବହାର ଦେଖାଇଥାନ୍ତି ।

**ବିଶେଷ ଭାଷ୍ୟ**

ସାଂଖ୍ୟର ପ୍ରକୃତି ଓ ପୁରୁଷ ବା ଶରୀର ଓ ଆତ୍ମା ବା ମାଟର (Matter) ଓ ସ୍ପିରିଟ୍ (Spirit)କୁ ପରେ ବେଦାନ୍ତଦର୍ଶନରେ ଅନ୍ୟ ଭାବରେ କୁହାଗଲା 'ସତ୍' ଓ 'ଅ-ସତ୍' । ସତ୍ ସେହି, ଯାହା ଥାଏ ବା ଅଛି ଅର୍ଥାତ୍ ଯାହା ଚିରନ୍ତନ,

ଯାହାର ନାଶ ନାହିଁ । ସେହିପରି ଅ-ସତ୍ ସେହି, ଯାହା ମିଥ୍ୟା, ଯାହାର ଚିରନ୍ତନତା ନାହିଁ, ଯାହା କ୍ଷଣସ୍ଥାୟୀ ଓ ଆପେକ୍ଷିକ ଭାବରେ ସ୍ଥିତିବାନ୍ ମାତ୍ର । 'ଭାବ' = ଭୂ ଧାତୁ ନିଷ୍ପନ୍ନ, ଯାହା ହୁଏ ବା ପ୍ରକାଶ ପାଏ । ଅ-ଭାବ=ତାର ବିପରୀତ, ଅର୍ଥାତ୍ ନାଶ ।

ଶ୍ରୀକୃଷ୍ଣ ବର୍ତ୍ତମାନ ମନୁଷ୍ୟ ସୁଖଦୁଃଖପ୍ରତି ନିରପେକ୍ଷ ଓ ସମଭାବାପନ୍ନ କାହିଁକି ହେବ, ସେଥିପାଇଁ ଏ ସୃଷ୍ଟିରେ ଥିବା ସତ୍ ଓ ଅ-ସତ୍‌ର ପ୍ରଭେଦ ବୁଝାଉଛନ୍ତି । ଆମ ଜୀବନର ସୁଖଦୁଃଖାଦି ଅନୁଭବ ଅ-ସତ୍, କାରଣ ସେ ସମସ୍ତହିଁ କ୍ଷଣସ୍ଥାୟୀ । ସେସବୁ ଯାଆନ୍ତି ଓ ଆସନ୍ତି । ସେମାନଙ୍କର ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ତ ନାହିଁ, ତେଣୁ ସେଗୁଡ଼ାକପାଇଁ ମନୁଷ୍ୟ ଭାବିବେ କାହିଁକି ? ଅନ୍ୟ ପକ୍ଷରେ, ଏ ସୃଷ୍ଟିରେ, ଯାହା ସତ୍, ଯାହା ଶାଶ୍ୱତ, ଯାହାର କୌଣସି ପରିବର୍ତ୍ତନ ବା ବିନାଶ ନାହିଁ, ସେପରି ବସ୍ତୁ ମଧ୍ୟ ଅଛି । ତାକୁ ଖୋଜ ଓ ବୁଝ । ଯାହା ଅ-ସତ୍, ତାପାଇଁ ବିଳାପ କାହିଁକି ? ଶ୍ରୀକୃଷ୍ଣ କହୁଛନ୍ତି ଯେ, ପଣ୍ଡିତ ଲୋକମାନେ ଏ ସଂସାରରେ ସତ୍ ଓ ଅ-ସତ୍‌ର ପ୍ରଭେଦକୁ ସ୍ପଷ୍ଟଭାବରେ ଦେଖିପାରିଥାନ୍ତି । ଅନ୍ୟଭାଷାରେ ଯେଉଁମାନେ ସେପରି ଦେଖିପାରନ୍ତି, ସେହିମାନେ ହିଁ ପ୍ରକୃତ ପଣ୍ଡିତ । କିଏ ସତ୍ କିଏ ଅ-ସତ୍; ତାହା ଭଲଭାବରେ ଜାଣିଥାନ୍ତି ବୋଲିହିଁ ସେମାନେ ପ୍ରକୃତରେ 'ତତ୍ତ୍ୱଦର୍ଶୀ' । ସଂସାରରେ କଣ ସତ୍ ବା ଶାଶ୍ୱତ, ଗୀତା ଏହା ପରବର୍ତ୍ତୀ ଶ୍ଳୋକରେ କହୁଛନ୍ତି ।

୧୭

ଅବିନାଶି ତୁ ତଦ୍‌ବିଦ୍ଧି ଯେନ ସର୍ବମିଦଂ ତତମ୍
ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍‌କର୍ତ୍ତୁମର୍ହତି । ୧୭ ।

ଯେନ ଇଦଂ ସର୍ବଂ ତତମ୍ (ଯାହାଙ୍କଦ୍ୱାରା ଏହି ସମଗ୍ର ସୃଷ୍ଟି ପରିବ୍ୟାପ୍ତ) ତତ୍ତୁ ଏବ ଅବିନାଶି ବିଦ୍ଧି (ତାକୁହିଁ ଏକମାତ୍ର ବିନାଶରହିତ ବସ୍ତୁ ବୋଲି ଜାଣ । କଶ୍ଚିତ୍ (କେହି ହେଲେ) ଅସ୍ୟ ଅବ୍ୟୟସ୍ୟ (ଏହି କ୍ଷୟହୀନ ପଦାର୍ଥର) ବିନାଶଂ କର୍ତ୍ତୁଂ (ବିନାଶ କରିଦେବାକୁ) ନ ଅର୍ହତି (ସମର୍ଥ ହୁଏ ନାହିଁ) ।

**ଅନୁବାଦ—**

"(ତମେ ପଚାରିପାର) ଏ ସଂସାରରେ ସେହି ମୃତ୍ୟୁହୀନ ବିନାଶଶୂନ୍ୟ 'ସତ୍' ବସ୍ତୁ କଣ ? ସେହି ବସ୍ତୁ ହେଉଛି ସେହି ଯାହାକି ଏହି ସମଗ୍ର ସୃଷ୍ଟିକୁ ପରିବ୍ୟାପ୍ତ କରି ରହିଛି । ଏ ସୃଷ୍ଟିରେ ଏକମାତ୍ର ସେହି ଅବିନାଶୀ ବୋଲି ଜାଣିବ । ଏବଂ କେହି ହେଲେ ସେହି ଅବ୍ୟୟ ପଦାର୍ଥର ବିନାଶ ଘଟାଇପାରିବ ନାହିଁ ।

## ବିଶେଷ ଭାଷ୍ୟ

ସତ୍ ଓ ଅ-ସତ୍‌କୁ ଶ୍ରୀକୃଷ୍ଣ ଏ ଶ୍ଳୋକରେ ଆହୁରି ସ୍ପଷ୍ଟ କରିଦେଲେ । ସେହି ଏକ ସୂକ୍ଷ୍ମ ବସ୍ତୁ, ଯାହା ଜଡ଼, ଉଦ୍ଭିଦ ଓ ଜୀବ ଦେହରେ କେବଳ ନୁହେଁ ଏହି ସମଗ୍ର ସୃଷ୍ଟିରେ ଓତପ୍ରୋତଭାବରେ ପ୍ରବାହିତ, ସେହି ଶକ୍ତିହିଁ ସତ୍ । ତାହା ଅବିନାଶୀ, ଅକ୍ଷୟ ଓ ଅବ୍ୟୟ । ତାକୁ କେହି ହେଲେ ନାଶ କରିପାରିବ ନାହିଁ । ଆଧୁନିକ ବିଜ୍ଞାନ ତାକୁ କହିପାରେ 'Life force' ବା ଜୀବନ-ଶକ୍ତି । ସାଂଖ୍ୟ କହିପାରେ 'ପୁରୁଷ', ବେଦାନ୍ତ କହିପାରେ 'ବ୍ରହ୍ମ' । ସବୁ ସେହି ଗୋଟିଏ ବସ୍ତୁକୁହିଁ ବୁଝାଉଛି, ଯାହାକି ଅନାଦିକାଳରୁ ମୃତ୍ୟୁକୁ ଅହରହ ପରାସ୍ତ କରି ଅଗଣିତ ଜୀବନ-ପଦ୍ମ ପ୍ରତି ମୁହୂର୍ତ୍ତରେ ଫୁଟାଇଚାଲିଛି ।

(ପରବର୍ତ୍ତୀ ଶ୍ଳୋକର ବ୍ୟାଖ୍ୟା ଦେଖ)

### ୧୮

ଅନ୍ତବନ୍ତ ଇମେ ଦେହା ନିତ୍ୟସ୍ୟୋକ୍ତାଃ ଶରୀରିଣଃ
ଅନାଶିନୋଽପ୍ରମେୟସ୍ୟ ତସ୍ମାଦ୍ ଯୁଧ୍ୟସ୍ୱ ଭାରତ । ୧୮ ।

ନିତ୍ୟସ୍ୟ (ସେହି ଚିରସ୍ଥାୟୀ) ଅନାଶିନଃ (ସେହି ଅବିନାଶୀ) ଅପ୍ରମେୟସ୍ୟ (ସେହି ବସ୍ତୁ ଯାହାକୁ କେହି ମାପିପାରିବେ ନାହିଁ) [ଏପରି] ଶରୀରିଣଃ (ଶରୀର-ଅଭ୍ୟନ୍ତରସ୍ଥ ସେହି ସତ୍ ବସ୍ତୁର) ଇମେ ଦେହାଃ [ଆମର] (ଏହି ସମସ୍ତ ଦେହହିଁ ) ଅନ୍ତବନ୍ତଃ ଉକ୍ତାଃ (ବିନାଶଶୀଳ ଅଟନ୍ତି) । ତସ୍ମାତ୍ (ସେହି କାରଣରୁ) ହେ ଭାରତ (ହେ ଅର୍ଜ୍ଜୁନ), ଯୁଧ୍ୟସ୍ୱ (ଯୁଦ୍ଧ କର) । [ଅର୍ଥାତ୍ କୁଳ-କୁଟୁମ୍ବ 'ନଷ୍ଟ' ହୋଇଯିବେ ବୋଲି ଆତଙ୍କିତ ହୋଇ ଉଠିବାରେ କୌଣସି ଯୌକ୍ତିକତା ନାହିଁ । ତୁମର କର୍ତ୍ତବ୍ୟ କରିଯାଅ । ]

## ଅନୁବାଦ

"ସେହି ନିତ୍ୟ, ଅନାଶୀ, ଅପ୍ରମେୟ ଶରୀରର ଅସ୍ଥାୟୀ ଆଶ୍ରୟମାନ ଆମର ଏହି ଶରୀରଗୁଡ଼ିକ କେବଳ ନାଶ୍ୟ । ଏହାକୁ ମନରେ ରଖିହିଁ ଯୁଦ୍ଧ କରିଚାଲ ।

## ବିଶେଷ ଭାଷ୍ୟ

ଏ ଶ୍ଳୋକରେ ଶ୍ରୀକୃଷ୍ଣ 'ସତ୍' ଓ ଅ-ସତ୍‌ର ପାର୍ଥକ୍ୟକୁ ଅର୍ଜ୍ଜୁନଙ୍କ ନିକଟରେ ଆହୁରି ପ୍ରାସଂଗିକ କରି ଥୋଇଲେ । ଅର୍ଜ୍ଜୁନ ଯେ ଯୁଦ୍ଧରେ ପଛଘୁଞ୍ଚା ଦେଇଥିଲେ, ତାର କାରଣ ସେ ଧରିନେଇଥିଲେ ଯେ, ଦେହ ଓ

ଦେହୀ ଏକ ଓ ଅଭିନ୍ନ ବସ୍ତୁ । ଶ୍ରୀକୃଷ୍ଣ ଇହଜୀବନରେ ସୁଖ-ଦୁଃଖର, ଜୀବନ-ମରଣର ପ୍ରକୃତ ତତ୍ତ୍ୱ କଣ, ସେଥିପ୍ରତି ଅର୍ଜୁନଙ୍କର ଦୃଷ୍ଟି ଆକୃଷ୍ଟ କରାଇ ଏବଂ କ୍ରମେ ଏହି ସୃଷ୍ଟିରେ ନିତ୍ୟ ଓ ଅନିତ୍ୟ ଏବଂ ସତ୍ ଓ ଅସତ୍ ଭିତରେ ସୂକ୍ଷ୍ମ ପ୍ରଭେଦ କପରି ରହିଛି, ସେକଥା ମଧ୍ୟ ବୁଝାଇସାରି ବର୍ତ୍ତମାନ ସେହି ନୀତି ବା principleକୁ କେବଳ ଅର୍ଜୁନ ନୁହେଁ, ଆମ ପ୍ରତ୍ୟେକଙ୍କର ଶରୀରପ୍ରତି ପ୍ରୟୋଗ କରିବସିଲେ । ସେ କହୁଛନ୍ତି—"ହେ ଅର୍ଜୁନ, ଆମେ କେବଳ ଆମର ଏହି ଶରୀରଟାହିଁ ନୋହୁଁ । ଏହାଭିତରେ ଏକ ସତ୍ ଅର୍ଥାତ୍ ଶାଶ୍ୱତ ଶକ୍ତି ପ୍ରତିଷ୍ଠିତ, ଯାହା କି ଆମ ବାହାରେ ଏହି ସମଗ୍ର ସୃଷ୍ଟିକୁ ମଧ୍ୟ ବ୍ୟାପିରହିଛି । କିନ୍ତୁ ଶାଶ୍ୱତ ହେଲେହେଁ, ସେହି ଶକ୍ତି ଯେଉଁ ଆଧାରରେ ସ୍ଥାନ ନେଇଛି, ସେହି ଆଧାରଟି ଅନିତ୍ୟ ଓ ନାଶ୍ୟ । ଦେହ ଓ ଦେହୀକୁ, ଶରୀର ଓ ଶରୀରୀକୁ ଭୁଲ୍‌ରେ ଏକ ବୋଲି ମନେ ନ କରି, ତୁମେ ତେଣୁ ଯୁଦ୍ଧ କର । ସେହି ଯୁଦ୍ଧରେ ତୁମେ କେବଳ ନାଶ୍ୟ ଶରୀରଗୁଡ଼ାକୁ ନଷ୍ଟ କରିବ ସିନା, ଶରୀରସ୍ଥ ଶାଶ୍ୱତ ଶକ୍ତିକୁ ଅର୍ଥାତ୍ ପ୍ରକୃତ ଜୀବକୁ ତୁମେ ବା ଅନ୍ୟ କେହି ସ୍ପର୍ଶ କରିପାରିବ ନାହିଁ । ତାହା ଅପ୍ରମେୟ (ଯାହା ଆମ ମାପର ବାହାରେ), ଅବିନାଶୀ (ବିନାଶରହିତ) ଏବଂ ନିତ୍ୟ । ତାହାହିଁ ପ୍ରକୃତ ଜୀବ ବା ମନୁଷ୍ୟ— ନୁହେଁ ଏହି ନାଶ୍ୟ ଶରୀର ।"

## ୧୯

ଯ ଏନଂ ବେତ୍ତି ହନ୍ତାରଂ ଯଶ୍ଚୈନଂ ମନ୍ୟତେ ହତମ୍
ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ । ୧୯ ।

ଯଃ (ଯେ) ଏନଂ (ଏହି ଶରୀରାଭ୍ୟନ୍ତରସ୍ଥ ଶକ୍ତିକୁ) ହନ୍ତାରଂ ବେତ୍ତି (ହତ୍ୟାକାରୀ ବୋଲି ମନେ କରେ), ଯଃ ଚ (ଯେ ବା) ଏନଂ ହତଂ ମନ୍ୟତେ (ଏହା ମରିଗଲା ବୋଲି ମନେ କରେ) ତୌ ଉଭୌ (ସେ ଉଭୟେ) ନ ବିଜାନୀତଃ (କିଛି ଜାଣନ୍ତି ନାହିଁ, ଅର୍ଥାତ୍ ଅଜ୍ଞ) । ଅୟଂ (ଶରୀରସ୍ଥ ଏହି ଶକ୍ତି) ନ ହନ୍ତି (କାହାକୁ ସତ୍ୟରେ ହତ୍ୟା କରିପାରେ ନାହିଁ) [ବା] ନ ହନ୍ୟତେ (ସେ ନିଜେ ମଧ୍ୟ କାହାଦ୍ୱାରା ହତ ହୁଏ ନାହିଁ) ।

### ଅନୁବାଦ

"ଯିଏ ଅନ୍ୟ-ଶରୀରସ୍ଥ ଏହି ନିତ୍ୟ, ଅନାଶୀ ଶରୀରୀକୁ ନଷ୍ଟ କରିଦେଲି ବା ଅନ୍ୟ ହାତରେ ସେ ହତ ହେଲି ବୋଲି ମନେ କରେ, ସେହି ହତ ଓ

ହତ୍ୟାକାରୀ ଉଭୟଙ୍କୁ ଅଜ୍ଞ ବୋଲି ଧରିନେବ। ବସ୍ତୁତଃ ଏ ଜଗତରେ କେହିହେଁ ହତ ବା ହତ୍ୟାକାରୀ ନୁହନ୍ତି।''

## ବିଶେଷ ଦ୍ରଷ୍ଟବ୍ୟ

ସାଂପ୍ରତିକ ଯାନ୍ତ୍ରିକ ସଭ୍ୟତା, ମନୁଷ୍ୟଦ୍ୱାରା, ପ୍ରକୃତିରେ ଥିବା Energy ବା ଶକ୍ତିର ନିୟନ୍ତ୍ରଣରୁହିଁ ଉଦ୍ଭୂତ ହୋଇଛି। ପବନ, ଜଳସ୍ରୋତ, ବାଷ୍ପ, ବିଦ୍ୟୁତ୍ ଏବଂ ବିଭଜିତ ଅଣୁର ଶକ୍ତି ବର୍ତ୍ତମାନ ମନୁଷ୍ୟର ଦାସପରି କାମ କରୁଛନ୍ତି। ମନୁଷ୍ୟ କିନ୍ତୁ 'ଶକ୍ତି' ତିଆରି କରି ନାହିଁ। ପ୍ରକୃତିରେ ପ୍ରଚ୍ଛନ୍ନ ଥିବା ଶକ୍ତିକୁ ମନୁଷ୍ୟ ଆବିଷ୍କାର କଲି ମାତ୍ର। ବୈଜ୍ଞାନିକମାନଙ୍କ ମତରେ ପ୍ରକୃତି-ନିହିତ ଶକ୍ତି ବା Energy ଚିରକାଳ ସମାନ। ତାର କ୍ଷୟ ନାହିଁ, ଅପଚୟ ନାହିଁ। ତାହା ବିନଷ୍ଟ ହୁଏ ନାହିଁ, କେବଳ ରୂପାନ୍ତର ଗ୍ରହଣ କରେ। ବିଦ୍ୟୁତ୍-ଶକ୍ତି ଆଲୋକରେ ବା ଗତିରେ ରୂପାନ୍ତରିତ ହୁଏ। ଏବେ 'ମାଟର୍' (matter) ବା ଜଡ଼ରୁ ପ୍ରଚଣ୍ଡ ଆଣବିକ ଶକ୍ତି ବାହାରୁଛି; ପୁଣି ସେହି ଶକ୍ତି ମନୁଷ୍ୟର କଲ୍ୟାଣ ବା ଧ୍ୱଂସପାଇଁ ନାନାଭାବରେ ବ୍ୟବହୃତ ହେଉଛି। କିନ୍ତୁ ଏ ସର୍ବବିଧ ଅଗଣିତ ରୂପାନ୍ତରୀଭବନଦ୍ୱାରା ପ୍ରକୃତିର ଶକ୍ତିର ପରିଣାମ ସର୍ବଦା ସମାନ। ତାର ମଧ କ୍ଷୟ ବା ଅପଚୟ ନାହିଁ। ସେହିପରି ଅଗଣିତ ଦେହର ଜନ୍ମ ଓ ନାଶଦ୍ୱାରା ନିତ୍ୟ ଓ ଅକ୍ଷୟ ରହିଛି ଏକ ସ୍ଥାୟୀ ଓ ଅବିନାଶୀ ବସ୍ତୁ।

ଏହି ଭାବ ପରବର୍ତ୍ତୀ ଶ୍ଳୋକମାନଙ୍କରେ ଆହୁରି ବିଶଦୀକୃତ ହେଉଛି।

୨୦

ନ ଜାୟତେ ମ୍ରିୟତେ ବା କଦାଚିତ୍
ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ। ୨୦।

ଅୟଂ (ଶରୀରସ୍ଥ ଏହି ଶକ୍ତି) କଦାଚିତ୍ ନ ଜାୟତେ (କେବେହେଲେ ଜନ୍ମଗ୍ରହଣ କରେ ନାହିଁ) ନ ମ୍ରିୟତେ ବା (ମରେ ମଧ ନାହିଁ)। ଭୂତ୍ୱା ବା ଭୂୟଃ ନ ଭବିତା (ଥରେ ଜାତ ହୋଇ ସେ ପରେ ଆଉ ଜନ୍ମ ନ ହେବ, ଏପରି କିଛି କଥା ନାହିଁ)। [କାରଣ] ଅୟଂ (ସେ) ଅଜଃ (ନିଜେ ଜନ୍ମରହିତ, ଅର୍ଥାତ୍ ଅନାଦି) ନିତ୍ୟ (ସର୍ବଦା ଏକ-ରୂପ) ଶାଶ୍ୱତଃ (ବିକାରଶୂନ୍ୟ) ପୁରାଣଃ (ପୁରାତନ

ଓ ପରିଣାମଶୂନ୍ୟ) । ଶରୀରେ ହନ୍ୟମାନେ (ଶରୀରଟାକୁ କେହି ହାଣିପକାଇଲେ ମଧ୍ଯ) ଅୟଂ (ସେ) ନ ହନ୍ୟତେ (ନଷ୍ଟ ହୁଏ ନାହିଁ) ।

**ଅନୁବାଦ**

"ଶରୀର-ଅଭ୍ୟନ୍ତରସ୍ଥ ସେହି ଶକ୍ତି କେବେହେଲେ ସାଧାରଣ ଅର୍ଥରେ 'ଜନ୍ମ' ହୁଏ ବା 'ମରେ' ବୋଲି କୁହାଯିବ ନାହିଁ । କିମ୍ବା ଥରେ 'ଜନ୍ମ' ହୋଇଛି ବୋଲି, ଆଉ 'ଜନ୍ମ' ହେବନି ବୋଲି କହିହେବନି । ସେ ବସ୍ତୁତଃ ଜନ୍ମରହିତ, କାରଣ ସେ ନିତ୍ୟ, ଶାଶ୍ବତ ଓ ପୁରାଣ । ଶରୀରଟାକୁ ବିନାଶ କଲେ ମଧ୍ଯ ତାହା ଅକ୍ଷତ ରହିଥାଏ ।"

**ବିଶେଷ ଭାଷ୍ୟ**

ଜୀବମାନଙ୍କର ଛଅଟା ଅବସ୍ଥା ଅଛି, ଯଥା—ଜନ୍ମ, ଅସ୍ତିତ୍ବ, ବୃଦ୍ଧି, ବିପରିଣାମ, ଅପକ୍ଷୟ ଓ ବିନାଶ । କିନ୍ତୁ ଜୀବର ଅସ୍ଥାୟୀ ଦେହଟାହିଁ ଏହିସବୁ ଅବସ୍ଥାଦେଇ ଗତି କରେ । ଜୀବାଭ୍ୟନ୍ତରସ୍ଥ ସତ୍ତ୍ବ ବା ସ୍ଥାୟୀ ଶକ୍ତି ଏସବୁ ଗୁଣ ବା ବିକାର ସହିତ ସମ୍ପୂର୍ଣ୍ଣ ଅସମ୍ପୃକ୍ତ । ସେ ଜନ୍ମ ହୁଏ ବୋଲି କହିହେବନି, କି ମରେ ବୋଲି କହିହେବନି । ଜନ୍ମେ ଓ ମରେ କେବଳ ଦେହ, ଅର୍ଥାତ୍ ପ୍ରକୃତି । ଥରେ ଜନ୍ମ ହୋଇଛି ବୋଲି ଯେ ସେଇଠି ତାର ଶେଷ, ଆଉ ଫେର୍ ସେ ଜୀବନରୂପେ ଦେଖାଦେବନି (ଭବିତା ବା ନ ଭୂୟଃ । ଖ୍ରୀଷ୍ଟାନ୍ ଓ ଇସଲାମ୍ ଧର୍ମରେ ବି ଏହି ବିଶ୍ବାସ) ଏପରି ମଧ୍ଯ ନୁହେଁ । ଯାହା ଜନ୍ମୁଛି, ବିଦ୍ୟମାନ ରହୁଛି ଓ ନଷ୍ଟ ହେଉଛି, ତାହା କେବଳ ଶରୀରମାତ୍ର । ଶରୀରକୁ ଯେଉଁ ସତ୍ ଶକ୍ତି ଚଳାଏ, ଜୀବନ୍ତ ରଖେ, ତାର କିନ୍ତୁ ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ସେ ଚିର-ପୁରାତନ ଓ ଚିରନୂତନ । ଶରୀରପରେ ଶରୀର ନଷ୍ଟ ହୋଇଚାଲିଥିବ, କିନ୍ତୁ ସେହି ଅନ୍ତର୍ନିହିତ ଶକ୍ତି ଅକ୍ଷତ ରହିଚାଲିଥିବ ।

କଠୋପନିଷଦ୍‌ର ୧ / ୨ / ୧୮ ଓ ୧୯ ଶ୍ଳୋକଦୁଇଟି, ଗୀତାର ଏହି ଶ୍ଳୋକର ପ୍ରାୟ ଏକାବେଳକେ ସମଭାବବାହୀ ଶ୍ଳୋକ, ତାହା ବିସ୍ମରଣୀୟ—

ନ ଜାୟତେ ମ୍ରିୟତେ ବା ବିପଶ୍ଚିନ୍
ନାୟଂ କୁତଶ୍ଚିନ୍ନ ବଭୂବ କଶ୍ଚିତ୍
ଅଜୋ ନିତ୍ୟଃ ଶାଶ୍ବତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ।
ହନ୍ତା ଚେନ୍ମନ୍ୟତେ ହନ୍ତୁଂ ହତଶ୍ଚେନ୍ମନ୍ୟତେ ହତଂ
ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ ।

ଆମେରିକାନ୍ ଚିନ୍ତାନାୟକ ଇମର୍ସନ୍ ଭାରତୀୟ ଚିନ୍ତାଧାରାଦ୍ୱାରା ଗଭୀର-ଭାବରେ ପ୍ରଭାବିତ ହୋଇଥିଲେ । ତାଙ୍କର 'ବ୍ରହ୍ମ' ନାମକ ଏକ ପ୍ରସିଦ୍ଧ କବିତାରେ ସେ ଠିକ୍ ଏହି ହିନ୍ଦୁ ଭାବ-କଳ୍ପଟିକୁ ପରିବେଷିତ କରିଯାଇଛନ୍ତି—

It the red slayer thinks he slays
Or if the slain thinks he is slain
They know not well the subtle ways
I keep and pass and turn again.

ଗୀତା ଏହିପରି ବହୁ ସ୍ଥାନରେ ଭିନ୍ନ ଭିନ୍ନ ଉପନିଷଦ୍‌ର ବିଶେଷ ବିଶେଷ ଶ୍ଳୋକସବୁ ଗୁଡ଼ାକ ଉତାରିନେଇଛନ୍ତି, ଯାହାହିଁ ପ୍ରମାଣ କରେ ଯେ ଗୀତା ଏକ ମନୁଷ୍ୟକୃତ ଗ୍ରନ୍ଥମାତ୍ର, ଯଦି ବା ଏକ ବିରାଟ-ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ।

(ଏ ସମ୍ପର୍କରେ ବିସ୍ତୃତ ଆଲୋଚନାପାଇଁ ପାଠକେ ଏଇ ଲେଖକର 'ଗୀତାମାହାତ୍ମ୍ୟ' ଦେଖିପାରନ୍ତି । )

୨୧

ବେଦାବିନାଶିନଂ ନିତ୍ୟଂ ଯ ଏନମଜମବ୍ୟୟମ୍
କଥଂ ସ ପୁରୁଷଃ ପାର୍ଥ କଂ ଘାତୟତି ହନ୍ତି କମ୍ । ୨୧ ।

ଯଃ (ଯେଉଁ ଲୋକ) ଏନଂ (ଏହାଙ୍କୁ ଅର୍ଥାତ୍ ଶରୀରାଭ୍ୟନ୍ତରସ୍ଥ ସୂକ୍ଷ୍ମ ଶକ୍ତିଙ୍କୁ ) ଅବିନାଶିନଂ ନିତ୍ୟଂ ଅଜଂ ଅବ୍ୟୟଂ ବେଦ (ନାଶରହିତ, ଶାଶ୍ୱତ, ଜନ୍ମରହିତ ଏବଂ ଅପରିବର୍ତ୍ତନୀୟ ବୋଲି ଜାଣିପାରନ୍ତି ଓ ସେହିପରି ବୋଧ କରି-ପାରନ୍ତି), ସଃ ପୁରୁଷଃ (ସେ ଲୋକ) କଥଂ ପାର୍ଥ (କିପରି, ହେ ଅର୍ଜୁନ) କଂ (କାହାକୁ) ଘାତୟତି (ଆଘାତ କଲି) [ବା] କଂ (କାହାକୁ ବା) ହନ୍ତି (ମାରିପକାଇଲି) [ବୋଲି ଭାବିବ ?] [ଅର୍ଥାତ୍ ସେ ପ୍ରକାର ଜ୍ଞାନବନ୍ତ ଲୋକପକ୍ଷରେ ସେପ୍ରକାର ଭାବନା ଅସମ୍ଭବ । ତୁମେ କେବଳ ଅଜ୍ଞ ଲୋକପରି ଭାବୁଛ ବା କଥା କହୁଛ । ]

**ଅନୁବାଦ**

"ହେ ଅର୍ଜୁନ, ଯେ ଏହାଙ୍କୁ ଅର୍ଥାତ୍ ଦେହାଭ୍ୟନ୍ତରସ୍ଥ ଏହି ଶକ୍ତିକୁ ଜନ୍ମ-ମୃତ୍ୟୁ-ରହିତ ଓ ଅପରିବର୍ତ୍ତନୀୟ ବୋଲି ଜାଣିଲାଣି, ସେ କିପରି ଅନ୍ୟକୁ ମାରି-ପକାଇଲି ବୋଲି ଭାବିବ ?"

୨୨

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ ନବାନି ଗୃହ୍ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-ନ୍ୟନ୍ୟାନି ସଂଯାତି ନବାନି ଦେହୀ । ୨୨ ।

ଯଥା (ଯେପରି) ନରଃ (ମନୁଷ୍ୟ) ଜୀର୍ଣ୍ଣାନି ବାସାଂସି (ପୁରୁଣା ଲୁଗାପଟା) ବିହାୟ (ପରିତ୍ୟାଗ କରି) ଅପରାଣି ନବାନି ଗୃହ୍ଣାତି (ଅନ୍ୟ ନୂତନ ବସ୍ତ୍ରସବୁ ଗ୍ରହଣ କରେ), ତଥା (ସେହିପରି) ଦେହୀ (ଦେହାଭ୍ୟନ୍ତରସ୍ଥ ଶକ୍ତି) ଜୀର୍ଣ୍ଣାନି ଶରୀରାଣି ବିହାୟ (ଜୀର୍ଣ୍ଣ ଦେହସବୁକୁ ପରିତ୍ୟାଗ କରି) ଅନ୍ୟାନି ନବାନି ସଂଯାତି (ଅନ୍ୟ ନୂତନ ଦେହସବୁକୁ ଯାଏ ।)

## ଅନୁବାଦ

"ମନୁଷ୍ୟମାନେ ଯେପରି ପୁରୁଣା ଲୁଗାପଟାସବୁ ପରିତ୍ୟାଗ କରି ନୂଆ ଲୁଗାପଟା ଗ୍ରହଣ କରିଥାନ୍ତି, ଠିକ୍ ସେହିପରିବି ଦେହାଭ୍ୟନ୍ତରସ୍ଥ ଶକ୍ତି ଦେହରୂପକ ଜୀର୍ଣ୍ଣ ·ବାହନସବୁ ପରିତ୍ୟାଗ କରି ନୂତନ ଦେହ ଗ୍ରହଣ କରିଥାଏ (ଯାହାକୁହିଁ ଆମେ 'ମୃତ୍ୟୁ' ବୋଲି କହୁଁ )।

## ବିଶେଷ ଭାଷ୍ୟ

ଏପର୍ଯ୍ୟନ୍ତ ଶରୀରଟାହିଁ ମରେ, କିନ୍ତୁ ତା ଭିତରେ ଯେଉଁ ଏକ ସୂକ୍ଷ୍ମ ଶକ୍ତି ଅଛି ଯାହାହିଁ ଶରୀରକୁ ଜୀବନବନ୍ତ କରାଏ, ତାହାର କ୍ଷୟ ନାହିଁ ବା ମୃତ୍ୟୁ ହୁଏ ନାହିଁ ବୋଲି କୁହାଯାଉଥିଲା । କିନ୍ତୁ ପ୍ରଶ୍ନ ହୋଇପାରେ ଯେ ନାଶ୍ୟ ଶରୀର ତ ବିନଷ୍ଟ ହେଲା, ଯେଉଁ ବସ୍ତୁ ଅବିନାଶ୍ୟ ବୋଲି କହୁଛ ତାହା ଯାଏ କୁଆଡ଼େ ? ତାର ପରବର୍ତ୍ତୀ କାର୍ଯ୍ୟକ୍ରମ କଣ ? ଏହି ଶ୍ଳୋକରେ ପ୍ରଥମ କରି କୁହାଗଲା ଯେ, ମୃତ୍ୟୁପରେ ସେହି ଶକ୍ତି ଅନ୍ୟ 'ନୂତନ' ଶରୀରକୁ ଚାଲିଯାଏ ।

ଗୀତାର ଏହି ଶ୍ଳୋକଟି ବହୁତଃ ଉଦ୍ଧୃତ ହୋଇଥାଏ । କିନ୍ତୁ ପ୍ରତିପାଦ୍ୟ ବିଷୟଟି ଅତି ଗହନ କଥା । କାରଣ ତାହା ସାଧାରଣ ଜନର ଅଭିଜ୍ଞତାର ବାହାରେ । 'Transmigration of soal' ବା 'ଆତ୍ମାର ଅନ୍ୟ ଦେହକୁ ଯିବା', ହିନ୍ଦୁ ଓ ବୌଦ୍ଧ ଧର୍ମର ମୌଳିକ ବିଶ୍ୱାସ ହେଲେହେଁ ପଣ୍ଡିତଜନମାନେ ଭାରତୀୟ ସଂସ୍କୃତିର ମୂଳଭିତ୍ତି ବେଦରେ ଏ ବିଶ୍ୱାସକୁ ଖୋଜି ପାଉ ନାହାନ୍ତି ଏବଂ ଖ୍ରୀଷ୍ଟାନ୍, ଇସଲାମ୍ ପ୍ରଭୃତି ଅନ୍ୟ ବିଶ୍ୱଧର୍ମସବୁରେ ଏପ୍ରକାର ବିଶ୍ୱାସ ନାହିଁ । ଏହା ସତ୍ୟ କି ମିଥ୍ୟା—ସର୍ବସମ୍ମତଭାବରେ ବୈଜ୍ଞାନିକ ଭିତ୍ତିରେ ଏହାକୁ ପ୍ରମାଣିତ ବା ଅପ୍ରମାଣିତ କରିବାପାଇଁ ଏବେ ଏହାଉପରେ ପୃଥିବୀବ୍ୟାପୀ ଗବେଷଣା ମଧ୍ୟ ଚାଲିଛି ।

କିନ୍ତୁ ସେ ଯାହା ହେଉ, ଏହି ଅତି-ପ୍ରସିଦ୍ଧ ଶ୍ଳୋକଟିରେ ପୁରୁଣା-ଲୁଗାର ଯେଉଁ ଉପମା ଦିଆଯାଇଛି, ତାହା ମଧ୍ୟ କଣ ମୃତ୍ୟୁ ସଂପର୍କରେ ସର୍ବଦା ପ୍ରଯୁଜ୍ୟ ? ଶରୀରଟା କେବଳ ଜରାଜୀର୍ଣ୍ଣ ହେଲେହିଁ ମୃତ୍ୟୁ ଆସିବ ଏବଂ ଆତ୍ମା ନୂତନ-ଶକ୍ତିମନ୍ତ ଶରୀର ଅନ୍ୱେଷଣରେ ପଳାୟନ କରିବ ବୋଲି ଯଦି କଥା ଥାନ୍ତା, ତେବେ ତ ଏ ଜଗତରେ ମୃତ୍ୟୁଜନିତ ମର୍ମାଭୂତ ଆର୍ତ୍ତନାଦର ଅର୍ଦ୍ଧେକ ଉଭେଇଯାନ୍ତା । ମୃତ୍ୟୁର ଆକସ୍ମିକତାହିଁ ଇହଜୀବନର ପୁଞ୍ଜୀଭୂତ ଦୁଃଖର ଏକତମ କାରଣ । କେବଳ ଯଦି ବୁଢ଼ାବୁଢ଼ୀଏ ମରନ୍ତେ, ତେବେ ତ ଦୁଃଖ ନ ଥିଲା । ମର୍ମ-ମନ୍ଥନ ଦୁଃଖ ଆସେ ସେତିକିବେଳେ, ଯେତେବେଳେ ପିଲା ଓ ଭେଣ୍ଡା ମରନ୍ତି । ସେଠି ତ 'ଜୀର୍ଣ୍ଣାନି ଶରୀରାଣି'ର କଥାହିଁ ନାହିଁ ଏବଂ ତାହାହିଁ ହୋଇଉଠେ ପରମ ଅନୁଶୋଚନା । ତା ଛଡ଼ା ପୁରୁଣା ଲୁଗାପଟା ଆମ ବ୍ୟକ୍ତିତ୍ୱରୁ କିଛି ନେଇଯାନ୍ତି ନାହିଁ, କି ଆମଠାରେ କିଛି ରଖିଯାନ୍ତି ନାହିଁ । କିନ୍ତୁ ଶରୀରାଭ୍ୟନ୍ତରସ୍ଥ ସେହି ଗୁପ୍ତ ଶକ୍ତି ଯେତେବେଳେ ମୃତ୍ୟୁଦେଇ ଚାଲିଯାଏ ଏବଂ ଛାଡ଼ିଯାଏ ଆମ ପାଖେ ପ୍ରିୟଜନର ଶବଟା, ସେ କି ସୁଖ ଓ ଶାନ୍ତି ନ ନେଇଯାଏ ବା କି ଦୁଃଖ ନ ଦେଇଯାଏ !

ତେଣୁ ଏହି ପ୍ରସିଦ୍ଧ ଶ୍ଳୋକରେ ଉପମା ଓ ଉପମେୟ ପୂରାପୂରି ପରସ୍ପରକୁ ଖାପ ଖାଉଛନ୍ତି ବୋଲି ଏହି ଲେଖକର ମନରେ ଆସୁ ନାହିଁ, ଯଦିବା ଏହାଦ୍ୱାରା ମୁଖ୍ୟ ପ୍ରତିପାଦ୍ୟ ବିଷୟ—ଆତ୍ମାର ଅମରତ୍ୱ ବା ଶରୀରର ମରତ୍ୱ—ଆଦୌ କ୍ଷତିଗ୍ରସ୍ତ ହେଉ ନାହିଁ !

୨୩

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ । ୨୩ ।

ଏନଂ (ଶରୀରସ୍ଥ ଏହି ସୂକ୍ଷ୍ମ ଶକ୍ତିକୁ) ଶସ୍ତ୍ରାଣି ନ ଛିନ୍ଦନ୍ତି (କୌଣସି ହତିଆର କାଟିପାରେ ନାହିଁ) ; ଏନଂ (ଏହାକୁ) ପାବକଃ ନ ଦହତି (ଅଗ୍ନି ପୋଡ଼ିପାରେ ନାହିଁ); ଏନଂ ଆପଃ ଚ ନ କ୍ଲେଦୟନ୍ତି (ଏହାକୁ ଜଳ ମଧ୍ୟ ଓଦା କରି-ପାରେ ନା); ମାରୁତଃ ନ ଶୋଷୟତି (ପବନ ଶୁଖାଇପାରେ ନା) ।

**ଅନୁବାଦ**

"ଶରୀରାଭ୍ୟନ୍ତରସ୍ଥ ସେହି ଶକ୍ତିକୁ କୌଣସି ଶସ୍ତ୍ର କାଟିପାରିବ ନାହିଁ, ଅଗ୍ନି ପୋଡ଼ିପାରିବ ନାହିଁ, ଜଳ ଓଦା କରିପାରିବ ନାହିଁ, ପବନ ଶୁଖାଇପାରିବ ନାହିଁ ।

## ବିଶେଷ ଭାଷ୍ୟ

ଆମ ଶରୀରଭିତରେ ଥିବା ସୂକ୍ଷ୍ମ-ଶକ୍ତିର ପରିପୂର୍ଣ୍ଣ 'ଅବିକାର୍ଯ୍ୟତା'ହିଁ ଏ ଶ୍ଳୋକରେ ବିଶେଷଭାବରେ ବର୍ଣ୍ଣିତ । କିନ୍ତୁ ଏହା ଏକ ଆଳଂକାରିକ ବର୍ଣ୍ଣନା ମାତ୍ର । କାରଣ କୌଣସି ଲୋକ ଶରୀରସ୍ଥ ସେହି ସୂକ୍ଷ୍ମ-ଶକ୍ତିକୁ କାଟିବାକୁ ହାଣିବାକୁ ବା ନିଆଁରେ ପୋଡ଼ିବାକୁ ଚେଷ୍ଟା କରିନି, କି କରି ବ୍ୟର୍ଥ ହୋଇଛି ବୋଲି କୌଣସି ପ୍ରମାଣ ମଧ୍ୟ ନାହିଁ । କିନ୍ତୁ ଇତିହାସରେ ଚେଙ୍ଗିଜ୍, ତିମୁର୍, ହିଟଲର୍ ପ୍ରଭୃତି ଏକ ଏକ ନର-ରାକ୍ଷସର ଏକ ଏକ ଆଦେଶରେ ଆବାଳବୃଦ୍ଧବନିତା ଲକ୍ଷ ଲକ୍ଷ ମହାଜୀବଙ୍କୁ ଗ୍ୟାସ୍ ବା ନିଆଁରେ ଏକାଠି ପୋଡ଼ିଦିଆଯାଇଛି, ବା ଅନ୍ୟ ଘୋର ନିଷ୍ଠୁରଣ ପ୍ରକାରରେ ହତ୍ୟା କରିଦିଆଯାଇଛି । ହିଟ୍‌ଲର୍‌ର ଆଦେଶରେ ଲକ୍ଷ ଲକ୍ଷ ଇହୁଦୀଙ୍କୁ ଆଗ ନିଜେ ନିଜେ ସମୂହ-କବର ଖୋଳିସାରିଲାପରେ, ସେହି ପୁରୁଷ-ସ୍ତ୍ରୀ-ବାଳକ-ବାଳିକାଙ୍କୁ ସେହି ଗାତରେ ଏକାଠି ଜୀବନ୍ତ କବର ଦିଆଯାଇଛି । ଇତିହାସର ଏ ପ୍ରକାର ପ୍ରମାଣର ପରିପ୍ରେକ୍ଷିତରେ ଏ ଶ୍ଳୋକର ତାତ୍ପର୍ଯ୍ୟ କଣ ? ଏହି ନାଶଶୀଳ ଶରୀରଟା ପୁଣି ତ ପରମ ସୂକ୍ଷ୍ମ ଅନୁଭୂତି-ସଂପନ୍ନ ! ତାହାର ହୃଦୟ-ଦହନର ବା ଆତଙ୍କର କୌଣସି ହେଲେ ଅର୍ଥ କି ନାହିଁ ? ଏହି ମହାଗ୍ରନ୍ଥ ଗୀତା ତ ପୁଣି ଏକ ଶରୀରର ଦାନ ! କୌଣସି ଅଶରୀରୀ ଆତ୍ମା ଏହାକୁ ନିଶ୍ଚୟ ଲେଖିପାରିନି । 'ଶରୀରୀ' ବା ଶରୀରସ୍ଥ ଆତ୍ମା ମୂଳବସ୍ତୁ ହୋଇପାରେ । କିନ୍ତୁ ମନେ ହୁଏ ଯେ, ଶରୀର ମଧ୍ୟ ଶରୀରୀ ପରି ସମ୍ମାନନୀୟ ଓ ସେହିପରି ବ୍ୟବହାର୍ଯ୍ୟ ହେବା ଉଚିତ । ଶରୀରର ଆଶା, ଆକାଙ୍କ୍ଷା, ସ୍ୱପ୍ନ, ଅନୁଭବାଦିକୁ ଏକାବେଳକେ ହେୟ ବା ମିଥ୍ୟା କହି ଉଡ଼େଇଦେବା କେବଳ ଆତ୍ମପ୍ରତାରଣା । ସ୍ୱୟଂ ଶ୍ରୀକୃଷ୍ଣ, ବୁଦ୍ଧ ଓ ଗାନ୍ଧି, ପ୍ରତ୍ୟେକେ ନିଜ ନିଜ ଶରୀରର ଯଥେଷ୍ଟ ଯତ୍ନ ନେଉଥିଲେ, ତାକୁ ସୁସ୍ଥ, ଶୋଭନ ଓ କର୍ମଠ ରଖିବାପାଇଁ । ଦେହ ଅନିତ୍ୟ ହୋଇପାରେ, କିନ୍ତୁ ଅବହେଳ୍ୟ ବା ଇଚ୍ଛାମାତ୍ରେ ହନ୍ୟ ନୁହେଁ । ଅର୍ଜୁନଙ୍କର ହନନପରାଙ୍ମୁଖତା ନିଶ୍ଚୟ ନୁହେଁ ଏକାନ୍ତ ଅଜ୍ଞତା । ଶ୍ରୀକୃଷ୍ଣ ତାଙ୍କର ଆପତ୍ତିକୁ ଯେ 'ପ୍ରଜ୍ଞାବାଦ' କହିଛନ୍ତି, ତାହା ଯଥାର୍ଥ ; ଯଦିବା ଦେହ ଓ ଆତ୍ମାର ସଂବନ୍ଧ ଓ ପ୍ରଭେଦ ଜାଣିବା ଅଧିକତର ପ୍ରଜ୍ଞା ।

କିନ୍ତୁ ପାଠକେ ନିମ୍ନରେ ୨୫ଶ ଶ୍ଳୋକରେ 'ଉଚ୍ୟତେ' କ୍ରିୟାପଦର (କୁହାଯାଇଥାଏ) ବ୍ୟବହାର ମଧ୍ୟ ଏ ସ୍ଥଳରେ ଲକ୍ଷ୍ୟ କରିବେ !

**୨୪-୨୫**

ଅଚ୍ଛେଦ୍ୟୋଽୟମଦାହ୍ୟୋଽୟମକ୍ଲେଦ୍ୟୋଽଶୋଷ୍ୟ ଏବ ଚ
ନିତ୍ୟଃ ସର୍ବଗତଃ ସ୍ଥାଣୁରଚଲୋଽୟଂ ସନାତନଃ । ୨୪ ।
ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ
ତସ୍ମାଦେବଂ ବିଦିତ୍ୱୈନଂ ନାନୁଶୋଚିତୁମର୍ହସି । ୨୫ ।

ଅୟଂ (ଶରୀରାଭ୍ୟନ୍ତରସ୍ଥ ସେହି ଶକ୍ତି) ଅଚ୍ଛେଦ୍ୟଃ (ଛିଣ୍ଡିଯିବା ପଦାର୍ଥ ନୁହେଁ), ଅୟଂ ଅଦାହ୍ୟଃ (ସେ ପୋଡ଼ିହୋଇଯିବା ଜିନିଷ ନୁହେଁ), ଅକ୍ଲେଦ୍ୟଃ (ସେ ଓଦା ହୋଇ ସଢ଼ିଯିବାର ବସ୍ତୁ ନୁହେଁ), ଅଶୋଷ୍ୟଃ ଚ ଏବ (ତାହା ମଧ୍ୟ ଶୁଖି ଉଡ଼ିଯିବାର ବସ୍ତୁ ନୁହେଁ) । ଅୟଂ ନିତ୍ୟଃ (ଏହା ଅବିନାଶୀ) ସର୍ବଗତଃ (ସର୍ବ-ବ୍ୟାପୀ) ସନାତନଃ (ଅନାଦି) ସ୍ଥାଣୁଃ (ସ୍ଥିର) ଅଚଳଃ (ଅପରିବର୍ତ୍ତନଶୀଳ, ନିଶ୍ଚଳ) । ଅୟଂ ଅବ୍ୟକ୍ତଃ (ସେ ମଧ୍ୟ ଆମ ଇନ୍ଦ୍ରିୟମାନଙ୍କର ଗୋଚରୀଭୂତ ବିଷୟ ନୁହନ୍ତି), ଅୟଂ ଅଚିନ୍ତ୍ୟଃ [ଏପରିକି] (ସେ ଆମ ଚିନ୍ତାର ବାହାରେ) [ଏବଂ] ଅୟଂ ଅବିକାର୍ଯ୍ୟଃ (ସେ ସକଳବିକାରରହିତ) [ବୋଲି ମଧ୍ୟ] ଉଚ୍ୟତେ (କୁହାଯାଇ-ଥାଏ) । ତସ୍ମାତ୍ (ସେହି କାରଣରୁ) ଏନଂ (ସେହି ଶରୀରସ୍ଥ ଶକ୍ତିକୁ) ଏବଂ ବିଦିତ୍ୱା (ଏହିପ୍ରକାର ଗୁଣସଂପନ୍ନ ଜାଣି) ଅନୁଶୋଚିତୁଂ ନ ଅର୍ହସି (ଶୋଚନା କରିବା ଉଚିତ ନୁହେଁ) ।

## ଅନୁବାଦ

"ଶରୀରାଭ୍ୟନ୍ତରସ୍ଥ ସେହି ଶକ୍ତି ଛିଣ୍ଡିବା ପଦାର୍ଥ ନୁହେଁ, ପୋଡ଼ିଯିବା ପଦାର୍ଥ ନୁହେଁ, ଓଦା ହୋଇ ସଢ଼ିଯିବା ପଦାର୍ଥ ନୁହେଁ, ଶୁଖି ଉଡ଼ିଯିବା ପଦାର୍ଥ ନୁହେଁ । ତାହା ନିତ୍ୟ, ସନାତନ, ସ୍ଥିର, ଅଚଳ । ତାହା ପୁଣି ଅବ୍ୟକ୍ତ, ଅଚିନ୍ତ୍ୟ ଏବଂ ସର୍ବପ୍ରକାର ବିକାର-ରହିତ ବୋଲି କୁହାଯାଇଥାଏ । ଏସବୁ ଜାଣିଲାପରେ, ମୃତ୍ୟୁପାଇଁ ଅନୁଶୋଚନା ନିଶ୍ଚୟ ଉଚିତ ନୁହେଁ ।"

## ବିଶେଷ ଭାଷ୍ୟ

ଏହା ପୂର୍ବର କେତୋଟି ଶ୍ଳୋକର ପୁନରାବୃତ୍ତି ମାତ୍ର । ତେବେ ୨୫ଶ ଶ୍ଳୋକରେ ଥିବା 'ଉଚ୍ୟତେ' ଶବ୍ଦଟି ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ । ଦେହ ଓ ଦେହୀ, ଶରୀର ଓ ଶରୀରୀର ପ୍ରଭେଦ ବୁଝାଉ ବୁଝାଉ ଗୀତାକାର ସାଂଖ୍ୟ-ଦର୍ଶନର ଆଶ୍ରୟ ନେଇଛନ୍ତି । ସେହି ଅନୁସାରେ ସେ ତଥାକଥିତ ଆତ୍ମାର ଗୁଡ଼ାଏ ଗୁଣ ବର୍ଣ୍ଣନା କରିଗଲେ, ଯାହାକି କୌଣସି ପ୍ରତ୍ୟକ୍ଷ ପ୍ରମାଣର ବାହାରେ । କିନ୍ତୁ ଗୀତାକାର ଚତୁରଭାବରେ ଏହି ଆପାତ ଅବାନ୍ତରତାକୁ

ଆଗରୁ ଉଦ୍ଧାର କରିବସିଲେ ତୁଏତ ଏହି 'ଉଚ୍ୟତେ'ହି ସ୍ୱାପଦ ବ୍ୟବହାର କର । ବକ୍ତାଙ୍କର ମୋଟ ଭାବ ବର୍ତ୍ତମାନ ଏହି ଯେ—ଏହିପର ତ ଲୁହାଯାଇଥାଏ !

୨୬

ଅଥ ଚୈନଂ ନିତ୍ୟଜାତଂ ନିତ୍ୟଂ ବା ମନ୍ୟସେ ମୃତମ୍
ତଥାପି ତ୍ୱଂ ମହାବାହୋ ନୈନଂ ଶୋଚିତୁମର୍ହସି । ୨୬ ।

ଅଥ ଚ ( ଅଥଚ ) [ ଯଦି ] ଏନଂ (ସେହି ଦେହସ୍ଥ ଶକ୍ତିକୁ) ନିତ୍ୟଜାତଂ ନିତ୍ୟମୃତଂ ବା ମନ୍ୟସେ (ସବୁବେଳେ ଜନ୍ମ ହେଉଛି ଓ ମରୁଛି ବୋଲି ମନେ କର) ତଥାପି (ତା ହେଲେ ମଧ୍ୟ) [ହେ] ମହାବାହୋ, ତ୍ୱଂ ଏନଂ ଶୋଚିତୁଂ ନ ଅର୍ହସି (ତୁମେ ଏହା ସଂପର୍କରେ ଅନୁଶୋଚନା କରିବାଟା ଉଚିତ କର୍ମ ହେବ ନାହିଁ) ।

**ଅନୁବାଦ**

"ପୁଣି ଯଦିବା, ହେ ଅର୍ଜୁନ, ତୁମେ ଏହି ଦେହାଭ୍ୟନ୍ତରସ୍ଥ ଶକ୍ତିକୁ ବାରମ୍ବାର ଅହରହ ଜନ୍ମୁଛି ଓ ମରୁଛି ବୋଲି ମନେ କରୁଛ, ତାହେଲେ ମଧ୍ୟ ତାପାଇଁ ତ ତୁମର ଶୋଚନା କରିବାର କଥା ନୁହେଁ ।"

**ବିଶେଷ ଭାଷ୍ୟ**

ପରବର୍ତ୍ତୀ ଶ୍ଳୋକରେ ଏ ଶ୍ଳୋକର ତର୍କ ବିସ୍ତାରିତ ହୋଇଛି ।

୨୭

ଜାତସ୍ୟ ହି ଧ୍ରୁବୋମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ
ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି । ୨୭ ।

ହି ( ଯେଉଁ ହେତୁରୁ ) ଜାତସ୍ୟ ମୃତ୍ୟୁଃ ଧ୍ରୁବଃ (ଜନ୍ମ-ହେଲା ଲୋକର ମୃତ୍ୟୁ ନିଶ୍ଚିତ କଥା), ମୃତସ୍ୟ ଚ ଜନ୍ମ ଧ୍ରୁବଂ (ମଲା ଲୋକର ମଧ୍ୟ ଜନ୍ମ ନିଶ୍ଚିତ), ତସ୍ମାତ୍ (ସେହିହେତୁରୁ) ଅପରିହାର୍ଯ୍ୟେ ଅର୍ଥେ (ସେହି ଅବଶ୍ୟମ୍ଭାବୀ ବିଷୟରେ) ତ୍ୱଂ ଶୋଚିତୁଂ ନ ଅର୍ହସି (ତୁମର ଶୋକ କରିବା ଉଚିତ ନୁହେଁ) ।

**ଅନୁବାଦ**

"କାରଣ, ଯାହା ଜାତ ତାହାର ତ ମୃତ୍ୟୁ ନିଶ୍ଚିତ । ଯାହା ମୃତ ତାହା ମଧ୍ୟ ଧିନେ ପୁଣି ଜାତ ହେବ । ତେଣୁ ଏପ୍ରକାର ଅବଶ୍ୟମ୍ଭାବୀ ବିଷୟରେ ତୁମର ଶୋକ କରିବା କଣ ଉଚିତ ?"

## ବିଶେଷ ଭାଷ୍ୟ

୨୬ଶ ଶ୍ଳୋକରୁ ଗୀତାକାର ସୂକ୍ଷ୍ମ ଅପ୍ରାମାଣ୍ୟ ସ୍ତରରୁ, ଇହଜୀବନର ପାର୍ଥିବ ସ୍ତରକୁ ପୁଣି ଫେରିଆସିଲେ । ସେ ବର୍ତ୍ତମାନ କହିବସିଲେ ଯେ, ଶରୀର ଓ ଶରୀରୀର ଭେଦାଭେଦ କଥା ଗୁଡ଼ । କିଏ ମରେ ବା କିଏ ଅମର ହୁଏ ସେ ବିଷୟ ଗୁଡ଼ । କିନ୍ତୁ ଦେଖୁଛ ତ, ପ୍ରତ୍ୟେକ ଜନ୍ମିଲା ପ୍ରାଣୀ ଓ ମନୁଷ୍ୟ ନଷ୍ଟ ମରୁଛନ୍ତି । କେହି ଚିର ହୋଇ ରହୁନ—କେବଳ ଆଗ ବା ପଛ । ତେଣୁ ତୁମେ ଏଠାରେ ମରିବାପାଇଁ ସଜ ହୋଇ ଆସିଥିବା ତୁମର ଏହି ବନ୍ଧୁବାନ୍ଧବଙ୍କର ମୃତ୍ୟୁ ନେଇ ଚିନ୍ତିତ ହେବାରେ କି ଯୁକ୍ତି ? ଶରୀରୀ ଯଦି ବାରମ୍ବାର ଶରୀର ତ୍ୟାଗ କରୁଛି (ମରୁଛି) ବା ବାରମ୍ବାର ମଧ୍ୟ ଶରୀର ଗ୍ରହଣକରୁଛି (ଜନ୍ମ ହେଉଛି), ତେବେ କିଏ ମରିଗଲା ବୋଲି ଅନୁଶୋଚନା କରିବାରେ କି ଯଥାର୍ଥତା ?

କିନ୍ତୁ "ଧ୍ରୁବଂ ଜନ୍ମ ମୃତସ୍ୟ ଚ" ଏହି ଚରଣାଂଶରେ ଗୀତା ନିଜର ଲକ୍ଷ୍ୟକୁହିଁ ବୈପରୀତ୍ୟ-ଦୋଷ-ଜର୍ଜରିତ କରିପକାଇଛନ୍ତି ବୋଲି ଆଶଙ୍କା । କାରଣ, ସକଳ ଉପନିଷଦ୍ ଓ ସକଳ ଉପନିଷଦ୍‌ର ସାରଭୂତ ଏହି ଭଗବଦ୍-ଗୀତାର ଆଦର୍ଶ ମଧ୍ୟ ହେଲା—ମୃତ୍ୟୁକୁ ଅତିକ୍ରମ କରିଯିବା । ଜନ୍ମପରେ ମୃତ୍ୟୁ ସାଧାରଣ କଥା ହେଲେହେଁ ମୃତ୍ୟୁପରେ ଜନ୍ମ ଅବଶ୍ୟମ୍ଭାବୀ ଘଟନା ନୁହେଁ—ଅନ୍ତତଃ ହିନ୍ଦୁଦର୍ଶନରେ । ଠିକ୍ ପର ଶ୍ଳୋକରେ ଗୀତା 'ଅବ୍ୟକ୍ତନିଧନ' ଶବ୍ଦ ବ୍ୟବହାର କରିଛନ୍ତି, ଯାର ତାତ୍ପର୍ଯ୍ୟ ମଧ୍ୟ 'ମୃତ୍ୟୁପରେ କଣ ହୁଏ ଜଣା-ନାହିଁ ।' ଗୀତାର ତ୍ରୟୋଦଶ ଅଧ୍ୟାୟରେ ଅଛି—

ତେଽପି ଚାତିତରନ୍ତ୍ୟେବ ମୃତ୍ୟୁଂ ଶ୍ରୁତିପରାୟଣାଃ ( ଗୀ: ୧୩। ୨୫ )

ଅନ୍ୟେ (ଏ ତତ୍ତ୍ୱ କେବଳ ଶୁଣି ମଧ୍ୟ ଉପାସନା କଲେ) ମୃତ୍ୟୁକୁ ପୂରା ଅତିକ୍ରମ କରିଯାନ୍ତି । ପୁଣି ଶ୍ୱେତାଶ୍ୱତର ଉପନିଷଦ୍ (୩। ୮)ରେ ଅଛି—ତମେବ ବିଦିତ୍ୱାଽତି ମୃତ୍ୟୁମେତି (ତାହାଙ୍କୁ ଜାଣିଲେ ମୃତ୍ୟୁକୁ ଅତିକ୍ରମ କରାଯାଏ) । ତେଣୁ ପ୍ରତ୍ୟେକ 'ମୃତ' ଆତ୍ମାର ପୁନର୍ଜନ୍ମ ଧରିନିଆଯିବ କାହିଁକି ? ଏହା ଯଦି ଅଲଂଘ୍ୟ ନିୟମ, ତେବେ ଆଧ୍ୟାତ୍ମିକ ସାଧନା ଆଉ କେଉଁଥିପାଇଁ ? ଗୀତା ବା କିପାଇଁ ଲେଖାଯାଇଛି ?

### ୨୮

ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ
ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିଦେବନା । ୨୮ ।

[ହେ] ଭାରତ (ହେ ଅର୍ଜୁନ) ଭୂତାନି ଅବ୍ୟକ୍ତାଦୀନି (ପ୍ରାଣିଗଣଙ୍କର ଆରମ୍ଭ ଜଣା ନାହିଁ) [ଏବଂ] ଅବ୍ୟକ୍ତନିଧନାନି (ମୃତ୍ୟୁ ପରେ ସେମାନଙ୍କର କଣ ହୁଏ ତା ମଧ୍ୟ ଜାଣିହୁଏ ନାହିଁ) [ ତେଣୁ ଯେଉଁମାନେ କେବଳ ] ବ୍ୟକ୍ତମଧ୍ୟାନି (ଏହି 'ମଧ୍ୟ' ଅର୍ଥାତ୍ କେବଳ ବର୍ତ୍ତମାନ ଅବସ୍ଥାରେହିଁ ବ୍ୟକ୍ତ) ତତ୍ର କା ପରିଦେବନା ? (ସେମାନଙ୍କର ମୃତ୍ୟୁ ନେଇ ଶୋକ କଣ ?)

**ଅନୁବାଦ**

"ହେ ଭାରତ, ପ୍ରାଣିଗଣଙ୍କର ଆରମ୍ଭ ଜଣା ନାହିଁ ଏବଂ ମୃତ୍ୟୁପରେ ସେମାନଙ୍କର କଣ ହୁଏ ତା ମଧ୍ୟ ଜାଣି ହୁଏ ନାହିଁ । ଯେଉଁମାନେ କେବଳ ମଧ୍ୟ ବା ବର୍ତ୍ତମାନଟାରେହିଁ ବ୍ୟକ୍ତ, ସେମାନଙ୍କର ତଥାକଥିତ ମୃତ୍ୟୁପାଇଁ ଶୋକ କଣ ?"

**୨୯**

ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ-
ମାଶ୍ଚର୍ଯ୍ୟବଦ୍ବଦତି ତଥୈବ ଚାନ୍ୟଃ
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି
ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ । ୨୯ ।

କଶ୍ଚିତ୍ (କେହି କେହି) ଏନଂ (ଏହି ଶରୀରସ୍ଥ ସୂକ୍ଷ୍ମ ଶକ୍ତିକୁ) ଆଶ୍ଚର୍ଯ୍ୟବତ୍ ପଶ୍ୟତି (ବିସ୍ମୟର ସହିତ ଦେଖନ୍ତି, ଅର୍ଥାତ୍ ତା କଥା ଶୁଣି ନିରତିଶୟ ବିସ୍ମିତ ହୁଅନ୍ତି) । ତଥା ଇବ ଚ (ସେହିପରି ମଧ୍ୟ) ଅନ୍ୟଃ (ଅନ୍ୟ କେହି) ଆଶ୍ଚର୍ଯ୍ୟବତ୍ ବଦତି [ଏହା ସମ୍ପର୍କରେ] (ଆଶ୍ଚର୍ଯ୍ୟ ହୋଇ କହନ୍ତି, ଅର୍ଥାତ୍ ବିଶ୍ୱାସ କରନ୍ତି ନାହିଁ ) । ଅନ୍ୟଃ ଚ ଆଶ୍ଚର୍ଯ୍ୟବତ୍ ଶୃଣୋତି (ଅନ୍ୟକେହି ଏହାର ତତ୍ତ୍ୱ ବିସ୍ମୟବିମୂଢ଼ ହୋଇ ଶୁଣନ୍ତି ) । କଶ୍ଚିତ୍ ଚ (କେହି ବା) ଶ୍ରୁତ୍ୱା ଅପି ଏବ (ଶ୍ରବଣ କରି ମଧ୍ୟ) ଏନଂ ନ ବେଦ (ଏହାର ତତ୍ତ୍ୱ ବୁଝିପାରନ୍ତି ନାହିଁ) ।

**ଅନୁବାଦ**

"କେହି କେହି (ଏହି ନାଶ୍ୟ ଦେହଭିତରେ ଏକ ଅବିନାଶ୍ୟ ଦେହୀ ଥିବାର ଜାଣି) ବିସ୍ମିତ ହୋଇଉଠନ୍ତି । କେହି ଏହା ଜାଣିସାରିଲାପରେ ବିସ୍ମୟ-ବିଭୋର ହୋଇ ଏହାର ବର୍ଣ୍ଣନା ମଧ୍ୟ କରିଥାନ୍ତି । ଯେ ଶୁଣନ୍ତି ସେ ମଧ୍ୟ ବିସ୍ମିତ ହୋଇଥାନ୍ତି, ଯଦିବା ଏହାର ପ୍ରକୃତ ତତ୍ତ୍ୱ ବୁଝି ନ ଥାନ୍ତି ।"

## ବିଶେଷ ଭାଷ୍ୟ

ଆମେ ଧରିନେବା ଯେ, ଦେହ ଓ ଦେହଭିତରେ ଥିବା 'ଦେହୀ'ର ସୂକ୍ଷ୍ମଭେଦବର୍ଣ୍ଣନା ଏବଂ କିଏ ମରେ ଓ କିଏ ମରେ ନା, ଏହି ତର୍କଉପରେ ଶ୍ରୀକୃଷ୍ଣଙ୍କ ଦୀର୍ଘ ବକ୍ତୃତାଭିତରେ ଶ୍ରୋତା ଅର୍ଜୁନ ହୁଏତ ନିଜ ମୁଖର ଭାବ-ପ୍ରକାଶଦ୍ୱାରା ନିଜ ଶରୀରଭିତରେହିଁ ଥିବା ଏପରି ଏକ ପରମଶକ୍ତିମାନ୍ ବସ୍ତୁର ଅଶ୍ରୁତପୂର୍ବ ଅଜ୍ଞାତପୂର୍ବ ଏହି ପ୍ରଥମ ପରିଚୟ ପାଇ ବିସ୍ମୟ ପ୍ରକାଶ କରିଥିବେ । ଶ୍ରୀକୃଷ୍ଣ ତେଣୁ ଏହି ଶ୍ଳୋକରେ ଅର୍ଜୁନଙ୍କ ମୁଖମଣ୍ଡଳରେ ବ୍ୟକ୍ତ ବିସ୍ମୟର ଏହି ଜବାବ ଦେଉଛନ୍ତି ଯେ, କେବଳ ତୁମେ ଏକା ନୁହଁ, ତୁମ ପରି ବହୁ ଲୋକ ଏ କଥା ପ୍ରଥମେ ଶୁଣି ବିସ୍ମିତ ହୋଇଥାନ୍ତି ଏବଂ ବହୁତ ବ୍ୟାଖ୍ୟାନ ଶୁଣିଲାପରେ ମଧ୍ୟ ଅନେକେ ଏହାକୁ ବିଶ୍ୱାସ କରନ୍ତି ନାହିଁ ।

ଏବଂ, ଏହି ଗୋଟିଏ ଶ୍ଳୋକଭିତରେହିଁ ଆମ ଭାରତୀୟ ସଭ୍ୟତାର ଏକ ପ୍ରାଚୀନତମ ସ୍ତରର ସମଗ୍ର ଚୈନ୍ତିକ ସଂଘର୍ଷ ମନୋଜ୍ଞଭାବରେ ପୁଞ୍ଜୀଭୂତ ।

ଆମେ ଆଜି ଆମଭିତରେ ଏକ 'ଆତ୍ମା' ଅଛି ବୋଲି ବିନା ତର୍କରେ ଧରିନେଉଛୁ (ଗୀତା ଏପର୍ଯ୍ୟନ୍ତ ସେ ଶବ୍ଦ ବ୍ୟବହାର କରି ନାହାନ୍ତି) । କିନ୍ତୁ ଉପନିଷଦ୍‌ଯୁଗରେ ଠିକ୍ ଏହି କଥାଟିଉପରେହିଁ ଏହି ସମଗ୍ର ଉପମହାଦେଶରେ ବିଦ୍ୱନ୍‌ମଣ୍ଡଳଭିତରେ ତୁମୁଳ ବାଦ-ପ୍ରତିବାଦ ଚାଲିଥିଲା । ପରେ ଆମ ପୁରାଣ-ମାନଙ୍କରେ ଏହି ଦୁଇ ଦଳ 'ଆସ୍ତିକ' ଓ 'ନାସ୍ତିକ' ଭାବରେ ପରିଚିତ ହେଲେ । ବୌଦ୍ଧ ଶାସ୍ତ୍ରରେ ଏହି ଦୁଇ ଦୃଷ୍ଟିକୋଣ, "ଶାଶ୍ୱତ ଦୃଷ୍ଟି" ଓ "ଉଚ୍ଛେଦ ଦୃଷ୍ଟି" ନାମରେ ଜ୍ଞାତ । ପୂର୍ବେ 'ଆସ୍ତିକ' ଓ ନାସ୍ତିକ' ଏହି ଦୁଇଟି ଶବ୍ଦ ମଧ୍ୟ ଏବପରି ଈଶ୍ୱର ଥିବା ବା ନ ଥିବା ନେଇ ସେପରି ଅଭିହିତ ହେଉ ନ ଥିଲେ । ମଲାପରେ କୌଣସି ସତ୍ତ୍ୱ (ଅର୍ଥାତ୍ ଆତ୍ମା) ରହେ କି ନା, ତାର 'ହଁ' ବା 'ନାହିଁ'ଉପରେହିଁ ଲୋକେ ଆସ୍ତିକ-ନାସ୍ତିକ ବୋଲି ଗଣା ହେଉଥିଲେ । ଆମେ ମଲାପରେ ମଧ୍ୟ ଯଦି ଆମଭିତରେ ଥିବା କୌଣସି ସତ୍ତ୍ୱ ବଞ୍ଚିରହିଲା, ତେବେ ତାହା ନିଶ୍ଚୟ ଶାଶ୍ୱତ ଓ ଅପରିବର୍ତ୍ତନୀୟ । ବୌଦ୍ଧ ଶାସ୍ତ୍ରରେ ଏ ହେଲା 'ଶାଶ୍ୱତ ଦୃଷ୍ଟି' (ଅର୍ଥାତ୍ ଆତ୍ମାର ଅସ୍ତିତ୍ୱ) । କିନ୍ତୁ ବିରୋଧୀ ଦଳ କେବେ ବିଶ୍ୱାସ କରୁ ନ ଥିଲେ ଯେ, ମଲାପରେ ଆଉ କିଛି ବାକି ରହେ । ମୃତ୍ୟୁହିଁ ଜୀବନର ଶେଷ । ଏମାନେ ହେଲେ ଜଣାଶୁଣା ଇହସର୍ବସ୍ୱ ଚାର୍ବାକ୍‌ପନ୍ଥୀ । ଏମାନଙ୍କୁ କୁହାଯାଉଥିଲା ନାସ୍ତିକ ଓ ଏହି ଦୃଷ୍ଟିକୋଣକୁ ବୌଦ୍ଧ ଶାସ୍ତ୍ରରେ ଏମାନଙ୍କୁ କୁହା ମଧ୍ୟ ଯାଉଥିଲା 'ଉଚ୍ଛେଦ ଦୃଷ୍ଟି' ବା 'nihilism' । ପାଠକେ ଦେଖିବେ ଯେ, ଆମର ସମଗ୍ର ଉପନିଷଦ୍

ପର୍ଯ୍ୟାପ୍ତ ଏହି 'ଶାଶ୍ୱତ ଦୃଷ୍ଟି' ଅର୍ଥାତ୍ ଆତ୍ମାର ଅସ୍ତିତ୍ୱ, ଅମୃତତ୍ୱ ବା ଶାଶ୍ୱତତ୍ୱ ଏବଂ ତାହାକୁ ବିଶ୍ୱ-ଆତ୍ମା (ବ୍ରହ୍ମ) ସହିତ ସମ୍ବନ୍ଧ କରିବାରେହିଁ ସମଗ୍ରଭାବରେ ଉତ୍ସାହୀ ।

ଏହି ଦୁଇ ଦୃଷ୍ଟିକୋଣର ବିପକ୍ଷରେ ଦଣ୍ଡାୟମାନ ବୁଦ୍ଧ ଗୌତମ । ସେ ଦେଖିଲେ ଯେ ଏହି 'ସଂସାର' (ସୃ ଧାତୁରୁ ନିଷ୍ପନ୍ନ, ଯାହା ଚିରଚଳମାନ), ସୂର୍ଯ୍ୟ-ଚନ୍ଦ୍ର-ତାରାଠାରୁ ଆରମ୍ଭ କରି ପ୍ରତ୍ୟେକ ଅଣୁ-ପରମାଣୁ ମଧ୍ୟ ଅହରହ ଚଳମାନ ଓ ପରିବର୍ତ୍ତନଶୀଳ । ଏଭିତରେ 'ଆତ୍ମା' ବା 'ବ୍ରହ୍ମ' ବୋଲି କୌଣସି ସ୍ଥିର ଉପାଦାନ ରହିଥିବା ଏକ ଅବାନ୍ତର ଭାବ-କଳ୍ପିତ ପ୍ରସ୍ତାବ ମାତ୍ର । ବୁଦ୍ଧ ତେଣୁ 'ଶାଶ୍ୱତବାଦୀ' ନ ଥିଲେ କି 'ଉଚ୍ଛେଦବାଦୀ' ମଧ୍ୟ ନ ଥିଲେ । ସେ ଏହି ଦୁଇ ପରସ୍ପରବିରୋଧୀ ଚରମ ମତକୁ ଗ୍ରହଣ ନ କରି "ପ୍ରତୀତ୍ୟ ସମୁତ୍ପାଦ" ନାମକ ଏକ ବୈଜ୍ଞାନିକ ସୃଷ୍ଟି-ତତ୍ତ୍ୱ ପ୍ରତିପାଦିତ କରିଯାଇଛନ୍ତି, ଯାହାର ତାତ୍ପର୍ଯ୍ୟ ହେଲା ଏହି ଯେ, ଏହି ସୃଷ୍ଟିରେ ପ୍ରତ୍ୟେକ 'ଫଳ' ବା ଘଟଣାର ଠିକ୍ ପଛରେ ତାର କୌଣସି-ନା-କୌଣସି 'ହେତୁ' ନିହିତ । କୌଣସି ଏକ ନିର୍ଦ୍ଦିଷ୍ଟ ପରିବେଶ ବା କାରଣ-ସମ୍ମିଶ୍ରଣରେ କୌଣସି ନିର୍ଦ୍ଦିଷ୍ଟ ଘଟଣା ଘଟିବହିଁ ଘଟିବ । ଆମର ଏହି ଜୀବନ କେତେଗୁଡ଼ିଏ ପ୍ରାକୃତିକ 'ହେତୁ'ର ସମାବେଶରୁହିଁ ଉତ୍ପନ୍ନ । ସେହିପରି ମଧ୍ୟ ଆମର ମରଣ । କେବଳ ଦେହ ଜରାଦ୍ୱାରା ଜୀର୍ଣ୍ଣ ହୋଇଗଲେ ଯେ ଆତ୍ମା ପୁରୁଣା ବସ୍ତ୍ରପରି ତାକୁ ଛାଡ଼ି ଏକ ନୂଆ ଲୁଗାପରି ନୂଆ ଦେହ ଗ୍ରହଣ କରିବ, ଏପରି କୌଣସି କଥା ନାହିଁ । ନାନା ଅବସ୍ଥାରେ ମୃତ୍ୟୁ ଘଟେ, ଅର୍ଥାତ୍ ମୃତ୍ୟୁ ବିଭିନ୍ନ ବିଶେଷ 'ହେତୁ'ର ଫଳ ମାତ୍ର । ଆତ୍ମାର ପଳାୟନ ହେତୁ ଏହା ଘଟେ ବୋଲି କହିବା ସୁଦୃଢ଼ ଯୁକ୍ତି ନୁହେଁ । ସେହିପରି ମଧ୍ୟ ଆମର ଦୁଃଖ-ଦୁର୍ଦ୍ଦଶା । ଆମ ଦେହଭିତରେ ଏକ ମୃତ୍ୟୁହୀନ ଶାଶ୍ୱତ ଆତ୍ମାର କଳ୍ପନାଦ୍ୱାରା ଆମର ଦୁଃଖ-ଦୁର୍ଦ୍ଦଶା ସାମାନ୍ୟତମ ପରିମାଣରେ ମଧ୍ୟ ଭୂଲିଯାଉନି ବା ଯିବନି ।

ଭଗବଦ୍‌ଗୀତା ଏହି ବୌଦ୍ଧ 'ନୈରାତ୍ମ୍ୟ'ବାଦର ପ୍ରବଳ ପ୍ରତିରୋଧ । ଗୀତା-ରଚନାବେଳକୁ ସମଗ୍ର ଭାରତରେ ଆତ୍ମା-ହୀନ ଓ ଈଶ୍ୱର-ହୀନ ବୌଦ୍ଧ ଧର୍ମ ପ୍ରବଳଭାବରେ ବ୍ୟାପ୍ତ ହୋଇସାରିଥିଲା । ଏହି ଶ୍ଲୋକ ତେଣୁ ସେହି ଶ୍ରେଣୀର 'ଉଚ୍ଛେଦବାଦୀ' ଓ 'ନୈରାତ୍ମ୍ୟବାଦୀ'ମାନଙ୍କୁ ଆଖିରେ ରଖି କୁହାଯାଇଛି ବୋଲିହିଁ ମନେହେଉଛି । କାରଣ, ହିନ୍ଦୁ ବା ବ୍ରାହ୍ମଣ୍ୟ ସମାଜରେ 'ଆତ୍ମା'ର ଅସ୍ତିତ୍ୱ ବା ଅବିନାଶିତ୍ୱ ସଂପର୍କରେ ଅବିଶ୍ୱାସ ପ୍ରକାଶ କରିବା ଲୋକ ଖୋଜି

ପାଇବାକୁ ଦୁଷ୍କର ବ୍ୟାପାର । କୌଣସି ହିନ୍ଦୁ ବାଳକ ବା ବାଳିକା ପକ୍ଷରେ ମଧ୍ୟ ଗୀତାର ଆତ୍ମାବସ୍ଥାନର ପ୍ରଖ୍ୟାପକ ଶ୍ଳୋକରାଜି 'ଆଶ୍ଚର୍ଯ୍ୟବତ୍' ବୋଧ ହେବାର ନୁହେଁ । ଏହା ହିନ୍ଦୁର ରକ୍ତଗତ ହୋଇସାରିଛି ଏବଂ ସେଥିପାଇଁ ବୋଧ ହୁଏ ଅଧିକାଂଶଭାବରେ ଏହି ଶ୍ରୀମଦ୍‌ଭଗବଦ୍‌ଗୀତାହିଁ ଦାୟୀ ।

ଅପରନ୍ତୁ ଏହା ମଧ୍ୟ ଜାଣିରଖିବାର କଥା ଯେ, ପୃଥିବୀର ସବୁ ପ୍ରାନ୍ତରେ ପ୍ରାଚୀନ ଯୁଗରେ ଏହି ଦୃଷ୍ଟଭୂତ ସୃଷ୍ଟି ସମ୍ବନ୍ଧରେ 'ଦ୍ୱୈତ' ମତହିଁ ପ୍ରଚଳିତ ଥିଲା । ଅର୍ଥାତ୍ ଏ ବିଶ୍ୱ ଯେ ମ୍ୟାଟର୍ (matter, ପଦାର୍ଥ) ଓ ସ୍ପିରିଟ୍ (spirit, ଆତ୍ମା) ନାମକ ଦୁଇଟି ଉପାଦାନର ମିଶ୍ରଣ, ଏହା ଅଳ୍ପ ଅଧିକେ ସର୍ବ ଜନ ବିଶ୍ୱାସ ହୋଇ ରହିଥିଲା । କିନ୍ତୁ କେତେକ ବିଶ୍ୱାସ କରୁଥିଲେ ଯେ, ଭଗବାନ୍ କେବଳ ମନୁଷ୍ୟକୁହିଁ 'ଆତ୍ମା' ଦେଇଛନ୍ତି । ଜଡ଼ ଓ ଉଦ୍ଭିଦ କଥା ଛାଡ଼, ଅନ୍ୟ ଜୀବଜନ୍ତୁ ମଧ୍ୟ ଆତ୍ମା-ହୀନ । ପୁନର୍ଜନ୍ମ-ତତ୍ତ୍ୱ ଜଣା ନ ଥିବାରୁ ଖ୍ରୀଷ୍ଟାନ୍ ଓ ମୁସଲମାନ ଧର୍ମ, ମୃତ୍ୟୁପରେ ମନୁଷ୍ୟର ଆତ୍ମା 'ବିଚାର-ଦିବସ' ପର୍ଯ୍ୟନ୍ତ ଶୋଇରହେ ବୋଲି ଏପର୍ଯ୍ୟନ୍ତ ବିଶ୍ୱାସ କରନ୍ତି ।

ଏ ଶ୍ଳୋକପର୍ଯ୍ୟନ୍ତ ଗୀତାକାର ଯେ ଅର୍ଜୁନଙ୍କୁ ଦେହ ଓ ଦେହୀର ଭିନ୍ନତା ଏବଂ ଦେହୀହିଁ ପ୍ରକୃତ ଜୀବ, ଦେହଟା କେବଳ ଆଧାର ବୋଲି ବୁଝାଇଆସିଲେ, ଏହା ସାଂଖ୍ୟର ପ୍ରକୃତି-ଓ-ପୁରୁଷ-ରୂପକ 'ଦ୍ୱୈତବାଦ'ଉପରେହିଁ ପ୍ରତିଷ୍ଠିତ । କିନ୍ତୁ ପରେ ଏହି ଭାରତବର୍ଷରେହିଁ 'ଦୁଇ'କୁ କାଟିଦେଇ 'ଏକ'କୁ ଠିଆ କରାଗଲା । ଅଳ୍ପ ପରେ ଗୀତା ବାଦରାୟଣଙ୍କ ବ୍ରହ୍ମସୂତ୍ର-ପ୍ରତିଷ୍ଠାପିତ ଏହି ଏକକ ବା ଅଦ୍ୱୈତ-ବାଦରେ ଆସି ପହଞ୍ଚିବେ । ଅଷ୍ଟମ ଶତାବ୍ଦୀରେ ଆଦ୍ୟ-ଶଙ୍କରାଚାର୍ଯ୍ୟଙ୍କ ବ୍ରହ୍ମସୂତ୍ର-ଉପରେ ପ୍ରସିଦ୍ଧ ଜ୍ଞାନୋଜ୍ଜ୍ୱଳ ଭାଷ୍ୟ ହେତୁ ଏହି 'ବେଦାନ୍ତ' ବା ଅଦ୍ୱୈତ ବା ଏକକବାଦହିଁ ଏବେ ସାଧାରଣ ହିନ୍ଦୁର ମୁଖ୍ୟ ବିଶ୍ୱାସ ହୋଇଉଠିଛି । ଏହି ବିଶ୍ୱାସର ତାତ୍ପର୍ଯ୍ୟ ହେଲା ଯେ, ଏହି ସମଗ୍ର ସୃଷ୍ଟି କେବଳ ଗୋଟିଏ ମାତ୍ର ଉପାଦାନରେ ଗଢ଼ା । ତାହାର ନାମ 'ବ୍ରହ୍ମ' । ସେ ଆଦୌ ଜଡ଼ ନୁହନ୍ତି । ତାଙ୍କର ବାସ୍ତବ ସତ୍ତାରେ ସେ ବିଶୁଦ୍ଧ—ସତ୍, ଚିତ୍ ଓ ଆନନ୍ଦ । ତାଙ୍କର ସୃଜନୀ-ଶକ୍ତିର ନାମ 'ମାୟା' । ସେହି 'ମାୟା'-ଶକ୍ତି ବଳରେହିଁ ଏହି ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟ ଓ ପରିଚାଳିତ । କେବଳ ମାୟା ଯୋଗୁ ଏ ସୃଷ୍ଟି ଏପରି ବିଚିତ୍ର ଓ ଭିନ୍ନତାମୟ ଦେଖାଯାଉଛି । କିନ୍ତୁ ବସ୍ତୁତଃ ଏହି ସମଗ୍ର ଦୃଷ୍ଟଭୂତ ବିଶ୍ୱର ଏକାକୀ ଉପାଦାନ ହେଉଛନ୍ତି ସେହି 'ବ୍ରହ୍ମ' ।

ଊନବିଂଶ ଶତାବ୍ଦୀରେ ବିଜ୍ଞାନର ଯେଉଁ ଅଶ୍ରୁତପୂର୍ବ ଅଗ୍ରଗତି ଦେଖା ଦେଇଛି, ତାହା ଶ୍ରୀକୃଷ୍ଣ ଏପର୍ଯ୍ୟନ୍ତ ଯେଉଁ ଦ୍ୱୈତ-ତତ୍ତ୍ୱ ବୁଝାଇଆସିଲେ, ତାକୁ ସମର୍ଥନ ନ କରି, ବରଂ ସମର୍ଥନ କରୁଛି ବେଦାନ୍ତର ଏକକ-ବାଦକୁ । ବିଜ୍ଞାନ ଆବିଷ୍କାର କଲା ଯେ, ଏହି ସ୍ଥୂଳ-କଠିନ-ବିରାଟ ଜଗତର ଶେଷ ବିଶୁଦ୍ଧ ଉପାଦାନ ହେଉଛି ଅଦୃଶ୍ୟ 'ପରମାଣୁ', ଯାହାକୁ ଅଦ୍ୱୈତବାଦର 'ବ୍ରହ୍ମ' ବୋଲି ଧରିଯାଇପାରେ । ସେ 'ପରମାଣୁ' ପୁଣି କୌଣସି ବସ୍ତୁ ନୁହେଁ । ତାହା ବୈଦ୍ୟୁତିକ କଣା ମାତ୍ର । ଅର୍ଥାତ୍ ସେହି ସୂକ୍ଷ୍ମାନୁସୂକ୍ଷ୍ମ ଷ୍ଟ୍ରିଟ୍-କଣିକାନ୍ଗୁଡ଼ିକ ଏହି ବିରାଟ ବିଶ୍ୱ ଓ ଆମର ଏହି ପୃଥିବୀ ଗଢ଼ା । ବୈଜ୍ଞାନିକମାନେ ପୁଣି ସେହି ତଥାକଥିତ 'ମ୍ୟାଟର୍' (matter)କୁ ବିସ୍ଫୋରିତ କରି ବିଶ୍ୱ-ଧ୍ୱଂସକ ପାରମାଣବିକ ବୋମା ତିଆରି କରୁଛନ୍ତି, ଯାହା ସ୍ମରଣ କରାଉଛି ଭାରତର ପୁରାଣମାନଙ୍କ ବ୍ରହ୍ମାସ୍ତ୍ର—ବ୍ରହ୍ମ (ପରମାଣୁ)-ନିର୍ମିତ-ଅସ୍ତ୍ର । ଅଣୁଉପରେ ବୈଜ୍ଞାନିକମାନେ ଗବେଷଣା କରି କରି ଏପରି ଏକ ପରିସ୍ଥିତିରେ ପହଞ୍ଚିଛନ୍ତି, ଯାହା ଆଦିମ-ମାନବ ଏହି ବିଶ୍ୱ ସୃଷ୍ଟିକୁ ଦେଖି ଯେଉଁ ଭାବରେ ବିସ୍ମୟାଭିଭୂତ ହେଉଥିଲା ତାହା ପ୍ରାୟ ସେହି ଅବସ୍ଥା । ବୈଜ୍ଞାନିକମାନେ ଅଣୁର ଉତ୍ତରୋତ୍ତର-ଆବିଷ୍କୃତ ରହସ୍ୟ ନିକଟରେ ମଧ୍ୟ ବାକ୍ଶକ୍ତି-ରହିତ । ତେଣୁ ଗୀତାର ଏହି 'ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନମାଶ୍ଚର୍ଯ୍ୟବତ୍ ବଦତି ତଥୈବ ଚାନ୍ୟଃ'' ଇତ୍ୟାଦି କେବଳ ଦେହସ୍ଥ ଆତ୍ମାଉପରେ ନୁହେଁ, ବିଜ୍ଞାନାବିଷ୍କୃତ ଏହି ସମଗ୍ର ସୃଷ୍ଟିର ଗୂଢ଼ ରହସ୍ୟପାଇଁ ମଧ୍ୟ ପ୍ରଯୁଜ୍ୟ । ଅନ୍ୟ ପକ୍ଷରେ, ଶ୍ରୀକୃଷ୍ଣଙ୍କର ''ତୁମ (ଅର୍ଜୁନ) ପରି ଅନେକେ ଏହା (ଏକ ଶାଶ୍ୱତ ଆତ୍ମାର ଅବସ୍ଥାନ) ଶୁଣି ବିସ୍ମିତ ହୋଇଥାନ୍ତି''—ଏହାର ତାତ୍ପର୍ଯ୍ୟ, ବୌଦ୍ଧ-ପ୍ରଭାବିତ ସେକାଳର ଭାରତରେ ଆତ୍ମା (ଓ ଈଶ୍ୱର)ରେ ବିଶ୍ୱାସ ନ କରୁଥିବା ଲୋକଙ୍କ ପ୍ରାଚୁର୍ଯ୍ୟ ଓ କରୁଥିବା ଲୋକଙ୍କ ମୁଷ୍ଟିମେୟତାକୁ ସୂଚନା କରେ । ଗୀତା (ବୌଦ୍ଧ) ନୈରାତ୍ମ୍ୟ ଓ ନିରୀଶ୍ୱରତାକୁ ଧ୍ୱଂସ କରି ସେମାନଙ୍କ ସ୍ଥାନରେ ଆତ୍ମା ଓ ପରମାତ୍ମାକୁ ପ୍ରତିଷ୍ଠିତ କରିବାର ଏକ ଶକ୍ତିମାନ୍ ସଫଳ ପ୍ରୟାସ । ପୁଣି, ''ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍'' (ଶୁଣି ମଧ୍ୟ ଅନେକେ ଏହାର ତତ୍ତ୍ୱ ଜାଣନ୍ତି ନାହିଁ) ବାକ୍ୟାଂଶ ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ । କାରଣ-'ଆତ୍ମା ଅଛି' ଏ ଜ୍ଞାନ ଶେଷ କଥା ନୁହେଁ । ଆମେ ଦେହ ଓ ମନକୁହିଁ ଭୋଗ କରିଚାଲିଛୁ ଏବଂ ସେହି କାରଣରୁ ଦୁଃଖ ଭୋଗିଚାଲିଛୁ । ଦେହ ଓ ମନ ତଳେ ଆତ୍ମାହିଁ ଆମେ ପ୍ରକୃତରେ ନିଜେ, ଏ ଦେହ ନୋହୁଁ ବୋଲି ଅନୁଭବ କଲେ ଯାଇ ଦୁଃଖର ବିନାଶ । ତେଣୁ କେବଳ ଶୁଣି, ଜାଣି ବା ଆଲୋଚନା କରି

କିଛି ଲାଭ ନାହିଁ । ପ୍ରଜ୍ଞାନଂ ବ୍ରହ୍ମ । ଯେପର୍ଯ୍ୟନ୍ତ ଆମେ ଆତ୍ମା ବା ବ୍ରହ୍ମଙ୍କୁ ଆମର ଚେତନାରେ ପରିଣତ ନ କରିଛୁଁ, ସେପର୍ଯ୍ୟନ୍ତ ଆମର ଦୁଃଖର ଅବସାନ ନାହିଁ ।

୩୦

ଦେହୀ ନିତ୍ୟମବଧ୍ୟୋଽୟଂ ଦେହେ ସର୍ବସ୍ୟ ଭାରତ
ତସ୍ମାତ୍ ସର୍ବାଣି ଭୂତାନି ନ ତ୍ୱଂ ଶୋଚିତୁମର୍ହସି । ୩୦ ।

[ହେ] ଭାରତ (ହେ ଅର୍ଜ୍ଜୁନ) ସର୍ବସ୍ୟ ଦେହେ (ସମସ୍ତଙ୍କ ଦେହଭିତରେ) [କେବଳ ତୁମର ବନ୍ଧୁ କୁଟୁମ୍ବଙ୍କ ଦେହଭିତରେ ନୁହେଁ, ଯେଉଁ ଜୀବଜନ୍ତୁଙ୍କୁ ଶିକାର କରିଆସିଛ ଓ ଯାହାଙ୍କ ମାଂସ ନିତ୍ୟ ଖାଉଛ, ସେମାନଙ୍କ ଦେହରେ ମଧ୍ୟ] ଅୟଂ ଦେହୀ (ଏହି ଦେହସ୍ଥ ଶକ୍ତି) ନିତ୍ୟଂ ଅବଧ୍ୟଃ (ଚିରନ୍ତନ ଓ ଅନାଶ୍ୟ) [ଭାବରେ ଅବସ୍ଥିତ] । ତସ୍ମାତ୍ (ତେଣୁ) ତ୍ୱଂ (ତୁମେ) [କେବଳ ତୁମ କୁଟୁମ୍ବଙ୍କ ପାଇଁ ନୁହେଁ] ସର୍ବାଣି ଭୂତାନି (ସକଳ ପ୍ରାଣୀ, ଅର୍ଥାତ୍ କୌଣସି ହେଲେ ପ୍ରାଣୀପାଇଁ) ଶୋଚିତୁଂ ନ ଅର୍ହସି (ଶୋଚନା କରିବାର କଥା ନୁହେଁ ) ।

**ଅନୁବାଦ**

"ଜୀବର ଦେହାଭ୍ୟନ୍ତରସ୍ଥ ସେହି ପ୍ରକୃତ ଦେହୀ ଧନ୍ତ୍ୟରେ ଅବିନାଶ୍ୟ । ତେଣୁ, ହେ ଅର୍ଜ୍ଜୁନ, ତୁମେ କେବଳ ତୁମର ଏହି ସ୍ୱଜନମାନଙ୍କର ଦେହନାଶ-ପାଇଁ ନୁହେଁ, କୌଣସି ଜୀବର ଦେହନାଶପାଇଁ ମଧ୍ୟ ଶୋକ କରିବାରେ କୌଣସି ଯୁକ୍ତିଯୁକ୍ତତା ନାହିଁ ।"

**ବିଶେଷ ଭାଷ୍ୟ**

ଅର୍ଜ୍ଜୁନଙ୍କ 'କର୍ତ୍ତବ୍ୟ' ନେଇ ଶ୍ରୀକୃଷ୍ଣଙ୍କର ଏଯାବତ୍ ଭାଷଣ ଥିଲା ଦାର୍ଶନିକ-ଯୁକ୍ତି-ସମ୍ବଳିତ । ଅର୍ଥାତ୍ "ମଲା ଲୋକ ସତରେ ମରୁନି । ଦେହଟା ମାତ୍ର ମରେ, କିନ୍ତୁ ଅସଲ ଜିନିଷଟା ଯେମିତିକି ସେମିତି ବଞ୍ଚିରହେ । ତେଣୁ ମାରିବାକୁ ପଛଉଛ କାହିଁକି ?" ଏହି ଶ୍ଳୋକରେ ସେସବୁ ଯୁକ୍ତିର ଶେଷ ହେଲା । ଏହା ପର ଶ୍ଳୋକରେ ସେ ଉଚ୍ଚ ଆଧ୍ୟାତ୍ମିକ ସ୍ତରରୁ ତଳର ସାମାଜିକ ସ୍ତରକୁ ଫେରିଆସିବେ ।

**୩୧**

ସ୍ୱଧର୍ମମପି ଚାବେକ୍ଷ୍ୟ ନ ବିକମ୍ପିତୁମର୍ହସି
ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତେ । ୩୧ ।

ସ୍ୱଧର୍ମଂ ଅପି ଚ (ନିଜ ଧର୍ମ ବା କର୍ତ୍ତବ୍ୟ ଆଡ଼କୁ ମଧ୍ୟ) ଅବେକ୍ଷ୍ୟ (ଆଖି ପକାଇଲେ) [ତୁମେ] ବିକମ୍ପିତୁଂ ନ ଅର୍ହସି (ଘାବଡ଼େଇ ଯିବା ଉଚିତ ନୁହେଁ) । ହି (ଯେହେତୁ) କ୍ଷତ୍ରିୟସ୍ୟ (କ୍ଷତ୍ରିୟର) ଧର୍ମ୍ୟାତ୍ ଯୁଦ୍ଧାତ୍ (କର୍ତ୍ତବ୍ୟାନୁପ୍ରେରିତ ଯୁଦ୍ଧଠାରୁ) ଅନ୍ୟତ୍ ଶ୍ରେୟଃ (ଅନ୍ୟ କିଛି କଲ୍ୟାଣ) ନ ବିଦ୍ୟତେ (ନ ଥାଇପାରେ) ।

## ଅନୁବାଦ

"ପୁଣି ହେ ଅର୍ଜୁନ ! ଦେହ ଓ ଆତ୍ମାର ବିଶ୍ଳେଷଣ ଉପରେ ତାତ୍ତ୍ୱିକ ବିଚାର ଛାଡ଼ । ତୁମର 'ସ୍ୱଧର୍ମ' କଥା ଚିନ୍ତା କରିହଁ ଦେଖ ଯେ, ତୁମର ଯୁଦ୍ଧ କରିବାକୁ ନାହିଁ କରିବା କେପରି ଏକାନ୍ତ ଅନୁଚିତ । ଏପ୍ରକାର ଧର୍ମୀୟ ଯୁଦ୍ଧଠାରୁ କ୍ଷତ୍ରିୟର ଅଧିକ କିଛି ଶ୍ରେୟ ଥାଇପାରେ କି ?"

## ବିଶେଷ ଭାଷ୍ୟ

ଆମେ ପ୍ରଥମ ଅଧ୍ୟାୟରେ ଅର୍ଜୁନଙ୍କ ମୁଖରେ 'କୁଳଧର୍ମ'ର କଥା ଶୁଣିଥିଲୁଁ । ଅର୍ଜୁନ 'କୁଳଧର୍ମ'ର ବିନାଶକୁ ଏକ ଯୁକ୍ତି କରିହଁ ଯୁଦ୍ଧ ନ କରିବାକୁ ବସିଥିଲେ । ତାଙ୍କର ଯୁକ୍ତି ଥିଲା, ଯୁଦ୍ଧ ହେଲେ ପୁରୁଷମାନେ ନଷ୍ଟ ହୁଅନ୍ତି । ନ୍ୟୂନ ପୁରୁଷସମାଜରେ ସ୍ତ୍ରୀମାନେ ସହଜରେ ଭ୍ରଷ୍ଟା ହୋଇଉଠନ୍ତି ଏବଂ ସୃଷ୍ଟି କରନ୍ତି ବର୍ଣ୍ଣସଙ୍କର, ଯେଉଁମାନଙ୍କଠାରୁ ପିତୃପୁରୁଷ 'ପିଣ୍ଡ' ଗ୍ରହଣ କରିବେ ନାହିଁ, କାରଣ ସେଗୁଡ଼ାକ ନିଜ-କୁଳଜ ନୁହନ୍ତି । ଏହିପରିଭାବରେ 'କୁଳଧର୍ମ' ନଷ୍ଟ ହୁଏ ବୋଲି ଅର୍ଜୁନ 'ଅନୁଶୁଶ୍ରୁମ' (ଶୁଣିଆସିଛନ୍ତି) ବୋଲି କହିଥିଲେ ।

ବର୍ତ୍ତମାନ ଶ୍ରୀକୃଷ୍ଣ ଅର୍ଜୁନଙ୍କର ଏହି କୁଳଧର୍ମନାଶ ଭୟକୁହିଁ ଓଲଟା ଅସ୍ତ୍ର କରି ତାଙ୍କୁ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଉଛନ୍ତି । ସେ କହିଲେ, 'କୁଳଧର୍ମ' ମୃତ ପିତୃପୁରୁଷଙ୍କର ପିଣ୍ଡୋଦକର ଗ୍ରହଣ ନେଇ ଅପ୍ରାମାଣ୍ୟ ଇଚ୍ଛା-ଅନିଚ୍ଛାଉପରେ ନିର୍ଭର ନ କରି ବରଂ କରେ ବା କରିବା ଉଚିତ ଆମରି, ଜୀବିତମାନଙ୍କର ସାମାଜିକ କରଣୀୟତା ଦୃଷ୍ଟିରୁ । ଅର୍ଜୁନ କ୍ଷତ୍ରିୟ । କ୍ଷତ୍ରିୟର କର୍ତ୍ତବ୍ୟ ଯୁଦ୍ଧ । ଯୁଦ୍ଧ ପୁଣି ଦୁଇପ୍ରକାର । ଗୋଟିଏ ହେଲା ଆକ୍ରମଣାତ୍ମକ (aggressive), ଯାହା ସବୁ ସ୍ଥଳରେ ପ୍ରଶଂସନୀୟ କର୍ମ ନ ହୋଇପାରେ । ଅନ୍ୟଟି ହେଲା ପ୍ରତିରକ୍ଷାତ୍ମକ (defensive) । ଦେଶ, ନାରୀ, ଆଶ୍ରିତ, ଅଶକ୍ତ ଓ ଅତ୍ୟାଚାରିତର ରକ୍ଷାର୍ଥେ

ଯୁଦ୍ଧ ସବୁ କାଳରେ ଓ ସ୍ଥାନରେ କ୍ଷତ୍ରିୟର ପରମ କର୍ତ୍ତବ୍ୟ ଓ ପରମ ଧର୍ମ । ଏ ହେଲା ଧର୍ମ୍ୟ ଯୁଦ୍ଧ ବା ଧର୍ମପାଇଁ ବା କର୍ତ୍ତବ୍ୟପାଇଁ ଯୁଦ୍ଧ ; ଯେହେତୁ ଏହା ରାଜ୍ୟ, ନାରୀ ବା ସମ୍ପଦପାଇଁ ଯୁଦ୍ଧ ନୁହେଁ, ମାନବିକତାପାଇଁ ଯୁଦ୍ଧ । ଅର୍ଜୁନ 'କୁଳଧର୍ମ'ପାଇଁ ଶଙ୍କାନ୍ୱିତ ହୋଇଥିଲେ । ଶ୍ରୀକୃଷ୍ଣ ବର୍ତ୍ତମାନ ତାଙ୍କୁ କହିଲେ—'ଯୁଦ୍ଧ' ତୁମର କେବଳ 'କୁଳଧର୍ମ' ନୁହେଁ, ଏହା ତୁମର 'ସ୍ୱ-ଧର୍ମ' । କଠୋପନିଷଦ୍‌ରେ ଶ୍ରେୟ ଓ ପ୍ରେୟର ପ୍ରଭେଦ ବର୍ଣ୍ଣିତ ଅଛି । ଇନ୍ଦ୍ରିୟଲବ୍‌ଧ ସୁଖ ମନୁଷ୍ୟର ସାଧାରଣତଃ ପ୍ରିୟ କର୍ମ । କିନ୍ତୁ ତାହା ସର୍ବଦା କଲ୍ୟାଣଜନକ ହୋଇ ନ ଥାଏ । ଯାହା ପ୍ରକୃତ କଲ୍ୟାଣପ୍ରଦ, ତାହା ଶ୍ରେୟ । ଆପାତ-ଅପ୍ରୀତିକର ହେଲେହେଁ, ସାଧକର ଶ୍ରେୟ ମାର୍ଗହିଁ ଅବଲମ୍ବନୀୟ । ଏଠାରେ ଅର୍ଜ୍ଜୁନଙ୍କୁ ଯୁଦ୍ଧ ଅପ୍ରୀତିକର ହେଲେହେଁ, ଯେହେତୁ ତାହା ବିଶ୍ୱ-କଲ୍ୟାଣକର, ତାହା ତାଙ୍କୁ କରିବାକୁହିଁ ହେବ । ଏହା କରିବାଦ୍ୱାରା ସେ ନିଜର ଓ ବିଶ୍ୱର ଶ୍ରେୟ ସାଧନ କରିବେ ।

୩୨

ଯଦୃଚ୍ଛୟା ଚୋପପନ୍ନଂ ସ୍ୱର୍ଗଦ୍ୱାରମପାବୃତମ୍
ସୁଖିନଃ କ୍ଷତ୍ରିୟାଃ ପାର୍ଥ ଲଭନ୍ତେ ଯୁଦ୍ଧମୀଦୃଶମ୍ । ୩୨ ।

[ହେ] ପାର୍ଥ (ଅର୍ଜ୍ଜୁନ) [କେବଳ] ସୁଖିନଃ କ୍ଷତ୍ରିୟାଃ (ସୁଖୀ, ଭାଗ୍ୟବାନ୍ କ୍ଷତ୍ରିୟମାନେ) ଯଦୃଚ୍ଛୟା ଚ ଉପପନ୍ନଂ (ସ୍ୱୟଂ ଉପସ୍ଥିତ) ଈଦୃଶଂ (ଏପରି) ଅପାବୃତଂ ସ୍ୱର୍ଗଦ୍ୱାରଂ ଯୁଦ୍ଧଂ (ଯାହାର ପୁଣ୍ୟ ଯୋଗୁ ସ୍ୱର୍ଗର ରୁଦ୍ଧ କବାଟ ଆପେ ଆପେ ମେଲା ହୋଇଯାଏ, ସେପରି ଯୁଦ୍ଧର ଅବକାଶ) ଲଭନ୍ତେ (ଲାଭ କରିଥାନ୍ତି) ।

## ଅନୁବାଦ

"ହେ ଅର୍ଜ୍ଜୁନ, ଆପେ ଆପେ ସମୁପସ୍ଥିତ ଏପରି ଧର୍ମୀୟ ଯୁଦ୍ଧର ଅବକାଶ ପାଇଲେ ଯେକୌଣସି କ୍ଷତ୍ରିୟ ନିଜକୁ ସୁଖୀ ଅନୁଭବ କରିବ, କାରଣ ଧର୍ମଯୁଦ୍ଧହିଁ କ୍ଷତ୍ରିୟପାଇଁ ମୃତ୍ୟୁପରେ ସ୍ୱର୍ଗଦ୍ୱାରକୁ ଉନ୍ମୁକ୍ତ କରି ରଖେ ।"

## ବିଶେଷ ଭାଷ୍ୟ

ନ୍ୟାୟପାଇଁ, ନିଜର ମାଟିପାଇଁ, ନିଜର ଧର୍ମପାଇଁ ବୀରତ୍ୱ ସହିତ ଯୁଦ୍ଧରେ ମୃତ୍ୟୁ, ମୃତ-ପୁରୁଷକୁ ପରପାରରେ ଅନନ୍ତକାଳ ଦେବତାମାନଙ୍କ ସହିତ ସହାବସ୍ଥାନ ଓ ସ୍ୱର୍ଗ-ସୁଖ-ଭୋଗ ଦେବାର ବିଶ୍ୱାସ ପୃଥିବୀର ପ୍ରାୟ ସକଳ ଜାତିରେ ଥିଲା । ଏହା ବିଶେଷଭାବରେ ଦୃଢ଼ପ୍ରତିଷ୍ଠ ଥିଲା ଆର୍ଯ୍ୟମାନଙ୍କ

ଭିତରେ । ବିନା ଯୁଦ୍ଧରେ 'ସୂଚ୍ୟଗ୍ର ମେଦିନୀ' ନ ଦେବାର ପ୍ରତିଜ୍ଞାରୁ ତ ମହାଭାରତର ମହାସଂଗ୍ରାମର ଉତ୍ପତ୍ତି । ତେଣୁ ଯୁଦ୍ଧ ବା ଶୌର୍ଯ୍ୟ ଦେଇ ସମାଜରେ ଶାନ୍ତି-ରକ୍ଷାହିଁ ଥିଲା କ୍ଷତ୍ରିୟର ଏକମାତ୍ର ଧର୍ମ । ମହାଭାରତ ଶାନ୍ତି ପର୍ବରେ ସ୍ପଷ୍ଟ କୁହାଯାଇଛି ଯେ, "ଦଣ୍ଡ ଏବ ହି, ରାଜେନ୍ଦ୍ର, କ୍ଷତ୍ରଧର୍ମ, ନ ମୁଣ୍ଡନମ୍" । ମୁଣ୍ଡନ ବା ସନ୍ନ୍ୟାସ କ୍ଷତ୍ରିୟର ଧର୍ମ ନୁହେଁ । ଶତ୍ରୁର ଦଣ୍ଡ-ଭୟ ଦେଇ ସମାଜରେ ଶାନ୍ତି-ରକ୍ଷାହିଁ କ୍ଷତ୍ରିୟର ଧର୍ମ । ସ୍ୱର୍ଗ-କଳ୍ପନା ଏବକୁ ପ୍ରାୟ ଚାଲିଯାଇଥିଲେ ମଧ୍ୟ, ଏବେ ବି 'ବୀର'ର ମରଣ ପୁରୁଷ ଓ ଏପରିକି ନାରୀ ପକ୍ଷରେ ମଧ୍ୟ ପରମ କାମ୍ୟ ଓ ପରମ ପ୍ରଶଂସନୀୟ ମୃତ୍ୟୁ ବୋଲି ସବୁ ଜାତିର ବଦ୍ଧମୂଳ ଧାରଣା । ଭୀରୁତା, ଦୁର୍ବଳତା ସବୁ ଜାତିରେ ଘୃଣ୍ୟ ଓ ନିନ୍ଦନୀୟ ବ୍ୟବହାର । ଗୀତା ଯେଉଁ କାଳରେ ଲେଖା ହୋଇଥିଲା, ସେତେବେଳେ ମଧ୍ୟ 'ଧର୍ମ'ପାଇଁ ଓ ନାରୀର ସମ୍ମାନପାଇଁ ପ୍ରାଣ ଦେବାଟା ପରମ ବୀରତ୍ୱବ୍ୟଞ୍ଜକ କର୍ମ ବୋଲି ଧରାଯାଉଥିଲା । ଅଥଚ, ମାନିବାକୁ ହେବ ଯେ, 'ଧର୍ମପାଇଁ ପ୍ରାଣ ଦେବା' ଇସ୍‌ଲାମ୍ ଧର୍ମର ଯେପରି ଘନିଷ୍ଠଭାବରେ ଅଙ୍ଗୀଭୂତ, ସେପରି ହୁଏତ ଅନ୍ୟ କୌଣସି ଧର୍ମରେ ନାହିଁ । ଇସ୍‌ଲାମ୍‌ରେ ଏହାକୁ 'ଜେହାଦ' କୁହାଯାଏ । ଜେହାଦ୍-ମୃତ୍ୟୁ ମୁସଲମାନ୍‌ପ୍ରତି "ସ୍ୱର୍ଗଦ୍ୱାରମପାବୃତମ୍" କରିଦେଇଥାଏ । ଏବେ ବିଶ୍ୱର ସକଳ ଧର୍ମଭିତରେ କେବଳ ଇସ୍‌ଲାମ୍‌ରେହିଁ ଏପ୍ରକାର ଧର୍ମ-ଯୁଦ୍ଧର ପ୍ରେରଣା ଅଛି । ମଧ୍ୟଯୁଗରେ ଧର୍ମପାଇଁ ଇସ୍‌ଲାମ ଓ ଖ୍ରିଷ୍ଟିୟାନିଟି ଏବଂ ଇସ୍‌ଲାମ୍+ ଇସ୍‌ଲାମ ଓ ଖ୍ରିଷ୍ଟିୟାନ୍+ ଖ୍ରିଷ୍ଟିୟାନ୍ ଭିତରେ ବୀଭତ୍ସ, ରକ୍ତାକ୍ତ ଓ ଧ୍ୱଂସକାରୀ ସଂଗ୍ରାମସବୁ ଇତିହାସପ୍ରସିଦ୍ଧ । ୟୁରୋପୀୟ ଖ୍ରୀଷ୍ଟିୟାନ୍‌ମାନଙ୍କ ପକ୍ଷରୁ ଇସ୍‌ଲାମ୍ ବିରୁଦ୍ଧରେ ଯେଉଁ ଦୀର୍ଘ ସଂଗ୍ରାମ ଚାଲିଥିଲା, ଖ୍ରୀଷ୍ଟଧର୍ମର ପ୍ରତୀକ 'କ୍ରସ୍' ଯୋଗୁ ତାର ନାମ ହୁଏ 'କ୍ରୁଜେଡ'—ଯାହାକି ଇସ୍‌ଲାମ୍‌ର 'ଜେହାଦ୍'ର ସମଧର୍ମୀ । ଏବେ କିନ୍ତୁ ୟୁରୋପର କୌଣସି ଖ୍ରୀଷ୍ଟିୟାନ୍ ରାଜ୍ୟର ଲୋକେ 'ଧର୍ମ' ନାଁରେ ପ୍ରାଣ ଦେବାର କଳ୍ପନା କରିବେ ନାହିଁ । 'ଦେଶ' ଓ 'ଜାତି'ପାଇଁ ପ୍ରାଣ ଦେବା ଊନବିଂଶ ଶତାବ୍ଦୀରୁ 'ଧର୍ମ' ହୋଇ-ଆସିଲା । ବିଂଶ ଶତାବ୍ଦୀର ପ୍ରଥମ ପାଦରେ, ଶିଳ୍ପ-ବିପ୍ଳବ ପରେ, ୟୁରୋପରେ ଯେଉଁ ସାମାଜିକ ବିଭ୍ରାଟ ଘଟିଲା ଏବଂ ତାର ପ୍ରତିକ୍ରିୟାସ୍ୱରୂପ ଶ୍ରମିକଶ୍ରେଣୀର ଦାବୀରୂପେ ଯେଉଁ କମ୍ୟୁନିଜମ୍ ବା ସାମ୍ୟବାଦ ଦେଖା ଦେଲା, ତାହା ବର୍ତ୍ତମାନ କୋଟି କୋଟି ଲୋକ ପକ୍ଷରେ ଏକମାତ୍ର 'ଧର୍ମ' ହୋଇଉଠିଛି ଏବଂ ସେଥିପାଇଁ ଲୋକେ ଅକାତରରେ ପ୍ରାଣ ଦେବାକୁ ପ୍ରସ୍ତୁତ ଏବଂ ଦେଉଛନ୍ତି । ଏହି ନୂତନ ଆର୍ଥିକ-ସାମାଜିକ 'ଧର୍ମ'ର ଅଭ୍ୟୁଦୟଫଳରେ **ପୃଥିବୀ ବର୍ତ୍ତମାନ ଡେମୋକ୍ରାସୀ**

ଓ କମ୍ୟୁନିଜିମ୍‌କୁ କେନ୍ଦ୍ର କରି ଦୁଇଟି ସମର-ଶିବିରରେ ବିଭକ୍ତ ହୋଇଛି ବୋଲି କୁହାଯାଉଛି ଏବଂ ସେଥିପାଇଁ ସମଗ୍ର ମାନବଜାତି ପରମ ଅନିଶ୍ଚିତତାରେ କାଳ କାଟୁଛି ଏବଂ, ଉଭୟେ ସମସ୍ୱରରେ, ସାଧାରଣ ମନୁଷ୍ୟପାଇଁ, ପୂର୍ବ 'ଧର୍ମ'-ମାନଙ୍କ ପରି ମୃତ୍ୟୁ-ଆର-ପଟେ ନୁହେଁ, ବରଂ ଏହି-ପଟେହିଁ, ଏହି ପୃଥିବୀରେ, 'ସ୍ୱର୍ଗଦ୍ୱାର'କୁ ଅନାବୃତ କରିଦେବାର ପରମ ଆଶ୍ୱାସନା ଦେଇଚାଲିଛନ୍ତି ।

'ଧର୍ମ' ଶବ୍ଦର ଏପ୍ରକାର ଅପପ୍ରୟୋଗ ଯୁଗେ ଯୁଗେ ଓ ଦେଶେ ଦେଶେ ଚାଲିଆସିଥିବାବେଳେ, ଗୀତା ଏହି ଶବ୍ଦର କି ତାତ୍ପର୍ଯ୍ୟ ପରିବେଷଣ କରିବେ, ପାଠକେ ତାହାପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବେ ବୋଲି ଆଶା ।

**୩୩**

ଅଥ ଚେତ୍ତ୍ୱମିମଂ ଇମଂ ଧର୍ମ୍ୟଂ ସଂଗ୍ରାମଂ ନ କରିଷ୍ୟସି
ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ ହିତ୍ୱା ପାପମବାପ୍ସ୍ୟସି । ୩୩ ।

ଅଥ (ଅନ୍ୟ ପକ୍ଷରେ) ଚେତ୍ (ଯେବେ) ତ୍ୱଂ ଇମଂ ଧର୍ମ୍ୟଂ ସଂଗ୍ରାମଂ (ତୁମେ ଏପ୍ରକାର ଧର୍ମୀୟ ଯୁଦ୍ଧ) ନ କରିଷ୍ୟସି (ନ କରିବ), ତତଃ (ତା ହେଲେ) ସ୍ୱଧର୍ମଂ କୀର୍ତ୍ତିଂ ଚ (ସ୍ୱଧର୍ମ ସହିତ କୀର୍ତ୍ତିକୁ ମଧ୍ୟ) ହିତ୍ୱା (ହରାଇ) ପାପମ୍ ଅବାପ୍ସ୍ୟସି (ପାପହିଁ ଲାଭ କରିବ) ।

## ଅନୁବାଦ

"କ୍ଷତ୍ରିୟ ହୋଇ ତୁମେ ଏପ୍ରକାର ଧର୍ମ୍ୟ ଯୁଦ୍ଧରେ ଯୋଗ ନ ଦେଇ ପଳାୟନ କଲେ ସ୍ୱ-ଧର୍ମ ଓ ସ୍ୱ-କୀର୍ତ୍ତି ଉଭୟଙ୍କୁ ତ ହରାଇବ, ଅଧିକନ୍ତୁ ପାପଭାଗୀ ହେବ ।"

## ବିଶେଷ ଭାଷ୍ୟ

ପୂର୍ବ ଶ୍ଳୋକରେ ଶ୍ରୀକୃଷ୍ଣ ସେକାଳର ଲୌକିକ ବିଶ୍ୱାସ ଦିଗରୁ 'ସ୍ୱର୍ଗ'ର ପ୍ରଲୋଭନ ଦେଖାଇଥିଲେ । ଏ ଶ୍ଳୋକରେ 'କୀର୍ତ୍ତି'ର ପ୍ରଲୋଭନ ଦେଖାଇଲେ । କାରଣ, କୀର୍ତ୍ତି ମନୁଷ୍ୟର ଏକ ସ୍ୱାଭାବିକ ଅଭିଳାଷ ଏବଂ କ୍ଷତ୍ରିୟର କୀର୍ତ୍ତି 'ବୀରତ୍ୱ'ରେ, ବ୍ରାହ୍ମଣର କୀର୍ତ୍ତି 'ବିଦ୍ୟାବତ୍ତା'ରେ ଓ ବୈଶ୍ୟର କୀର୍ତ୍ତି 'ସମ୍ପତ୍ତିଶାଳିତା'ରେ ପ୍ରକଟିତ ହୋଇଥାଏ । ଯୁଦ୍ଧରେ ଶତ୍ରୁର ପରାଜୟ ଓ ନିଜର ବିଜୟ କ୍ଷତ୍ରିୟର ପରମ କାମ୍ୟ 'କୀର୍ତ୍ତି' । ମଧ୍ୟଯୁଗୀୟ ୟୁରୋପରେ ଅଭିଜାତବଂଶଜ ଦଳେ ଲୋକଙ୍କର ଏହିପ୍ରକାର 'କୀର୍ତ୍ତି' ଯୋଗାଡ଼ କରିବା ଜୀବନର ଏକମାତ୍ର ବ୍ୟବସାୟ ଥିଲା । ତାଙ୍କୁସବୁ କୁହାଯାଉଥିଲା 'ନାଇଟ୍' (Knight) । ବିଶେଷକରି ବିପନ୍ନା ରମଣୀକୁ ଦୁର୍ବୃତ୍ତ-ହାତରୁ ରକ୍ଷାକରି ସେହି ସୁନ୍ଦରୀଠାରୁ ସମ୍ମାନ ଲାଭ କରିବା ଏମାନଙ୍କ

ନିକଟରେ ସର୍ବଶ୍ରେଷ୍ଠ ପୌରୁଷ ବୋଲି ବିବେଚିତ ହେଉଥିଲା ଏବଂ ସେଥିପାଇଁ ସେମାନେ ସକଳ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଅଶ୍ୱପୃଷ୍ଠରେ ଚିର—ଭ୍ରାମ୍ୟମାଣ ରହୁଥିଲେ । ଏପରିପ୍ରେକ୍ଷିତରେ ଶ୍ରୀକୃଷ୍ଣ, କ୍ଷତ୍ରିୟ ଅର୍ଜୁନଙ୍କୁ 'କୀର୍ତ୍ତି'ର ପ୍ରଲୋଭନ ଦେଖାଇବା ଏକାନ୍ତ ସ୍ୱାଭାବିକ ।

ପୁଣି ପାଠକେ ସ୍ମରଣ କରନ୍ତୁ, ପ୍ରଥମ ଅଧ୍ୟାୟର ୩୬ ଶ୍ଳୋକରେ ଅର୍ଜୁନ କହିଛନ୍ତି "ଏ ପ୍ରକାର ଆତତାୟୀମାନଙ୍କୁ ମାରିଲେ ମଧ୍ୟ ଆମର ପାପ ହେବ"—ଏହି ଯୁକ୍ତି କରି ଯୁଦ୍ଧ ନ କରିବାକୁ ବସିଛନ୍ତି । ଶ୍ରୀକୃଷ୍ଣ ତାଙ୍କୁ ବର୍ତ୍ତମାନ କହୁଛନ୍ତି ଯେ, ଯୁଦ୍ଧ ଅର୍ଥାତ୍ ତୁମର ସ୍ୱ-ଧର୍ମ ବା ସ୍ୱକର୍ତ୍ତବ୍ୟ ନ କଲେହିଁ ତୁମର ପାପ ହେବ। ଅଥଚ ପାଠକ ପରେ ଦେଖିବେ ଯେ, ଗୀତା ପାପ ଓ ପୁଣ୍ୟ ଏହି ଦୁଇ ଭାବ-କଳ୍ପକୁ ଏକାବେଳକେ ଉଡ଼ାଇଦେଇଛନ୍ତି । ଯଥାସ୍ଥାନରେ ତାର ଆଲୋଚନା ହେବ ।

### ୩୪

ଅକୀର୍ତ୍ତିଂ ଚାପି ଭୂତାନି କଥୟିଷ୍ୟନ୍ତି ତେଽବ୍ୟୟାମ୍
ସମ୍ଭାବିତସ୍ୟ ଚାକୀର୍ତ୍ତିର୍ମରଣାଦତିରିଚ୍ୟତେ । ୩୪ ।

ଅପି ଚ (ଆହୁରି ମଧ୍ୟ) ଭୂତାନି (ସାଧାରଣ ଲୋକେ ସୁଦ୍ଧା) ତେ (ତୁମର) ଅବ୍ୟୟାଂ (ଚିରକାଳବ୍ୟାପୀ) ଅକୀର୍ତ୍ତିଂ (ଅପଯଶ) କଥୟିଷ୍ୟନ୍ତି (କହିବୁଲିବେ)। [କାରଣ] ସମ୍ଭାବିତସ୍ୟ (ପୂର୍ବରୁ ସମ୍ମାନିତ ବ୍ୟକ୍ତି ପକ୍ଷରେ) [କୌଣସିପ୍ରକାରି] ଅକୀର୍ତ୍ତି (ଅପଯଶ) ମରଣାତ୍ ଚ (ମରଣଠାରୁ ମଧ୍ୟ) ଅତିରିଚ୍ୟତେ (ଅଧିକ ହୋଇଯାଏ) ।

**ଅନୁବାଦ**

"ହେ ଅର୍ଜୁନ, ଲୋକେ ନିଶ୍ଚୟ ଚିରକାଳ ତୁମର ଅକୀର୍ତ୍ତି ଗାଇବେ । ସମ୍ମାନିତ ବ୍ୟକ୍ତିଙ୍କର ଅକୀର୍ତ୍ତି, ମରଣଠାରୁ ବଳି ଦୁଃଖପ୍ରଦ ବୋଲି ଜାଣିବ ।"

### ୩୫

ଭୟାଦ୍ରଣାଦୁପରତଂ ମଂସ୍ୟନ୍ତେ ତ୍ୱାଂ ମହାରଥାଃ
ଯେଷାଂ ଚ ତ୍ୱଂ ବହୁମତୋ ଭୂତ୍ୱା ଯାସ୍ୟସି ଲାଘବମ୍ । ୩୫ ।

ମହାରଥାଃ ଚ (ମହାରଥୀମାନେ ଅର୍ଥାତ୍ ତୁମର ସମକକ୍ଷ ବୀରମାନେ) ତ୍ୱାଂ (ତୁମକୁ) ଭୟାତ୍ (ଭୟବଶତଃହିଁ) ରଣାତ୍ (ଯୁଦ୍ଧରୁ) ଉପରତଂ (ନିବୃତ୍ତ) [ହୋଇଗଲ ବୋଲି] ମଂସ୍ୟନ୍ତେ (ମନେ କରିବେ) । ଯେଷାଂ (ଯେଉଁମାନଙ୍କଦ୍ୱାରା,

ଅର୍ଥାତ୍ ସେହିସବୁ ମହାରଥୀମାନଙ୍କଦ୍ୱାରା)[ତୁମେ] ଭୂତ୍ୱା (ତୁମେ) ବହୁମତଃ ଭୂତ୍ୱା ଚ (ସମ୍ମାନିତ ହୋଇ ମଧ୍ୟ) [ତୁମେ ବର୍ତ୍ତମାନ ସେମାନଙ୍କ ଆଖିରେ] ଲାଘବଂ ଯାସ୍ୟସି (ଲଘୁ ହୋଇଉଠିବ) ।

## ଅନୁବାଦ

"ମହାରଥୀମାନେ କହିବେ ଯେ, ତୁମେ ପରାଜୟ-ଭୟରେହିଁ ଯୁଦ୍ଧ କଲନି – ଜ୍ଞାତିକୁଟୁମ୍ବଙ୍କପ୍ରତି ସହାନୁଭୂତି ଯୋଗୁ ନୁହେଁ । ଯେଉଁମାନେ ଆଗରୁ ତୁମକୁ ଗୁରୁତ୍ୱ ଦେଉଥିଲେ, ସେମାନଙ୍କ ଦୃଷ୍ଟିରେ ତୁମେ ବର୍ତ୍ତମାନ ଲଘୁ ହୋଇଯିବ ।"

## ବିଶେଷ ଭାଷ୍ୟ

ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ନାନା ଦିଗରୁ ବୁଝାଇବାକୁ ଯାଉଛନ୍ତି, ଯାହା କି ଅତ୍ୟନ୍ତ ସ୍ୱାଭାବିକ । ଆମର ଦୈନନ୍ଦିନ ଜୀବନରେ ଆମ ଚିନ୍ତା ଓ ବ୍ୟବହାରକୁ ଅଧିକାଂଶଭାବରେ ପରିଚାଳିତ କରିଥାଏ 'ଲୋକମତ' । ଆମେ ପ୍ରତି କଥାରେ କହେଁ ନାହିଁ କି "ଲୋକେ କଣ କହିବେ ?" ଏହି ଲୋକମତର ଭୟ ଆମକୁ ଅନେକ ଅପକର୍ମରୁ ନିବୃତ୍ତ କଲେ ମଧ୍ୟ ଆମେ ଅନେକ ସମୟରେ ଯାହା ସତ୍ୟ ଓ ଯଥାର୍ଥ ବୋଲି ମନେ କରୁଁ, କେବଳ ଲୋକମତକୁ ଡରି, ତାହା ମଧ୍ୟ ନ କରି ନିଜ ବିବେକ-ବିରୁଦ୍ଧ କାମ କରିଚାଲୁଁ । ବିଶ୍ୱ-ଇତିହାସରେ ଯେଉଁମାନେ ପ୍ରତିଷ୍ଠାର୍ଜନ କରିଛନ୍ତି, ସେମାନେ ପ୍ରତ୍ୟେକେ "ଲୋକେ କଣ କହିବେ" ଏହାକୁ ଖାତିର ନ କରି ଯାହା ଯଥାର୍ଥ ଓ ଯୁକ୍ତିଯୁକ୍ତ, ନାନା ବାଧା ନିର୍ଯ୍ୟାତନା ସତ୍ତ୍ୱେ ତାହାହିଁ କରିଚାଲିଥିବାର ଦେଖିବା ।

### ୩୬

ଅବାଚ୍ୟବାଦାଂଶ୍ଚ ବହୂନ୍ ବଦିଷ୍ୟନ୍ତି ତବାହିତାଃ
ନିନ୍ଦନ୍ତସ୍ତବ ସାମର୍ଥ୍ୟଂ ତତୋ ଦୁଃଖତରଂ ନୁ କିମ୍ । ୩୬ ।

ତବ (ତୁମର) ଅହିତାଃ ଚ (ଶତ୍ରୁମାନେ ମଧ୍ୟ) ତବ ସାମର୍ଥ୍ୟଂ (ତୁମ ସାମର୍ଥ୍ୟକୁ) ନିନ୍ଦନ୍ତଃ (ନିନ୍ଦା କରି) ବହୂନ୍ (ବହୁତ ବହୁତ) ଅବାଚ୍ୟବାଦାନ୍ (କୁକଥାସବୁ ଯାହା କି ପାଟିରେ ଧରିହେବନି) ବଦିଷ୍ୟନ୍ତି (କହିଚାଲିବେ) । ତତଃ (ତାଠାରୁ) ଦୁଃଖତରଂ (ଅଧିକ ଦୁଃଖଦାୟକ) କିଂ ନୁ ? (ଆଉ କଣ ଥାଇପାରେ କି ? ) ।

## ଅନୁବାଦ

"ତୁମର ଶତ୍ରୁମାନେ ତୁମର ସାମର୍ଥ୍ୟକୁ ନିନ୍ଦା କରି ବହୁତ କୁତ୍ସା ପ୍ରଚାର କରିବେ । ତାହାଠାରୁ ଅଧିକ ଦୁଃଖର କଥା ଆଉ କଣ ଥାଇପାରେ ?"

## ବିଶେଷ ଭାଷ୍ୟ

୩୫ ଶ ଶ୍ଳୋକରେ ଅର୍ଜୁନଙ୍କର ଯୁଦ୍ଧ ନ କରିବାରେ ସହାନୁଭୂତିଶୀଳ ସମଶ୍ରେଣୀୟ ଯୋଦ୍ଧାମାନଙ୍କ ମାନସିକ ପ୍ରତିକ୍ରିୟା କୁହାଯାଇଥିଲା । ଏ ଶ୍ଳୋକରେ ଅର୍ଜୁନଙ୍କର ସ୍ୱାଭାବିକ ନିନ୍ଦକମାନଙ୍କର ପ୍ରତିକ୍ରିୟା ବର୍ଣ୍ଣିତ ହେଲା ।

### ୩୭

ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତନିଶ୍ଚୟଃ । ୩୭ ।

[ଏହି ଯୁଦ୍ଧରେ] ହତଃ ବା ( ଯଦି ପ୍ରାଣତ୍ୟାଗ କର ) ସ୍ୱର୍ଗଂ ପ୍ରାପ୍ସ୍ୟସି (ସ୍ୱର୍ଗ ତ ଲାଭ କରିବ) । ଜିତ୍ୱା ବା (ଜୟଲାଭ କଲେ) ମହୀଂ ଭୋକ୍ଷ୍ୟସେ (ପୃଥିବୀ ଭୋଗ କରିବ ) । ତସ୍ମାତ୍ (ତା ହେଲେ) କୌନ୍ତେୟ (ହେ ଅର୍ଜୁନ) ଯୁଦ୍ଧାୟ (ଯୁଦ୍ଧପାଇଁ କୃତନିଶ୍ଚୟଃ କୃତନିଶ୍ଚୟ ହୋଇ) ଉତ୍ତିଷ୍ଠ (ଉଠ) ।"

## ଅନୁବାଦ

"ଏହି ଧର୍ମୀୟ ଯୁଦ୍ଧରେ ମଲେ ସ୍ୱର୍ଗ ଲାଭ କରିବ ଏବଂ ଜୟ ଲାଭ କଲେ ପୃଥିବୀ ଭୋଗ କରିବ । ତେଣୁ ଅନ୍ତତଃ ଏହି ବିଚାରରେହିଁ କୃତନିଶ୍ଚୟ ହୋଇ ଯୁଦ୍ଧପାଇଁ ଉଠ ।

## ବିଶେଷ ଭାଷ୍ୟ

ଯେକୌଣସି ଲଢ଼େଇରେ ଜିଣିଲେ କୀର୍ତ୍ତିମାନ୍ ହୋଇ ପରାଜିତ ବ୍ୟକ୍ତିର ସେବା ଓ ସଂପତ୍ତି ପାଇ ମହୀ-ଭୋଗ ଆଶା କରିବା ପ୍ରତ୍ୟେକ ହିଂସାତ୍ମକ କର୍ମ-କାରୀର ସାଧାରଣ ଧାରଣା । କିନ୍ତୁ ମଲେ ? ଯୁଦ୍ଧକ୍ଷେତ୍ରରେ ଲଢ଼ି ଲଢ଼ି ମଲେ ସ୍ୱର୍ଗ-ବାସ-ସୁଖ ମିଳିବ ବୋଲି ମଧ୍ୟ ପୃଥିବୀର ସମସ୍ତ ପ୍ରାଚୀନ ଜାତିଙ୍କ ଭିତରେ ଯେ ସାର୍ବଜନୀନ ଧାରଣା ରହିଛି, ଏ କଥା ପୂର୍ବେ କୁହାଯାଇଛି । ଶ୍ରୀକୃଷ୍ଣ ଆଗରୁ ଏହି 'ସ୍ୱର୍ଗ' କଥା କହିସାରିଛନ୍ତି । ଏଠାରେ ମହୀ ଓ ସ୍ୱର୍ଗ ଏପରି ଦୁଇ ପଟେ ଦୁଇ ପରମ କାମ୍ୟକୁ ଖଞ୍ଜି, ସେ ଯୁକ୍ତି କରୁଛନ୍ତି ।

୩୮

ସୁଖଦୁଃଖେ ସମେ କୃତ୍ୱା ଲାଭାଲାଭୌ ଜୟାଜୟୌ
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ ନୈବଂ ପାପମବାପ୍ସ୍ୟସି । ୩୮ ।

ତତଃ (ତେଣୁ) ସୁଖଦୁଃଖେ, ଲାଭାଲାଭୌ, ଜୟାଜୟୌ ସମେ କୃତ୍ୱା (ସୁଖ-ଦୁଃଖ, ଲାଭ-କ୍ଷତି ଓ ଜୟ-ପରାଜୟକୁ ସମାନ ଜ୍ଞାନ କରି) ଯୁଦ୍ଧାୟ ଯୁଜ୍ୟସ୍ୱ (ଯୁଦ୍ଧପାଇଁ ଉଦ୍ୟୋଗୀ ହୁଅ) । ଏବଂ (ଏହିପରିଭାବରେ ଯୁଦ୍ଧ କଲେ) ପାପଂ ନ ଅବାପ୍ସ୍ୟସି (କୌଣସି ପାପ ଲାଗିବ ନାହିଁ) ।"

## ଅନୁବାଦ

"ତେଣୁ ସୁଖଦୁଃଖ, ଲାଭାଲାଭ, ଜୟପରାଜୟକୁ ସମାନ ମନେ କରି (କେବଳ କର୍ତ୍ତବ୍ୟ ଭାବରେ) ଯୁଦ୍ଧପାଇଁ ଉଦ୍ୟୋଗୀ ହୁଅ । ସେଥିରେ କୌଣସି-ପ୍ରକାର ହେଲେ ପାପ ଲାଗିବ ନାହିଁ ।

## ବିଶେଷ ଭାଷ୍ୟ

"ସୁଖ-ଦୁଃଖକୁ, ନିନ୍ଦା-ପ୍ରଶଂସାକୁ ସମାନ ମନେ କରି କର୍ତ୍ତବ୍ୟ କର୍ମ କରିଯାଅ"—ଗୀତା ଏହି ଉପଦେଶ ବାରମ୍ବାର ଓ ପ୍ରତ୍ୟେକ ଅଧ୍ୟାୟରେହିଁ ଶୁଣାଇଚାଲିବେ । ଏହି ଶ୍ଳୋକରେ ତାହା ଆରମ୍ଭ ହେଉଛି ମାତ୍ର । ଏହି ଶ୍ଳୋକ-ପାଇଁ, ପୂର୍ବବର୍ତ୍ତୀ ଶ୍ଳୋକଟି, ଅର୍ଥାତ୍ "ମଲେ ଲାଭ, ଜିଣିଲେ ଲାଭ" ହେଲା ସଦ୍ୟ ଯୁକ୍ତି । ପରେ ଧାର୍ମିକ ଯୁକ୍ତିସବୁ ପରିବେଷିତ ହେବ । ପାପ-ସଚେତନ ଅର୍ଜୁନଙ୍କୁ ୩୩ ଶ୍ଳୋକପରି ଏଠାରେ ମଧ୍ୟ କୁହାଯାଇଛି କିପରି ବା କାହିଁକି ହତ୍ୟା କରି ମଧ୍ୟ 'ପାପ' ଲାଗିବନି । 'ପାପ' ଓ 'ପୁଣ୍ୟ' ପରି ଜୟ ଓ ପରାଜୟ, ସୌଭାଗ୍ୟ ଓ ଦୁର୍ଭାଗ୍ୟ ଇତ୍ୟାଦିର ଏକାନ୍ତ ଆପେକ୍ଷିକ ଦ୍ୱନ୍ଦ୍ୱମାନଙ୍କର ଉପରକୁ ଉଠିଯାଇ ନିର୍ବିକାରଭାବରେ କରଣୀୟ କର୍ମ ବା ଧର୍ମ ଆଚରଣପାଇଁ ଗୀତା ମଧ୍ୟ ବାରମ୍ବାର କହିଚାଲିବେ ।

୩୯

ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ
ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ କର୍ମବନ୍ଧଂ ପ୍ରହାସ୍ୟସି । ୩୯ ।

ପାର୍ଥ (ହେ ଅର୍ଜୁନ) ସାଂଖ୍ୟେ (ସାଂଖ୍ୟ ପନ୍ଥାରେ ଦେହାତ୍ମତତ୍ତ୍ୱ ନେଇ) ଏଷା ବୁଦ୍ଧିଃ ତେ ଅଭିହିତା (ଏହି ଜ୍ଞାନ ତୁମକୁ କୁହାଗଲା) । ଯୋଗେ ତୁ (କର୍ମ-ଯୋଗ ଅନୁସାରେ) ଇମାଂ ଶୃଣୁ (ଏହି ଜ୍ଞାନ ଶୁଣ) । ଯୟା ବୁଦ୍ଧ୍ୟା ଯୁକ୍ତଃ [ସନ୍]

(ଯେଉଁ ବୁଦ୍ଧି ବା ଜ୍ଞାନଦ୍ୱାରା ଯୁକ୍ତ ବା ପରିଚାଳିତ ହେଲେ) କର୍ମବନ୍ଧଂ ପ୍ରହାସ୍ୟସି (କର୍ମଜନିତ ପାପପୁଣ୍ୟ-ରୂପ ବନ୍ଧନକୁ ତୁମେ ଆଡ଼େଇ ଚାଲିଯିବ)।

**ଅନୁବାଦ**

"ଏପର୍ଯ୍ୟନ୍ତ ତୁମକୁ ସାଂଖ୍ୟାନୁଯାୟୀ ଦେହ-ଦେହୀ-ସମ୍ବନ୍ଧ-ପ୍ରତିଷ୍ଠିତ ବୁଦ୍ଧି ବା ଜ୍ଞାନ ବତାଯାଉଥିଲା । ବର୍ତ୍ତମାନ କର୍ମଯୋଗାନୁସାରିଣୀ ବୁଦ୍ଧି ଶୁଣ, ଯେଉଁ ବୁଦ୍ଧିରେ କାମ କଲେ ମଧ୍ୟ ତୁମକୁ କର୍ମର କୌଣସି ବନ୍ଧନ ଲାଗିବ ନାହିଁ ।"

**ବିଶେଷ ଭାଷ୍ୟ**

ଗୀତାରେ 'ବୁଦ୍ଧି' ଓ 'ଯୋଗ' ଶବ୍ଦ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହୋଇଛି । 'ବୋଧି' ବା ଜ୍ଞାନ ପ୍ରାପ୍ତ ହୁଅନ୍ତେ ସିଦ୍ଧାର୍ଥ ଗୌତମ 'ବୁଦ୍ଧ' ହେଲେ । ବୋଧି ଓ ବୁଦ୍ଧି ଏକ ବୁଧ୍ (ଜାଣିବା) ଧାତୁରୁ ଉତ୍ପନ୍ନ । ଏହି ଶ୍ଳୋକରେ 'ବୁଦ୍ଧି' ସାଧାରଣ 'ଜ୍ଞାନ' ବା 'ଜାଣିବା' ଅର୍ଥରେ ବ୍ୟବହୃତ ହୋଇଛି । କିନ୍ତୁ ପରେ ଦେଖିବା ଯେ, ଗୀତାରେ ଏହା ମନୁଷ୍ୟର ଭଲାମନ୍ଦ-ବିଚାର-ଶକ୍ତି ବା reasoning power ଅର୍ଥରେହିଁ ସାଧାରଣତଃ ବ୍ୟବହୃତ । ଏହି ତାତ୍ପର୍ଯ୍ୟକୁ ନେଇହିଁ ଗୀତା ପରେ 'ବୁଦ୍ଧିଯୋଗ' ନାମକ ଶବ୍ଦ ବ୍ୟବହାର କରିଥିବାର ଆମେ ଦେଖିବା । କାହିଁ କା 'ବୁଦ୍ଧି' ଶବ୍ଦ ମନୁଷ୍ୟର ସାଧାରଣ ମାନସିକ ପ୍ରଚେଷ୍ଟାପାଇଁ ମଧ୍ୟ ବ୍ୟବହୃତ । ସେହିପରି 'ଯୋଗ' କହିଲେ ଆମେ ପାତଞ୍ଜଳଙ୍କ ଯୋଗ-ଦର୍ଶନ-ଅନୁଯାୟୀ ଆସନ-ପ୍ରାଣାୟାମାଦି ଶାରୀରିକ-ମାନସିକ ଅଭ୍ୟାସଗୁଡ଼ିକୁହିଁ ବୁଝୁଁ । ଗୀତାରେ ସେ 'ଯୋଗ' ଶବ୍ଦ ମଧ୍ୟ ଯଥା-ସ୍ଥାନରେ ବର୍ଣ୍ଣିତ ଅଛି । କିନ୍ତୁ 'ଯୋଗ'ର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା 'ମିଳନ'— ଅର୍ଥାତ୍ ଏକର ବସ୍ତୁ ସାଥିରେ ବା ଏକର ଏକ ସାଥିରେ ବା ଆତ୍ମାର ପରମାତ୍ମା ସହିତ ଏକୀଭବନ । ପାତଞ୍ଜଳ-ଯୋଗ-ଦର୍ଶନର ଶେଷ ବା ସମାଧି-ଅବସ୍ଥା ଏହାହିଁ ସୂଚିତ କରେ । ଗୀତାରେ 'ଯୋଗ' ଶବ୍ଦ ଅନେକ ସ୍ଥାନରେ ଏ ଅର୍ଥରେ ବ୍ୟବହୃତ ହେଲେହେଁ, ଏହି ଶ୍ଳୋକପରି ଆହୁରି ଅନେକ ସ୍ଥାନରେ କେବଳ 'ନିଷ୍କାମ କର୍ମ' ବା 'କର୍ମଯୋଗ' ଅର୍ଥରେହିଁ ବ୍ୟବହୃତ ହୋଇଛି । ଯଥା-ଯଥା-ସ୍ଥଳରେ ତାହା ନିର୍ଦ୍ଦେଶିତ ହେବ ।

ଏହି ଶ୍ଳୋକରେ 'ବୁଦ୍ଧି' କେବଳ 'ଜ୍ଞାନ'-ଦ୍ୟୋତକ । ଅର୍ଥାତ୍, "ତୁମକୁ ଏଯାବତ୍ ସାଂଖ୍ୟାନୁସାରେ ଦେହାତ୍ମଭେଦ ଜ୍ଞାନ (ବୁଦ୍ଧି) ବତେଇଦିଆଗଲା ।

ବର୍ତ୍ତମାନ କର୍ମ-ଯୋଗ-ବୁଦ୍ଧି (ଜ୍ଞାନ) କୁହାଯିବ, ଯାହା ଅନୁସାରେ ମଧ୍ୟ ପାପର କୌଣସି ହେଲେ ଆଶଙ୍କା ନ ରଖି ତୁମେ ସର୍ବବିଧ କର୍ତ୍ତବ୍ୟ କାମ କରିପାରିବ ।"

ସାଂଖ୍ୟ ଅନୁସାରେ ଦେହୀ ଓ ଦେହ ଭିନ୍ନ । ଦେହୀହିଁ ପ୍ରକୃତ ଜୀବ ଏବଂ ଦେହଟା କେବଳ ନାଶ ହୋଇଯିବାର ପଦାର୍ଥ ମାତ୍ର । ଅଥଚ ପ୍ରକୃତ ଜୀବ, ଯିଏ କି ଶରୀରାଭ୍ୟନ୍ତରସ୍ଥ ସୂକ୍ଷ୍ମ ଶକ୍ତି, ତାର ଧ୍ୱଂସ ନାହିଁ କି ମୃତ୍ୟୁ ନାହିଁ ଏବଂ ଦେହର ବିନାଶରେ ମଧ୍ୟ ତାର ନାଶ ନାହିଁ । ଶ୍ରୀକୃଷ୍ଣ ଏପର୍ଯ୍ୟନ୍ତ ଏହିପ୍ରକାର ସାଂଖ୍ୟ-ବିଚାର-ଧାରାନୁଯାୟୀହିଁ 'ଯୁଦ୍ଧ କରିଯାଅ' ବୋଲି କହିଚାଲିଥିଲେ । ଅର୍ଥାତ୍, "ତୁମେ ପ୍ରକୃତରେ ଦେହଟାକୁହିଁ ହାଣିବ । ପ୍ରକୃତ ଜୀବ ବା ମନୁଷ୍ୟ ତ ମରୁନ, ତେଣୁ 'ପାପ' 'ପାପ' ବୋଲି କାହିଁକି ଭାବିହେଉଛ ?"

ବର୍ତ୍ତମାନ ବୁଦ୍ଧିଯୁକ୍ତ 'କର୍ମ-ଯୋଗ' ବିଚାରଧାରାରେ ମଧ୍ୟ କିପରି ଯୁଦ୍ଧ କରିବ, ଲୋକଙ୍କୁ ମାରିବ, ଅଥଚ କୌଣସି ହେଲେ ପାପ ଲାଗିବନି, ତାହା କୁହାଯିବ ।

୪୦

ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ
ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋଭୟାତ୍ । ୪୦ ।

ଇହ (ଏହି ନିଷ୍କାମ କର୍ମଯୋଗରେ) ଅଭିକ୍ରମନାଶଃ (ଆରବ୍ଧ କର୍ମର ନିଷ୍ଫଳତା) ନ ଅସ୍ତି (ନାହିଁ) । ପ୍ରତ୍ୟବାୟଃ (ବିପର୍ଯ୍ୟୟ ବୋଲି ମଧ୍ୟ) ନ ବିଦ୍ୟତେ (କିଛି ନ ଥାଏ) ଅସ୍ୟ ଧର୍ମସ୍ୟ (ଏହି ଧର୍ମର) ସ୍ୱଳ୍ପମ୍ ଅପିମ୍ (ଅତି ସାମାନ୍ୟ ବା ସାଧାରଣଭାବରେ ଆଚରଣ ମଧ୍ୟ) ମହତୋ ଭୟାତ୍ (ମହାଭୟରୁ) [ସାଧକକୁ] ତ୍ରାୟତେ (ରକ୍ଷା କରେ) ।

## ଅନୁବାଦ

"ଏହି ଯେଉଁ କର୍ମ-ପନ୍ଥା କୁହାଯାଉଛି, ଏଥିରେ ଚେଷ୍ଟାର ବ୍ୟର୍ଥତା ବୋଲି କିଛି କଥା ନାହିଁ, ବା ସାଧକ-ଜୀବନରେ ଆଦର୍ଶର ବିପରୀତ କିଛି ମଧ୍ୟ ଘଟିବାର ଆଶଙ୍କା ନାହିଁ । ଏହି ଧର୍ମର ସ୍ୱଳ୍ପ-ପରିମିତ ଅଭ୍ୟାସହିଁ ସାଧକକୁ (ପାପର) ମହା ଆଶଙ୍କାରୁ ରକ୍ଷା କରିଥାଏ ।

## ବିଶେଷ ଭାଷ୍ୟ

ଆମେ ଲକ୍ଷ୍ୟ କରିବା ଯେ ଗୀତାରେ ଜ୍ଞାନଯୋଗ, କର୍ମଯୋଗ ବା ଭକ୍ତିଯୋଗ, ଯେତେବେଳେ ଯେଉଁ 'ଯୋଗ'ର କଥା କୁହାଯାଇଛି ସେତେବେଳେ ତାହାରହିଁ 'ଶ୍ରେଷ୍ଠତ୍ୱ' କୀର୍ତ୍ତିତ ହୋଇଛି । ପ୍ରତ୍ୟେକ ମାର୍ଗର ଉପାଦେୟତା

ଯଥା-ଯଥା-ସ୍ଥାନରେ ଆନ୍ତରିକ-ବୋଧକ ଖଣ୍ଡରେହିଁ ବର୍ଣ୍ଣିତ । ରଷା ଏତିକ ଯେ, ପ୍ରତିଟି ମାର୍ଗହିଁ ସେହି ଗୋଟିଏ ଲକ୍ଷ୍ୟକୁ ନେଇଯାଇପାରିବ ବୋଲି କୁହାଯାଇଛି ।

'କର୍ମଯୋଗ' ସମ୍ବନ୍ଧରେ ଗୀତାର ଏହି ବିଶେଷ ଶ୍ଳୋକଟି ଅତି ଉପାଦେୟ ଓ ମନୋଜ୍ଞ ଖଣ୍ଡରେ ପ୍ରକଟିତ । ଏହାର ଉପାଦେୟତା, ପରେ ପରେ, ଆସ୍ତେ ଆସ୍ତେ ବର୍ଣ୍ଣିତ ହେବ । କିନ୍ତୁ "ଏ ମାର୍ଗରେ ଯାତ୍ରା ବିଘ୍ନ-ବିପର୍ଯ୍ୟ୍ୟଶୂନ୍ୟ ଏବଂ ଲକ୍ଷ୍ୟ ସାଧିତ ନ ହେଲେ ମଧ୍ୟ ଏହାର ଆରମ୍ଭ ବ୍ୟର୍ଥ ହୋଇଯାଏ ନା ଏବଂ ଯେତିକ ପାରିବ ସେତିକ କଲେ ମଧ୍ୟ ଏହା ଜୀବନର ବହୁ ଆଶଙ୍କାରୁ ମନୁଷ୍ୟକୁ ରକ୍ଷା କରିବ"—ଏ ବାକ୍ୟର ପ୍ରେରଣା ଓ ଉତ୍ସାହଦାୟିନୀ ଶକ୍ତି ସତ୍ୟରେ ଅକଳ୍ପନୀୟ । ପାଠକେ ମନେ ରଖିବେ ଯେ, ଗୀତାର ଏହି କର୍ମଯୋଗର ପରିପୂର୍ଣ୍ଣ ପ୍ରକାଶ ଥିଲେ ବାପୁଜି । ସେହି ମହାମାନବଙ୍କର ଚମ୍ପାରଣ-ନୀଳ-ଆନ୍ଦୋଳନ ବ୍ୟତୀତ ଭାରତବର୍ଷରେ ଆରବ୍ଧ ଅନ୍ୟ ପ୍ରତ୍ୟେକଟି ଆନ୍ଦୋଳନ ଊଣା-ଅଧିକେ ବିଫଳ ହୋଇଥିଲା କହିଲେ ଚଳେ । ଶେଷରେ ଦେଶଟାର ଦ୍ୱି-ଖଣ୍ଡନ ଏବଂ କୋଟି କୋଟି ବାସ୍ତୁହରାମାନଙ୍କର କରୁଣ ଛିନ୍ନମୂଳ ଜୀବନ ମଧ୍ୟ ସେ ଦେଖି ଦେଖି ମଲେ । କିନ୍ତୁ ଏହି ପରିବ୍ୟାପ୍ତ ବ୍ୟର୍ଥତାଭିତରେ ମଧ୍ୟ ସେ ରହିଲେ ମହାତ୍ମା ଓ ବିରାଟାତ୍ମା । ପାଠକେ ଏହି ଶ୍ଳୋକୋତ୍ତମଟିକୁ ପଢ଼ିଲାବେଳେ ବାପୁଜିଙ୍କ ଜୀବନ ଓ ଆଦର୍ଶକୁ ସ୍ମରଣ କଲେ ଏହାର ପରମ ତାତ୍ପର୍ଯ୍ୟ (ନେହାଭିକ୍ରମନାଶୋଽସ୍ତି ପ୍ରତ୍ୟବାୟୋ ନ ବିଦ୍ୟତେ) ଅନୁଭବ କରିପାରିବେ ବୋଲି ବିଶ୍ୱାସ ।

## ୪୧

ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ
ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାମ୍ । ୪୧ ।

କୁରୁନନ୍ଦନ (ହେ ଅର୍ଜୁନ) ଇହ (ଏହି କର୍ମଯୋଗରେ) ବୁଦ୍ଧିଃ (ବିଚାରଣା) ବ୍ୟବସାୟାତ୍ମିକା (ବିଷୟନିବଦ୍ଧ) [ଓ] ଏକା (ଏକନିଷ୍ଠ) [ହେବା ଉଚିତ]; ଅବ୍ୟବସାୟିନାଂ (ଅସ୍ଥିରଚିତ୍ତ ଲୋକମାନଙ୍କର) ବୁଦ୍ଧୟଃ (ବିଚାରସବୁ) ଅନନ୍ତାଃ (ଅନ୍ତହୀନ) ବହୁଶାଖାଃ ଚ (ଏବଂ ବହୁଧା ବିଭକ୍ତ) ।

**ଅନୁବାଦ**

"ହେ କୁରୁନନ୍ଦନ, ଏହି କର୍ମଯୋଗରେ 'ବୁଦ୍ଧି' ବା ମନୁଷ୍ୟର ବିଚାର-ଶକ୍ତି ଏକନିଷ୍ଠ ହେବା ଉଚିତ । କାରଣ, ଅସ୍ଥିରଚିତ୍ତ ଲୋକମାନଙ୍କର

ବୁଦ୍ଧି କୌଣସି ହେଲେ ଗୋଟିଏ ବିଷୟର ଶେଷରେ ପହଞ୍ଚିପାରି ନ ଥାଏ ଏବଂ ସାଧାରଣତଃ ସେମାନଙ୍କର କର୍ମ ପ୍ରକ୍ଷିପ୍ତଭାବରେହିଁ ବହୁବିଧ ହୋଇଉଠେ ।

**ବିଶେଷ ଭାଷ୍ୟ**

ଗୀତାର ଏହି ଶ୍ଳୋକଟିକୁ ବେଦର କର୍ମକାଣ୍ଡ (ଯାଗଯଜ୍ଞାଦି) ଓ ଜ୍ଞାନ କାଣ୍ଡ (ଉପନିଷଦ୍, ବ୍ରହ୍ମସୂତ୍ରାଦି) ସହିତ ସଂପୃକ୍ତ କରି ବ୍ୟାଖ୍ୟା କରାଯାଇଥାଏ । କିନ୍ତୁ ତାହାଦ୍ୱାରା ଗୀତାର ସାର୍ବଜନୀନତାରେ ଆଞ୍ଚ ଆସେ ନାହିଁ କି ? ଏହି ଶ୍ଳୋକରେ ବେଦ ବା 'କର୍ମକାଣ୍ଡ' ବା 'ଜ୍ଞାନ-କାଣ୍ଡ'ର କୌଣସି ଉଲ୍ଲେଖହିଁ ନାହିଁ । ତାହା ପର-ଶ୍ଳୋକରେହିଁ ବୁଝାଯିବ । ଅଥଚ ସାର୍ବଜନୀନଭାବରେ, ଦେଶ-ଧର୍ମ-ଜାତିନିର୍ବିଶେଷରେ କର୍ମଯୋଗୀମାନେ ଏହି ଶ୍ଳୋକର ଆଦର୍ଶ ଗ୍ରହଣ ନ କଲେ କୌଣସିମତେ ସିଦ୍ଧିମାନ୍ ହେବାର ଆଶା କରାଯାଏ ନାହିଁ । ଏହା ଜଣା କଥା ଯେ କଳା, ବିଜ୍ଞାନ, ସାହିତ୍ୟ, ଯେଉଁ ବିଭାଗ ହେଉ ନା କାହିଁକି, ସଂପୃକ୍ତ ସାଧକକୁ 'ବ୍ୟବସାୟାତ୍ମିକାବୁଦ୍ଧି' ହେବାକୁହିଁ ହେବ । ଅର୍ଥାତ୍, ତାଙ୍କର ସମଗ୍ର ଆତ୍ମା ସେହି 'ବ୍ୟବସାୟ' ବା ବିଷୟରେ, ସମଗ୍ରଭାବରେ ଜଡ଼ିତ ରହିଲେ ଯାଇ ସେ ସେହିଗରେ ପ୍ରତିଷ୍ଠା ପ୍ରାପ୍ତ ହେବେ, ନଚେତ୍ ନୁହେଁ । ତେଣୁ କର୍ମଯୋଗ-ପନ୍ଥୀ ସାଧକର ମାନସିକ-ଉତ୍ସାହ କେବଳ ଗୋଟିଏ ବିଷୟ ଆଡ଼କୁ ସର୍ବଦା ଧାବିତ ରହିବା ଉଚିତ । ସେଥିପାଇଁ ଗୀତା କର୍ମଯୋଗର ସର୍ବାଦ୍ୟ ଆବଶ୍ୟକତା ଭାବରେ ପ୍ରଥମ କରି କହିରଖିଲେ ଯେ, ଏପ୍ରକାର ସାଧକର 'ବୁଦ୍ଧି' 'ଏକା' ବା 'ଏକପନ୍ଥୀ' ହୋଇହିଁ ରହିବାର ଉଚିତ । ଅନ୍ୟ ପକ୍ଷରେ, ଯେଉଁମାନଙ୍କର ନିଷ୍ଠା ଓ ଏକାଗ୍ରତାର ଅଭାବ, ସେମାନଙ୍କୁ ଗୀତା କହୁଛନ୍ତି 'ଅବ୍ୟବସାୟୀ' ବା ନିଷ୍ଠାହୀନ । ସେମାନଙ୍କର ଚିତ୍ତ କୌଣସି ଗୋଟିଏ ବିଷୟରେ 'ବ୍ୟବସିତ' ବା ପ୍ରତିଷ୍ଠିତ ନୁହଁ । ସେମାନଙ୍କର ବୁଦ୍ଧି ଏକ ନ ହୋଇ ବହୁ ରୂପାନ୍ତର ଗ୍ରହଣ କରେ ଏବଂ ବିଷୟରୁ ବିଷୟାନ୍ତରକୁ ଓ ଉତ୍ସାହରୁ ଉତ୍ସାହାନ୍ତରକୁ ସର୍ବଦା ଧାଇଁବାର ଦେଖାଯାଇଥାଏ । ଏ ଲୋକେ ଜୀବନରେ କୌଣସିପ୍ରକାର ସ୍ଥାୟୀ ଓ ଶ୍ଳାଘ୍ୟ ପ୍ରତିଷ୍ଠା ଲାଭ କରିପାରନ୍ତି ନାହିଁ । ବ୍ୟବସାୟାତ୍ମିକା ବୁଦ୍ଧି ବା ମାନସିକ ଏକନିଷ୍ଠତା କର୍ମଯୋଗର ଯେ ପ୍ରଥମ ଲକ୍ଷଣ, ଗୀତାର ଏହି ଶ୍ଳୋକ ସ୍ପଷ୍ଟ ସୂଚିତ କରିଦେଉଛି ।

**୪୨-୪୩-୪୪**

ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟବିପଶ୍ଚିତଃ
ବେଦବାଦରତାଃ ପାର୍ଥ ନାନ୍ୟଦସ୍ତୀତି ବାଦିନଃ । ୪୨ ।

କାମାତ୍ମାନଃ ସ୍ୱର୍ଗପରାଃ ଜନ୍ମକର୍ମଫଳପ୍ରଦାମ୍
କ୍ରିୟାବିଶେଷବହୁଳାଂ ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି । ୪୩ ।
ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ ତୟାପହୃତଚେତସାମ୍
ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ । ୪୪ ।

[ଅବିବେକିଗଣ] ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି (ସାଂସାରିକ ଭୋଗ ଓ ଐଶ୍ୱର୍ଯ୍ୟ ପାଇବା ଲକ୍ଷ୍ୟରେ) ଜନ୍ମକର୍ମଫଳପ୍ରଦାଂ (ଉତ୍ତମ ଜନ୍ମ ଓ କର୍ମଫଳ ଦେଇପାରୁଥିବା) କ୍ରିୟାବିଶେଷବହୁଳାଂ (ବହୁ ଆଚାର-ଅନୁଷ୍ଠାନ ସମ୍ପୃକ୍ତ) ଇମାଂ ଯାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତି (ଏପରି ଯେଉଁ ପୁଷ୍ପିତ ବାକ୍ୟସବୁ କହିଥାନ୍ତି) ପାର୍ଥ (ହେ ଅର୍ଜୁନ) [ଯେଉଁ] ବେଦବାଦରତାଃ (ବେଦର ଅକ୍ଷରାର୍ଥକୁ ନେଇ ସର୍ବଦା ଯୁକ୍ତି କରୁଥିବା) ନାନ୍ୟଦସ୍ତି ଇତି ବାଦିନଃ (ଏବଂ ଏହାଠାରୁ ଅନ୍ୟ କିଛି ସତ୍ୟ ଥାଇ ନ ପାରେ ବୋଲି କହୁଥିବା) କାମାତ୍ମାନଃ (ସବୁବେଳେ ଆତ୍ମାରେ ସାଂସାରିକ ସୁଖ-କାମନାକୁ ଧରିବସିଥିବା) ସ୍ୱର୍ଗପରାଃ (ପୁଣି ଆଚାର-ଅନୁଷ୍ଠାନ ଫଳରେହିଁ ମଲେ ସ୍ୱର୍ଗଆଶା କରୁଥିବା ବ୍ୟକ୍ତିମାନେ) ଅବିପଶ୍ଚିତଃ (ଅଜ୍ଞ ବା ମୂର୍ଖ ବୋଲି ଜାଣିବ) । [କିନ୍ତୁ] ତୟା (ସେପ୍ରକାର ପ୍ରଲୋଭନମୟ ବାକ୍ୟ-ସକଳଦ୍ୱାରା) ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ (ଭୋଗ ଓ ଐଶ୍ୱର୍ଯ୍ୟପ୍ରତି ଆସକ୍ତ, ସେହିମାନଙ୍କର) ଅପହୃତଚେତସାଂ (ଚିତ୍ତବିଭ୍ରାନ୍ତହିଁ ଘଟିଯାଏ) [ଏବଂ ସେମାନଙ୍କର] ବ୍ୟବସାୟାତ୍ମିକା ବୁଦ୍ଧିଃ (ବୁଦ୍ଧି, କର୍ମକାଣ୍ଡରେ ଏକନିଷ୍ଠ ହେଲେହେଁ), ସମାଧୌ ନ ବିଧୀୟତେ (ଆତ୍ମଦର୍ଶନପାଇଁ ଯେଉଁ ସମାଧି ଆବଶ୍ୟକ, ସେଥିପାଇଁ ଯୋଗ୍ୟ ହୁଏ ନାହିଁ) ।

## ଅନୁବାଦ

ହେ ଅର୍ଜୁନ, ପୁଣି ସାଧାରଣତଃ ଏପ୍ରକାର ଲୋକ ହେଉଛନ୍ତି ସେହିମାନେ, ଯେଉଁମାନେ କି ପାର୍ଥିବ ଭୋଗୈଶ୍ୱର୍ଯ୍ୟ ପାଇବା ଓ ମୃତ୍ୟୁପରେ ସ୍ୱର୍ଗ ବା ଉତ୍ତମ ଜନ୍ମ ପାଇବା ଲକ୍ଷ୍ୟରେହିଁ ଯାଗଯଜ୍ଞାଦି ନାନା ଆଚାର-ଅନୁଷ୍ଠାନ କେବଳ କରି ନ ଥାନ୍ତି, "ଏହାଠାରୁ ଅଧିକ ଉତ୍କୃଷ୍ଟ ପନ୍ଥା (ଜୀବନାଦର୍ଶ) ଅନ୍ୟ କିଛି ନାହିଁ" ବୋଲି ମଧ୍ୟ ଆଳଂକାରିକ ବାକ୍ୟସବୁ ଭଣିଥାନ୍ତି । କିନ୍ତୁ ହେ ଅର୍ଜୁନ, ସେମାନେ ବେଦର ଆଦର୍ଶ ବଖାଣୁଛନ୍ତି ବୋଲି କହିଲେ ମଧ୍ୟ, ଜାଣି ରଖ ଯେ ସେମାନେ ଅଜ୍ଞ । ଭୋଗୈଶ୍ୱର୍ଯ୍ୟର ଆଶାରେ ଏପ୍ରକାର ବିଭ୍ରାନ୍ତ ଜନମାନଙ୍କର ବୁଦ୍ଧି ସେହି ଆଚାରମାନଙ୍କରେ ଏକନିଷ୍ଠ ହେଲେହେଁ, 'ଆତ୍ମଜ୍ଞାନ'ପାଇଁ ଯେଉଁ ସମାଧି ଆବଶ୍ୟକ, ସେଥିଲାଗି ଏକାନ୍ତ ଅନୁପଯୁକ୍ତ ହୋଇ ରହେ ।

## ବିଶେଷ ଭାଷ୍ୟ

ଗୀତା ଏଇଠାରେ ପ୍ରଥମ କରି 'ବେଦ' ଶବ୍ଦ ଉଚ୍ଚାରଣ କଲେ ଏବଂ ଯାହା କହିଲେ ତାହା ପ୍ରକୃତରେ ବେଦ ବିରୁଦ୍ଧରେ ନୁହେଁ, ବେଦର ଅକ୍ଷରକୁ-ଗଣ୍ଡି କରି-ଧରିବସିଥିବା କେତେକ ମୂର୍ଖ-ପଣ୍ଡିତଙ୍କ ବିରୁଦ୍ଧରେ । ଆମେ ଏଠାରେ ବେଦପରିବର୍ତ୍ତରେ ପୃଥିବୀର ଯେକୌଣସି ଧର୍ମଶାସ୍ତ୍ରକୁ ଥୋଇଲେ ମଧ୍ୟ ଗୀତାର ଏହି ବାଣୀ ସାମାନ୍ୟଭାବରେ ହେଲେ ମଧ୍ୟ ବ୍ୟାହତ ହେବ ନାହିଁ, କାରଣ ଏହା ସାର୍ବଜନୀନ । ପ୍ରତ୍ୟେକ ଧର୍ମ ଓ ଶାସ୍ତ୍ରରେ letter ଓ spirit (ଆକ୍ଷରିକ ଅର୍ଥ ଓ ଆତ୍ମିକ ଅର୍ଥ) ବୋଲି ଦୁଇଟି କଥା ବିବେଚିତ ଅଛି । ସାଧାରଣ ଲୋକ ଓ ଅନେକ ତଥାକଥିତ ପଣ୍ଡିତ ମଧ୍ୟ 'ଲେଟାର୍'ଟାକୁହିଁ ସବୁଠୁ ବଡ଼ ବୋଲି ଧରିବସନ୍ତି । ଏମାନଙ୍କୁ ଇଂରାଜୀରେ କୁହାଯାଏ 'ଡଗ୍‌ମାଟିଷ୍ଟ' (dogmatist) । ଏମାନେ ନିଜର ବୁଦ୍ଧି ପ୍ରୟୋଗ କରିବାକୁ ପରାଙ୍ମୁଖ । ଗୀତା ଏମାନଙ୍କୁ 'ନାନ୍ୟଦସ୍ତୀତି ବାଦିନଃ' (ଏହାଛଡ଼ା ଆଉ କିଛି ସତ୍ୟ ନ ଥାଇପାରେ ବୋଲି ଯେଉଁମାନେ କହନ୍ତି) ବୋଲି ସୁନ୍ଦର ବର୍ଣ୍ଣନାଟିଏ ଦେଇଛନ୍ତି । ଭାରତବର୍ଷରେ ଗୀତାରଚନାବେଳେ ପୂର୍ବବର୍ତ୍ତୀ ଶାସ୍ତ୍ର, ବେଦକୁ ନେଇ ଏହିପରି ଦଳେ ଲୋକ ଅନ୍ୟ ଆଉ କୌଣସି ନୂତନ ଭାବଧାରା ଗ୍ରହଣକୁ ସଂପୂର୍ଣ୍ଣ ନାରାଜ ଥିବାରୁ ଗୀତା ସେହିମାନଙ୍କୁ ଲକ୍ଷ୍ୟ କରିହିଁ ବୋଧହୁଏ ସେମାନଙ୍କୁ ସାଧାରଣ-ଭାବରେ 'ବେଦବାଦରତାଃ' ବୋଲି କହିଛନ୍ତି । ବେଦର ଧର୍ମ ଥିଲା ବିଶେଷ-ଭାବରେ ଆଗ୍ରହମୂଳକ ଏବଂ ଇହଜୀବନ ଓ ପରଜୀବନର ଅଭିଳାଷ-ପରିପୂରକ । ଏପରି ହେବା ସ୍ୱାଭାବିକ ମଧ୍ୟ । ଇତିହାସର ସେହି ଉଷାକାଳରେ ମନୁଷ୍ୟର ଚିନ୍ତା ବା କଳ୍ପନା ଦୈନନ୍ଦିନ ଜୀବନକୁ ଛାଡ଼ି କେତେ ଦୂର ବା ଯାଇପାରନ୍ତା ? ସେତେବେଳେ ମନୁଷ୍ୟର ଈଶ୍ୱର ଥିଲା ରୁକ୍ଷ-ରୁକ୍ଷ ପ୍ରକୃତି ଏବଂ ଧର୍ମ ଥିଲା ସେହି ନିଷ୍ଠୁର, ଅକରୁଣ ପ୍ରକୃତିକୁ ସ୍ତୁତି ଓ ଲାଞ୍ଚ ଦେଇ ତାଠୁ ସୁଖ ଆଦାୟ କରିବାର ଚେଷ୍ଟା । ଧର୍ମର ଏହି ପ୍ରାଥମିକ ଭାବନା ଓ ପ୍ରୟୋଗ ସବୁ ଜାତି ଓ ସବୁ ଦେଶରେ ଦେଖାଯାଇଛି ଓ ଆଜି ଏହି ମହାକାଶ-ଅଭିଯାନ ଯୁଗରେ ମଧ୍ୟ ସେ ଭାବନା ବଳଶାଳୀ ହୋଇ ବିଦ୍ୟମାନ । ଏବେ ମଧ୍ୟ ଆମର ଅଧିକାଂଶଙ୍କର ଈଶ୍ୱରାରାଧନା ଅକରୁଣ ଭାଗ୍ୟ-ହସ୍ତରୁ ନିଜର ଉଦ୍ଧାରପାଇଁ ଚେଷ୍ଟାଛଡ଼ା ଅନ୍ୟ କିଛି ନୁହେଁ । ତେଣୁ "କର୍ମଯୋଗ" କହିଲେ, ବେଦର ସେହି ଅଭିଳାଷ-ପୂରଣକାରୀ ଯାଗଯଜ୍ଞାଦି କର୍ମକାଣ୍ଡ ଛଡ଼ା ଆଉ କିଛି ହୋଇ ନ ପାରେ ବୋଲି ଅନେକ ତଥାକଥିତ ଜ୍ଞାନୀ ବା ପଣ୍ଡିତ କହିବା ବିଚିତ୍ର ନୁହେଁ । କିନ୍ତୁ ଗୀତା, କର୍ମଯୋଗକୁ ଆମର ଦୈନନ୍ଦିନ ଜୀବନର ପ୍ରତ୍ୟେକଟି କର୍ମଭିତରେହିଁ

କିପରି ପ୍ରତିଷ୍ଠିତ କରିବାକୁ ଚେଷ୍ଟା କରିଛନ୍ତି, ତାହା ଆମେ ପରେ ପରେ ଦେଖିବା । ତେଣୁ ଗୀତା, ପ୍ରଥମେ, ଏହା ଯେ ବୈଦିକ କର୍ମକାଣ୍ଡ ନୁହେଁ, ଏହା ସର୍ବାଦୌ ବୁଝାଇରଖିଲେ ।

ବୌଦ୍ଧଧର୍ମ ଓ ଉପନିଷଦ୍‌ର ଯୁଗକୁ ବେଦର ଅଭିଳାଷ-ପ୍ରତିଷ୍ଠ, 'କ୍ରିୟା-ବିଶେଷ-ବହୁଳ' ଯାଗଯଜ୍ଞାଦି କର୍ମକାଣ୍ଡର ପ୍ରଭାବ, ଅନ୍ତତଃ ଏ ଦେଶର ବୁଦ୍ଧିଜୀବୀ ଗୋଷ୍ଠୀରୁ ଚାଲିଗଲାଣି । ଉପନିଷଦ୍ ଓ ବୌଦ୍ଧଧର୍ମ ଉଭୟେ, ଜନ-ଚିତ୍ତକୁ ବାହ୍ୟ ଆଚାର-ଅନୁଷ୍ଠାନାଦିରୁ ଭିଡ଼ିଆଣି 'ଅନ୍ତଃସ୍ଥ ସମାଧି'ରେ ନିବିଷ୍ଟ କରାଇବାପାଇଁ ଚେଷ୍ଟା କରିଛନ୍ତି । ସେହି ମହାନ୍ ପ୍ରଚେଷ୍ଟାରେ ସେମାନେ ଯେ 'ଭୋଗୈଶ୍ୱର୍ଯ୍ୟ ପ୍ରସକ୍ତ' ସେହି ବେଦବାଦୀମାନଙ୍କୁ ଉତ୍‌ମୋଚିଷ୍ଟ ଅର୍ଥାତ୍ ମତାନ୍ଧ ବା 'ନାନ୍ୟଦସ୍ତୀତିବାଦିନଃ' ଭାବରେ ବିରୋଧ କରିବାର ଦେଖିବାକୁ ପାଇବେ, ଏଥିରେ ବିସ୍ମିତ ହେବାର ମଧ୍ୟ କିଛି ନାହିଁ ।

କିନ୍ତୁ ଗୀତା ଏପରି ଲୋକଙ୍କୁ କେବଳ ଅବିପଶ୍ଚିତ୍ (ଅପଣ୍ଡିତ, ବୁଦ୍ଧିହୀନ) ବୋଲି କହି ଏତିକି ସାବ୍ୟସ୍ତ କରିବାକୁ ଯାଉଛନ୍ତି ଯେ, ଏହି ଶ୍ରେଣୀର ଭୋଗ-ସର୍ବସ୍ୱ ଅଭିଳାଷିତନ୍ତ ଓ ସେହିସବୁ ଅଭିଳାଷଗୁଡ଼ିକୁ ପାଇବାପାଇଁ ସର୍ବଦା ବାହ୍ୟାନୁଷ୍ଠାନ-ତତ୍‌ପର ଲୋକେ 'ସମାଧି' ବା ଆତ୍ମସ୍ଥ ହେବାର ଆନନ୍ଦ କଣ ଜାଣିବେ ନାହିଁ ।

ଗୀତା ପର-ଶ୍ଳୋକରେ 'ଭବ ଆତ୍ମବାନ୍' କଥାରେ ଏହି ଆଦର୍ଶ-ଉପରେ ଆହୁରି ଜୋର ଦେବାକୁ ଯାଉଛନ୍ତି ।

ଗୀତାର ଏହି ୪୨-୪୩-୪୪ ଶ୍ଳୋକ ତିନିଟିର ବିବିଧ ଅର୍ଥ କରାଯାଇଛି । ବହୁ ଭାବିଚିନ୍ତି ଏବଂ ପୂର୍ବାପର ସଂଗତି ରକ୍ଷା କରି ଆମ୍ଭେମାନେ ଏଠାରେ ନିଜସ୍ୱ ଅର୍ଥ ନିବେଦନ କରିଛୁ । ପାଠକେ ଯଥାଯଥତା ନିଜେ ପରୀକ୍ଷା କରି ଦେଖିବେ ।

୪୫

ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ
ନିର୍ଦ୍ୱନ୍ଦ୍ୱୋ ନିତ୍ୟସତ୍ତ୍ୱସ୍ଥୋ ନିର୍ଯୋଗକ୍ଷେମ, ଆତ୍ମବାନ୍ । ୪୫ ।

[ହେ] ଅର୍ଜୁନ, ବେଦାଃ ତ୍ରୈଗୁଣ୍ୟବିଷୟାଃ (ବୈଦିକ ଧର୍ମ ତ୍ରିଗୁଣାନ୍ୱିତ), ତ୍ୱଂ ନିସ୍ତ୍ରୈଗୁଣ୍ୟଃ ଭବ (ତୁମେ ତିନି ଗୁଣରୁ କୌଣସି ଗୁଣ ଆଡ଼କୁ ନ ଧାଇଁ ନିଷ୍କାମ ଭାବ ଧର) [ଏବଂ] ନିର୍ଦ୍ୱନ୍ଦ୍ୱଃ (ସୁଖଦୁଃଖାଦି ଦ୍ୱନ୍ଦ୍ୱରହିତ) ନିତ୍ୟସତ୍ତ୍ୱସ୍ଥଃ (ନିତ୍ୟ ସତ୍ତ୍ୱଭାବାଶ୍ରିତ) ନିର୍ଯୋଗକ୍ଷେମଃ (ଯୋଗକ୍ଷେମରହିତ) [ ହୋଇ ] ଆତ୍ମବାନ୍ ଭବ (ଆତ୍ମସ୍ଥ ହୁଅ) ।

## ଅନୁବାଦ

"ହେ ଅର୍ଜୁନ, ଜାଣିରଖ ଯେ ବେଦର ପନ୍ଥା ହେଲା ତ୍ରିଗୁଣାତ୍ମିକା । ତୁମେ ବରଂ ତ୍ରିଗୁଣାତୀତ ହୋଇ ନିଷ୍କାମଭାବରେହିଁ କାମ କରି ଶିଖ । ତୁମେ ସେହି ମାର୍ଗରେହିଁ ସୁଖଦୁଃଖାଦି ଦ୍ୱନ୍ଦ୍ୱର ଉପରକୁ ଉଠି ଏବଂ ନିତ୍ୟ-ସତ୍ତ୍ୱଭାବାଶ୍ରିତ ଓ ନିର୍ଯୋଗକ୍ଷେମ ଭାବରେ ଆତ୍ମସ୍ଥ ଜୀବନ ଯାପନ କରିବ ।"

## ବିଶେଷ ଭାଷ୍ୟ

ଏ ଶ୍ଳୋକରେ ଥିବା ତିନୋଟି ଶବ୍ଦର ତାତ୍ପର୍ଯ୍ୟ ବିଶେଷଭାବରେ ବୁଝି ରଖିବା ଉଚିତ—ଯୋଗକ୍ଷେମ, ତ୍ରିଗୁଣ ଓ ଦ୍ୱନ୍ଦ୍ୱ । 'ଯୋଗକ୍ଷେମ' ହେଲା ଅଲବ୍‌ଧ ବସ୍ତୁର ସଂଗ୍ରହ (ଯୋଗ), ଓ ସଂଗୃହୀତ ବସ୍ତୁର ରକ୍ଷଣ (କ୍ଷେମ) । ଏଠାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ 'ଯୋଗକ୍ଷେମ'ପାଇଁ ଆଦୌ ବ୍ୟସ୍ତ ନ ହୋଇ 'ନିର୍ଯୋଗକ୍ଷେମ' ହେବାପାଇଁ ଉପଦେଶ ଦେଇଛନ୍ତି । ଗୀତାର ନବମ ଅଧ୍ୟାୟ ୨୨ଶ ଶ୍ଳୋକରେ ମନୁଷ୍ୟ ଭଗବାନଙ୍କ ଉପରେ ପୂର୍ଣ୍ଣ ନିର୍ଭର କଲେ, ଭଗବାନ୍ ନିଜେ ଭକ୍ତର 'ଯୋଗକ୍ଷେମ'ର ଭାର ବହନ କରିବେ ବୋଲି କହିଛନ୍ତି । ସକଳ ଧର୍ମଶାସ୍ତ୍ରରେ ମଧ୍ୟ ଏହି ମର୍ମର କଥା କୁହାଯାଇଛି । ଗୀତାର ଏହି ମନୋଜ୍ଞ ଶବ୍ଦଟିକୁ ସମ୍ମାନ ଦେଇ ଭାରତ ସରକାରଙ୍କ ରାଷ୍ଟ୍ରୀକୃତ ଇନ୍‌ସ୍ୟୁରାନ୍‌ସ୍ କର୍‌ପୋରେସନ୍‌ର ବମ୍ବେସ୍ଥ ହେଡ୍‌କ୍ୱାର୍ଟାର୍‌ସ୍-ବିଲ୍‌ଡିଂର ନାମ ଦିଆଯାଇଛି 'ଯୋଗକ୍ଷେମ' ।

**ତ୍ରିଗୁଣ**—ସାଂଖ୍ୟ ଦର୍ଶନହିଁ ପ୍ରଥମେ ପ୍ରତିପାଦିତ କଲା ଯେ, ଏହି ସୃଷ୍ଟି ତ୍ରିଗୁଣାତ୍ମିକା । ପ୍ରତ୍ୟେକ ଜୀବ କେବଳ ନୁହେଁ, ସୃଷ୍ଟିର ପ୍ରତ୍ୟେକଟି ଅଣୁକଣା-ଭିତରେ ମଧ୍ୟ ସତ୍ତ୍ୱ, ରଜଃ ଓ ତମଃ ନାମକ ତିନୋଟି ଗୁଣ ବିଦ୍ୟମାନ ଅଛନ୍ତି । ଯେଉଁ ଗୁଣ ଯାହାଠି ବା ଯେଉଁଠି ଯେତିକି ପ୍ରବଳ, ସେ ବା ତାହା ସେହି ନାମ-ଦ୍ୱାରା ବିଶେଷିତ ହୋଇଥାଏ । 'ତମୋଗୁଣ' ହେଲା ଜଡ଼ତା, ଅଜ୍ଞତା, ନିଦ୍ରା, ଆଳସ୍ୟ, ନିଶ୍ଚେଷ୍ଟତା ଓ ଅନ୍ଧକାରସୂଚକ । 'ରଜୋଗୁଣ' ହେଲା ଅହରହ ଚଞ୍ଚଳତା ଓ କ୍ରିୟାଶୀଳତା । 'ସତ୍ତ୍ୱଗୁଣ' ହେଲା ଉତ୍ତମତା ବା ପବିତ୍ରତା କିମ୍ବାଗୁଣ ତମୋ ଓ ରଜୋଗୁଣର ସାମଞ୍ଜସ୍ୟକାରୀ ଭାବ । ସ୍ୱୟଂ ଈଶ୍ୱରଙ୍କୁ ମଧ୍ୟ ତ୍ରିଗୁଣସଂପନ୍ନ କରି ବର୍ଣ୍ଣନାକରିଯାଇଛି । ସେହି ଭାବରେହିଁ ସେ ସଚ୍ଚିଦାନନ୍ଦ (ସତ୍-ଚିତ୍-ଆନନ୍ଦ) । ଆମ ପ୍ରତ୍ୟେକର ବ୍ୟକ୍ତିତ୍ୱ ମଧ୍ୟ ତିନୋଟି ମାନସିକକ୍ରିୟା-ସମନ୍ୱିତ । ସେ ତିନୋଟି ହେଲେ ଆମ ପ୍ରତ୍ୟେକଙ୍କଠାରେ ପ୍ରକାଶ ପାଉଥିବା ଇଚ୍ଛା, ଜ୍ଞାନ ଓ କ୍ରିୟା । ସମଗ୍ର ଏହି ସୃଷ୍ଟି ଏହିପରି ତ୍ରିଗୁଣାତ୍ମିକା । ଯାହା ଦୈବୀ ଶକ୍ତିରେ

ଆନନ୍ଦ, ତାହାହିଁ ଆମଠାରେ ସ୍ଥୂଳଭାବରେ 'ଇଚ୍ଛା'ରୂପେ ଦେଖା ଦେଇଥାଏ । ଯାହା ସେଠି ବିଶୁଦ୍ଧ ଚିତ୍-ଶକ୍ତି, ତାହାହିଁ ଆମଠି ଜ୍ଞାନ ବା ବୋଧଶକ୍ତିରୂପେ ପ୍ରକଟିତ । ଯାହା ସେଠି ସତ୍, ତାହାହିଁ ଆମଠି ଜୀବନ ଭାବରେ ପ୍ରକଟିତ ।

ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିବର୍ତ୍ତନ-ବାଦ (Theory of evolution) ସର୍ବସମ୍ମତଭାବରେ ଗୃହୀତ ହୋଇସାରିଛି । ପୂର୍ବେ ପଶ୍ଚିମ ଦେଶର ଲୋକେ ଖ୍ରୀଷ୍ଟ-ଇସ୍‌ଲାମ୍-ଧର୍ମ ଅନୁଯାୟୀ ଧରିନେଇଥିଲେ ଯେ, ଏହି ପୃଥିବୀଟା ହେଲା ବିଶ୍ୱର କେନ୍ଦ୍ର ଏବଂ ଏ ପୃଥିବୀ ସହିତ ସମଗ୍ର ସୃଷ୍ଟିକୁ ଈଶ୍ୱର ନିଜ ଆଦେଶରେହିଁ, ବର୍ତ୍ତମାନ ଏହା ଯେମିତି ଅଛି ସେମିତି ଏକାବେଳକେ ଗଢ଼ି ଥୋଇଦେଇଛନ୍ତି । ଚାର୍ଲସ୍ ଡାର୍‌ୱିନ୍ ଏହି ମତକୁ ଧୂଳିସାତ୍ କରି ପ୍ରମାଣିତ କଲେ ଯେ, କୋଟି କୋଟି ବର୍ଷର ଧୀର କିନ୍ତୁ କ୍ରମାଗତ ଅବିଚ୍ଛିନ୍ନ ଉଦ୍‌ବର୍ତ୍ତନ କ୍ରିୟାଫଳରେହିଁ ଜୀବଜନ୍ତୁ ଓ ପ୍ରକୃତି ବର୍ତ୍ତମାନ ଅବସ୍ଥାକୁ ଆସିଛନ୍ତି ।

କିନ୍ତୁ ଡାରୱିନ୍ ସାହେବ ଯାହା ପ୍ରମାଣ କଲେ, ତାହା ଏକାନ୍ତରେ ବାହ୍ୟ ଉଦ୍‌ବର୍ତ୍ତନ ମାତ୍ର । ଜଡ଼ ପ୍ରକୃତିର ଭିତରେ ଯେଉଁ ଚିତ୍-ଶକ୍ତି ଅଛି, ଆସିବା ଓ ଯିବା ଦେଇ ତାର ମଧ୍ୟ ଯେଉଁ ଲୀଳା ଓ ଉଦ୍‌ବର୍ତ୍ତନ ଚାଲିଛି, ତାହା କେବଳ ଭାରତବର୍ଷର ଋଷିମାନେହିଁ ଅନ୍ତର୍ଦୃଷ୍ଟିବଳରେ ଜାଣିପାରିଥିଲେ । ସେମାନଙ୍କ ଧାରଣାନୁଯାୟୀ ବିଶୁଦ୍ଧ ଓ ନିର୍ଗୁଣ ସତ୍-ଶକ୍ତି, ଚିତ୍ ଓ ଆନନ୍ଦର ବିଶେଷ ଉପଭୋଗପାଇଁ ତ୍ରିଗୁଣାତ୍ମିକା ପ୍ରକୃତି(ଅ-ସତ୍)ର ଆଶ୍ରୟ ନିଏ । ଏହା ସତ୍‌ର ଅନୁବର୍ତ୍ତନ (Involution) ବା ଅବତରଣ (Descending of the spirit) । ସେହି ସତ୍-କଣା, କୋଟି କୋଟି ଜନ୍ମଜନ୍ମାନ୍ତର ଦେଇ ଅଗଣିତ ଦୁଃଖସୁଖ ଭୋଗ କରି କରି ଚାଲେ । ଜୀବନବିନ୍ଦୁ ଯେତିକି ଯେତିକି ଉପରକୁ ଉଠୁଥିବ, ପ୍ରକୃତି ( ଆମର ଅ-ସତ୍ ଅଂଶ) ସେତିକି ସେତିକି ଦୁର୍ବଳ ହେଉଥିବ ଏବଂ ଚିତ୍ ସେତିକି ସେତିକି ସୁପରିସ୍ଫୁଟ ହୋଇଉଠୁଥିବ । ସେହି ହେଲା 'ସତ୍'ର 'ଚିତ୍' ଓ 'ଆନନ୍ଦ'ର 'ଅନ୍ୱେଷଣ' ଏବଂ ସେହି ଅନ୍ୱେଷଣ ଦେଇ ଘଟେ ସତ୍ ବା ଜୀବନବିନ୍ଦୁର ascending ବା ଆରୋହଣ ବା evolution ବା ଉଦ୍‌ବର୍ତ୍ତନ । ଭାରତୀୟ ଶାସ୍ତ୍ରରେ ଆତ୍ମାର ଏହି ଊର୍ଦ୍ଧ୍ୱଗମନ ପାଇଁ ଦୁଇଟି ମାର୍ଗ ବର୍ଣ୍ଣିତ ଅଛି । ଜଡ଼ ଓ ଉଦ୍ଭିଦର ସ୍ତରପରେ, ସତ୍-ଶକ୍ତି ଯେତେବେଳେ ଜୀବ ରୂପ ଗ୍ରହଣ କରେ, ସେତେବେଳେ ତାର ଆରମ୍ଭ ହୁଏ ପ୍ରବୃତ୍ତିମାର୍ଗ । ନାନା ଜନ୍ମ ଦେଇ ଜୀବ ଇନ୍ଦ୍ରିୟ-ସୁଖ ଖୋଜେ । ନାନାଭାବରେ ଖୋଜି, ପାଇ ଓ ହରାଇ ତିକ୍ତନିତ

ବ୍ୟର୍ଥତା ଓ ଜଞ୍ଜାଳସବୁ ମଧ୍ୟ ଭୋଗି ଭୋଗି, ସେ ଶେଷରେ କ୍ଳାନ୍ତ ହୋଇପଡ଼େ ଏବଂ ସେତେବେଳେହିଁ ଜୀବନ-ଚକ୍ରର ଆରମ୍ଭ ହୁଏ ନିବୃତ୍ତିମାର୍ଗ ଅର୍ଥାତ୍ ଘରଫେରା-ଯାତ୍ରା ।

ଏହି ମାନସିକ କ୍ରିୟା-ପ୍ରତିକ୍ରିୟା ପ୍ରଭୃତିରେ ମଧ୍ୟ ଆମେ ସେହି ଚିର-ବର୍ତ୍ତମାନ ସାଂଖ୍ୟ ଦର୍ଶନର ତ୍ରିଗୁଣକୁହିଁ ଭେଟୁଁ । ପ୍ରବୃତ୍ତିମାର୍ଗରେ ଯାହା 'ଇଚ୍ଛା', ନିବୃତ୍ତିମାର୍ଗରେ ସେହିହିଁ ଶେଷରେ ହୋଇଉଠେ 'ଭଗବଦ୍‌ଭକ୍ତି । ବିଷୟଜ୍ଞାନହିଁ ଶେଷରେ ହୋଇଉଠେ 'ଜ୍ଞାନଯୋଗ' ଏବଂ ଇନ୍ଦ୍ରିୟ-ସୁଖାନ୍ୱେଷଣ-ରୂପକ କ୍ରିୟାଜାଳ (ରଜୋଗୁଣ) ହୋଇଉଠନ୍ତି ଈଶ୍ୱର-ସମର୍ପିତ କର୍ମଯୋଗ ବା ଯଜ୍ଞ । ନିମ୍ନ ସ୍ତରର ଜଡ଼ତା ବା ତମୋଗୁଣହିଁ ଊର୍ଦ୍ଧ୍ୱ ସ୍ତରରେ ହୋଇଉଠେ ଅନିର୍ବଚନୀୟ ଶାନ୍ତି ଓ ସମତା ।

ଏହି 'ତ୍ରିଗୁଣ' ତେଣୁ ସ୍ୱ ସ୍ୱ 'ଉଚ୍ଚତମ' ଓ 'ନିମ୍ନତମ' ଅବସ୍ଥାରେ ପ୍ରାୟ-ଭ୍ରମାତ୍ମକ ଭାବରେ ସମାନ ବୋଧ ହୋଇଥାନ୍ତି । ଉଦାହରଣସ୍ୱରୂପ ଜଡ଼ ପ୍ରକୃତିରେ 'ତମ' ନିଶ୍ଚେଷ୍ଟ ଓ ନିଶ୍ଚଳ ଭାବ । ତେଣେ ଊର୍ଦ୍ଧ୍ୱରେ 'ସତ୍ତ୍ୱ' ମଧ୍ୟ ନିଶ୍ଚଳ ବା 'ନିଷ୍କର୍ମା' ବୋଧ ହେବ । କିନ୍ତୁ ସତ୍ତ୍ୱର ନିଶ୍ଚଳତା ଆସେ ସାମଞ୍ଜସ୍ୟ ବା ସମତାରୁ, ଜଡ଼ତାରୁ ନୁହେଁ । ତାହା ଆଳସ୍ୟଜନିତ ନୁହେଁ । ନିମ୍ନ ସ୍ତରର 'ଇଚ୍ଛା'ହିଁ ଉପର ସ୍ତରର 'ଆନନ୍ଦ' ହୋଇଉଠେ ଏବଂ ନିମ୍ନ ସ୍ତରର ଅବିଶ୍ରାନ୍ତ କ୍ଷିପ୍ରତା ବା ରଜୋଗୁଣ ପ୍ରକାଶିତ ହୁଏ କବି ବା ବୈଜ୍ଞାନିକର ବିସ୍ମୟକର ମାନସିକ ସୃଷ୍ଟିରେ ବା ସଂସ୍କାରକର ବିପ୍ଳବରେ ।

ମାଟର୍ (matter) ବା ପ୍ରକୃତିଭିତରେ ଏହିପରିଭାବରେ involuted (ସମ୍ପୃକ୍ତ) ସ୍ପିରିଟ୍ (ଚିତ୍)-କଣାକୁ ଜାଗ୍ରତ ବା evolved କରିବାପାଇଁହିଁ ବିଶ୍ୱସ୍ରଷ୍ଟା ଆମ ପ୍ରତ୍ୟେକ ଭିତରେ, ବାହାର ଜଗତରେ ବର୍ଣ୍ଣ-ଗନ୍ଧ-ଆକୃତିର ବିବିଧ ପ୍ରଲୋଭନର ବ୍ୟବସ୍ଥା କରି ରଖିଛନ୍ତି । ଏହାର ଆମର evolutipn ବା ଊର୍ଦ୍ଧ୍ୱଗମନପାଇଁ ନିତାନ୍ତ ଆବଶ୍ୟକ । 'ଏକ', 'ବହୁ'କୁ ଜାଣିବାପାଇଁହିଁ ଏ ସଂସାରକୁ ଆସିଛି । 'ବହୁ'କୁ ବହୁଭାବରେ ଜାଣିସାରିଲାପରେ ଯାଇ ଚିତ୍-କଣାର ଏହି ଅବବୋଧ ଆସ୍ତେ ଆସ୍ତେ ଜାଗ୍ରତ ହେବ ଯେ—"ଆରେ ! ଏ ତ ସବୁ ମାୟା ! ବରଂ ସକଳ ଆନନ୍ଦର ଉତ୍ସ, ରହସ୍ୟମୟ ସେହି ଏକକକୁ ଫେରିଯାଏ !"

ସେତେବେଳେ ତାର ଆରମ୍ଭ ହୁଏ ନିବୃତ୍ତିମାର୍ଗରେ ଗୃହପ୍ରତ୍ୟାବର୍ତ୍ତନ ଯାତ୍ରା । ତେଣୁ ପାଠକେ ମନେ ରଖିବେ ଯେ, ଏବର ବିଜ୍ଞାନ (ସାଏନ୍‌ସ) ହେଲା

'ବହୁ'ର ଜ୍ଞାନ । କିନ୍ତୁ ଭାରତୀୟ ଆଧ୍ୟାତ୍ମିକତା ହେଲା 'ଏକ'ର ଜ୍ଞାନ—ଯେଉଁ 'ଏକ', ଯେଉଁ 'ବହୁ' । ଗୀତା ହେଲା ସେହି ମହାନ୍ 'ଏକ'(ଅ-ଦ୍ୱୈତ)ର ଶ୍ରେଷ୍ଠ ବିଜ୍ଞାନପୁସ୍ତକ । ଯେ ଏକ, ସେହିହିଁ ବହୁ । ଏକ ଓ ବହୁ ପରସ୍ପରର ଶତ୍ରୁ ନୁହନ୍ତି । ସେମାନେ ପରସ୍ପରର ଉତ୍ତେଜକ ଓ ପରିପୂରକ । ପୁଣି କେବଳ ବେଦ ତ୍ରିଗୁଣାତ୍ମିକା ନୁହେଁ, ସମଗ୍ର ସୃଷ୍ଟି ଓ ଆମ ପ୍ରତ୍ୟେକର ଚେତନାହିଁ ତ୍ରିଗୁଣସଂପନ୍ନ ।

କିନ୍ତୁ ଗୀତା, ଆମର ଚିନ୍ତାକୁ 'ବହୁ'ରୁ 'ଏକ' ଆଡ଼କୁ ନେଇଯିବା ପାଇଁହିଁ, ତ୍ରିଗୁଣାତ୍ମକ-ଚିନ୍ତାରୁ ଉଠି ଆମେ କିପରି ତ୍ରିଗୁଣାତୀତ ହୋଇ କ୍ରମେ ଅଦ୍ୱୈତ ବା ମହାନ୍ 'ଏକ'କୁ ଫେରିଯିବା, ସେହି ଲକ୍ଷ୍ୟରେହିଁ, ତ୍ରିଗୁଣାତ୍ମକ ବହୁତ୍ୱକୁ ଓ ଆମର ବିବିଧ-ପାର୍ଥିବ-ବିଷୟପ୍ରବୃତ୍ତି-ଧାବମାନତାକୁ ଏବଂ ତାକୁ ଉତ୍ତେଜିତ କରୁଥିବା ଶାସ୍ତ୍ରାଦିକୁ ଏଠାରେ ଅପସନ୍ଦ କରିଛନ୍ତି । ମୋଟରେ ଗୀତା ଏ ଶ୍ଳୋକରେ କହୁଛନ୍ତି—"ହେ ଅର୍ଜୁନ, ସାଧାରଣତଃ ବେଦ ତ୍ରିଗୁଣାତ୍ମକ-ଚିନ୍ତାର ପରିପୋଷକ ହେବାରୁ ଲୋକେ ତା ଆଡ଼କୁ ଯାଇଥାନ୍ତି । ତୁମେ ବୈଦିକ ହୁଅ କ୍ଷତି ନାହିଁ, କିନ୍ତୁ ତ୍ରିଗୁଣାତୀତ ହେବାକୁ ଚେଷ୍ଟା କର, ଯଦି ତୁମେ ସତ୍ୟରେ ମାନସିକ ଶାନ୍ତି ଓ ସମତା ପାଇବାକୁ ଅଭିଳାଷ ରଖ । ସୁଖଦୁଃଖ, ଲାଭାଲାଭ, ମାନାପମାନ ଇତ୍ୟାଦି ଦ୍ୱନ୍ଦ୍ୱ-ଭାବ-କଳ୍ପସବୁକୁ ନେଇ ମନୁଷ୍ୟମାନେ ଅହରହ ବିବ୍ରତ । ସେଇଥିପାଇଁ ସେମାନେ ମଧ୍ୟ ଅହରହ 'ଯୋଗକ୍ଷେମ' ଚିନ୍ତାଦ୍ୱାରା ବିଚଳିତ । ହେ ଅର୍ଜୁନ, ତୁମେ ଦ୍ୱନ୍ଦ୍ୱବର୍ଣ୍ଣି ଓ ଏହି 'ଯୋଗକ୍ଷେମ'ର ଚିନ୍ତାରୁ ନିଜକୁ ମୁକ୍ତ କରି କରଂ ସର୍ବଦା (ନିତ୍ୟ) ସତ୍ତ୍ୱଗୁଣସ୍ଥ ବା ସମଭାବାପନ୍ନ ହେବାକୁ ଚେଷ୍ଟା କର ।"

ଗୀତା ବେଦକୁ ଯେ ଆଦୌ ସମଗ୍ରଭାବରେ condemn ବା ହେୟ ପ୍ରତିପନ୍ନ କରି ନାହାନ୍ତି, ସେ ଯେ ବେଦକୁ (ବା ଯେକୌଣସି ଶାସ୍ତ୍ରକୁ) କେବଳ ଆପେକ୍ଷିକ ଦୃଷ୍ଟିରେହିଁ ବିଚାର କରିବାକୁ ଆମକୁ ଉପଦେଶ ଦେଇଛନ୍ତି ଏହା ପରବର୍ତ୍ତୀ ଶ୍ଳୋକରେହିଁ ସ୍ପଷ୍ଟ ସୂଚିତ ହେଉଛି ।

**ଦ୍ୱନ୍ଦ୍ୱ**—ଗୀତା ଆମକୁ ବହୁ ସ୍ଥାନରେ ନିର୍ଦ୍ୱନ୍ଦ୍ୱ ବା ଦ୍ୱନ୍ଦ୍ୱାତୀତ ହେବାକୁ କହିଛନ୍ତି କଣ ଏହାର ତାତ୍ପର୍ଯ୍ୟ ? ଆମେ ଆମର ଇନ୍ଦ୍ରିୟମାନଙ୍କ ଦେଇ ଜୀବନ ବା ପ୍ରକୃତିକୁ ଭୋଗ କରୁ । ସେ ଭୋଗ ସବୁବେଳେ ସମାନ ନ ଥାଏ । ତାହା ବେଳେ ପ୍ରୀତିକର ହେଲେ, ବେଳେ ଅପ୍ରୀତିକର ହୁଏ । ଶୀତ-ଉଷ୍ମ, ମିଷ୍ଟ-ତିକ୍ତ, ସୁଖ-ଦୁଃଖ, ମାନ-ଅପମାନ ଇତ୍ୟାଦି ଦ୍ୱନ୍ଦ୍ୱ ଦେଇହିଁ ଇହ-ଜୀବନ ଅହରହ ପ୍ରକଟିତ ।

ଏଗୁଡ଼ିକ କିନ୍ତୁ ଚିରସ୍ଥାୟୀ ନୁହନ୍ତି । ଗୀତା କହନ୍ତି, ଏହିସବୁ ଅଚିରସ୍ଥାୟୀ ଦ୍ୱନ୍ଦ୍ୱରେ ଭସି ନ ଯାଇ ଆତ୍ମବାନ୍ ହୋଇ ଶାଶ୍ୱତ ଆତ୍ମାକୁ ଖୋଜ ।

୪୬

ଯାବାନର୍ଥ ଉଦପାନେ ସର୍ବତଃ ସଂପ୍ଲୁତୋଦକେ
ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ । ୪୬ ।

ସର୍ବତଃ (ସବୁ ଆଡ଼େ) ସଂପ୍ଲୁତୋଦକେ (ପାଣି ଭର୍ତ୍ତି ହୋଇଥିବା ଅଞ୍ଚଳରେ) ଉଦପାନେ (କୂପାଦି ଶ୍ରେଷ୍ଠ ଶ୍ରେଷ୍ଠ ଜଳାଶୟରେ) ଯାବାନ୍ (ଯେଉଁ ପରିମାଣକ) ଅର୍ଥଃ (ପ୍ରୟୋଜନ) [ଅର୍ଥାତ୍ ସେସବୁର ଆବଶ୍ୟକତା ଯେପରି ଆଉ ନ ଥାଏ] ବିଜାନତଃ ବ୍ରାହ୍ମଣସ୍ୟ (ବ୍ରହ୍ମପ୍ରତିଷ୍ଠ ବିଜ୍ଞାମୀ ଜନର) ସର୍ବେଷୁ ବେଦେଷୁ (ବେଦସବୁରେ ବା ଶାସ୍ତ୍ରସବୁରେ) ତାବାନ୍ [ଅର୍ଥଃ] (ସେହି ପରିମାଣକ ପ୍ରୟୋଜନ) [ଅର୍ଥାତ୍ ସେସବୁ ସେତେ ଆଉ କାମରେ ଆସନ୍ତି ନାହିଁ] ।

**ଅନୁବାଦ**

"ହେ ଅର୍ଜୁନ, ଚାରିଆଡ଼େ ପାଣି ଭର୍ତ୍ତି ହୋଇଗଲାପରେ, କୂପାଦି ଶ୍ରେଷ୍ଠ ଶ୍ରେଷ୍ଠ ଜଳାଶୟସବୁରେ ଲୋକମାନଙ୍କର ଯେପରି ନିଷ୍ପ୍ରୟୋଜମୀୟତା ଆସିଯାଏ, ସେହିପରି ନିଷ୍ପ୍ରୟୋଜମୀୟ ହୋଇଯାଆନ୍ତି ବେଦାଦି ସକଳ ଶାସ୍ତ୍ର ବା ସେସବୁରେ ନିର୍ଦ୍ଦେଶିତ ଆଚାରବିଧିର ପାଳନ, ସେହି ଲୋକପାଇଁ, ଯିଏ ଅନ୍ତଃସ୍ଥ ବ୍ରହ୍ମଙ୍କୁ ଜାଣିସାରିଲାଣି ।"

**ବିଶେଷ ଭାଷ୍ୟ**

ଗୀତାକାରଙ୍କ ମତରେ ଧର୍ମସାଧନାପାଇଁ ବେଦ ପ୍ରଭୃତି ଶାସ୍ତ୍ରଗ୍ରନ୍ଥର ଆବଶ୍ୟକତା ଅଛି । ସେ ଏକାବେଳକେ ସେସବୁକୁ ଉଡ଼େଇ ଦେଇନାହାନ୍ତି । କିନ୍ତୁ ଶାସ୍ତ୍ର କେବଳ ପଥନିର୍ଦ୍ଦେଶକ ମାତ୍ର । ଶ୍ରୀ ରାମକୃଷ୍ଣ ପରମହଂସଙ୍କ ଅପୂର୍ବ ଉପମା ଅନୁସାରେ ବୃକ୍ଷଗଛର ବାଡ଼ ବା ବେଙ୍ଗା ଯେପରି ଦରକାର, ସାଧକପ୍ରତି ଶାସ୍ତ୍ର ସେହିପରି । ଅଧିକାଂଶ ଶାସ୍ତ୍ର ସାଧକକୁ ଆଦ୍ୟ ସ୍ତରରେ କେବଳ ଗୁଡ଼ାଏ ଆଚାର ଅନୁଷ୍ଠାନ କରିବାକୁ କହିଥାନ୍ତି । ସେସବୁର ମଧ୍ୟ କିଛି କିଛି ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ଅଛି । ଏପରିକି ପୁତ୍ରକନ୍ୟାଙ୍କ କଲ୍ୟାଣପାଇଁ ବା ବୈଷୟିକ ଆପଦ-ବିପଦରେ ଆମର ଈଶ୍ୱରଙ୍କ ଶରଣାପନ୍ନ ହେବା ମଧ୍ୟ ସ୍ୱାଭାବିକ ଓ ତାହା ମଧ୍ୟ ଆମକୁ ଶେଷରେ ଈଶ୍ୱରଙ୍କ ଆଡ଼କୁ ଟାଣିନେବାରେ ସାହାଯ୍ୟ କରିଥାଏ । କିନ୍ତୁ '**ବିଜାନତଃ ବ୍ରାହ୍ମଣସ୍ୟ**', ଯେଉଁ ଲୋକ ବୋଧିପ୍ରାପ୍ତ, ଜ୍ଞାନପ୍ରାପ୍ତ, ପ୍ରଜ୍ଞାବାନ୍ ବା

ବ୍ରହ୍ମଜ୍ଞ ହୋଇସାରିଲେଣି, ତାଙ୍କ ପକ୍ଷରେ ବେଦାଦି ଶାସ୍ତ୍ରର ଆଚରପ୍ରତିଷ୍ଠ କର୍ମକାଣ୍ଡାଦିର ଆଉ କି ଦରକାର ? କାରଣ, ସେ ନିଜେ ଯେ ହୋଇଗଲେଣି 'ବେଦ'। ତାଙ୍କର ଚିତ୍ତର ମରୁ ଦିନେ ଜଳପାଇଁ ହାହାକାର କରୁଥିଲା, ଯେପରିକି ଦିନେ ରାମକୃଷ୍ଣ ମଧ୍ୟ ହାହାକାର କରୁଥିଲେ ଈଶ୍ୱରାନୁଭବ ନ ପାଇ। ସେତେବେଳେ ସେପରି ମହାପ୍ରାଣ ଲୋକ ମଧ୍ୟ ଆତ୍ମାର ପାଣିପାଇଁ କୂଅ, ପୋଖରୀ ଗାଡ଼ିଆ ଖୋଜିବୁଲୁଥିଲେ। କିନ୍ତୁ ଦିନେ ଈଶ୍ୱରାନୁଭବର ପ୍ରାବୃଟ ମାଡ଼ିଆସିଲା। ସେ ତାଙ୍କର ଚାରିଆଡ଼େ କେବଳ ଈଶ୍ୱର ଭର୍ତ୍ତି ହୋଇଥିବାର ଦେଖିଲେ। ସେ ଅବସ୍ଥାରେ ଆଉ 'ଗୁରୁ' କିଏ 'ବେଦ' କିଏ ? ସେତେବେଳେ ତ ସେ ଲୋକର ଭିତର-ବାହାର ଚାରିଆଡ଼େ କେବଳ ସତ୍ୟ, କେବଳ ଆଲୋକ, କେବଳ ଈଶ୍ୱର ! ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କୁଳଧର୍ମ, 'ଅନୁଶୁଶ୍ରୁମ'-ଲୋକାଚାର ଇତ୍ୟାଦି ଗୁଡ଼ି ଆଧ୍ୟାତ୍ମିକ ଜ୍ଞାନର ସେହି ଉଚ୍ଚ ସ୍ତରକୁ ଉଠିବାକୁ ପ୍ରେରଣା ଦେଉଛନ୍ତି ମାତ୍ର।

**୪୭**

କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ
ମା କର୍ମଫଳହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି । ୪୭ ।

କର୍ମଣି ଏବ (କର୍ମରେହିଁ) ତେ ଅଧିକାରଃ (ତୁମର ଅଧିକାର), କଦାଚନ (କେବେହେଲେ) ଫଳେଷୁ (କର୍ମଫଳରେ) ମା (ନାହିଁ) । [ତୁମେ] କର୍ମଫଳ ହେତୁଃ ମା ଭୂଃ (କେବଳ ଫଳଉପରେ ଆଖି ରଖି କାମ କରିବା ଅଭ୍ୟାସ ଗୁଡ଼ିଦିଅ) । [ଅଥଚ, ଏଥିଲାଗି] ଅକର୍ମଣି (କର୍ମତ୍ୟାଗପ୍ରତି) ତେ ସଙ୍ଗଃ ମା ଅସ୍ତୁ (ତୁମର ଆସକ୍ତି ନ ଆସୁ) ।

**ଅନୁବାଦ**

"ହେ ଅର୍ଜୁନ, ତୁମର (ବା ମନୁଷ୍ୟମାନର) ଏକମାତ୍ର ଦାୟିତ୍ୱ ଓ ଅଧିକାର ହେଲା କେବଳ କର୍ମ। 'କର୍ମତ୍ୟାଗ'ଦ୍ୱାରା ତୁମର (ବା କାହାର) କୌଣସି ମଙ୍ଗଳ ହୋଇଯିବ ବୋଲି ଭାବି ସେ ଆଡ଼କୁ ଢଳନାହିଁ ଏବଂ କେବଳ ଫଳଉପରେ ଲକ୍ଷ୍ୟ ରଖି ମଧ୍ୟ 'କର୍ମ' କର ନାହିଁ।"

**ବିଶେଷ ଭାଷ୍ୟ**

ଏହା ଗୀତାର ଏକ ସୁପ୍ରସିଦ୍ଧ ଶ୍ଳୋକମାନଙ୍କ ମଧ୍ୟରୁ ଏକତମ । ଏହାର ଅର୍ଥ ସରଳ, କିନ୍ତୁ ତତ୍ତ୍ୱଟି ଅତୀବ ଗମ୍ଭୀର ଓ ଦୈନନ୍ଦିନ ଜୀବନରେ ପାଳନ

ପକ୍ଷରେ ଅତ୍ୟନ୍ତ କଠିନ, ଯଦ୍ୟପି ଶ୍ଳୋକ-ନିହିତ ସତ୍ୟ ସମ୍ପର୍କରେ ଦ୍ୱିମତର ସ୍ଥାନ ନାହିଁ ।

ଏହା ଅବଶ୍ୟ ସ୍ୱାଭାବିକ ଯେ, କର୍ମର ଫଳ ସମସ୍ତେ ଆଶା କରିବେ । ଫଳାକାଂକ୍ଷା କର୍ମପାଇଁ ପ୍ରଥମ ଓ ପ୍ରଧାନ ପ୍ରେରଣା । ଜ୍ୟେଷ୍ଠର ଖରା ଓ ଶ୍ରାବଣର ବର୍ଷା-କାଦୁଅରେ ନିଜକୁ ଏକାକାର କରି ଚଷା ଯେ ଖେତ ଉଠାଏ, କିଏ ସେହି ପ୍ରାକୃତିକ ନିର୍ଯାତନାଭିତରେ ତାକୁ ମାରିବାରେ ପ୍ରେରଣା ଦେଇ-ଚାଲିଥାଏ ? ତାହା ନୁହେଁ କି ସେହି ପୁଷ ମାସର ସ୍ୱର୍ଣ୍ଣଶସ୍ୟ, ଯାହା ଘେନି ତାର ମାଟିକୁଟୀର ହସିଉଠିବ ଓ ତା ପିଲାପିଲିଙ୍କ ମୁହଁରେ ମଧ୍ୟ ହସ ଦେଖା ଦେବ ? ଏହାହିଁ ସନାତନ ସତ୍ୟ । କିନ୍ତୁ ସବୁବେଳେ ତ ତାହା ଘଟେ ନାହିଁ । ତିନି ଋତୁରେ ଭଲ ଫସଲ ହେଲା ତ ଗୋଟାଏ ଋତୁରେ ହେଲାନି । କିନ୍ତୁ ତା ବୋଲି କି ଚଷା ତାର କୃଷି ବନ୍ଦ କରିଦେବ ? ପୁଣି ଶସ୍ୟୋତ୍ପାଦନ ତ ପ୍ରତି ବର୍ଷ ଘଟେ, ଅଥଚ ଫଳୋତ୍ପାଦନ ବହୁବର୍ଷସାପେକ୍ଷ । ରୋପିଲା ଗଛର ଫଳ ଦେଖିବା ପୂର୍ବରୁ ଲୋକ ମରି ବି ଯାଇପାରିଥାଏ । ସେଥିପାଇଁ "ଏତେ ଦିନ କିଏ ଅପେକ୍ଷା କରିବ ହୋ ; କି ଦରକାର, ନ ଫଳି ବି ପାରେ ; ଫଳିଲେ ସାଇପଡ଼ିଶା ବି ଚୋରିକରି ନେଇଯିବେ, ଇତ୍ୟାଦି ଇତ୍ୟାଦି" ଚିନ୍ତା କରି କି ଫଳବୃକ୍ଷରୋପଣ ଆମେ କରିବାନି ? ଅର୍ଥାତ୍ ବୁଝିବାକୁ ହେବ ଯେ ଶ୍ରମ ବା କର୍ମହିଁ ଜୀବନର ମୌଳିକ ସତ୍ୟ, ଫଳ ନୁହେଁ ; ଏବଂ ଗୀତା ହେଉଛି ସମଗ୍ର ବିଶ୍ୱସାହିତ୍ୟରେ ପ୍ରଥମ ଓ ଏକମାତ୍ର ଗ୍ରନ୍ଥ ଯେ କି କେବଳ ଶ୍ରମକୁହିଁ ଏକ ପବିତ୍ର ଧର୍ମରୂପେ ଏବଂ ମନୁଷ୍ୟର ସ୍ୱାଭାବିକ ଧର୍ମ, ସ୍ୱ-ଧର୍ମରୂପେ ଉପସ୍ଥାପିତ କରିଯାଇଛନ୍ତି । ଆଧୁନିକ କାଳରେ ଗାନ୍ଧିଜୀ ଏହି ସତ୍ୟର ଜୀବନ୍ତ ପ୍ରତୀକରୂପେ ପ୍ରକୃତ ମହାତ୍ମାର ମୁକୁଟ ପିନ୍ଧି ସମଗ୍ର ବିଶ୍ୱର ବିସ୍ମୟର କାରଣ ହୋଇଥିଲେ । ଗୀତା ଏହି ଶ୍ଳୋକଶ୍ରେଷ୍ଠଟିରେ ପ୍ରତିପାଦିତ କରିଛନ୍ତି ଯେ ଶ୍ରମହିଁ ଆପେ ମହତ୍, ଶ୍ରମହିଁ ଶ୍ରମର ପ୍ରେରଣା, ଶ୍ରମହିଁ ଶ୍ରମର ପୁରସ୍କାର । ଶ୍ରମର ଫଳ ନିଶ୍ଚେ ଆସିବ । ହୁଏତ ତୁମେ ଯେପରି ଆଶା କରୁଛ ସେପରି ନ ହୋଇ ଅନ୍ୟ ରୂପରେ ଆସିବ, ହୁଏତ ତୁମ ଆଶାଠାରୁ ଉତ୍ତମତର ଭାବରେ ଆସିବ । କିନ୍ତୁ କେବଳ ଫଳଉପରେ ଆଖି ରଖିହିଁ କାମ କଲେ ଶ୍ରମର ମୂଲ୍ୟହାନି ଓ ମର୍ଯ୍ୟାଦାହାନି ହେବ ଏବଂ ସେହି ଅନୁସାରେ ଫଳହାନି ମଧ୍ୟ ହେବ । ଅନ୍ୟ ପକ୍ଷରେ, ଫଳର ପ୍ରଲୋଭନ ନ ଥିଲେ ଲୋକ ଅକର୍ମା ହେବାର ଆଶଙ୍କା ସ୍ୱାଭାବିକ ଏବଂ ସୂକ୍ଷ୍ମଦର୍ଶୀ ଗୀତାକାର ତା ମଧ୍ୟ ଜାଣିଥିଲେ । ସେଇଥିପାଇଁ ସେହି ଏକ

ଶ୍ଲୋକରେ ସେ ମଧ୍ୟ କହିରଖିଛନ୍ତି "ଫଳପାଇଁ କେବଳ କାମ କରନା ବା ଫଳ ନ ପାଇବା ଆଶଙ୍କାରେ ଉପଲକ୍ଷ କରି ଅକର୍ମା ହୋଇ ମଧ୍ୟ ବସନା।" ଏହା ଅତ୍ୟନ୍ତ ବିଚକ୍ଷଣ ମନସ୍ତତ୍ତ୍ୱ କହିବାକୁ ହେବ ଏବଂ ସମଗ୍ର ଗୀତାରେ ଏହି 'କର୍ମ-ବିଜ୍ଞାନ' ଯେପରି ବିସ୍ମୟକର ନୂତନତା ସହିତ ପ୍ରଖ୍ୟାପିତ ହୋଇଛି, ଆଜି କୌଣସି ତଥ୍ୟ ସେପରି ହୋଇ ନାହିଁ କହିଲେ ଚଳେ । ପରେ ପରେ ଯଥାସ୍ଥାନରେ ତାର ଆଲୋଚନା ହେବ। ଆଜିକାଲିର 'ଦାବି-ଯୁଗ'ରେ ପାଠକେ କହିପାରନ୍ତି— "ଏଁ, ଆମର କାମରେ ଅଧିକାର ଅଛି, ଫଳରେ ଅଧିକାର ରହିବନି କପରି ଓ କାହିଁକି ?" ହୁଏତ କେହି ପାଠକେ ଈଶ୍ୱରଙ୍କୁ ଏଥିପାଇଁ 'ଘେରାଓ' କରେଇବା-ପାଇଁ ମଧ୍ୟ ପ୍ରସ୍ତୁତ ଥିବେ । କିନ୍ତୁ ପାଠକେ ନିଶ୍ଚିତରୂପେ ଜାଣିରଖନ୍ତୁ ଯେ, ଜୀବନର ସୁଖ-ଦୁଃଖ ପ୍ରଭୃତି ଏକାନ୍ତଭାବରେ ବ୍ୟକ୍ତିଗତ, ଏବଂ ମାନସିକ ଓ ଆତ୍ମିକ। ତା ନ ହେଲେ ଜୋସେଫ୍ ଷ୍ଟାଲିନ୍‌ର କନ୍ୟା ଶ୍ୱେତଲାନା ନିଜ ବାପ ଗଢ଼ିଥିବା ସାମ୍ରାଜ୍ୟ ଛାଡ଼ି ପଳାଇଆସି ନ ଥାନ୍ତା। ଜବରଦସ୍ତି କରି, ଘେରାଓ କରି, ମାଡ଼ପିଟ, ଗୋଳମାଳ ଇତ୍ୟାଦି କରି କେହି କି 'ସୁଖ'କୁ ଧରିଆଣିପାରେ ? ଏବଂ ଆତ୍ମିକ ସୁଖ ଓ ଆନନ୍ଦଠାରୁ ଜୀବନର ଅଧିକ ମୂଲ୍ୟବାନ୍ 'ଫଳ' ବା କଣ ଅଛି ? ପୁଣି ପାଠକେ ସମାଜରେ ପ୍ରକୃତରେ ବରେଣ୍ୟ ଲୋକମାନଙ୍କର ଜୀବନୀ ଆଲୋଚନା କଲେ ନିଜେ ଦେଖିବେ ଯେ, ସେମାନେ ପରେ ଯାହା ପାଇଛନ୍ତି, ସାଧନାରତ ଥିଲାବେଳେ ତାହା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ଖଣ୍ଡପଡ଼ା ନାମକ ଜଙ୍ଗଲଭିତରେ ଜନ୍ମ ହୋଇ ଆମ ପଠାଣି ସାମନ୍ତେ କି ଫଳପାଇଁ, କି କର୍ମ ଏବଂ ତାହା ବା କପରି ଓ କାହିଁକି କରୁଥିଲେ, ପାଠକେ ବିଚାର କରନ୍ତୁ। ଯେତେବେଳେ ସେ ଗୁଳି କଣା କରି ରାତିପରେ ରାତି ଅନିଦ୍ରାରେ ରହି ତାରା-ମାନଙ୍କ ଗତି ଦେଖି ଦେଖି ଦିନରେ ଶ୍ଲୋକ ରଚନା କରୁଥିଲେ, ସେତେବେଳେ ସେ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲେ ଯେ, ତାଙ୍କ ବହି 'ସିଦ୍ଧାନ୍ତ-ଦର୍ପଣ' ଛପା ହେବ ଓ ତାହା ବିଶ୍ୱର ପତ୍ରପତ୍ରିକାରେ ସପ୍ରଶଂସ ଆଲୋଚିତ ହେବ। ସାଧନାର ପୂର୍ଣ୍ଣ ଆନନ୍ଦପାଇଁ ଶ୍ରୀମହାଁ ସାମନ୍ତ ଚନ୍ଦ୍ରଶେଖରଙ୍କର ଥିଲା ସମଗ୍ର ତପସ୍ୟା ! ତାହାହିଁ ଗୀତାର ପୂର୍ଣ୍ଣ ଉପଦେଶ। ସେହି ଉପଦେଶ ପରବର୍ତ୍ତୀ ଶ୍ଲୋକରେ ଘନୀଭୂତ ହୋଇ ପ୍ରକାଶିତ। ଆମକୁ ଗୀତାର ସମକାଳୀନ ଭାରତୀୟ ସାମାଜିକ ଅବସ୍ଥା ମଧ୍ୟ ଏଠାରେ ମନେ ରଖିବାକୁ ହେବ । ସାଂଖ୍ୟ ଓ ବୌଦ୍ଧ ଭାବଧାରାରେ ମାତିଯାଇ ସେତେବେଳେ ବହୁ ଲୋକ 'କର୍ମଫଳଜନିତ' ଦୁଃଖରୁ ମୁକ୍ତିପାଇଁ ଏକାବେଳକେ କର୍ମ ତ୍ୟାଗ କରିଦେଉଥିଲେ । ତେଣେ 'କର୍ମ' ନାମରେ

ଗୁଡ଼ାଏ ଯାଗ-ଯଜ୍ଞାଦି 'ପ୍ରାଣହୀନ ଆଚାରରେ ମାତିଲାବେଳେ ଏଣେ ଦଳେ ବିପରୀତରେ ନୈଷ୍କର୍ମ୍ୟକୁ ଆଦର୍ଶନେଇଥିଲେ । ଗୀତାକାର ଭାରତବର୍ଷର ଏହି ବିପତ୍‌ସଙ୍କୁଳ, ବିଭ୍ରାନ୍ତିମୟ ସାମାଜିକ ସମସ୍ୟାକୁ ଆଖିରେ ରଖିହିଁ, ଗୀତାକୁ କର୍ମର ମନୋଜ୍ଞ ବିଜ୍ଞାନରୂପେ ଉପସ୍ଥାପିତ କରିଛନ୍ତି ।

୪୮

ଯୋଗସ୍ଥଃ କୁରୁ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ
ସିଦ୍ଧ୍ୟସିଦ୍ଧ୍ୟୋଃ ସମୋଭୂତ୍ୱା ସମତ୍ୱଂ ଯୋଗ ଉଚ୍ୟତେ । ୪୮ ।

ଧନଞ୍ଜୟ (ହେ ଅର୍ଜ୍ଜୁନ) ଯୋଗସ୍ଥଃ [ସନ୍] (ଯୋଗ ସାଧନା କଲାପରି) ସଙ୍ଗଂ ତ୍ୟକ୍ତ୍ୱା (ଫଳପ୍ରତି କୌଣସି ଆସକ୍ତି ନ ରଖି) ସିଦ୍ଧ୍ୟସିଦ୍ଧ୍ୟୋଃ ସମୋଭୂତ୍ୱା (ସଫଳତା ଓ ବିଫଳତାପ୍ରତି ସମାନ ଭାବ ବହନ କରି) କର୍ମାଣି କୁରୁ (କାମସବୁ କରିଚାଲ) । [ଏହିପ୍ରକାର] ସମତ୍ୱଂ (ସମଭାବହିଁ) ଯୋଗଃ ଉଚ୍ୟତେ (ପ୍ରକୃତ ଯୋଗ) ।

## ଅନୁବାଦ

"ତେଣୁ ହେ ଅର୍ଜ୍ଜୁନ, କର୍ମ-ଯୋଗ-ସାଧନାହିଁ ହେଲି ଫଳାସକ୍ତି ପରିତ୍ୟାଗ କରି, ସଫଳତା ଓ ବିଫଳତାପ୍ରତି ସମାନ ଭାବ ରଖି କର୍ତ୍ତବ୍ୟ କର୍ମସବୁ କରିଯିବା । ଏହିପ୍ରକାର ମାନସିକ ସମତ୍ୱହିଁ ପ୍ରକୃତ ଯୋଗ ।"

## ବିଶେଷ ଭାଷ୍ୟ

ପାଠକେ ଲକ୍ଷ୍ୟ କରନ୍ତୁ, ଗୀତାକାର କିପରି ଚତୁର କୌଶଳ ସହକାରେ ପଦେ ପଦେ, ଆସ୍ତେ ଆସ୍ତେ 'କର୍ମ' ଅର୍ଥାତ୍ ଆମର ଦୈନନ୍ଦିନ କାମଗୁଡ଼ିକୁ ମଧ୍ୟ 'ଯୋଗ'ରେ ପରିଣତ କରିବାକୁ ଚେଷ୍ଟା କରିଚାଲିଛନ୍ତି । ସେହି ବରଣୀୟ ଚେଷ୍ଟା ଏହି ଶ୍ଳୋକରେ ଅତି ସ୍ପଷ୍ଟ ।

ପାତଞ୍ଜଳିଙ୍କ ଯୋଗଶାସ୍ତ୍ର ଭାରତରେ ଜଣାଶୁଣା । ଶାରୀରିକ ଓ ମାନସିକ କେତେକ ଅଭ୍ୟାସ ଦେଇ ସାଧକ ଏହି ମାର୍ଗରେ ସମାଧି-ସ୍ତରରେ ପହଞ୍ଚେ, ଯେଉଁଠି ଜୀବାତ୍ମା ଓ ପରମାତ୍ମାର ମିଳନ ହୁଏ ବୋଲି କୁହାଯାଏ । ସମାଧି-ଅବସ୍ଥାରେ ସାଧକର ବାହ୍ୟ ଜ୍ଞାନ ନ ଥାଏ । ଆମର ଇନ୍ଦ୍ରିୟସବୁ ନିରନ୍ତର ବହିର୍ମୁଖୀ । 'ଯୋଗ' ସେଗୁଡ଼ିକୁ କ୍ରମେ ଅନ୍ତର୍ମୁଖୀ କରାଇନିଏ । ସମାଧି ବେଳକୁ ସେଗୁଡ଼ିକର ଦୁଆର ଏକାବେଳକେ ବନ୍ଦ ହୋଇଯାଏ କହିଲେ ଚଳେ । ରାମକୃଷ୍ଣଙ୍କର ଏହି ଅବସ୍ଥା ପ୍ରତ୍ୟହ ଘଟୁଥିଲା ।

'ଯୋଗ'ର **ସମାଧି-ଅବସ୍ଥାରେ** ଏପରି **ଘଟିଥାଏ ବୋଲି, ଭାବନା** ଓ **କାମରେ କୌଣସି ଲୋକ ପାରିପାର୍ଶ୍ୱ** କଥାକୁ ଭୁଲିଗଲେ ଆମ ସମାଜରେ **ଅନ୍ୟ** ଲୋକେ ତାକୁ ମଧ୍ୟ ଥଟ୍ଟା କରିଥାନ୍ତି—"ଏତେ ଯୋଗରେ ବସିଛି ଯେପରି !"

ତେଣୁ 'ଯୋଗସ୍ଥ' ହୋଇ କାମ କରିବାର ଯେଉଁ ଉପଦେଶ **ଏହି** ଶ୍ଳୋକରେ ଦିଆଯାଇଛି, ତାହାର ଅର୍ଥ ନୁହେଁ ନାକ-କାନ ବୁଜି କାମ କରିବା । ଏହାର **ଏକମାତ୍ର** ତାତ୍ପର୍ଯ୍ୟ ହେଉଛି—କିଂଚିତ୍ ପୂର୍ବେ; ଏହି ଅଧ୍ୟାୟର ୪୧ ଶ୍ଳୋକରେ ବୁଝାଯାଇଥିବା 'ବ୍ୟବସାୟାତ୍ମିକା ବୁଦ୍ଧି' । ଅର୍ଥାତ୍ ଏହା **ବିଷୟନିଷ୍ଠ ଏକାଗ୍ରତା** ଛଡ଼ା ଆଉ କିଛି ନୁହେଁ । ଆମେ ଯାହା କରିବା—ଗୃହିଣୀର ଦୈନନ୍ଦିନ ଖାଦ୍ୟ-ପ୍ରସ୍ତୁତି ବା ଶିକ୍ଷକର ଆଜିର କ୍ଲାସ-ପ୍ରିପାରେଶନ୍ ବା ପୋଲିସ-ବାବୁଙ୍କ କେସ୍-ଇନ୍‌କ୍ୱାରି ପର୍ଯ୍ୟନ୍ତ—ସେହି ପ୍ରତ୍ୟେକ କାମର ପରମ **ନିପୁଣ** କୃତକାର୍ଯ୍ୟତାପାଇଁ ଏହି 'ବ୍ୟବସାୟାତ୍ମିକା ବୁଦ୍ଧି' ବା 'ଏକନିଷ୍ଠତା' ଏକାନ୍ତ ଆବଶ୍ୟକ । ତାହାହିଁ 'ଯୋଗ' । ଯୋଗର ଦ୍ୱିତୀୟ ଲକ୍ଷଣ ହେଲା ସମତା ବା ସମତ୍ୱ—ଯାହା ମଧ୍ୟ ସମାଧିର ଅନୁଭବ । 'ସମାଧି'-ଅବସ୍ଥାରେ ଜଗତର ଦୁଃଖ ଓ ସୁଖ, ନାନା ବର୍ଣ୍ଣ, ନାନା ଆକାର, ନାନା ଧ୍ୱନି ଇତ୍ୟାଦି—ଅର୍କେଷ୍ଟ୍ରାର ବହୁ ଯନ୍ତ୍ର ଗୋଟିଏ ମଧୁର ମିଳିତ ଏକତାନରେ ଶେଷ ହେଲା ପରି—ସକଳ ଭିନ୍ନତା ହରାଇ ଏକ ପରମାନନ୍ଦରେ ପରିଣତ ହୁଅନ୍ତି ବୋଲି ଅନୁଭବୀମାନଙ୍କଠାରୁ ଜଣାଯାଏ । ପ୍ରତ୍ୟେକ କାମର ଫଳ ଅଛି, ବିଫଳ ମଧ୍ୟ ଅଛି । ଗୀତା କହେ ଯେ, ପ୍ରତ୍ୟେକ କାମକୁ ଫଳ-ବିଫଳପ୍ରତି ଆଖି ନ ରଖି 'ଯୋଗ'ସାଧନା ପରି ମନେ କରି ସମ୍ପନ୍ନ କଲେ ସେହି ସମାଧିସ୍ଥ ସମତ୍ୱ-ଅନୁଭବ ଆସିବ । ସେଥିରେ ଆମର ଦୈନନ୍ଦିନ ସାଧାରଣ କାମଗୁଡ଼ିକ ମଧ୍ୟ 'ଯୋଗ' ହୋଇ ଉଠିବ । ଏହାର ପ୍ରଣାଳୀ ଗୀତା ପରବର୍ତ୍ତୀ ଶ୍ଳୋକରେ ବୁଝାଉଛନ୍ତି ।

**୪୯**

ଦୂରେଣ ହ୍ୟବରଂ କର୍ମବୁଦ୍ଧିଯୋଗାଦ୍ଧନଞ୍ଜୟ

ବୁଦ୍ଧୌ ଶରଣମନ୍ୱିଚ୍ଛ କୃପଣାଃ ଫଳହେତବଃ । ୪୯ ।

ଧନଞ୍ଜୟ (ହେ ଅର୍ଜ୍ଜୁନ) କର୍ମ (ଆମର ବିଶ୍ୱାସହୀନ ଦୈନନ୍ଦିନ କାମ ବା ଧର୍ମୀୟ ଆଚାରସବୁ ) ବୁଦ୍ଧିଯୋଗାତ୍ (ଚୈତ୍ତିକ ସାଧନା ଅପେକ୍ଷା ) ଦୂରେଣ **ହି (ନିତାନ୍ତଭାବରେ) ଅବରଂ (ନିକୃଷ୍ଟ )** । [ତେଣୁ, ଆଗ] **ବୁଦ୍ଧୌ (ନିଜର ବିଶ୍ୱାସ-ଶକ୍ତିଠାରେ) ଶରଣଂ ଅନ୍ୱିଚ୍ଛ (ଆଶ୍ରୟ ନିଅ)** । **[କେବଳ] ଫଳହେତବଃ**

(ଫଳପାଇଁ କାମ କରୁଥିବା ଲୋକେ) କୃପଣାଃ (କୃପାର ପାତ୍ର ବା ଦୟନୀୟ ଅର୍ଥାତ୍ ନିମ୍ନ ଶ୍ରେଣୀର) ।

## ଅନୁବାଦ

"ହେ ଅର୍ଜୁନ, ପୁଣି ମନେ ରଖିଥିବ ଯେ କେବଳ 'କର୍ମ', 'ବୁଦ୍ଧିଯୋଗ'-ଠାରୁ ନିମ୍ନତର । (ଲୋକ) ଯେକୌଣସି କର୍ମ କରିବା ପୂର୍ବରୁ ଆଗ ବୁଦ୍ଧିର ଶରଣ ନେବ । ବୁଦ୍ଧି-ବିଚାର ନ କରି ଯେଉଁମାନେ କେବଳ ଫଳାଶାଉପରେ ଆଖି ରଖି କାମ କରିଚାଲନ୍ତି, ସେମାନେ ଶେଷରେ ଦୟନୀୟ ହୋଇଉଠନ୍ତି ।"

## ବିଶେଷ ଭାଷ୍ୟ

କର୍ମଯୋଗ ସାଥେ ସାଥେ ଗୀତା ଏଠାରେ 'ବୁଦ୍ଧିଯୋଗ'ର କଥା କହିବସିଲେ, କାରଣ ବିନା ବୁଦ୍ଧି ବା ବିଚାରଶକ୍ତିର ପ୍ରୟୋଗରେ କୌଣସି କର୍ମ ଉଚିତ ମାର୍ଗରେ ଯାଇପାରିବ ନାହିଁ କି ସୌଷ୍ଠବସଂପନ୍ନଭାବରେ ନିଷ୍ପନ୍ନ ହୋଇ ପାରିବ ନାହିଁ । ଆମ ମନର ନିଶ୍ଚୟାତ୍ମିକା ଅଂଶହିଁ ବୁଦ୍ଧି । ଏହାହିଁ ନିତ୍ୟ-ଅନିତ୍ୟ, ଭଲ-ମନ୍ଦ ବିଚାର କରି, 'ପ୍ରେୟ'ର ସଦ୍ୟ କିନ୍ତୁ କ୍ଷଣସ୍ଥାୟୀ ଲାଭ ତ୍ୟାଗ କରି 'ଶ୍ରେୟ'ର ଶାଶ୍ୱତ କଲ୍ୟାଣପାଇଁ ଅଗ୍ରସର କରାଇବାର କଥା । ଆମେ କିନ୍ତୁ ବିଶେଷଭାବରେ ବାହ୍ୟ ବିଷୟମାନଙ୍କପ୍ରତି ପ୍ରଧାବିତ ମନ ସହିତହିଁ ପରିଚିତ । ଏହି ମନ, ସର୍ବଦା ତୃଷ୍ଣା ବା ବାସନାଦ୍ୱାରା ପ୍ରଣୋଦିତ, ପୁଣି ତାହା ନୂତନ ବାସନାସବୁ ମଧ୍ୟ ସୃଷ୍ଟି କରିଥାଏ ; ଏବଂ ସେହି ବାସନାମାନଙ୍କ ଜଞ୍ଜାଳରେ ଆମକୁ ବୁଡ଼ାଏ, ଉଠାଏ । ଆମେ ଦ୍ୱନ୍ଦ୍ୱ-ସ୍ରୋତରେ ଆକଟା ହୋଇ ବୁଡ଼ୁଥାଉଁ । କିନ୍ତୁ ଆମେ ଦ୍ୱନ୍ଦ୍ୱ ଓ ବାସନାରାଶିର ଉପରକୁ ଉଠିଲେହିଁ ଦୁଃଖାତୀତ ହୋଇପାରିବା । ତେଣୁ ଗୀତା କହୁଛନ୍ତି—'କର୍ମଯୋଗ'ପାଇଁ ଅର୍ଥାତ୍ କର୍ମର ସୁସଂପନ୍ନତାପାଇଁହିଁ, ଆଗ 'ବୁଦ୍ଧୌ ଶରଣଂ ଅନ୍ୱିଚ୍ଛ', ଅର୍ଥାତ୍ ଶ୍ରେୟ-ନିବିଷ୍ଟ ମନଦ୍ୱାରହିଁ ପରିଚାଳିତ ହୁଅ । ପ୍ରେୟାଭିଳାଷୀ 'କର୍ମ'ଠାରୁ ଯେ ଶ୍ରେୟାଶ୍ରୟୀ 'ବୁଦ୍ଧି' ଉଚ୍ଚତର, ଏଥିରେ ଦ୍ୱିମତ ଥାଇ ନ ପାରେ । ଗୀତା ଏହି ଶ୍ଳୋକରେ ମଧ୍ୟ ଶାରୀରିକ ଶ୍ରମ (କର୍ମ) ଓ ବୌଦ୍ଧିକ ଶ୍ରମ (ବୁଦ୍ଧି) ଭିତରେ ସେହି ତଫାତ୍ ସୂକ୍ଷ୍ମଭାବରେ ବ୍ୟଞ୍ଜିତ କରିଛନ୍ତି । 'ଦୂରେଣ ହ୍ୟବରଂ କର୍ମ ବୁଦ୍ଧିଯୋଗାତ୍ ଧନଞ୍ଜୟ' । କେବଳମାତ୍ର ଶ୍ରମ ଯେକୌଣସି ବୌଦ୍ଧିକ ପ୍ରକାଶଠାରୁ ନିଶ୍ଚୟ ନିମ୍ନତର । 'ସିଦ୍ଧାନ୍ତ-ଦର୍ପଣ' ଗ୍ରନ୍ଥ ଖଣ୍ଡିକ ଯୋଗୁଁ କୌଣସି ଜଣେ ଓଡ଼ିଆର ଉଦର-ପୂରଣ ସମସ୍ୟାର ସମାଧାନ ହୋଇପାରେ ନାହିଁ । କିନ୍ତୁ ଏହା ଅବିସମ୍ବାଦିତ ସତ୍ୟ ଯେ, ସେହି ପୋଥି ଖଣ୍ଡିକ ଆମପରି କୋଟି କୋଟି ଲୋକର ଉଦର-

ସନ୍ଧାନର ଉପାୟଠାରୁ ବହୁ ଭାବରେ ମହତ୍ତର । କାରଣ ଜଣେ ଲୋକର ବୁଦ୍ଧି-ଯୋଗ-ଜାତ ସେହି ଖଣ୍ଡିଏ ବହି ଗୋଟାଏ ସମଗ୍ର ଐତିହାସିକ ଜାତିର ମର୍ଯ୍ୟାଦା ଚିରକାଳପାଇଁ ଠେକିରଖିଲା । ଏବଂ ଏହା ମଧ୍ୟ ସତ୍ୟ ଯେ, ଫଳ-କାମନାକୁ ଆଖିରେ ରଖି ସିଦ୍ଧାନ୍ତ-ଦର୍ପଣ ବା ଏହି ଗୀତା ପରି ଗ୍ରନ୍ଥ ଲେଖା ହୋଇ ନ ପାରେ । ଗୀତା ତେଣୁ କହୁଛନ୍ତି—'କୃପଣାଃ ଫଳହେତବଃ'—ଯେଉଁମାନେ ସବୁବେଳେ ଫଳଉପରେ ଆଖି ରଖି କାମ କରିଥାନ୍ତି, ସେମାନେ ଦୟନୀୟ ଜୀବ । ଏପରି ସ୍ତରର ଲୋକସବୁ, ଯେଉଁମାନେ କି ଦରମାର ଇନ୍‌କ୍ରିମେଣ୍ଟପାଇଁ, ପୁଅର ଚାକିରିପାଇଁ, ବ୍ୟାଙ୍କବାଲାନ୍‌ସ୍ ବଢ଼େଇବାପାଇଁ ବା ପଦ-ପଦବୀପାଇଁହିଁ ପରିପୂର୍ଣ୍ଣଭାବରେ ଦଉଡ଼ଉଡ଼ଛନ୍ତି, ସେମାନଙ୍କର ଚିନ୍ତା କୌଣସି ଉନ୍ନତତର ସ୍ତରକୁ ଉଠିପାରେ ନାହିଁ । ସେ ପ୍ରକାର ଅନ୍ଧ ଅଜ୍ଞଙ୍କ ପାଇଁ ଗୀତା ଗ୍ରନ୍ଥ ଯେ ନୁହେଁ, ଏକଥା ମୂଳରୁ ଧରିନେବା ଉଚିତ । ସେପ୍ରକାର ଇତର ପାର୍ଥିବ ଲାଭପାଇଁ ଏବେ କୌଣସି ମନ୍ତ୍ରୀ ବା ଉପମନ୍ତ୍ରୀର ଅନୁଗ୍ରହହିଁ ଯଥେଷ୍ଟ । କିନ୍ତୁ ଗୀତା କେବଳ ସେହିମାନଙ୍କ ପାଇଁ, ଯେଉଁମାନେ ଜୀବନ-ଦର୍ଶନପାଇଁ, ସୁଖ-ଦୁଃଖର ଉତ୍ତରପାଇଁ, ଆଲୋକପାଇଁ, ଅମୃତପାଇଁ ବ୍ୟାକୁଳ । ସେପ୍ରକାର ବ୍ୟାକୁଳତାପାଇଁ 'ବୁଦ୍ଧିଯୋଗ'ହିଁ ଏକାନ୍ତ ଆବଶ୍ୟକ, ଯେପରି ମଧ୍ୟ ଆବଶ୍ୟକ 'କର୍ମ' । କର୍ମତ୍ୟାଗ ଗୀତାର ଆଦର୍ଶ ନୁହେଁ । "ବୁଦ୍ଧି-ଯୋଗ-ଯୁକ୍ତ କର୍ମ"ହିଁ ଗୀତାର ଆଦର୍ଶ । ଏବଂ ଏହା ମଧ୍ୟ କେବଳ ଗୀତାର ଆଦର୍ଶ ନୁହେଁ, ଏହାହିଁ ନିଖିଳ ହିନ୍ଦୁ-ଧର୍ମ-ଶାସ୍ତ୍ରର ଉଦ୍ଦେଶ୍ୟ ।

କେବଳଂ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋ ବିନିର୍ଣ୍ଣୟଃ
ଯୁକ୍ତିହୀନ-ବିଚାରେଣ ଧର୍ମହାନିଃ ପ୍ରଜାୟତେ । (ବୃହସ୍ପତି)

ପାଠକେ, ହିନ୍ଦୁଶାସ୍ତ୍ରର ଏ ନିର୍ଦ୍ଦେଶ ଆଦୌ ଭୁଲିଯିବା ଉଚିତ ନୁହେଁ । କିଛି ନ ବୁଝି ନ ଶୁଝି ଅନ୍ଧଭାବରେ ସବୁ କରିଯିବା କେବେହେଲେ 'ଧର୍ମ' ହୋଇପାରେ ନା । ଅନ୍ତତଃ ଭଗବଦ୍‌ଗୀତାରେ ଏ ଦୃଷ୍ଟିକୋଣ ନାହିଁ ।

୫୦

ବୁଦ୍ଧିଯୁକ୍ତୋ ଜହାତୀହ ଉଭେ ସୁକୃତ-ଦୁଷ୍କୃତେ
ତସ୍ମାଦ୍‌ଯୋଗାୟ ଯୁଜ୍ୟସ୍ୱ ଯୋଗଃ କର୍ମସୁ କୌଶଳମ୍ । ୫୦ ।

ବୁଦ୍ଧିଯୁକ୍ତଃ (ବୁଦ୍ଧିଯୋଗ-ପରିଚାଳିତ କର୍ମଯୋଗୀ) ଇହ (ଏହି ଜଗତରେହିଁ) ଉଭେ ସୁକୃତ-ଦୁଷ୍କୃତେ (ପାପ ଓ ପୁଣ୍ୟ ଉଭୟକୁ) ଜହାତି

(ତ୍ୟାଗ କରିପାରନ୍ତି) । ତସ୍ମାତ୍ (ସେହି ହେତୁରୁ) ଯୋଗାୟ ଯୁଜ୍ୟସ୍ୱ [ସେହି-ପ୍ରକାର] (ଯୋଗ ନିମିତ୍ତ ଯତ୍ନ କର) । [କାରଣ] ଯୋଗଃ [ସେହିପ୍ରକାର] (ଯୋଗହିଁ) କର୍ମସୁ କୌଶଳଂ (କର୍ମ-ସଂପାଦନର ଏକମାତ୍ର କୌଶଳ) ।

**ଅନୁବାଦ**

"ହେ ଅର୍ଜୁନ, କେବଳ ପ୍ରକୃତ ବୁଦ୍ଧିଯୋଗାଭ୍ୟାସୀ କର୍ମୀହିଁ ଏ ଜଗତରେ ପାପ ଓ ପୁଣ୍ୟ ଉଭୟକୁ ତ୍ୟାଗ କରିପାରିଥାନ୍ତି । ତୁମେ ତେଣୁ ସେହି ଯୋଗର ଅଭ୍ୟାସ କର । କର୍ମର କୌଶଳହିଁ ଯୋଗ ବୋଲି ଜାଣିବ ।"

**ବିଶେଷ ଭାଷ୍ୟ**

ପ୍ରତ୍ୟେକ ଧର୍ମ-ଗୋଷ୍ଠୀ ଓ ସାମାଜିକ-ଗୋଷ୍ଠୀରେ 'ଏଇଟା ପାପ', 'ଏଇଟା ପୁଣ୍ୟ' ବୋଲି ଗୁଡ଼ାଏ ଧାରଣା ପିଲାଦିନରୁ ଲୋକଙ୍କ ମନରେ ସୃଷ୍ଟି କରାଇଦିଆଯାଇଥାଏ । 'ଏଇ ଏଇ କାମ ପୁଣ୍ୟ କର୍ମ', 'ଏଇ ଏଇ କାମ ପାପ'— ପ୍ରତ୍ୟେକ ଲୋକର ଏହିପରି କିଛି କିଛି ଧାରଣା ହୃଦୟରେ ପ୍ରତିଷ୍ଠିତ ହୋଇ ରହିଥାଏ । କିନ୍ତୁ ପ୍ରକୃତରେ ଏଗୁଡ଼ିକଭିତରୁ ଅଧିକାଂଶ ବିଚାରହୀନ ସଂସ୍କାର ମାତ୍ର । ତେଣୁହିଁ ଧର୍ମ-ଓ-ସଂସ୍କାର-ନିର୍ବିଶେଷରେ ଗୀତା ଆମ ପ୍ରତ୍ୟେକଙ୍କୁ 'ବୁଦ୍ଧିଯୁକ୍ତ' ହୋଇ କାମ କରିବାକୁ ଉପଦେଶ ଦେଉଛନ୍ତି । ବିଚାରହୀନଭାବରେ ବା କୁସଂସ୍କାରବିମୂଢ଼ ହୋଇ କେବେ କେହି ଆତ୍ମିକ ଉନ୍ନତି ପାଇ ନ ପାରେ । ସେମାନଙ୍କର ନିଜ ନିଜ ଦେଶ ଓ ସମାଜରେ ଯାହା ଆଗରୁ 'ପାପ' ବୋଲିହିଁ ଧରି-ଯାଉଥିଲା, ବୁଦ୍ଧ, ଯୀଶୁ, ମହମ୍ମଦ, ଗାନ୍ଧି, ରାମକୃଷ୍ଣ ପ୍ରଭୃତି ସାହସର ସହିତ ସେହିପରି ବହୁ କାମ କରିଯାଇଛନ୍ତି ନିଜ ନିଜ ଜୀବନରେ । କାରଣ ଏହି 'ବୁଦ୍ଧିଯୁକ୍ତ' ମହାପୁରୁଷମାନେ ସେସବୁ କର୍ମଭିତରେ କୌଣସି ଯୁକ୍ତିଯୁକ୍ତତା ବା ଯଥାର୍ଥତା ଦେଖି ପାରି ନ ଥିଲେ । ସେଇଥିପାଇଁହିଁ ଗୀତା କହୁଛନ୍ତି ଯେ 'ବୁଦ୍ଧିଯୁକ୍ତ' ହୋଇ କର୍ମ କଲେ ଏହି ଜଗତରେ 'ସୁକୃତ' ବା 'ଦୁଷ୍କୃତ' ବୋଲାଉଥିବା ଅଥଚ ପ୍ରକୃତରେ ଅଯୌକ୍ତିକ ବହୁ କର୍ମକୁ ସେମାନେ ପରିହାର କରି ଜୀବନର ଯଥାର୍ଥ ଲକ୍ଷ୍ୟସ୍ଥଳରେ ପହଞ୍ଚିବେ । ଠିକ୍ କାମଟିହିଁ କରିବା ଓ ତାକୁ ସୁସଂପନ୍ନ କରିବା ବିଷୟରେ 'ବୁଦ୍ଧିଯୋଗ' ଅପରିହାର୍ଯ୍ୟ । ତେଣୁ ଗୀତା କହନ୍ତି—କର୍ମର ଏକମାତ୍ର କୌଶଳ ହେଲା ଏହି ବୁଦ୍ଧିଯୋଗ । କାରଣ, ବୁଦ୍ଧି-ଯୋଗହିଁ ସାଧକକୁ ଆଣିଦେବ ଅଫଳାଭିଳାଷୀ-ଭାବ, ଅଥଚ କର୍ମକୁ କରିବ ସଫଳ ।

୫୧

କର୍ମଜଂ ବୁଦ୍ଧିଯୁକ୍ତା ହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ
ଜନ୍ମବନ୍ଧ-ବିନିର୍ମୁକ୍ତାଃ ପଦଂ ଗଚ୍ଛନ୍ତ୍ୟନାମୟମ୍ । ୫୧ ।

ବୁଦ୍ଧିଯୁକ୍ତାଃ ମନୀଷିଣଃ (ବୁଦ୍ଧିଯୁକ୍ତ ଜ୍ଞାନୀମାନେ) କର୍ମଜଂ ଫଳଂ ତ୍ୟକ୍ତ୍ୱା (କର୍ମଜାତ ଫଳାଫଳରେ ଆଶା ନ ରଖି ଅର୍ଥାତ୍ ତାକୁ ପଛକୁ ପକେଇଦେଇ) ଜନ୍ମବନ୍ଧ-ବିନିର୍ମୁକ୍ତାଃ [ସନ୍ତଃ] (ଜନ୍ମାନ୍ତରରୂପକ ବନ୍ଧନରୁ ମୁକ୍ତ ହୋଇ) ଅନାମୟଂ (ଦୁଃଖହୀନ) ପଦଂ (ସ୍ଥାନକୁ) ଗଚ୍ଛନ୍ତି ହି (ଚାଲିଯାନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ତେଣୁ ବୁଦ୍ଧିଯୁକ୍ତ ଜ୍ଞାନୀମାନେ କର୍ମର ଫଳରେ ଆଶା ନ ରଖି, ନିରାସକ୍ତଭାବରେହିଁ କର୍ତ୍ତବ୍ୟ କର୍ମ କରିଚାଲିବାରୁ ଜନ୍ମାନ୍ତରରୂପକ କର୍ମ-ବନ୍ଧନରୁ ମୁକ୍ତ ହୋଇ ଦୁଃଖହୀନ ଲୋକକୁ ଚାଲିଯାନ୍ତି ।"

## ବିଶେଷ ଭାଷ୍ୟ

ଏହି ଶ୍ଳୋକରେ ଗୀତା, ପ୍ରଥମ କରି, ଆମକୁ ଏକାନ୍ତଭାବରେ ଏକ ଅଦ୍ୱିତୀୟ ଭାରତୀୟ ଚିନ୍ତାଧାରାର ସମ୍ମୁଖୀନ କରାଉଛନ୍ତି । ତାହା ହେଉଛି କର୍ମବାଦ ଓ ଜନ୍ମାନ୍ତରବାଦ । ଏହି ଚିନ୍ତାଧାରାଟିର ତାତ୍ପର୍ଯ୍ୟ ହେଲା ଏହି ଯେ, ଆମେ ପ୍ରତ୍ୟେକେ ବର୍ତ୍ତମାନ ଯାହା—କିଏ ଧନୀ, କିଏ ଦରିଦ୍ର, କିଏ ମୂର୍ଖ, କିଏ ପଣ୍ଡିତ, କିଏ ହତଭାଗ୍ୟ, କିଏ ସୌଭାଗ୍ୟବନ୍ତ—ଜୀବନ ଓ ବ୍ୟକ୍ତିତ୍ୱର ସେହିସବୁ ପ୍ରକାର-ପ୍ରକାର କୌଣସି କଳ୍ପିତ ଈଶ୍ୱରର ଖିଆଲ ଯୋଗୁଁ ଆଦୌ ଘଟି ନାହିଁ । ଏହାର ପଛରେ ଯେଉଁ ବୈଜ୍ଞାନିକ ନିୟମକୁ ଭାରତୀୟ ଜ୍ଞାନୀମାନେ ଆବିଷ୍କାର କରିଥିଲେ, ତାହାହିଁ ହେଲା 'କର୍ମବାଦ' । 'କର୍ମବାଦ'ର ମୂଳମନ୍ତ୍ର ହେଲା ଏହି ଯେ, ଆମେ ଯାହା କରୁଁ ସେହି ପ୍ରତ୍ୟେକ କ୍ରିୟାର ଏକ ପ୍ରତିକ୍ରିୟା ଆମପାଇଁ, ଅଦୃଶ୍ୟ ହେଲେ ମଧ୍ୟ, ସାଇତା ହୋଇ ରହୁଛି । ଆମେ ଭୁଲିଗଲେ ମଧ୍ୟ ଆମକୁ ଦିନେ ସେହି ପ୍ରତିକ୍ରିୟାର ସମ୍ମୁଖୀନ ହେବାକୁ ପଡ଼ିବହିଁ ପଡ଼ିବ । ତାହା ହୁଏତ ଏ ଜୀବନରେ ଘଟିପାରେ, ନଚେତ୍ ଘଟିବ ଅନ୍ୟ କୌଣସି ଜନ୍ମରେ । ତାକୁ ଆମେ କୌଣସିମତେ ଆଡ଼େଇଦେଇ ଯାଇପାରିବାନି । ଭଲ କାମର ଭଲ ପ୍ରତିକ୍ରିୟା ବା ସୌଭାଗ୍ୟ ଏବଂ କୁକର୍ମର କୁପ୍ରତିକ୍ରିୟା ବା ଦୁର୍ଭାଗ୍ୟ ଘଟିବଇ ଘଟିବ । ଏହିପ୍ରକାରେ ଆମ ନିଜ କର୍ମସବୁର ବିପାକ ଭୋଗିବା ପାଇଁହିଁ ଆମକୁ ବାରଂବାର ଜନ୍ମ-ଜରା-ମରଣ ଭୋଗିବାକୁ ପଡ଼ୁଥିବ । ଏହାର ଫଳେ, 'କାରଣ'-ରୂପେ, ଅତି-ସୂକ୍ଷ୍ମ ହୋଇ ରହିଛି—ଆମର ଚିତ୍ତର ଅନ୍ତସ୍ତଳରେ ସୁପ୍ତ ଓ ଜାଗ୍ରତ

ଥିବା ବିବିଧ 'ତୃଷ୍ଣା' ବା ବାସନା । ଇନ୍ଦ୍ରିୟପରିତୋଷକ ବିଷୟମାନଙ୍କପ୍ରତି ଆଗ୍ରହହିଁ ବାସନା ବା ତୃଷ୍ଣା । ସେହି ତୃଷ୍ଣାର ବିନାଶରେହିଁ ଦୁଃଖର ବିନାଶ ; ଦୁଃଖର ବିନାଶହିଁ ମୁକ୍ତି ବା ନିର୍ବାଣର ଆନନ୍ଦ । ତୃଷ୍ଣା ଓ ତଜ୍ଜନିତ ବାରମ୍ବାର ଜନ୍ମ-ମରଣଭୋଗକୁ ବିନାଶ କରିବାପାଇଁହିଁ ଗୀତା ଏକ ସହଜ ଉପାୟରୂପେ ଉପସ୍ଥାପିତ କରିଛନ୍ତି—'କର୍ମଯୋଗ' । କର୍ମ କର, କିନ୍ତୁ 'ବୁଦ୍ଧିଯୁକ୍ତ' ହୋଇ, ଅହଂଶୂନ୍ୟ ଓ ବାସନାଶୂନ୍ୟ ହୋଇ ଉଚିତ କର୍ତ୍ତବ୍ୟ ଉଚିତଭାବରେ କର ଏବଂ ଫଳପ୍ରତି 'ଆସକ୍ତି' ରଖ ନାହିଁ । ତା ହେଲେ କର୍ମର ପ୍ରତିକ୍ରିୟାରୂପେ ଘଟୁଥିବା ବାରମ୍ବାର ଜନ୍ମର ଜଞ୍ଜାଳ ତୁମକୁ ଲାଗିବ ନାହିଁ । ତୁମେ ମୁକ୍ତ ହୋଇ ମୃତ୍ୟୁ-ପରେ ଦୁଃଖହୀନ ଜଞ୍ଜାଳହୀନ ଅବସ୍ଥା ଲାଭ କରିବ । ଅର୍ଥାତ୍ ତୁମ ଅନ୍ତରର ଆସକ୍ତିହୀନତାହିଁ ତୁମକୁ ଆଣିଦେବ ବାହ୍ୟବନ୍ଧନରୁ ମୁକ୍ତି । ଅହଂହୀନ ଓ ବାସନାହୀନ କର୍ମହିଁ ବୁଦ୍ଧିଯୋଗ ଓ କର୍ମଯୋଗ ।

ଏହି ଅନାସକ୍ତ କର୍ମଯୋଗର କଳ୍ପନା ଯେ ଭଗବଦ୍‌ଗୀତାରେ ଏକା-ବେଳେକେ ନୂତନ ହୋଇ ପରିବେଷିତ ହୋଇଛି, ତାହା ମଧ୍ୟ ନୁହେଁ । ଶ୍ରୀକୃଷ୍ଣ-ଅର୍ଜୁନ ସଂବାଦରୂପକ ଗୀତାର ଆରମ୍ଭର ବହୁ ପୂର୍ବରୁ ମହାଭାରତର ଉଦ୍ୟୋଗ ପର୍ବରେ, ଅର୍ଥାତ୍ ମହାଭାରତର ମହାସଂଗ୍ରାମ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ, ଏହି ଭାବଧାରା ଅନ୍ୟମାନଙ୍କ ଆଲୋଚନାରେ ମଧ୍ୟ ସ୍ପଷ୍ଟ ଦେଖା ଦେଇଥିଲା । ବନବାସ ଓ ଅଜ୍ଞାତବାସରୁ ସଦ୍ୟ ଫେରିଥିବା ସମ୍ବଳହୀନ ଯୁଧିଷ୍ଠିର ସୁପ୍ରତିଷ୍ଠିତ ସମ୍ରାଟ୍ ଦୁର୍ଯ୍ୟୋଧନଙ୍କ ସହିତ ସଂଗ୍ରାମରେ ଠିଆ ହେବା ପୂର୍ବରୁ ଫଳାଫଳ ନେଇ ଶଙ୍କିତ ହେବା ସ୍ୱାଭାବିକ । ମହାଭାରତରେ ଯୁଧିଷ୍ଠିର ସେହି-ପ୍ରକାର ଆଶଙ୍କା ପ୍ରକାଶ କରିଥିବାର ମନୋଜ୍ଞ ସ୍ୱାଭାବିକତା ବର୍ଣ୍ଣିତ ମଧ୍ୟ ଅଛି—

"ଧନଞ୍ଜୟ କଥଂ ଶକ୍ୟଂ ଅସ୍ମାଭିଃ ଯୋଦ୍ଧୁମାହବେ ?"

(ହେ ଅର୍ଜୁନ, ଏ ସଂଗ୍ରାମରେ ଆମେ କିପରି ସତରେ ଲଢ଼ି ଜୟର ଆଶା କରିବା ? )

ଅର୍ଜୁନ ଉତ୍ତର ଦେଲେ—

"ଯୁଦ୍ଧ୍ୟଧ୍ୱଂ ଅନହଂକାରା ଯତୋଧର୍ମସ୍ତତୋଜୟଃ ।"

(ଅନହଂକାର ବା ଅନାସକ୍ତ ହୋଇ ଆମେ ଯୁଦ୍ଧ କରିବା । [ମୋର ବିଶ୍ୱାସ] ଯେଉଁଠି ଧର୍ମ ଓ ନ୍ୟାୟ, ଜୟ ସେଇଠି । )

ପରବର୍ତ୍ତୀ ଶ୍ଳୋକଟିରେ ଗୀତା ଏହି ଭାବଟିକୁ ଆହୁରି ଦୃଢ଼ୀଭୂତ କରିବାକୁ ଯାଇଛନ୍ତି ।

୫୨

ଯଦା ତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି
ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ । ୫୨ ।

ଯଦା (ଯେତେବେଳେ) ତେ ବୁଦ୍ଧିଃ (ତୁମର ବୁଦ୍ଧି) ମୋହକଲିଲଂ (ଅଜ୍ଞାନତା ଅର୍ଥାତ୍ ବିଶୃଙ୍ଖଳତା ବା ଦୁର୍ବିଶ୍ୱାସରୂପକ ଦୁର୍ଗକୁ) ବ୍ୟତିତରିଷ୍ୟତି (ବିଶେଷଭାବରେ ଅତିକ୍ରମ କରି ବାହାରିଆସିବ) ତଦା (ସେତେବେଳେ) [ତୁମେ] ଶ୍ରୁତସ୍ୟ ଶ୍ରୋତବ୍ୟସ୍ୟ ଚ (ଯାହା ଶୁଣିଛ ବା ଶୁଣିବ) [ସେ ଉଭୟ ସମ୍ପର୍କରେ] ନିର୍ବେଦଂ (ବୈରାଗ୍ୟ) ଗନ୍ତାସି (ଅନୁଭବ କରିବ) ।

**ଅନୁବାଦ**

"ହେ ଅର୍ଜୁନ, ଯେତେବେଳେ ତୁମର ବୁଦ୍ଧି ମୋହ-ବା-ବାସନା-ପ୍ରଭାବିତ ବିଚାରହୀନତାର ଦୁର୍ଗକୁ ଅତିକ୍ରମ କରିଯିବ, ସେତେବେଳେ ତୁମେ ଯାହା ଶୁଣିଛ ବା ଶୁଣିବ, ଅର୍ଥାତ୍ ସାଧାରଣ ସଂସ୍କାରବଦ୍ଧ ସଂପର୍କରେ ସ୍ୱାଭାବିକ ବୈରାଗ୍ୟ ଅନୁଭବ କରିବ ।"

**ବିଶେଷ ଭାଷ୍ୟ**

ପାଠକେ ୫୦ତମ ଶ୍ଳୋକର ବିଶେଷ ଭାଷ୍ୟରେ ଦିଆଯାଇଥିବା ସୁକୃତ ଓ ଦୁଷ୍କୃତର କଥା ସ୍ମରଣ କରନ୍ତୁ । ସେଠାରେ କୁହାଯାଇଛି ଯେ, ପ୍ରତି ଦେଶ, ସମାଜ, ଧର୍ମ ବା ଗୋଷ୍ଠୀରେ ସ୍ୱାଭାବିକଭାବରେ 'ପାପ', 'ପୁଣ୍ୟ' ବା 'ସ୍ୱର୍ଗ' , 'ନରକ' ଇତ୍ୟାଦି ଗୁଡ଼ିଏ ସଂସ୍କାର ଗଢ଼ିଉଠିଥାଏ । ମନୁଷ୍ୟ ନିଜର ବୁଦ୍ଧି ପ୍ରୟୋଗ କରି ଏସବୁର ସତ୍ୟାସତ୍ୟ ନିରୂପଣ କରିବା କଥା । କିନ୍ତୁ ସାଧାରଣ ଲୋକର ସେଥିପାଇଁ ଅବକାଶ ବା ଅବସର କାହିଁ ? ସେପ୍ରକାର ମାନସିକ ବା ନୈତିକ ଶକ୍ତି ବା ଆମେ ସାଧାରଣ ଲୋକଠାରୁ ଆଶା କରିବା କିପରି ? ସାଧାରଣ ଲୋକ ତେଣୁ ବଡ଼ ହେଲାବେଳକୁ ଜନଶ୍ରୁତିରେ (ଶ୍ରୁତ ଓ ଶ୍ରୋତବ୍ୟ) ଯେଉଁ ଯେଉଁ ସଂସ୍କାରକୁ ଭେଟିଲା, ସେହିସବୁକୁ ବିନା ପ୍ରଶ୍ନରେ ମାନିନେଇ, ସମାଜର ଆଉ ଦଶ ଜଣ ଯେମିତି କରନ୍ତି, ସେହିପରି କରିଚାଲେ ।

କିନ୍ତୁ ଗୀତା କହୁଛନ୍ତି ଯେ, ଆମେ ପ୍ରତ୍ୟେକେ ଶ୍ରୁତ ବା ଶ୍ରୋତବ୍ୟ ଉପରେ ପୂର୍ଣ୍ଣ ନିର୍ଭର ନ କରି, ନିଜ ନିଜର ବୁଦ୍ଧି ପ୍ରୟୋଗ କରି, ପ୍ରତ୍ୟେକ କ୍ରିୟା ଓ ବିଶ୍ୱାସର ଯୁକ୍ତାଯୁକ୍ତତା ନିର୍ଣ୍ଣୟ କରି ସେହି ଅନୁସାରେ ନିଜକୁ ଚାଳିତ କରିବା । ଗୀତା କହୁଛନ୍ତି ଯେ, ଆମର କର୍ମ ସମାଜର ଶ୍ରୁତ-ଶ୍ରୋତବ୍ୟର ଅନୁସାରୀ ନ ହୋଇ ସ୍ୱ-ଧର୍ମ ଓ ସ୍ୱ-ବିବେକର ଅନୁସାରୀ ହେଉ ଏବଂ ଏହା ମଧ୍ୟ କହୁଛନ୍ତି ଯେ,

ଆମେ ଏପ୍ରକାର 'ବୁଦ୍ଧିଯୋଗ'ର ଅବାଧ ଅଭ୍ୟାସ କରିଗଲେ ଶେଷରେ ଦେଖିବା ଯେ, ଆମେ ଶୁଣିଆସିଥିବା ପାପ ବା ପୁଣ୍ୟ, ସ୍ୱର୍ଗ ବା ନରକ, ସୁଖ ବା ଦୁଃଖ, ଏହି ଦ୍ୱନ୍ଦ୍ୱସକଳ କେବଳ କଳ୍ପନା ବା କେବଳ ମୋହଗ୍ରସ୍ତ ଧାରଣା ଛଡ଼ା ଆଉ କିଛି ନୁହେଁ । ଏପରିସବୁକୁ ମାନିବା ହେଲା ବିଷ୍ଠରହୀନତାର, ଯାହା ଶୁଣୁଥିବା ତାହା ବିନା ବିଚାରରେ ମାନିଯିବାର, ଅଦୃଶ୍ୟ ଦୁର୍ଗ । ଆଉ ଏକ ଦୁର୍ଗ ହେଲା, ଅନିତ୍ୟକୁ ନିତ୍ୟ ଓ ଅସତ୍ୟକୁ ସତ୍ୟ ଭାବି ଇନ୍ଦ୍ରିୟ-ସୁଖ-ଜନିତ ବାସନାମାନଙ୍କୁ ଜୀବନର ପରମ ଲକ୍ଷ୍ୟ ଭାବିବା । ଏହି ଆପାତ-ଅନନ୍ତମୟ ଦୁର୍ଗଦୁଇଟିର ପାଚେରି ଡେଇଁ ବାହାରିପଡ଼ିଲେହିଁ ଆମେ ଦେଖିବା ଯେ, ଆମଠି ଜାଗତିକ ସକଳ ଅନିତ୍ୟ ବସ୍ତୁପ୍ରତି ତୃଷ୍ଣା ଓ ଆସକ୍ତି ଜଭେଇଯାଇ ତା ସ୍ଥାନରେ ଆସକ୍ତିହୀନ ଶାନ୍ତିମୟ ବୈରାଗ୍ୟ (ନିର୍ବେଦ) ଆସି-ଯାଇଛି ।

**୫୩**

ଶ୍ରୁତି-ବିପ୍ରତିପନ୍ନା ତେ ଯଦା ସ୍ଥାସ୍ୟତି ନିଶ୍ଚଳା
ସମାଧାବଚଳା ବୁଦ୍ଧିସ୍ତଦା ଯୋଗମବାପ୍ସ୍ୟସି । ୫୩ ।

ଯଦା (ଯେତେବେଳେ) ଶ୍ରୁତିବିପ୍ରତିପନ୍ନା (ଅନ୍ୟମାନଙ୍କଠାରୁ ବା ଧର୍ମଶାସ୍ତ୍ରମାନଙ୍କରେ ଥିବାର ଶୁଣିଥିବା ନାନା ଭୋଗୈଶ୍ୱର୍ଯ୍ୟ ଲାଭର ଆଶ୍ୱାସନାରେ ବିକ୍ଷିପ୍ତ) ତେ ବୁଦ୍ଧିଃ (ତୁମର ବିଚାର ଶକ୍ତି) ନିଶ୍ଚଳା (ବିକ୍ଷେପବିହୀନା ହେବ) [ଏବଂ] ସମାଧୌ (ସମାଧିରେ) ଅଚଳା ସ୍ଥାସ୍ୟତି (ସ୍ଥିର ହୋଇ ରହିବ), ତଦା (ସେତେବେଳେ ଯାଇ) ଯୋଗଂ ଅବାପ୍ସ୍ୟସି (ଯୋଗ ଲାଭ କଲ ବୋଲି ବୁଝାଯିବ) ।

## ଅନୁବାଦ

"ଯେତେବେଳେ, ହେ ଅର୍ଜୁନ, ଅନ୍ୟମାନଙ୍କଠାରୁ ବା ଶାସ୍ତ୍ରମାନଙ୍କରେ ଥିବାର ନାନା ଭୋଗୈଶ୍ୱର୍ଯ୍ୟର ଆଶ୍ୱାସନାରେ ବିକ୍ଷିପ୍ତ ତୁମର ବୁଦ୍ଧି ସେସବୁର ବିପରୀତରେ ଯାଇ ଶେଷରେ ସମାଧି ବା ଆତ୍ମଦର୍ଶନରେହିଁ ଅଚଳା ହୋଇ ରହିବ, କେବଳ ସେତେବେଳେ ଯାଇ ତୁମେ 'ଯୋଗ' ଲାଭ କଲ ବୋଲି ବୁଝାଯିବ ।"

## ବିଶେଷ ଭାଷ୍ୟ

ଏହା ପୂର୍ବ ଶ୍ଳୋକର ବିସ୍ତାର ମାତ୍ର । "ଏୟା ଏୟା କଲେ ଏପରି ଏପରି ସୁଖ-ସୌଭାଗ୍ୟସବୁ ଆସିଯିବ"—ଧର୍ମୀୟ, ସାମାଜିକ ଓ ଏବେ ରାଜନୈତିକ

ଗୋଷ୍ଠୀସବୁରୁ ମଧ୍ୟ ଆମେ ଏପ୍ରକାର ଭରସା ପ୍ରଚୁର ଶୁଣିବାକୁ ପାଇବା । ଗୀତା କହନ୍ତି ଯେ, ଏସବୁକୁ ବିନା ବିଚାରରେ ବିଶ୍ୱାସ କରିନେଇ ଆମେ ଆମର ମନକୁ କେବଳ ଅନାବଶ୍ୟକଭାବରେ ବିକ୍ଷିପ୍ତ କରି ପକାଉଁ । ମନକୁ କୌଣସି ଆଭିମୁଖ୍ୟରେ ଏକାଗ୍ର, ଏକନିଷ୍ଠ କରେଇ ପାରିବାର ଯେଉଁ ମହତ୍ତ୍ୱ ସିଦ୍ଧି, ଅହରହ ଯୁା କଥା ତା କଥାରେ ଏଣେ-ତେଣେ ଧାଁଧପଡ଼ କରିବାଦ୍ୱାରା ଆମେ ସେହି ମହତ୍ତ୍ୱ ସିଦ୍ଧିକୁହିଁ ହରାଇବସୁଁ । ଗୀତା କହନ୍ତି ଯେ, ବାହାରର ଏପରି ଶୁଣାକଥାରେ ବା ବାହ୍ୟ ଅନୁଗ୍ରହଉପରେ ବିଶ୍ୱାସ ନ କରି, ନିଜ ଶକ୍ତିରେ, ନିଜ ସାଧନାରେହିଁ ବିଶ୍ୱାସ ରଖ । ସେହି ସାଧନାର ଅନ୍ୟ ନାମହିଁ 'ଯୋଗ' । ଏହି ଯୋଗର ଶେଷ ଅବସ୍ଥା ହେଲା 'ସମାଧି', ଯେଉଁଠି ଆମର ଚିର-ବିକ୍ଷିପ୍ତ ମନ ବ୍ୟବସାୟାତ୍ମିକା ହୋଇ ପରିପୂର୍ଣ୍ଣ ଏକନିଷ୍ଠତାରେ ଅଚଳଅଟଳଭାବରେ ଦଣ୍ଡାୟମାନ ରହେ ଏବଂ ଆତ୍ମଦର୍ଶନର ପରମାଲୋକରେ ଆଲୋକିତ ହୋଇ-ଉଠେ । କେବଳ ଭାରତୀୟ ଚିନ୍ତାରାଜ୍ୟରେ ନୁହେଁ, ଗ୍ରୀକ୍ ଚିନ୍ତାରାଜ୍ୟରେ ମଧ୍ୟ ଜ୍ଞାନୀଜନମାନେ ଏହି ସିଦ୍ଧାନ୍ତରେ ପହଞ୍ଚିଥିଲେ । ପ୍ଲେଟୋ ମଧ୍ୟ 'to collect and concentrate itself in itself'—ଏକାଗ୍ରଭାବରେ ଆତ୍ମାକୁ ଆତ୍ମାରେ ପ୍ରତିଷ୍ଠିତ କରିବାକୁହିଁ ଆତ୍ମିକ ସାଧକକୁ ଉପଦେଶ ଦେଇଯାଇଛନ୍ତି । ତାହାହିଁ ଭାରତୀୟ ସମାଧି ।

୫୪

ଅର୍ଜୁନ ଉବାଚ
ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ
ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିମ୍ । ୫୪ ।

(ଅର୍ଜୁନ କହିଲେ) [ହେ] କେଶବ (ଶ୍ରୀକୃଷ୍ଣ) ସମାଧିସ୍ଥସ୍ୟ ସ୍ଥିତପ୍ରଜ୍ଞସ୍ୟ (ସମାଧିଶୀଳ ସ୍ଥିତପ୍ରଜ୍ଞ ଜନର) କା ଭାଷା (ବଚନ କିପରି) ? [ସେହି] ସ୍ଥିତଧୀଃ (ସ୍ଥିତବୁଦ୍ଧି ଲୋକ) କିଂ ପ୍ରଭାଷେତ (କଣ କହୁଥାନ୍ତି) ? କିଂ ଆସୀତ (କିପରି ବସା-ଉଠା କରନ୍ତି) ? କିଂ ବ୍ରଜେତ (କିପରି ଚଲବୁଲ କରନ୍ତି) ?

**ଅନୁବାଦ**

ବର୍ତ୍ତମାନ ଅର୍ଜୁନ କହିଲେ—"ହେ କେଶବ, ଏହିପ୍ରକାର ସମାଧିସ୍ଥ ଲୋକର କଥାବାର୍ତ୍ତା କିପରି ? ସେ କଣ କହୁଥାନ୍ତି ? କିପରି ବସା-ଉଠା

କରନ୍ତି ? କପରି ବା ଚଲାବୁଲା କରନ୍ତି ? (ଅର୍ଥାତ୍, ସେ କଣ ଆମରିପରି ସାଧାରଣ ମନୁଷ୍ୟଭବରେ ସାଧାରଣ ଜୀବନ ଯାପନ କରିଥାନ୍ତି ?" )

**ବିଶେଷ ଦ୍ରଷ୍ଟବ୍ୟ**

ଶ୍ରୀକୃଷ୍ଣ ଏପର୍ଯ୍ୟନ୍ତ ଏକ ଆଦର୍ଶ ଜୀବନ-ଦର୍ଶନର ବର୍ଣ୍ଣନାହିଁ ଦେଇ-ଚାଲିଥିଲେ । ସେ ଦର୍ଶନରେ ସାଧକ ସୁଖ-ଦୁଃଖ, ଜୟ-ପରାଜୟ, ମାନ-ଅପମାନ, ପାପ-ପୁଣ୍ୟ ଓ ସ୍ୱର୍ଗ-ନରକର ଉପରେ ରହିବାର କୁହାଯାଇଆସିଛି । ସେ ସାଧକ ଅହରହ କର୍ମରତ, କିନ୍ତୁ ଫଳପ୍ରତି ତାର ଆଖି ନାହିଁ । ତାର ପ୍ରତ୍ୟେକ କର୍ମ ବିଚାର-ବୁଦ୍ଧିଦ୍ୱାରାହିଁ ପରିଚାଳିତ—ଇହ ବା ପରଜୀବନର କୌଣସି ପ୍ରଲୋଭନଦ୍ୱାରା ନୁହେଁ । ପୁଣି କୌଣସିପ୍ରକାର ଫଳାଭିଳାଷଶୂନ୍ୟ ହୋଇ ମଧ୍ୟ କାମ କଲାବେଳେ ସେ ଲୋକ କର୍ତ୍ତବ୍ୟନିଷ୍ଠତାରେ ଯୋଗସ୍ଥ ଅର୍ଥାତ୍ କୌଣସି ବାହ୍ୟ ଆକର୍ଷଣଦ୍ୱାରା ଅବିଚଳିତ (ସମାଧିସ୍ଥ) ରହି କାମ କରିଯାନ୍ତି ।

ଅର୍ଜୁନ ଏପର୍ଯ୍ୟନ୍ତ ଏସବୁ ନୀରବରେ ଶୁଣିଚାଲିଥିଲେ । ପରିଶେଷରେ ଧୈର୍ଯ୍ୟ ହରାଇ ସେ ଅତ୍ୟନ୍ତ ସ୍ୱାଭାବିକତାରେ ପଚାରିବସିଲେ—"ଏପରି ଲୋକ କି ସମ୍ଭବ ଏ ପୃଥିବୀରେ ? ସେ କି ଆମରିପରି ଲୋକ ? 'ବୁଦ୍ଧିଯୋଗ' ବା 'ସମାଧି' ବା 'କର୍ମଯୋଗ' ଇତ୍ୟାଦି ବଡ଼ ବଡ଼ କଥା ଛାଡ଼ନ୍ତୁ । ମତେ ସିଧା କହନ୍ତୁ ତ, ଏ ଲୋକ କଣ ଆମରିପରି ବସା-ଉଠା, ଯିବା-ଆସିବା, କଥା-ଭାଷା କରନ୍ତି ? ଅର୍ଥାତ୍ ସତରେ ଆମରିପରି ସାଧାରଣ ଦୈନନ୍ଦିନ ଜୀବନ-ଯାପନଭିତରେ ଏସବୁ ସମ୍ଭବ କି ?"

ପାଠକେ, ଅର୍ଜୁନଙ୍କ ଏ ପ୍ରଶ୍ନରେ ଆଦୌ ବିସ୍ମିତ ହେବେ ନାହିଁ । କାରଣ ଆଇନ୍‌ଷ୍ଟାଇନ୍‌ଙ୍କ ପରି ଲୋକୋତ୍ତର-ପ୍ରତିଭାଯୁକ୍ତ ବୈଜ୍ଞାନିକ ମଧ୍ୟ ଆମ ବାପୁଜିଙ୍କ ସଂପର୍କରେ କହିଥିଲେ—"ଏ ଲୋକ ସମସାମୟିକ କାଳରେ ସତ୍ୟରେ ପୃଥିବୀ-ପୃଷ୍ଠରେ ଚଲା-ବୁଲା ନ କରିଥିଲେ, ଏହାର ବର୍ଣ୍ଣନା ମାତ୍ର ଶୁଣି ପର ଯୁଗର ଲୋକେ କେବେ ହେଲେ ବିଶ୍ୱାସ କରନ୍ତେ ନାହିଁ ଯେ ଏପରି ଏକ ଲୋକ ସତ୍ୟରେ ଏ ଧରାରେ ଆବିର୍ଭୂତ ହୋଇଥିଲା ।"

ଯଦିବା କଠୋର ବାସ୍ତବତାଉପରେ ଦଣ୍ଡାୟମାନ, ଗୀତା ସ୍ୱଭାବତଃ ଏକ ଆଦର୍ଶବାଦୀ ପୁସ୍ତକ । ମାଟି-କାଦୁଅଉପରେ ଠିଆ ହେଲେ ମଧ୍ୟ ମନୁଷ୍ୟର ଆଦର୍ଶଟା ସବୁବେଳେ ନଭଶ୍ଚୁମ୍ବୀ ରହିବା ଉଚିତ । ଆଦର୍ଶ ଖର୍ବ ହେଲେ, ମନୁଷ୍ୟର ଅଭିଳାଷସବୁ ହେବ ଖର୍ବୀକୃତ—ଯାହା କି ହେବ ଏକାନ୍ତ ଆତ୍ମଘାତି-ପ୍ରକ୍ରିୟା । ଗୀତା ତାହା କୌଣସିଠାରେ କରିବାକୁ ଯାଇ ନାହାନ୍ତି । ଗୀତା ଆମ

ଆଗରେ ଥୋଇଦେଇଛନ୍ତି ନରୋତ୍ତମ ବା ଲୋକୋତ୍ତର ମନୁଷ୍ୟର, ମହାମାନବର, ମହାତ୍ମାର ବା ସୁପୀରମାନଙ୍କର ଆଦର୍ଶ । ଆମେ ସେହି ଲକ୍ଷ୍ୟରେ ଯେତିକି ଯାଇପାରିବା, ଗୀତା ଆମଠୁ ଅନ୍ତତଃ ସେତିକି ମାତ୍ର ସାଧନା ଚାହାନ୍ତି, ଅଧିକ ନୁହେଁ । ଗୀତାର ପରମ ଆଶ୍ୱାସନାମୟୀ ସେହି ବାଣୀ ପାଠକେ ସର୍ବଦା ସ୍ମରଣ ରଖିବେ, ଏହି ଅଧ୍ୟାୟର ୪୦ ଶ୍ଳୋକରେ ଥିବା 'ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍' । ଏ ଧର୍ମର, ଏ ସାଧନାର ସାମାନ୍ୟ ଅଭ୍ୟାସହିଁ ଲୋକକୁ ବହୁ ସଂକଟରୁ ରକ୍ଷା କରିବ !

ଗୀତା ଉପରର ଶ୍ଳୋକରେ ପ୍ରଥମ କରି 'ସ୍ଥିତପ୍ରଜ୍ଞ' ଓ 'ସ୍ଥିତଧୀ' ଶବ୍ଦଦୁଇଟି ବ୍ୟବହାର କଲେ, ଯାହା କେବଳ ଗୀତା ଯୋଗୁହିଁ ସାର୍ବଜନୀନ ପ୍ରଚାର ଲାଭ କରିପାରିଛି । ସ୍ଥିତପ୍ରଜ୍ଞର ଅର୍ଥ, ସ୍ଥିତ ବା ସ୍ଥିର ହୋଇ ଅଛି ପ୍ରଜ୍ଞା ଯାହାର । ଗୀତାରେ ଆମେ ଅନେକ ବୌଦ୍ଧ ଭାବକଳ୍ପ ଦେଖିବାକୁ ପାଉଁ । 'ପ୍ରଜ୍ଞା' ଏକ ବିଶିଷ୍ଟ ବୌଦ୍ଧ ଭାବକଳ୍ପ । ବୌଦ୍ଧ ଧର୍ମ-ସାଧନାର ଦୁଇଟି ମୁଖ୍ୟ ସ୍ତର ହେଲା ଶୀଳ ଓ ପ୍ରଜ୍ଞା । ଶୀଳ ହେଲା ଦୈନନ୍ଦିନ ଜୀବନରେ ନୈତିକତାର ପ୍ରତିଷ୍ଠା । ପ୍ରଜ୍ଞା ହେଲା ଗୀତାର 'ବୁଦ୍ଧି', ଯାହା ଜଗତର ଅନିତ୍ୟତା ଓ ଦୁଃଖ-ମୟତା ଅବବୋଧ କରି ଆସ୍ତେ ଆସ୍ତେ ଅନ୍ତଃସ୍ଥ ତୃଷ୍ଣାସବୁକୁ ନିରୋଧ କରି ଶିଖେ । ତେଣୁ ସ୍ଥିତପ୍ରଜ୍ଞ ଯାହା, ସ୍ଥିତବୁଦ୍ଧି ବା ସ୍ଥିତଧୀ ମଧ୍ୟ ସେହି ଏକା କଥା । ଆମେ ପରେ ଏହି ଅଧ୍ୟାୟରେହିଁ ଦେଖିବା ଯେ, ଗୀତା ପ୍ରସିଦ୍ଧ ବୌଦ୍ଧ ଭାବକଳ୍ପ 'ନିର୍ବାଣ'କୁ ମଧ୍ୟ ଗ୍ରହଣ କରି ତାକୁ 'ବ୍ରହ୍ମ-ନିର୍ବାଣ' ଭାବରେ ନିଜର କରି-ନେଇଛନ୍ତି ।

୫୫

ଶ୍ରୀ ଭଗବାନ୍ ଉବାଚ
ପ୍ରଜହାତି ଯଦା କାମାନ୍ ସର୍ବାନ୍ ପାର୍ଥ ମନୋଗତାନ୍
ଆତ୍ମନ୍ୟେବାତ୍ମନା ତୁଷ୍ଟଃ ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ । ୫୫ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) ପାର୍ଥ (ହେ ଅର୍ଜୁନ) [ସାଧକ] ଆତ୍ମନି ଏବ (ଆପଣାଠାରେ) ଆତ୍ମନା ତୁଷ୍ଟଃ (ନିଜେନିଜେ ସନ୍ତୁଷ୍ଟ ରହି) ଯଦା (ଯେତେବେଳେ) ସର୍ବାନ୍ ମନୋଗତାନ୍ କାମାନ୍ (ମନଭିତରେ ଥିବା କାମନାସବୁକୁ) ପ୍ରଜହାତି (ପରିତ୍ୟାଗ କରନ୍ତି), ତଦା (ସେତେବେଳେ) [ତାଙ୍କୁ] ସ୍ଥିତପ୍ରଜ୍ଞଃ ଉଚ୍ୟତେ (ସ୍ଥିତପ୍ରଜ୍ଞ ବୋଲି କୁହାଯାଇଥାଏ) ।

## ଅନୁବାଦ

ଶ୍ରୀ ଭଗବାନ୍ କହିଲେ—"ହେ ଅର୍ଜୁନ, ଯେତେବେଳେ ସାଧକ କୌଣସି ବାହ୍ୟ ବିଷୟଦ୍ୱାରା ବିଚଳିତ ନ ହୋଇ, ଆପଣାଠାରେ ଆପେହିଁ ସନ୍ତୁଷ୍ଟ ରହି ମନୋଦ୍ଭୂତ ସକଳ କାମନାକୁ ପ୍ରତ୍ୟାଖ୍ୟାନ କରିପାରନ୍ତି, ସେତେବେଳେହିଁ ତାଙ୍କୁ ସ୍ଥିତପ୍ରଜ୍ଞ କୁହାଯାଇଥାଏ ।"

## ବିଶେଷ ଭାଷ୍ୟ

ଗୌତମ ବୁଦ୍ଧ ଏହି ସତ୍ୟ ଆବିଷ୍କାର ଓ ପ୍ରଚାର କରିଗଲେ ଯେ, ତୃଷ୍ଣା ବା ବାସନା ବା କାମନାହିଁ ମନୁଷ୍ୟର ସକଳ ଦୁଃଖର କାରଣ । ସେହି ତୃଷ୍ଣାର ନିଃଶେଷ ବିନାଶହିଁ 'ନିର୍ବାଣ' । ତାହାହିଁ 'ବୋଧି' । ଗୀତା ମଧ୍ୟ ଠିକ୍ ସେୟା କହୁଛନ୍ତି । ଯେପର୍ଯ୍ୟନ୍ତ ଆମ ଭିତରର ସୂକ୍ଷ୍ମତମ ସ୍ତରରେ ଗୋଟିଏ ହେଲେ କୌଣସି ତୃଷ୍ଣା ବା ବାସନା ବା କାମନା ରହିଯାଇଛି, ସେପର୍ଯ୍ୟନ୍ତ ଆମର ସ୍ଥିତପ୍ରଜ୍ଞ ବା 'ସ୍ଥିତଧୀ' ହେବା ଅସମ୍ଭବ । ପାଠକେ ଲକ୍ଷ୍ୟ କରନ୍ତୁ, ଗୀତା କାହିଁକି କହିଛନ୍ତି "ସର୍ବାନ୍ କାମାନ୍"—ସମସ୍ତ କାମନା-ବାସନା ବା ସମସ୍ତ ଉଚ୍ଚାଶାର୍ (desire) ପରିହାର କରିବାକୁ । ଏହା ଯେତେ ସହଜ ବୋଲି ମନେ ହେବ, ସତରେ ଯେ ତାହା ସେତେ ସହଜ, ଆଦୌ ନୁହେଁ, ପାଠକେ ସ୍ମରଣ ରଖିବେ । ଆମ ଭିତରର ଚେତନ ସ୍ତର ଅତି ପତଳା । ଚେତନର ତଳେ ଯେଉଁ ଅବଚେତନ ସ୍ତର ରହିଛି, ସେଇଠି ଆମର ଜନ୍ମ-ଜନ୍ମାନ୍ତର-ବାହିତ ଇଚ୍ଛା, ତୃଷ୍ଣା ବା ପ୍ରବୃତ୍ତି-ସବୁ ବସା ବାନ୍ଧି ରହିଛନ୍ତି । ଆମେ ବାହାରକୁ ଯେପରି ଭଦ୍ର, ସେମାନେ ବି ସେହିପରି ଭଦ୍ର । କିନ୍ତୁ ଆମେ ଅଜାଗ୍ରତ ହୋଇପଡ଼ି ସେମାନଙ୍କୁ କୌଣସି ଅନୁକୂଳ ଅବସ୍ଥାରେ ପହଞ୍ଚାଇଦେଲାମାତ୍ରେ, ଆମରି ସେହି ପୂର୍ବ-ପୂର୍ବ-ଜନ୍ମାର୍ଜିତ ଆଦିମ, ଜାନ୍ତବ ବାସନା-କାମନାସବୁ ଉଲଗ୍ନ ହୋଇ ଭୋଗପାଇଁ ଡେଇଁ-ପଡ଼ିବେ । ଗୀତା ସେଇଥିପାଇଁ 'ସର୍ବାନ୍ କାମାନ୍'ର କଥା କହିଛନ୍ତି । 'ସକଳ କାମନା' ନିଃଶେଷଭାବରେ ପରିତ୍ୟକ୍ତ ହୋଇପାରିଲେ ଯାଇ ଲୋକ ପ୍ରକୃତରେ 'ସ୍ଥିତପ୍ରଜ୍ଞ' ହୋଇପାରିବ । ବାସନା-ପରିତ୍ୟାଗହିଁ ମୋକ୍ଷ । ବାସନାଧୀନତାହିଁ ଜନ୍ମ-ଜରା-ମରଣର ବାରମ୍ବାର ହେତୁ । ଗୀତା ନିଷ୍କାମ, ନିରହଂକାର କର୍ମଯୋଗକୁହିଁ ବାସନା-ବିନାଶର ସହଜତମ ପନ୍ଥାରୂପେ ପରିବେଷିତ କରିଛନ୍ତି ।

୫୬

ଦୁଃଖେଷ୍ୱନୁଦ୍‌ବିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ
ବୀତରାଗଭୟକ୍ରୋଧଃ ସ୍ଥିତଧୀର୍ମୁନିରୁଚ୍ୟତେ । ୫୬ ।

[ଯେ] ଦୁଃଖେଷୁ (ଦୁଃଖଦୁର୍ଦ୍ଦଶାରେ) ଅନୁଦ୍‌ବିଗ୍ନମନାଃ (ଅବିଚଳିତ) ସୁଖେଷୁ ବିଗତସ୍ପୃହଃ [ଏବଂ] (ସୁଖରେ ଉତ୍ସାହଶୂନ୍ୟ) [ପୁଣି] ବୀତରାଗଭୟକ୍ରୋଧଃ (ଯାହାର ଆସକ୍ତି, ଭୟ ବା କ୍ରୋଧ ବୋଲି କିଛି ନାହିଁ) [ସେପରି ଲୋକଙ୍କୁହିଁ] ମୁନିଃ ସ୍ଥିତଧୀଃ ଉଚ୍ୟତେ (ମୁନି ଓ ସ୍ଥିତଧୀ କୁହାଯାଏ) ।

## ଅନୁବାଦ

"ଯେ ଦୁଃଖଦୁର୍ଦ୍ଦଶାରେ ମଧ୍ୟ ଅବିଚଳିତ, ସୁଖ-ସୌଭାଗ୍ୟରେ ଉତ୍ସାହ-ଶୂନ୍ୟ, ପୁଣି ଯେ ଭୟ-କ୍ରୋଧ-ଆସକ୍ତି ଶୂନ୍ୟ ସେହିପରି ଲୋକଙ୍କୁହିଁ ସ୍ଥିତଧୀ ମୁନି କୁହାଯାଏ ।"

## ବିଶେଷ ଭାଷ୍ୟ

ସ୍ଥିତଧୀ ଲୋକ ସକଳ ତୃଷ୍ଣା-କାମନାର ଅତୀତ ହୋଇଉଠିଛନ୍ତି ବୋଲି କିପରି ବାହାରକୁ ଜଣାପିବ ? ତୁମ ଆମ ଭଳି ସାଧାରଣ ମନୁଷ୍ୟ, ଯେଉଁମାନେକି ସ୍ଥିତଧୀ ନୁହନ୍ତି ସେମାନଙ୍କର ଲକ୍ଷଣ ଯାହା, ସ୍ଥିତଧୀ ନିଶ୍ଚୟ ତାର ବିପରୀତ ହେବେ । ଆମର ଦୈନନ୍ଦିନ ବ୍ୟବହାରସବୁର ମୂଳ-ଲକ୍ଷଣ କଣ ? ସେସବୁ ହେଲା—ଆସକ୍ତି, ଭୟ, ଆଶଙ୍କା, କ୍ରୋଧ ଏବଂ କୌଣସି ଘଟନାରେ ଆତ୍ମହରା ହୋଇଉଠିବା ବା ଆଉ କୌଣସି ଘଟନାରେ ଧୈର୍ଯ୍ୟ ହରାଇବା ଇତ୍ୟାଦି ଇତ୍ୟାଦି । କିନ୍ତୁ ମୁନି, ମହାତ୍ମା ବା ସ୍ଥିତଧୀ ଲୋକେ ସକଳ ଘଟନାପ୍ରବାହ-ଭିତରେ ସମ୍ପୂର୍ଣ୍ଣ ସମାନ, ନିର୍ବିକାର ଓ ନିଃସଙ୍ଗହିଁ ରହିବାର ଆମେ ଦେଖିବା । ଜୀବନ ସୁଖ-ଦୁଃଖର ମିଶ୍ରିତ ପ୍ରବାହ । ସେଥିପ୍ରତି ସମଭାବାପନ୍ନ ରହିବାହିଁ ପ୍ରକୃତ ବୁଦ୍ଧିଯୋଗ, ପ୍ରକୃତ ସ୍ଥିତପ୍ରଜ୍ଞତା ।

ବାପୁଜିଙ୍କଠାରେ ଏହିପ୍ରକାର ଚୈତ୍ତିକ ସମତା ଦେଖି ତାଙ୍କ ପାଖ-ଲୋକେ ପରମ ବିସ୍ମିତ ହେଉଥିବାର ଜଣାଅଛି । ଗୀତା ତେଣୁ କାଳ୍ପନିକ କିଛି ବର୍ଣ୍ଣନା କରି ନାହାନ୍ତି । କାରଣ ଏହି ଚରମ ଯାନ୍ତ୍ରିକ, ନିରୀଶ୍ୱର ଯୁଗରେ ମଧ୍ୟ ଆମେ ଗୀତା-ବର୍ଣ୍ଣିତ ଏକ ଜୀବନ୍ତ ସ୍ଥିତଧୀ, ସ୍ଥିତପ୍ରଜ୍ଞ ଲୋକଙ୍କୁ ଦେଖିଛୁଁ । ଏବଂ ଠିକ୍ ସେହି ଗୁଣ ଯୋଗୁଁହିଁ, କେବଳ ଆମେ ନୋହୁଁ, ସମଗ୍ର ବିଶ୍ୱ ସେ ଲୋକଙ୍କୁ ସସମ୍ମାନ ନମସ୍କୃତି ଜଣାଇଛି ।

ପାଠକେ ଲକ୍ଷ୍ୟ କରନ୍ତୁ ଯେ, ଆମର ମନ ବିଚଳିତ ହେବାର କିନୋଟି

ମୂଳ-ହେତୁକୁ ଗୀତା ଉପର ଠଉରାଇ ଏଠାରେ ନିବଦ୍ଧ କରିଛନ୍ତି । ସେଗୁଡ଼ିକ ହେଲା—ରାଗ (କାମ ବା ଆସକ୍ତି), ଭୟ ଓ କ୍ରୋଧ । ପାଠକେ ଆତ୍ମପରୀକ୍ଷା କଲେ ସହଜରେ ଦେଖିପାରିବେ ଯେ, ଏହି ତିନୋଟି କାରଣରୁ ତାଙ୍କର ସକଳ ଦୁର୍ମନସ୍କତାର ପଶ୍ଚାତରେ ବର୍ତ୍ତମାନ । ତେଣୁ 'ବୀତରାଗଭୟକ୍ରୋଧ' ହେବାହିଁ ପ୍ରତ୍ୟେକ ପାଠକ-ପାଠିକାର ଆଦର୍ଶ ହେବା ଉଚିତ ।

୫୭

ଯଃ ସର୍ବତ୍ରାନଭିସ୍ନେହସ୍ତତ୍ତତ୍ ପ୍ରାପ୍ୟ ଶୁଭାଶୁଭମ୍
ନାଭିନନ୍ଦତି ନ ଦ୍ୱେଷ୍ଟି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୭ ।

ଯଃ (ଯେ) ସର୍ବତ୍ର (ସବୁ ବିଷୟରେ) ଅନଭିସ୍ନେହଃ (ସ୍ନେହହୀନ ବା ମମତାହୀନ), ତତ୍ ତତ୍ (ଅମୁକ ଅମୁକ) ଶୁଭାଶୁଭଂ (ଶୁଭ ବା ଅଶୁଭ ବିଷୟ) ପ୍ରାପ୍ୟ (ପାଇ) ନ ଅଭିନନ୍ଦତି ନ ଦ୍ୱେଷ୍ଟି (ଖୁସି ହୁଅନ୍ତିନି, କି କାହାପ୍ରତି ଦ୍ୱେଷ ପ୍ରକାଶ କରନ୍ତିନି), ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା (ତାଙ୍କର ପ୍ରଜ୍ଞା ପ୍ରତିଷ୍ଠିତ ବୋଲି ବୁଝାଯିବ) ।

**ଅନୁବାଦ**

"ହେ ଅର୍ଜୁନ, ଯେ ସବୁ ବିଷୟରେ ଆସକ୍ତିଶୂନ୍ୟ ଏବଂ ଯେ ଅନୁକୂଳ ଘଟଣାରେ ଆନନ୍ଦିତ ବା ପ୍ରତିକୂଳ ଘଟଣାରେ ବିରକ୍ତ ହୁଅନ୍ତି ନାହିଁ, କେବଳ ସେହିପରି ଲୋକଙ୍କର ପ୍ରଜ୍ଞା ପ୍ରତିଷ୍ଠିତ ବୋଲି ଜାଣିବ ।

**ବିଶେଷ ଭାଷ୍ୟ**

ଏହା ପୂର୍ବ ଶ୍ଳୋକର ନିମିକ ବିକାଶ ମାତ୍ର । "ଯେଉଁ ଲୋକ ପାହାଡ଼-ଉପରକୁ ଉଠିଯାଏ, ତାକୁ ତଳର ଡେଙ୍ଗା ଗଛ, ଘାସ, ଖାଲ, ଢିପ—ସବୁ ଏକାଭଳି ଦେଖାଯାନ୍ତି । ସେହିପରି ବ୍ରହ୍ମଜ୍ଞାନୀ ସବୁଠି କେବଳ ଈଶ୍ୱରଙ୍କୁ ଦେଖିଥାନ୍ତି । ତାଙ୍କ ଆଖିରେ ଭଲ-ମନ୍ଦ, ଉଚ୍ଚ-ନୀଚର ଭେଦ ନ ଥାଏ ।"—ଶ୍ରୀରାମକୃଷ୍ଣ ।

୫୮

ଯଦା ସଂହରତେ ଚାୟଂ କୂର୍ମୋଽଙ୍ଗାନୀବ ସର୍ବଶଃ,
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୮ ।

ଯଦା (ଯେତେବେଳେ) ଅୟଂ (ଏହି ଲୋକ) ଇନ୍ଦ୍ରିୟାଣି (ନିଜର ଇନ୍ଦ୍ରିୟମାନଙ୍କୁ) ଇନ୍ଦ୍ରିୟାର୍ଥେଭ୍ୟଃ (ଭିନ୍ନ ଭିନ୍ନ ଇନ୍ଦ୍ରିୟର ଭିନ୍ନ ଭିନ୍ନ ଭୋଗ୍ୟ

ଭୋଗ୍ୟ ବିଷୟରୁ) କୂର୍ମଃ (କଇଁଛ) ଅଙ୍ଗାନି ଇବ (ନିଜ ଅଙ୍ଗସବୁକୁ) [ସଂହରଣ କରିପରି] ସର୍ବଶଃ ସଂହରତି (ସମଗ୍ରଭାବରେ ଟାଣିଆଣିପାରନ୍ତି) [ସେତେବେଳେ] ତସ୍ୟ (ତାଙ୍କର) ପ୍ରଜ୍ଞା ପ୍ରତିଷ୍ଠିତା (ପ୍ରଜ୍ଞା ପ୍ରତିଷ୍ଠିତ ବୋଲି ବୁଝାଯିବ)।

## ଅନୁବାଦ

"ହେ ପାର୍ଥ, କଇଁଛ ତାର ଅଙ୍ଗପ୍ରତ୍ୟଙ୍ଗସବୁକୁ ସଂହରଣ କରିନେଲା ପରି ଏହି ଲୋକ (ସାଧକ) ଯେତେବେଳେ ନିଜର ଇନ୍ଦ୍ରିୟମାନଙ୍କୁ ସେମାନଙ୍କର ଭୋଗ୍ୟ ବିଷୟମାନଙ୍କରୁ ନିଜ ଇଚ୍ଛାନୁସାରେ ଟାଣିଆଣିପାରନ୍ତି, ସେତେବେଳେହିଁ ତାଙ୍କର ପ୍ରଜ୍ଞା ସ୍ଥିର ବା ପ୍ରତିଷ୍ଠିତ ବୋଲି ଧରିବିବ ।"

## ବିଶେଷ ଦ୍ରଷ୍ଟବ୍ୟ

କୂର୍ମର ଉପମାଟି ଏ ସଂପର୍କରେ ଅତି ଚମତ୍କାର । ଏହି ଉପମାଟିହିଁ ଏହି ଶ୍ଳୋକଟିକୁ ବିଶ୍ୟାତ କରିପକାଇଛି । ଏହାର ବ୍ୟଞ୍ଜନା ଅତି ସୂକ୍ଷ୍ମ । ପାଠକେ ସ୍ମରଣ ରଖିବେ ଯେ, ସାଧାରଣତଃ ଆମ ଇନ୍ଦ୍ରିୟସବୁ ଆମର ଆୟତ୍ତରେ ତ ନ ଥାନ୍ତି, ବରଂ ଆମେହିଁ ତାଙ୍କର ଇଚ୍ଛା ଓ ଆଦେଶ ପାଳନକୁ 'ଜୀବନ' ବୋଲି ମନେ କରି ଚାଲିଥାଉଁ ଏବଂ ପରିଣାମରେ ନିଜପାଇଁ କେବଳ ଗୁଡ଼ିଏ ଦୁଃଖ ଓ ଜଞ୍ଜାଳ ଅର୍ଜିଥାଉଁ । ତୃଷ୍ଣା ବା ବାସନାସବୁକୁ ଜୟ କରିବାକୁ ହେଲେ ଇନ୍ଦ୍ରିୟସବୁର ଆଜ୍ଞାବହ ଦାସ ନ ହୋଇ ସେଗୁଡ଼ିକୁ ଆମର ସଂପୂର୍ଣ୍ଣ ଆୟତ୍ତାଧୀନ କରିବା ଏକାନ୍ତ ଆବଶ୍ୟକ । ଇନ୍ଦ୍ରିୟ ବଶୀଭୂତ କରିବାର ଅର୍ଥ ନୁହେଁ 'ସେଗୁଡ଼ିକର ବିନାଶ' । କୂର୍ମ ଓ କୂର୍ମର ଇନ୍ଦ୍ରିୟମାନଙ୍କ ଭିତରେ ଯେଉଁ ସଂବନ୍ଧ, ଆମେ ଓ ଆମର ଇନ୍ଦ୍ରିୟଭିତରେ ସେହି ସଂବନ୍ଧ ରହିବା ଉଚିତ । କୂର୍ମର ଇନ୍ଦ୍ରିୟସବୁ ତାର ସଂପୂର୍ଣ୍ଣ ଇଚ୍ଛାଧୀନ । ଦରକାର ପଡ଼ିଲେ ସେ ସେଗୁଡ଼ିକୁ ବ୍ୟବହାର କରିବ, ଦରକାର ପଡ଼ିଲେ ସେଗୁଡ଼ିକୁ ମଧ୍ୟ ପ୍ରତ୍ୟାହାର କରିନେବ । ଦୃଷ୍ଟାନ୍ତସ୍ୱରୂପ, ବଞ୍ଚିବାପାଇଁ ଆମର ତ ଖାଇବା ଏକାନ୍ତ ଆବଶ୍ୟକ ; ତେଣୁ ରସନା-ସଂଯମର ଅର୍ଥ ନୁହେଁ ଏକାବେଳକେ 'ଖାଇବା ବନ୍ଦ କରିଦେବା' । କିନ୍ତୁ ଆମେ ରସନା-ଲାଳସାରେ ଯାହା ଆମର ସ୍ୱାସ୍ଥ୍ୟହାନିକର ତାହା ମଧ୍ୟ ଗିଳିଚାଲୁଁ ଏବଂ ଦୁଃଖ ଭୋଗୁଁ । ସ୍ଥିତପ୍ରଜ୍ଞ ଲୋକର ରସନା ଏପରି ସ୍ୱେଚ୍ଛାଚାରୀ କରିପାରେ ନା । ବୁଝାଯାଇଥାଏ ଯେ, ବାପୁଜି ଜିହ୍ୱା-ଲାଳସାକୁ ସଂପୂର୍ଣ୍ଣ ଆୟତ୍ତ କରିପାରିଥିଲେ । ତାର ଅର୍ଥ ନୁହେଁ ଯେ, ସେ କିଛି ଖାଉ ନ ଥିଲେ । ବରଂ ତାଙ୍କର କର୍ମଶକ୍ତିର ପ୍ରୟୋଜନାନୁଯାୟୀ ଯାହା ଏକାନ୍ତ ଆବଶ୍ୟକ, ତାହା ସେ ଯୋଗାଡ଼ କରି ଖାଉଥିଲେ । ତାଙ୍କ ରସନା ଏକାନ୍ତଭାବରେ ତାଙ୍କ ପ୍ରୟୋଜନର ଦାସ

ଥିଲା । ସେ ଆମ ସାଧାରଣଙ୍କ ପରି ରସନାର ଦାସ ନ ଥିଲେ ।

ଇନ୍ଦ୍ରିୟମାନଙ୍କୁ ଭୋଗ୍ୟ ବିଷୟମାନଙ୍କରୁ ନିଜ ଇଚ୍ଛାମତେ ଟାଣି-ଆଣିବାର ଯୌଗିକ ଶବ୍ଦ ହେଲା—ପ୍ରତ୍ୟାହାର ।

"ବିଷଧର ସର୍ପ ମନୁଷ୍ୟଙ୍କୁ ଦଂଶନ କରି ମାରିଦେଇପାରେ ; କିନ୍ତୁ ସେମାନେ ସାପୁଆ କେଳା ନିକଟରେ କିଛି ନୁହନ୍ତି । ବିଷଧର ସର୍ପ କେଳାର ଦେହରେ ଗୁଡ଼ାଇହୋଇ ରାଗରେ ଗର୍ଜନ କରୁଥିବେ ସତେ, ତାର କିଛି ଅନିଷ୍ଟ କରିପାରିବେ ନାହିଁ । ସାଧାରଣ ନରନାରୀପ୍ରତି ଇନ୍ଦ୍ରିୟ-ସୁଖ ବିଷଧର ସର୍ପ ପରି । କିନ୍ତୁ ଆତ୍ମଜ୍ଞାନୀ ପାଖରେ ସେମାନେ ସଂପୂର୍ଣ୍ଣ ବଶୀଭୂତ ।"—ଶ୍ରୀରାମକୃଷ୍ଣ

୫୯

ବିଷୟା ବିନିବର୍ତ୍ତନ୍ତେ ନିରାହାରସ୍ୟ ଦେହିନଃ
ରସବର୍ଜଂ ରସୋଽପ୍ୟସ୍ୟ ପରଂ ଦୃଷ୍ଟ୍ୱା ନିବର୍ତ୍ତତେ । ୫୯ ।

ନିରାହାରସ୍ୟ ଦେହିନଃ (ଇନ୍ଦ୍ରିୟଭୋଗ-ପରାଙ୍ମୁଖ ଲୋକର ବା ଲୋକଠାରୁ) [କ୍ରମେ] ବିଷୟାଃ (ଇନ୍ଦ୍ରିୟମାନଙ୍କର ଉପଭୋଗ୍ୟ ବିଷୟସବୁ ବା ସେମାନଙ୍କର ଆକର୍ଷଣସବୁ) ବିନିବର୍ତ୍ତନ୍ତେ (ମୁହଁ ଫେରାଇ ଚାଲିଯାଆନ୍ତି) । [କିନ୍ତୁ] [କେବଳ] ପରଂ ଦୃଷ୍ଟ୍ୱା (ପରମପୁରୁଷଙ୍କୁ ଦେଖିଲେ ଯାଇ) ଅସ୍ୟ (ସେହି ସାଧକର) ରସବର୍ଜଂ ରସଃ ଅପି (ରସ ବ୍ୟତୀତ ଅର୍ଥାତ୍ ବାହ୍ୟ ବିଷୟ ଉପସ୍ଥିତ ନ ଥିଲେ ମଧ୍ୟ, ସେହି ବିଷୟର ରସ ବା ଭୋଗର ଯେଉଁ ସୂକ୍ଷ୍ମ ଲାଳସାଟା ଅବଚେତନରେ ରହିଯାଏ, ତାହା ମଧ୍ୟ) ନିବର୍ତ୍ତତେ ( ଉଭେଇ-ଯାଏ ) ।

## ଅନୁବାଦ

"ହେ ପାର୍ଥ, ପୁଣି ଜାଣିରଖ ଯେ, ଅନେକ ସମୟରେ ବାହ୍ୟତଃ ଇନ୍ଦ୍ରିୟ-ଭୋଗ-ପରାଙ୍ମୁଖ ଲୋକଠାରୁ ଉପଭୋଗ୍ୟ ବିଷୟସବୁର ଆକର୍ଷଣ ଚାଲିଯାଇଥିବା ପରି ବୋଧ ହେଲେ ମଧ୍ୟ, ସେହି ସେହି ଭୋଗର ସୂକ୍ଷ୍ମ ଲାଳସା ତାଙ୍କର ଅବଚେତନ ଚିତ୍ତରେ ରହିଥାଏ ଏବଂ ତାହା ସଂପୂର୍ଣ୍ଣ ଦୂରୀଭୂତ ହେବ କେବଳ ସାଧକର ଅନ୍ତଃସ୍ଥ ପରମପୁରୁଷଙ୍କୁ ଭେଟିବାଦ୍ୱାରା ।"

## ବିଶେଷ ଭାଷ୍ୟ

ଆମର ଇନ୍ଦ୍ରିୟସବୁ ସ୍ୱାଭାବିକଭାବରେ ବହିର୍ମୁଖୀ । ସେଗୁଡ଼ିକ ନିଜ ନିଜର ପ୍ରୀତିକର ବିଷୟ ଅହରହ ଖୋଜିବୁଲୁଥାନ୍ତି ଓ ଦେଖିଲେ ବା ପାଇଲେ

ଅସମ୍ଭାଳ ହୋଇ ସେହି ଆଡ଼କୁ ଧାଆନ୍ତି । ଆମ ଇନ୍ଦ୍ରିୟଗୁଡ଼ିକର ନିଜର କର୍ତ୍ତୃତ୍ୱ କିଛି ନାହିଁ, ଯଦି ସେହିପରି ଥିବାର ଜଣାଯାଏ । ପ୍ରକୃତ କର୍ତ୍ତା ଆମର ମନ । ଆମେ ଆମର କୌଣସି ଦୁରଭ୍ୟାସ(ମଦ୍ୟପାନ, ଧୂମପାନ ବା ମାଂସଭକ୍ଷଣ)କୁ ଆୟତ୍ତ କରିବାକୁ ବସିଲେ ସେ ଦିଗରେ ପ୍ରଥମ ପଦକ୍ଷେପ ହେବ ସେହି ସେହି ପ୍ରଲୋଭନଠାରୁ ନିଜକୁ ଦୂରେଇ ରଖିବା । ଫଳରେ କିଛି କାଳପରେ ଆମେ ଦେଖିବା, ପୂର୍ବେ ସେଗୁଡ଼ିକ ଦେଖିଲାମାତ୍ରେ ଆମେ ଯେପରି ଅସମ୍ଭାଳଭାବରେ ଉତ୍ତେଜିତ ହେଉଥିଲୁଁ, ସେପରି ଆଉ ହେଉନାହିଁ । କିନ୍ତୁ ଆମର ଅବଚେତନ ମନରେ ସେହି ସେହି ସୁଖର ସୂକ୍ଷ୍ମ ଅଭିଳାଷର—ମୋହ ଲାଗିରହିଥାଏ । ବନ୍ଦୀ, ଅନେକ ଭୋଗରୁ ଦୂରରେ ଥାଏ ସତ, କିନ୍ତୁ ତା ଅନ୍ତରରେ ସେସବୁପ୍ରତି ଲାଳସା କ'ଣ ମରିଯାଇ ନ ଥାଏ ? ସେହିପରି ମଧ୍ୟ ରୋଗୀର ମାନସିକ ଅବସ୍ଥା । ଭଲ ହୋଇଗଲେ କ'ଣ ଖାଇବ, କ'ଣ ଭୋଗ କରିବ, ତାହା ସେ ଭାବୁଥାଏ । ତେବେ, କିପରି ଆମେ ଏ ଲାଳସାରୁ ମୁକ୍ତ ହେବା ?

ଗୀତା ଏଥିପାଇଁ ଏଠାରେ ଏକ ମୌଳିକ ମନସ୍ତାତ୍ତ୍ୱିକ ତତ୍ତ୍ୱ ପ୍ରତିପାଦିତ କରିଛନ୍ତି ।

ଯେକୌଣସି ସିଦ୍ଧିପାଇଁ ନେଗେଟିଭ୍ (ନାସ୍ତ୍ୟାତ୍ମକ) ଓ ପଜିଟିଭ୍ (ଅସ୍ତ୍ୟାତ୍ମକ) ଦୁଇପ୍ରକାର ମାର୍ଗ ଥାଏ । ଅଥବା ଗୋଟିଏ ଚିନ୍ତାଧାରା ପଜିଟିଭ୍ ଓ ନେଗେଟିଭ୍ ଏହି ଉଭୟ ରୀତିରେ ମଧ୍ୟ ପ୍ରକାଶିତ ହୋଇଥାଏ । କୌଣସି ପବିତ୍ର ଭାବ ବା ପଦାର୍ଥ ବା ବ୍ୟକ୍ତିପାଇଁ ଆମ ମନରେ ଯେଉଁ ଆକର୍ଷଣ ଦେଖାଯାଇଥାଏ, ତାହାହିଁ ପ୍ରକାଶ ପାଏ ପାପ ଓ ଅନୈତିକତାପାଇଁ, ଘୃଣାରେ ।

ଲାଳସାଜୟର ଏକ ଉପାୟ ହେଲା ନିବୃତ୍ତି-ସାଧନା । କିନ୍ତୁ ଆଉ ଏକ ଉପାୟ ହେଉଛି ତାର ବିପରୀତ ଭାବନାର ସାଧନା । ବୌଦ୍ଧଧର୍ମରେ ଏହା କୁଶଳ ଓ ଅକୁଶଳ ଭାବନା ନାମରେ ଜ୍ଞାତ । କାହାପ୍ରତି ଦ୍ୱେଷ ବା ଘୃଣା ହେଲା ଅକୁଶଳ ଭାବନା । ଯାହାକୁ ପରିପୂର୍ଣ୍ଣଭାବରେ ଜୟ କରିବାକୁ ହେଲେ କେବଳ ଦ୍ୱେଷଭାବର (ଘୃଣା, କ୍ରୋଧ, ଈର୍ଷା ଇତ୍ୟାଦିର) ସଂଯମ ଯଥେଷ୍ଟ ନୁହେଁ, ତାର ବିପରୀତ ଗୁଣ 'ମୈତ୍ରୀ' ଓ 'କରୁଣା' ମଧ୍ୟ ଆମକୁ ଅଭ୍ୟାସ କରିବାକୁ ହେବ ।

ଗୀତା ଈଶ୍ୱର-କୈନ୍ଦ୍ରିକ ଓ ଈଶ୍ୱର-ପ୍ରଗ୍ରାହକ ଗ୍ରନ୍ଥ । ଈଶ୍ୱର ସର୍ବ ଗୁଣ ଓ ସର୍ବ ଐଶ୍ୱର୍ଯ୍ୟର ଆଧାର । ସେ ସକଳ ଆନନ୍ଦର ଉତ୍ସସ୍ୱରୂପ । ଗୀତା ତେଣୁ ଏଠାରେ କହୁଛନ୍ତି ଯେ, ସାଧକ ନିବୃତ୍ତି-ସାଧନା କରିବା ସାଥେ ସାଥେ ପରମ-ପୁରୁଷଙ୍କୁ (ପରଂ, ଶ୍ରେଷ୍ଠଂ, ଈଶ୍ୱରଂ) ପ୍ରବୃତ୍ତି-ମାର୍ଗ ଦେଇ ମଧ୍ୟ ନିକଟକୁ ଟାଣିବାକୁ

ଚେଷ୍ଟା କରିବେ । ଗୀତାଙ୍କ ମତରେ ସାଧକ 'ସଂପୂର୍ଣ୍ଣରୂପେ' ବାସନା-ଶୂନ୍ୟ ହେବେ ସେତିକବେଳେ, ଯେତେବେଳେ ସେ ସକଳ ଅଭିଳାଷର ଉତ୍ସ, ସକଳ ସୁଖ ଓ ଆନନ୍ଦର ଆଧାର ଈଶ୍ୱରଙ୍କର ସାକ୍ଷାତ୍କାର ପାଇବେ । ତାଙ୍କୁ ପାଇଲାପରେ ଆଉ ଇତର ବାସନାପାଇଁ ମନରେ କୌଣସି ଉତ୍ସାହ ଆସିବାର କଥା ନୁହେଁ ।

ପାତଞ୍ଜଳିଙ୍କ ଯୋଗ-ଶାସ୍ତ୍ର କେତେଗୁଡ଼ିଏ ମାନସିକ ବ୍ୟାୟାମର ସୂଚନା ମାତ୍ର । ସେସବୁରେ ଈଶ୍ୱର-ବିଶ୍ୱାସର ସଂବନ୍ଧ ନାହିଁ । ତାହା ଏକାନ୍ତରେ 'ଚିତ୍ତବୃତ୍ତି ନିରୋଧ' କରି ଚିତ୍ତକୁ ଆତ୍ମସ୍ଥ କରେଇବାର ବିଜ୍ଞାନ । କିନ୍ତୁ ଏହି ସମାଧି-ଅବସ୍ଥାପାଇଁ ଶେଷରେ ପାତଞ୍ଜଳି ମଧ୍ୟ ନିର୍ଦ୍ଦେଶ ଦେଇଛନ୍ତି—"ଈଶ୍ୱର ପ୍ରଣିଧାନୋଽପିବା" ଅର୍ଥାତ୍ ଈଶ୍ୱରଙ୍କର ଅନନ୍ୟ ଚିନ୍ତାଫଳରେ ମଧ୍ୟ ସମାଧି ଲାଭ ହେବ ।

୬୦

ଯତତୋ ହ୍ୟପି କୌନ୍ତେୟ ପୁରୁଷସ୍ୟ ବିପଶ୍ଚିତଃ
ଇନ୍ଦ୍ରିୟାଣି ପ୍ରମାଥୀନି ହରନ୍ତି ପ୍ରସଭଂ ମନଃ । ୬୦ ।

କୌନ୍ତେୟ (ହେ ଅର୍ଜ୍ଜୁନ), ପ୍ରମାଥୀନି ଇନ୍ଦ୍ରିୟାଣି (ଚିତ୍ତବିକ୍ଷେପକାରୀ ଇନ୍ଦ୍ରିୟଗୁଡ଼ାକ) ଯତତଃ (ଯତ୍ନ କରୁଥିବା) ବିପଶ୍ଚିତଃ ପୁରୁଷସ୍ୟ ଅପି (ପଣ୍ଡିତ ଲୋକର ମଧ୍ୟ) ମନଃ (ମନକୁ) ପ୍ରସଭଂ (ବଳପୂର୍ବକ) ହରନ୍ତି ହି (ଟାଣିନେଇ ଚାଲିଯାନ୍ତି) ।

## ଅନୁବାଦ

"ହେ କୌନ୍ତେୟ, ଏହି ଦୁର୍ଗମ ସାଧନାରେ ପ୍ରଯତ୍ନଶୀଳ ଜ୍ଞାନୀ ଲୋକର ଚିତ୍ତକୁ ମଧ୍ୟ ଇନ୍ଦ୍ରିୟମାନେ ବଳପୂର୍ବକ (ଅନିଚ୍ଛା ସତ୍ତ୍ୱେ) ବିଷୟଭୋଗ ଆଡ଼କୁ ଟାଣିନେଇଯାଇଥାନ୍ତି । (ସାଧାରଣ ନର-ନାରୀର ସାଧନା ତେଣୁ ଅନୁମେୟ) ।"

## ବିଶେଷ ଭାଷ୍ୟ

ଶ୍ରୀକୃଷ୍ଣ (ବା ଗୀତାକାର) ନିଜେ ଲୋକୋତ୍ତର ହେଲେହେଁ ସାଧାରଣ ମନୁଷ୍ୟର ଦୋଷ-ଦୁର୍ବଳତାପ୍ରତି କି ପରିମାଣରେ ଜାଗ୍ରତ ଥିଲେ, ତାହା ଏହି ଶ୍ଳୋକହିଁ ପ୍ରମାଣ କରୁଛି । ସେ ଅତି ଉନ୍ନତ ଆଦର୍ଶ ଆମ ଆଗରେ ଥୋଇ-ସାରିଥିଲେ ମଧ୍ୟ, ଏହି ଶ୍ଳୋକ ଦେଇ ସହାନୁଭୂତିର ସହିତ ଏହା ମଧ୍ୟ ସ୍ୱୀକାର କରୁଛନ୍ତି ଯେ, ସେହି ଆଦର୍ଶକୁ ପହଁଚିବା ସାଧାରଣ ମନୁଷ୍ୟ ପକ୍ଷରେ ଏକ ଦୁର୍ଗମ

ଯାଏ । ଏହି ଦୁର୍ଗମତାର ପ୍ରଧାନ କାରଣ, ଆମ ନିଜ ଭିତରର ମାନସିକ ସଂଘର୍ଷ । ଆମ ପ୍ରତ୍ୟେକର ଅବଚେତନ ମନରେ 'ପ୍ରକୃତି' ତାର ସକଳ ଆଦିମ ପ୍ରବୃତ୍ତି ନେଇ ପ୍ରତିଷ୍ଠିତ ଅଛି । ପ୍ରକୃତି ଚାହେଁ ନା 'ପୁରୁଷ' ତା କବଳରୁ ମୁକ୍ତ ହୋଇ ପଳାୟନ କରୁ । ତେଣୁ ପୁରୁଷର ମୁକ୍ତ ହେବାର, ନିର୍ବାଣ ଆଡ଼କୁ ଯିବାର ବା 'ମହାତ୍ମା' ହେବାର ପଥରେ ଯେତେ ବାଧା ସୃଷ୍ଟି କରାଯାଇପାରେ, ସେ ତା କରେ । ମନୁଷ୍ୟ-ମନର ପ୍ରଲୋଭନପ୍ରବଣତା, ଦୁର୍ବଳତା, ଅସଂଯମ ଆଦି ଏହି ପ୍ରକୃତି ପ୍ରତିହିଂସାରହିଁ ପ୍ରତୀକ ସ୍ୱରୂପ । ସାଧାରଣ ଲୋକ କଥା ଛାଡ଼ିଦିଅ ; ସୁପଣ୍ଡିତ ଓ ଆତ୍ମୋନ୍ନତି-ସଂପର୍କରେ-ସର୍ବଦା-ଯତ୍ନଶୀଳ ଲୋକ ମଧ୍ୟ ପ୍ରକୃତିର ତାଡ଼ନାରେ ଏକ ଏକ ମୁହୂର୍ତ୍ତର ଦୁର୍ବଳତାରେ ପୁଣି ମହିବାଠରୁ ତଳକୁ ଖସି-ଆସନ୍ତି । ଆମର ପୁରାଣମାନଙ୍କରେ ବର୍ଣ୍ଣିତ ଋଷିମାନଙ୍କର, ଅପ୍ସରାଙ୍କଦ୍ୱାରା ତପୋଭଙ୍ଗ ଚେଷ୍ଟା, ସାଧାରଣ ମନୁଷ୍ୟର ଏହି ମାନସିକ ଦୁର୍ବଳତାରହିଁ ପ୍ରତୀକ । ମହାମାନବ ଯୀଶୁଙ୍କୁ ସଇତାନ ଏବଂ ବୁଦ୍ଧଙ୍କୁ ମାର ଶେଷ ମୁହୂର୍ତ୍ତରେ ଆସି ଭେଟିବା, ଡରାଇବା ବା ପ୍ରଲୋଭନ ଦେଖାଇବା ମଧ୍ୟ ମନୁଷ୍ୟର ଅବଚେତନ ଚିତ୍ତର ସେପ୍ରକାର ଅପ୍ରତ୍ୟାଶିତ ଦୁରାଗ୍ରହସବୁର ପ୍ରତୀକ ମାତ୍ର । ବୁଦ୍ଧ, ଖ୍ରୀଷ୍ଟଙ୍କ ପରି ସବୁ ଲୋକଗୁରୁଙ୍କ ଜୀବନରେ ଏହା ଘଟୁଥିଲାବେଳେ ସାଧାରଣ ମନୁଷ୍ୟର କଥା କଣ ? ଯାହା ହେଉ, ଗୀତା ଯେ ସାଧାରଣ ମନୁଷ୍ୟର ସେହି ଦୁର୍ବଳତାପ୍ରତି ମଧ୍ୟ ସଚେତନ, ତାହାହିଁ ଲକ୍ଷ୍ୟ କରିବାର କଥା । କିନ୍ତୁ ମନେ ରଖିବାକୁ ହେବ ଯେ, ବୁଦ୍ଧ, ଖ୍ରୀଷ୍ଟ, ଗାନ୍ଧି, ସାଧାରଣ ମନୁଷ୍ୟର ସାଧାରଣ ଦୁର୍ବଳତାସବୁ ସହିତ ନିରବଚ୍ଛିନ୍ନ କଠୋର ସଂଗ୍ରାମ କରିହିଁ ଶେଷରେ ବୁଦ୍ଧ, ଖ୍ରୀଷ୍ଟ, ଗାନ୍ଧି ହୋଇଥିଲେ । ତେଣୁ ବିଫଳତା ସତ୍ତ୍ୱେ ସାଧନାକୁ ଜାଗ୍ରତ ରଖିବାକୁହିଁ ହେବ—ଏହାହିଁ ଗୀତାର ଏ ଶ୍ଲୋକର ସାବଧାନୀ ବ୍ୟଞ୍ଜନା ।

## ୬୧

ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପରଃ
ବଶେ ହି ଯସ୍ୟେନ୍ଦ୍ରିୟାଣି ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୧ ।

ତାନି ସର୍ବାଣି (ସେହି ସମସ୍ତ ଇନ୍ଦ୍ରିୟଙ୍କୁ) ସଂଯମ୍ୟ (ସଂଯତ କରି) [ଓ] ଯୁକ୍ତଃ (ଯୋଗ ସାଧକ) ମତ୍ପରଃ (ମୋର ବା ଈଶ୍ୱରଙ୍କର ଶରଣାଗତ ହୋଇ) ଆସୀତ (ରହନ୍ତୁ) । ହି (ଯେହେତୁ) ଯସ୍ୟ ଇନ୍ଦ୍ରିୟାଣି ବଶେ (ଯାହାଙ୍କର

ଇନ୍ଦ୍ରିୟସବୁ ସ୍ୱବଶୀଭୂତ) ତସ୍ୟ (ତାହାରହିଁ) ପ୍ରଜ୍ଞା ପ୍ରତିଷ୍ଠିତା (ପ୍ରଜ୍ଞା ପ୍ରତିଷ୍ଠିତ ବୋଲି କୁହାଯିବ)।

## ଅନୁବାଦ

"ହେ ଅର୍ଜ୍ଜୁନ, ସେହିସବୁ ଦୁରସ୍ତ ଇନ୍ଦ୍ରିୟମାନଙ୍କୁ ସ୍ୱ ବଶକୁ ଆଣି ଯେ ମତେ(ପରମପୁରୁଷଙ୍କୁ)ହିଁ ଶ୍ରେଷ୍ଠ ଭୋଗ୍ୟରୂପେ ଗ୍ରହଣ କରିଥାନ୍ତି, ତାଙ୍କର ପ୍ରଜ୍ଞା ପ୍ରତିଷ୍ଠିତା ବୋଲି କହିବାକୁ ହେବ।"

## ବିଶେଷ ଭାଷ୍ୟ

ଏହି ଅଧ୍ୟାୟର ପୂର୍ବବର୍ତ୍ତୀ ୫୯ ଶ୍ଳୋକରେହିଁ ଗୀତାର ବକ୍ତା ଶ୍ରୀକୃଷ୍ଣ ପ୍ରଥମ କରି 'ଈଶ୍ୱରଙ୍କୁ' (ପରଂ, ଶ୍ରେଷ୍ଠଂ)ତାଙ୍କର ଯୁକ୍ତିତର୍କଭିତରେ ପୂରେଇଲେ। ସେଠି କୁହାଗଲା ଯେ, ଦୃଢ଼ତାର ସହିତ ଭୋଗ୍ୟ-ବସ୍ତୁସବୁକୁ ପରିହାର କଲେହେଁ ସାଧକର ଭିତରୁ ଭୋଗର ସୂକ୍ଷ୍ମ ଆସ୍ୱାଦ (ରସ) ସହଜରେ ଚାଲିଯାଏ ନା ଏବଂ ତାହା 'ସମୂଳେ' ଉତ୍ପାଟିତ ହୋଇଯାଏ ସେତିକିବେଳେ, ଯେତେବେଳେ ସାଧକ 'ପରଂ' ଅର୍ଥାତ୍ ସୃଷ୍ଟିର ଯେ ଶ୍ରେଷ୍ଠ ତାଙ୍କର ଦର୍ଶନ ଲାଭ କରେ।

ଏହି ଶ୍ଳୋକରେ ମଧ୍ୟ ସେହି କଥା ପୁଣି କୁହାହୋଇଛି। ଠିକ୍ ପୂର୍ବ ଶ୍ଳୋକରେ କୁହାଗଲା ଯେ, ମନୁଷ୍ୟର ମନ ଏପରି ଦୁର୍ଦ୍ଦମିତ ଯେ ପଣ୍ଡିତ-ସାଧକମାନେ ମଧ୍ୟ ସେମାନଙ୍କ ମନକୁ ଆଗୁଳି ରଖିପାରନ୍ତି ନାହିଁ। ତେବେ ଉପାୟ କଣ ? ସୁସ୍ଥ ଓ କୁଶଳ ଚିନ୍ତାଦ୍ୱାରାହିଁ ମନର ରୁଗ୍ଣ ଓ ଅକୁଶଳ ଚିନ୍ତାସବୁକୁ ସମୂଳେ ଉତ୍ପାଟିତ କରି ହେବ। କିନ୍ତୁ କେବଳ ବାହ୍ୟ ପରିତ୍ୟାଗଦ୍ୱାରା ଆଭ୍ୟନ୍ତରୀଣ ଶୁଦ୍ଧତା ଆସିଯିବ ନାହିଁ। ତେଣୁ ଗୀତା କହୁଛନ୍ତି ଯେ, ଇନ୍ଦ୍ରିୟ-ସନ୍ତୋଷରୂପକ କ୍ରିୟାରେ ସଂଯମ ସାଥେ ସାଥେ ସାଧକକୁ ଅନ୍ତରରେ 'ମତ୍ପର' ବା 'ଈଶ୍ୱରାଶ୍ରିତ' ରହିବାକୁ ହେବ। ଏ ସଂପର୍କରେ ଶ୍ରୀରାମକୃଷ୍ଣଙ୍କର ଏହି ବାଣୀ ମଧ୍ୟ ବିଚାର୍ଯ୍ୟ— "ପ୍ରିୟ ଆତ୍ମୀୟର ମୃତ୍ୟୁ ସମୟରେ ଲୋକ ଇନ୍ଦ୍ରିୟ-ସୁଖ ଖୋଜି ନ ଥାଏ। ସେହିପରି ମନ ଈଶ୍ୱର-ପରିପୂର୍ଣ୍ଣ ହୋଇ ରହିଲେ ସେଠି ମାରି ଚିନ୍ତା ପଶିପାରିବନି।"

ଗୀତାରେ ରଥଚାଳକ ଓ ବ୍ୟାଖ୍ୟାପକ ଶ୍ରୀକୃଷ୍ଣ ନିଜକୁ ଈଶ୍ୱର ବୋଲି ଏହିଠାରେ ପ୍ରଥମ କରି ସୂଚିତ କଲେ। ପରେ ଏହାର ଅଧିକ ଆଲୋଚନା ହେବ।

### ୬୨-୬୩

ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ
ସଙ୍ଗାତ୍ ସଂଜାୟତେ କାମଃ କାମାତ୍ କ୍ରୋଧୋଽଭିଜାୟତେ। ୬୨।

କ୍ରୋଧାଦ୍‌ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତିବିଭ୍ରମଃ
ସ୍ମୃତିଭ୍ରଂଶାଦ୍‌ବୁଦ୍ଧିନାଶୋ ବୁଦ୍ଧିନାଶାତ୍ ପ୍ରଣଶ୍ୟତି । ୬୩ ।

ବିଷୟାନ୍ (ଭୋଗ୍ୟ ପଦାର୍ଥସକଳ) ଧ୍ୟାୟତଃ (ଭାବୁ ଭାବୁ) ପୁଂସଃ (ମନୁଷ୍ୟର) ତେଷୁ (ତାହାଁରେ) ସଙ୍ଗଃ (ଆସକ୍ତି) ଉପଜାୟତେ (ଜାତ ହୁଏ)। ସଙ୍ଗାତ୍ (ଆସକ୍ତିରୁ) କାମଃ (କାମନା) ସଂଜାୟତେ (ଉତ୍ପନ୍ନ ହୁଏ) । କାମାତ୍ (କାମନାରୁ, ବା କାମନା ଯଦି ସଫଳ ନ ହୁଏ ସେଥିରୁ) କ୍ରୋଧଃ ଅଭିଜାୟତେ (କ୍ରୋଧ ଜନ୍ମେ) । କ୍ରୋଧାତ୍ (କ୍ରୋଧରୁ ବା କ୍ରୋଧଜନିତ ଚିତ୍ତବିକ୍ଷେପରୁ) ସମ୍ମୋହଃ (ଅବିବେକିତା) ଭବତି (ହୁଏ) । ସମ୍ମୋହାତ୍ (ଅବିବେକିତାରୁ, ବିଚାରହୀନତାରୁ) ସ୍ମୃତିବିଭ୍ରମଃ (ସ୍ମୃତିଶକ୍ତିର ଅର୍ଥାତ୍ ଫଳ ପରଂପରା ଜ୍ଞାନ ସଂପର୍କରେ ଭ୍ରମ ସ୍ମୃତି-ଭ୍ରଂଶାତ୍ (ସ୍ମୃତିବିଭ୍ରମରୁ)ବୁଦ୍ଧିନାଶଃ (ସମଗ୍ର ବିଚାରଶକ୍ତିର ବିନାଶ) [ଘଟେ] । ବୁଦ୍ଧିନାଶାତ୍ (ବୁଦ୍ଧିନାଶରୁ) [ଲୋକ] ପ୍ରଣଶ୍ୟତି (ଏକାବେଳକେ ନଷ୍ଟ ହୁଏ) ।

## ଅନୁବାଦ

"ହେ ଅର୍ଜୁନ, ମନେ ରଖିଥିବ ଯେ ଭୋଗ-ସୁଖ ଆଦିର ଭାବନାରୁହିଁ ସେଗୁଡ଼ିକପ୍ରତି କ୍ରମେ ଆସକ୍ତି ଆସେ । ଆସକ୍ତିରୁ ସେଗୁଡ଼ିକୁ ପାଇବାର ଅଭିଳାଷ ଜାତ ହୁଏ । ଅଭିଳାଷ ବାଧା ପାଇଲେ ସେଥିରୁ ଜାତ ହୁଏ କ୍ରୋଧ । କ୍ରୋଧ ଆଣି-ଦେଇଥାଏ ବିବେକହୀନତା । ବିବେକହୀନତାରୁ ଆସେ ଆଗ-ପଛ-ସଂପର୍କ-ରୂପକ ସ୍ମୃତିର ବିନାଶ । ସ୍ମୃତିର ବିନାଶ ଆଣିଦିଏ ବୁଦ୍ଧିନାଶ । ବୁଦ୍ଧିନାଶ ଅର୍ଥ ଲୋକର ବ୍ୟକ୍ତିତ୍ୱର ଧ୍ୱଂସ ।"

## ବିଶେଷ ଭାଷ୍ୟ

ସାଧାରଣ ମନୁଷ୍ୟ କିପରି ନିଜର ଅଜ୍ଞାତସାରରେ ଆସ୍ତେ ଆସ୍ତେ ଅଧଃପତନ ଆଡ଼କୁ ଯାଏ, ଗୀତା ଏହି ଶ୍ଲୋକଦୁଇଟିରେ ତାହାହିଁ ବର୍ଣ୍ଣନା କରିଛନ୍ତି । ପୂର୍ବବର୍ତ୍ତୀ ୬୦ ଶ୍ଲୋକରେ ପଣ୍ଡିତ ଲୋକମାନଙ୍କୁ ମଧ୍ୟ ଇନ୍ଦ୍ରିୟମାନେ କିପରି ଅସଂଯତ ଓ ଅଶୋଭନୀୟ ଅବସ୍ଥାରେ ନେଇ ପକାନ୍ତି, ଗୀତା ସେଥିଲାଗି ଆଗରୁ ଆମକୁ ଚେତାବନୀ (warning) ଦେଇସାରିଛନ୍ତି । ସେଠି ଇନ୍ଦ୍ରିୟମାନେ ମନକୁ ବଳେ ବଳେ ବିପରୀତ ଦିଗକୁ ଟାଣିନିଅନ୍ତି ବୋଲି କୁହାଯାଇଛି । କିନ୍ତୁ ଏହି ଦୁଇ ଶ୍ଲୋକରେ ଆମେ ଯାହାକୁ ଆଜିକାଲି 'ଅବଚେତନ' ବା ସବ୍‌କନ୍‌ସସ୍ (sub-conscious) ଶକ୍ତିର ସୂକ୍ଷ୍ମ ପ୍ରକ୍ରିୟା ସଂପର୍କରେ ଯାହା କହିଥାନ୍ତି, ତାହାହିଁ ବର୍ଣ୍ଣିତ ହୋଇଛି । ଆମେ ପ୍ରମାଦରେ ପଡ଼ି ବେଳେ ବେଳେ ଯେଉଁ ଅସାମାଜିକ ବା ଅନୈତିକ କାମସବୁ କରିପକାଉଁ, ସେ ସମସ୍ତର ଆରମ୍ଭ ପ୍ରକୃତରେ ଇନ୍ଦ୍ରିୟ-

ମାନଙ୍କରେ ନ ଥାଏ, ଥାଏ ମନରେ । କର୍ମର ଜନନୀ ହେଉଛି 'ଭାବନା' । ଭାବନା ଏକ ମାନସିକ କ୍ରିୟା । ମନୁଷ୍ୟର ମନ, ସହଜାତ ପ୍ରବୃତ୍ତିମାନଙ୍କର ପ୍ରେରଣାରେ, ଭୋଗ୍ୟ ବିଷୟମାନଙ୍କର ରସ ବା ଆସ୍ୱାଦ କଥା ଭାବି ଭାବି ମଧ୍ୟ ସୁଖ ପାଏ । ସେହି ଭାବନାସବୁ ଆତ୍ୟନ୍ତିକ ହୋଇଉଠିଲେ, ଭୋଗ୍ୟବସ୍ତୁକୁ ଆମେ ଯେକୌଣସିମତେ ପାଇବାକୁ ଚେଷ୍ଟା କରୁଁ । ପାଇଲେ ଘଟେ ଅଧଃପତନ; ନ ପାଇଲେ କ୍ରୋଧର ଆଶ୍ରୟ ନେଉଁ ଯାହା ପୁଣି ଆଣେ ଅଧଃପତନ । ଶେଷରେ ବୁଦ୍ଧିନାଶ; ଅର୍ଥାତ୍ ଆମର ବିଚାରଶକ୍ତିକୁହିଁ ଆମେ ସଂପୂର୍ଣ୍ଣ ରୂପେ ହରାଇବସୁଁ । ତେଣୁ, ଗୀତା ଆମର ନୈତିକ ଓ ଆଧ୍ୟାତ୍ମିକ ଅଧଃପତନ ଆମର ଅଜ୍ଞାତ-ସାରରେ ଆମର ମାନସିକ ଦୁର୍ବଳତା ଦେଇହିଁ କିପରି ପଦେ ପଦେ ଘଟିଯାଏ, ତାହା ଏଠାରେ ବର୍ଣ୍ଣନ କରି ଆମର ନିଜ ନିଜର ମନପ୍ରତି ଆମେ କିପରି ସର-ଜାଗ୍ରତ ରହିବା, ସେଥିପ୍ରତିହିଁ ଆମକୁ ସାବଧାନ କରାଇଦେଇଛନ୍ତି । ମନହିଁ ସବୁ । ଆମର ପ୍ରତ୍ୟେକ ଭଲ ଓ ମନ୍ଦ କାମ ଆମର ଭଲ ଓ ମନ୍ଦ ଭାବନାର ବାହ୍ୟ ପ୍ରକଟନ ମାତ୍ର । ସାମାନ୍ୟ ଅଶ୍ୱତ୍ଥ-ବୀଜ ଆସ୍ତେ ଆସ୍ତେ ବଡ଼ ବଡ଼ କୋଠାଘରକୁ ଫଟେଇଦେବାର ଆମେ ଦେଖୁଁ । ସେହିପରି ଆମ୍ଭମାନଙ୍କ ଭାବନାର କ୍ରମିକ ପ୍ରଭାବ । ତେଣୁହିଁ 'ଧମ୍ମପଦ'ର ଆଦ୍ୟତମ ଶ୍ଳୋକରେହିଁ ବୁଦ୍ଧ କହିଛନ୍ତି—

ମନୋପୁବ୍ବଂଗମା ଧମ୍ମା ମନୋସେଟ୍‌ଠା, ମନୋମୟା
ମନସା ଚେ ପଦୁଟ୍‌ଠେନ ଭାସତି ବା କରୋତି ବା ।
ତତୋ ନ ଦୁକ୍‌ଖମନ୍ୱେତି ଚକ୍‌କଂ ବ ବହତୋପଦଂ ।

(ଆମର ବ୍ୟକ୍ତିତ୍ୱ ଆମ ମନରହିଁ ସନ୍ତାନ, ଆମର ସମଗ୍ର ସତ୍ତାରେ ମନହିଁ ମୁଖ୍ୟ । ସେ ସତ୍ତା ମନ ଦେଇହିଁ ଗଢ଼ା ଏବଂ ଆମର କର୍ମସବୁ ମୁଖ୍ୟତଃ ମନୋମୟ । କଳୁଷିତ ମନ ନେଇ ଆମେ ଯାହା କରୁଁ ବା ଏପରିକି ଯାହା ବି କହୁଁ, ସେଥିପାଇଁ ଆମ ପଛେ ପଛେ ଦୁଃଖ ଆମକୁ ଗୋଡ଼େଇବ, ଯେପରି ବଳଦ ଗୋଡ଼ ପଛେ ପଛେ ଶଗଡ଼ର ଚକ ଘୂରୁଥାଏ । )

୬୪

ରାଗଦ୍ୱେଷବିମୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍
ଆତ୍ମବଶ୍ୟୈର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି । ୬୪ ।

ରାଗଦ୍ୱେଷବିମୁକ୍ତୈଃ ତୁ ଆତ୍ମବଶ୍ୟୈଃ ଇନ୍ଦ୍ରିୟୈଃ [ କିନ୍ତୁ ] (ଚିତ୍ତ-ଭିତରୁ ଅନୁରାଗ ଓ ବିଦ୍ୱେଷକୁ ଦୂରୀଭୂତ କରି, ଆତ୍ମବଶ୍ୟ ବା ଆତ୍ମବଶୀଭୂତ ଇନ୍ଦ୍ରିୟମାନଙ୍କଦ୍ୱାରା ସଂଯତଭାବରେ) ବିଷୟାନ୍ ଚରନ୍ (ଭୋଗ୍ୟ ବିଷୟସବୁ ଉପଭୋଗ କରି) ବିଧେୟାତ୍ମା (ସଂଯତ ପୁରୁଷ) ପ୍ରସାଦଂ ଅଧିଗଚ୍ଛତି (ମାନସିକ ଶାନ୍ତି ଲାଭ କରନ୍ତି) ।

## ଅନୁବାଦ

"ତେଣୁ, ହେ ଅର୍ଜୁନ, ଯେଉଁ ଲୋକ ଏହିପରି ଘୃଣା ଓ ଆସକ୍ତି ଉଭୟରୁ ବିମୁକ୍ତ ରହି, ସ୍ୱ-ଇନ୍ଦ୍ରିୟମାନଙ୍କୁ ନିଜ ଅଧୀନରେ ରଖି, ସାଂସାରିକ ସମସ୍ତ ବିଷୟ ଅନୁଭବ କରିଚାଲନ୍ତି, ସେହି ସଂଯମୀ ପୁରୁଷଙ୍କ ଜୀବନରେ ପରମ ମାନସିକ ଶାନ୍ତି ପାଇଥାନ୍ତି ।"

## ବିଶେଷ ଭାଷ୍ୟ

ଗୀତା ଏ ଶ୍ଲୋକରେ ପର୍ବ ଶ୍ଲୋକଦ୍ୱୟର ଅର୍ଥପରିଣତିସ୍ୱରୂପ କହୁଛନ୍ତି ଯେ, ଆଗ ମନକୁ ରାଗ-ଦ୍ୱେଷ-ବିମୁକ୍ତ କରି ଏବଂ ଇନ୍ଦ୍ରିୟମାନଙ୍କୁ ସେହିପ୍ରକାରେ ନିଜର ଆୟତ୍ତକୁ ଆଣି ବିଷୟ ଉପଭୋଗ କରିଚାଲିଲେ ମଧ୍ୟ ସାଧକ ସ୍ଥିତପ୍ରଜ୍ଞ ନ ହୋଇନ୍ତୁ ପଛେ, ଅନ୍ତତଃ ପରମ ମାନସିକ ଶାନ୍ତି ଭୋଗ କରିବେ । ଅଜ୍ଞାତ-ସାରରେ ତାଙ୍କର ଅନ୍ତତଃ ଆମ ସାଧାରଣଙ୍କ ପରି 'ବୁଦ୍ଧିନାଶ' ଘଟିବାର ଆଶଙ୍କା ନାହିଁ । ଗୃହସ୍ଥ-ଜୀବନ ଯାପନ କରି ମଧ୍ୟ ଗାନ୍ଧି ଓ ଶ୍ରୀରାମକୃଷ୍ଣ ଯେଉଁ ପରମ ମାନସିକ ପ୍ରସାଦର ଅଧିକାରୀ ହୋଇଥିଲେ, ପାଠକ-ପାଠିକା ତାହା ସ୍ମରଣ କରନ୍ତୁ । ଯେଉଁ ଇନ୍ଦ୍ରିୟସବୁ ଆମ ପରି ପାଷଣ୍ଡ ସାଧାରଣଙ୍କୁ କେବଳ ପାଶବିକ ସୁଖର କଥା ସ୍ମରଣ କରାଇଥାନ୍ତି, ଶ୍ରୀରାମକୃଷ୍ଣଙ୍କୁ ସେହି ଇନ୍ଦ୍ରିୟସବୁ ଆଣିଦେଉଥିଲେ ବିସ୍ମୟକର ଈଶ୍ୱରାନୁଭବ ।

### ୬୫

ପ୍ରସାଦେ ସର୍ବ ଦୁଃଖାନାଂ ହାନିରସ୍ୟୋପଜାୟତେ
ପ୍ରସନ୍ନଚେତସୋହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ । ୬୫ ।

ଅସ୍ୟ (ଏହି ଲୋକର) ପ୍ରସାଦେ (ମାନସିକ ଶାନ୍ତିଲାଭ ଯୋଗୁଁ) ସର୍ବଦୁଃଖାନାଂ ହାନିଃ ଉପଜାୟତେ (ସମସ୍ତପ୍ରକାର ଦୁଃଖର ବିନାଶ ହୁଏ) । ହି (ଯେହେତୁ) ପ୍ରସନ୍ନଚେତସଃ (ପ୍ରସନ୍ନଚିତ୍ତ ଲୋକର) ବୁଦ୍ଧିଃ (ବୁଦ୍ଧି) [ଯେକୌଣସି ବିଷୟରେ] ଆଶୁ (ଶୀଘ୍ର) ପର୍ଯ୍ୟବତିଷ୍ଠତେ (ପ୍ରତିଷ୍ଠିତ ହୋଇଯାଏ) ।

## ଅନୁବାଦ

"ହେ ଅର୍ଜୁନ, ସେହି ସାଧକର ଇନ୍ଦ୍ରିୟ-ସଂଯମଜନିତ ମାନସିକ ପ୍ରସାଦ ଯୋଗୁଁ ସକଳପ୍ରକାର ଦୁଃଖର ଅବସାନ ହୁଏ, ଏବଂ ଚିତ୍ତ-ପ୍ରସାଦ-ସଂପନ୍ନ ବ୍ୟକ୍ତିର ବୁଦ୍ଧିହିଁ ଜୀବନର ଯେକୌଣସି ସାଧନାରେ ଶୀଘ୍ର ସୁପ୍ରତିଷ୍ଠିତ ହୋଇଯାଇଥାଏ ।"

## ବିଶେଷ ଭାଷ୍ୟ

ପୂର୍ବ ଶ୍ଳୋକରେ ଗୀତା 'ପ୍ରସାଦମଧିଗଚ୍ଛତି' କଥା ଯାହା କହିଲେ, ଏ ଶ୍ଳୋକରେ ସେହି ସଚନାଟିକୁ ସଂପ୍ରସାରଣ କରିଦେଲେ । କେହି ପଚାରିପାରେ ଯେ, ପ୍ରସାଦ ବା ମାନସିକ ଶାନ୍ତି (Psychic harmony) ପାଇ ଲାଭ କଣ ? ଇନ୍ଦ୍ରିୟ ବଶୀଭୂତ ନହେଲେ କିପରି ଶେଷରେ ମନୁଷ୍ୟର 'ବୁଦ୍ଧିନାଶ' ହୁଏ, ତାର ସୂଚନା ଗୀତା, ଆଗରୁ ଦେଇଛନ୍ତି । ତାପରେ, ରାଗଦ୍ୱେଷବିମୁକ୍ତ ମନ ନେଇ ବିଷୟ ଉପଭୋଗ କଲେ ମଧ୍ୟ, କୌଣସି ପ୍ରମାଦ ନ ଘଟି, ବରଂ ସାଧକ ଚିତ୍ତ-ଶାନ୍ତି ପାଏ ବୋଲି କହିଲେ । ଅବଶ୍ୟ ଚିତ୍ତ-ଶାନ୍ତି ଆପେହିଁ ଏକ ପରମ ଲାଭ । ଏବେ ଅଗ୍ରଗାମୀ ଦେଶମାନଙ୍କରେ ଖାଦ୍ୟ-ପ୍ରାଚୁର୍ଯ୍ୟ, ବିଳାସ-ପ୍ରାଚୁର୍ଯ୍ୟ ଓ ଧନ-ପ୍ରାଚୁର୍ଯ୍ୟଭିତରେ ଥାଇ ମଧ୍ୟ ଲୋକେ ମାନସିକ ଶାନ୍ତି ହରାଉଥିବାରୁ ସେ ଦେଶ-ମାନଙ୍କରେ ବିବାହ-ବିଚ୍ଛେଦ, ଆତ୍ମହତ୍ୟା ଓ ମାନସିକ ଚିକିତ୍ସାଳୟର ସଂଖ୍ୟା ବଢ଼ିଚାଲିଛି । ଆମର ଦୂରଦ୍ରଷ୍ଟା ଶାସ୍ତ୍ରକାରମାନେ ଏଇଥିପାଇଁ ପ୍ରତି ଆରମ୍ଭରେ, ପ୍ରତି ଅନୁଷ୍ଠାନ, ପ୍ରତି ମନ୍ତ୍ରର ଶେଷରେ "ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ" ଉଚ୍ଚାରଣର ବ୍ୟବସ୍ଥା କରିଯାଇଛନ୍ତି ।

ପୁଣି, ଚିତ୍ତ-ଶାନ୍ତି ନିଜେ ପରମ ଲାଭ ହେଲେହେଁ ଅନ୍ୟ ବହୁ ଲାଭର ମଧ୍ୟ ଜନକ । ତେଣୁହିଁ ଗୀତା ଏଇ କେତୋଟି ଶ୍ଳୋକରେ ବିଦ୍ୱାଭିଳାଷୀ, ପ୍ରବୃତ୍ତିମାର୍ଗଗାମୀ ଅସଂଯତ ଓ ବିକ୍ଷିପ୍ତଚିତ୍ତ ସାଧାରଣ ଲୋକମାନଙ୍କ ବିପରୀତରେ ସଂଯତେନ୍ଦ୍ରିୟ, ସ୍ଥିରବୁଦ୍ଧି, ଅବିଚଳିତଚିତ୍ତ ଲୋକର ଆଦର୍ଶ ଆମ ଆଗରେ ଉପସ୍ଥାପିତ କରାଇବାରେ ଲାଗିଛନ୍ତି । ଅସଂଯତ, ଇନ୍ଦ୍ରିୟସୁଖତତ୍ପର ଲୋକେ ବିକ୍ଷିପ୍ତଚିତ୍ତତା (ତାଙ୍କର ବୁଦ୍ଧି ବ୍ୟବସାୟାତ୍ମିକା ବା ଏକନିଷ୍ଠ ନ ଥିବା) ହେତୁରୁ କୌଣସି କାମରେ କୃତକାର୍ଯ୍ୟ (Successful) ତ ହୋଇପାରନ୍ତିନି, ବରଂ ତାଙ୍କର ଶେଷରେ 'ବୁଦ୍ଧିନାଶ'ହିଁ ଘଟେ । ଅନ୍ୟ ପକ୍ଷରେ, ସଂଯମୀ ଲୋକଙ୍କର ଅନ୍ୟ କିଛି ଲାଭ ନ ହେଲେ ମଧ୍ୟ ସେମାନେ ଅନ୍ତତଃ ସ୍ଥିତପ୍ରଜ୍ଞତା ଓ ଚିତ୍ତ-ପ୍ରସାଦ ଲାଭ କରିଥାନ୍ତି ।

ସର୍ବୋପରି ଗୀତା ଏହି ଶ୍ଳୋକରେ କହୁଛନ୍ତି ଯେ ଯେଉଁ ଲୋକର ଚିତ୍ତ-ପ୍ରସାଦ ଥିବ, ସେ ଲୋକ ସହଜରେ ଯେକୌଣସି ବିଗରେ 'ବ୍ୟବସାୟାତ୍ମିକା-ବୁଦ୍ଧି' ବା ଏକନିଷ୍ଠ ହୋଇପାରିବ । ଅର୍ଥାତ୍ ଯେକୌଣସି ସାଂସାରିକ କର୍ମରେ ମଧ୍ୟ ସେ ଅନାୟାସରେ ସିଦ୍ଧକର୍ମା ହେବ । ତେଣୁ ପର ଶ୍ଳୋକରେ ଏହି ଚିତ୍ତ-ପ୍ରସାଦ ଉପରେ ଆହୁରି ଜୋର୍ ଦିଆଯାଇଛି ।

**୬୬**

ନାସ୍ତି ବୁଦ୍ଧିରଯୁକ୍ତସ୍ୟ ନ ଚାଯୁକ୍ତସ୍ୟ ଭାବନା
ନଚାଭାବୟତଃ ଶାନ୍ତିରଶାନ୍ତସ୍ୟ କୁତଃ ସୁଖମ୍ । ୬୬ ।

ଅଯୁକ୍ତସ୍ୟ (ଯୋଗହୀନ, ସଂଯମହୀନ ପୁରୁଷର) ବୁଦ୍ଧିଃ (ବିଗୃହୀକ୍ତି) ନ ଅସ୍ତି (ନାହିଁ ବୋଲି କହିବାକୁ ହେବ) । ଅଯୁକ୍ତସ୍ୟ (ସେହି ଅସଂଯମୀ ଲୋକର, ଅର୍ଥାତ୍ ଅସଂଯମଜନିତ ବୁଦ୍ଧିହୀନ ଲୋକର) ଭାବନା (ଚିନ୍ତାଶକ୍ତି) ଚ (ମଧ୍ୟ) ନ (ନ ଥାଏ) । ଅଭାବୟତଃ (ଭାବନା ବା ଗଭୀର ଚିନ୍ତା ବା ମେଡିଟେସନ୍ (meditation) ନ ଥିବା ଲୋକର) ଶାନ୍ତିଃ ନ (ମାନସିକ ଶାନ୍ତି ନ ଥାଏ) । ଅଶାନ୍ତସ୍ୟ ସୁଖଂ କୁତଃ (ସେପରି ଅଶାନ୍ତ-ଚିତ୍ତ ଲୋକର ସୁଖ ବା କାହିଁ) ?

## ଅନୁବାଦ

"ହେ ଅର୍ଜୁନ, ଏ ସଂସାରର ସକଳ କ୍ଷେତ୍ରରେହିଁ ଯୋଗହୀନ ଓ ସଂଯମହୀନ ଲୋକ ବୁଦ୍ଧି ହରାଇବସେ । ବୁଦ୍ଧିହୀନ ଲୋକ ହରାଇବସେ ଗଭୀର ଚିନ୍ତାଶକ୍ତି । ଚିନ୍ତାଶକ୍ତି ଯାର ନାହିଁ, ସେ ପାଇ ନ ପାରେ ମାନସିକ ଶାନ୍ତି । ଏବଂ ଯାର ମାନସିକ ଶାନ୍ତି ନାହିଁ, ତାର ଆଉ ସୁଖ କାହିଁ ?"

## ବିଶେଷ ଭାଷ୍ୟ

ଗୀତା ଏହି ଶ୍ଳୋକରେ ଏକ ନୂତନ ଶବ୍ଦ ବ୍ୟବହାର କଲେ । ତାହା ହେଉଛି 'ଯୁକ୍ତ' । ଆମେ ଶେଷରେ ଦେଖିବା ଯେ, ସମଗ୍ର ଗୀତା ଗ୍ରନ୍ଥର ଜୀବନାଦର୍ଶ ଦୁଇଟିମାତ୍ର ଶବ୍ଦର ଭିନ୍ନତାଉପରେ ପ୍ରତିଷ୍ଠିତ । ସେ ଦୁଇଟି ଶବ୍ଦ ହେଲା 'ସକ୍ତ' ଓ 'ଯୁକ୍ତ' । 'ସକ୍ତ' ବା 'ଆସକ୍ତ' ହେଲା ସେହି ଆଦର୍ଶର ପ୍ରତୀକ, ଯାହା ମନୁଷ୍ୟକୁ ପାର୍ଥିବ ବିଷୟାଦିରେ ବୁଡ଼ାଇ-ଜଡ଼ାଇ ରଖେ । ଏ ହେଲା ପ୍ରବୃତ୍ତିମାର୍ଗର ଫଳ । ଏହାର ବିପରୀତ ଆଦର୍ଶ ହେଉଛି 'ଯୁକ୍ତ'ର, ଯେ ବିଷୟ-ପ୍ରଲୋଭନାଦିରୁ ନିଜକୁ ନିବୃତ୍ତ କରି, ଆଧ୍ୟାତ୍ମିକ ଜୀବନ ସହିତ ବା ଈଶ୍ୱରଙ୍କ ସହିତ ନିଜକୁ 'ଯୁକ୍ତ' ରଖେ । ଯୋଗର—କର୍ମ, ଜ୍ଞାନ, ଭକ୍ତି ଯେକୌଣସି ଯୋଗର—ଶେଷ ପରିଣତିହିଁ 'ଯୁକ୍ତ' ଭାବ ।

ଏ ଶ୍ଳୋକରେ ତେଣୁ ଅ-ଯୁକ୍ତ ଶବ୍ଦର ଅର୍ଥ ଆଧ୍ୟାତ୍ମିକ ଜୀବନ ପ୍ରତି ଅଶ୍ରଦ୍ଧ, ଅର୍ଥାତ୍ କେବଳ ବିଷୟସୁଖାଭିଳାଷୀ ଅର୍ଥାତ୍ ଅସଂଯତ । ଗୀତା କହି-ଆସୁଛନ୍ତି ଯେ, ଏ ଶ୍ରେଣୀର ଲୋକେ ପ୍ରକୃଷ୍ଟ ବିଚାରଶକ୍ତି ବା 'ବୁଦ୍ଧି'କୁ ପାଇ ତ ପାରନ୍ତି ନାହିଁ, ବରଂ ଥିଲେ, ତାକୁ ଶୀଘ୍ର ହରାନ୍ତି । ଅର୍ଥାତ୍ ସେଭଳି ଲୋକେ ସାଧାରଣ ମନନ-ଶକ୍ତି (ଭାବନା) ମଧ୍ୟ ହରାନ୍ତି । ବିନା ଭାବନାରେ ଉଚ୍ଚ ରୁଚିର ମାନସିକ ଶାନ୍ତି ମିଳିପାରେ ନା । ଜୀବଜନ୍ତୁ ବା ନିମ୍ନଶ୍ରେଣୀର ମନୁଷ୍ୟ, ଦି'ମୁଠା ଖାଦ୍ୟ ଦିନକର ପାଇଗଲେ ତାଙ୍କର ଆଉ ଭାବିବାର କିଛି ନ ଥାଏ । ଏଭଳି ଶାନ୍ତି, ତାମସିକ ଜଡ଼ତା ମାତ୍ର । ସକଳ ଭୋଗଭିତରେ ମଧ୍ୟ ଯୁବରାଜ ସିଦ୍ଧାର୍ଥ ଶାନ୍ତି ପାଇ ନ ଥିଲେ—ଜନତାର ଦୁଃଖରେ ମଥିତ ହୋଇ । ପୁଣି, ସେହି ମହାମାନବଙ୍କ ଭିତରେ ଯେଉଁ ମେଡିଟେସନ୍ (meditation) ବା ଗଭୀର ଭାବନାର ଶକ୍ତି ଥିଲା, ତାହାହିଁ ତାଙ୍କୁ ଅଳ୍ପ କାଳଭିତରେ ଆଣିଦେଲା ସକଳ ଜିଜ୍ଞାସାର ଉତ୍ତର ଓ ନିର୍ବାଣର ପରମ ଶାନ୍ତି, ପରମ ଆନନ୍ଦ ।

ବିଷୟାସକ୍ତ ଲୋକ ସଂପର୍କରେ ସେପ୍ରକାର ଉଚ୍ଚତର ଶାନ୍ତିର ପ୍ରଶ୍ନହିଁ ଉଠି ନ ପାରେ । ବରଂ ଗୀତାର ବ୍ୟଞ୍ଜନା ଏହି ଯେ, ସେ ଲୋକର ଭାଗ୍ୟରେ ନିମ୍ନତର ବା ଲୌକିକ ଶାନ୍ତି ମଧ୍ୟ ଦୁଷ୍ପ୍ରାପ୍ୟ ହେବ—ଉଚ୍ଚତର ମାନସିକ ଶାନ୍ତିର କଥାହିଁ ତ ନାହିଁ ? ଏବଂ ଯାର ଚିତ୍ତ ଅଶାନ୍ତିପୂର୍ଣ୍ଣ, ତାର ସବୁ ଥାଇ ମଧ୍ୟ, ସୁଖ ଆସିବ କୁଆଡ଼ୁ ? ଆମେରିକା, ରୁଷ ପ୍ରଭୃତି ତଥାକଥିତ ଅଗ୍ରଗାମୀ ଦେଶରେ ଧନ-ପ୍ରାଚୁର୍ଯ୍ୟ, ସ୍ୱାଚ୍ଛନ୍ଦ୍ୟ ପ୍ରାଚୁର୍ଯ୍ୟଭିତରେ ମାନସିକ ଅଶାନ୍ତି କିପରି ବଢ଼ି-ଚାଲିଛି, ତାହା ଏଠାରେ ସ୍ମରଣୀୟ । ଏହି ଶ୍ଳୋକରେ ଗୀତା ତେଣୁ ଏହା ସୂଚିତ କରୁଛନ୍ତି ଯେ, 'ସକ୍ତ'ର ଜୀବନ ଅଶାନ୍ତି, ବୁଦ୍ଧିନାଶ ଓ ବ୍ୟର୍ଥତାରେ ଶେଷ ହୁଏ । କିନ୍ତୁ 'ଯୁକ୍ତ'ର ଜୀବନ ଚିତ୍ତ-ପ୍ରସାଦ ଓ ତଜ୍ଜନିତ ସୁଖରେ ମଣ୍ଡିତ ହୋଇଉଠେ ।

## ୬୭

ଇନ୍ଦ୍ରିୟାଣାଂ ହି ଚରତାଂ ଯନ୍ମନୋଽନୁବିଧୀୟତେ
ତଦସ୍ୟ ହରତି ପ୍ରଜ୍ଞାଂ ବାୟୁର୍ନାବମିବାମ୍ଭସି । ୬୭ ।

ହି (ଯେହେତୁ) ମନଃ (ମନ) ଚରତାଂ ଇନ୍ଦ୍ରିୟାଣାଂ (ଚରିବୁଲୁଥିବା ଇନ୍ଦ୍ରିୟମାନଙ୍କ ଭିତରୁ) ଯତ୍ (ଯେଉଁ ଗୋଟିକୁ ହେଲେ) ଅନୁବିଧୀୟତେ (ଅନୁବର୍ତ୍ତନ କରେ) ତତ୍ (ସେହି ଗୋଟିକ ମଧ୍ୟ) ବାୟୁଃ ଅମ୍ଭସି ନାବଂ ଇବ (ପବନ ଯେପରି ଜଳସ୍ଥ ନୌକାକୁ ନିଜ ଗତି ଅନୁସାରେ ଟାଣିନେଇଯାଏ

ସେହିପରି) ଅସ୍ୟ (ସେହି ଅସାବଧାନ ଲୋକର) ପ୍ରଜ୍ଞାଂ (ବୁଦ୍ଧିକୁ) ହରତି (ହରଣ କରନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ଆମର ଚର ଅସ୍ଥିର ଇନ୍ଦ୍ରିୟମାନଙ୍କ ଭିତରୁ କୌଣସି ଲୋକର ମନ ଯେଉଁ ଗୋଟିକର ହେଲେ ମଧ୍ୟ ଅନୁବର୍ତ୍ତନ କରେ ; ପବନ ସମୁଦ୍ରରେ ବୋଇତକୁ ଟାଣିନେଇଗଲାପରି ସେଇ ଗୋଟିକ ଇନ୍ଦ୍ରିୟହିଁ ସେହି ଅସାବଧାନ ଲୋକର ସମଗ୍ର ବୁଦ୍ଧି ବା ପ୍ରଜ୍ଞାକୁ ହରଣ କରିନେଇଥାଲେ ।"

## ବିଶେଷ ଭାଷ୍ୟ

ଗୀତା ଇନ୍ଦ୍ରିୟାସକ୍ତିର ଉଭୟ ମାନସିକ ଓ ଆତ୍ମିକ କୁଫଳ ବର୍ଣ୍ଣନ କରି ମଧ୍ୟ, ଅଧ୍ୟାୟ ଶେଷ ଆଡ଼କୁ ପୁଣି ତାରି ଉପରେ ଜୋର୍ ଦେଉଛନ୍ତି, ପାଠକ-ପାଠିକାମାନଙ୍କ ଚିତ୍ତରେ ଗଭୀର ଛାପ ରଖିଯିବାପାଇଁ । ଗୀତା ଏପର୍ଯ୍ୟନ୍ତ ଇନ୍ଦ୍ରିୟାସକ୍ତିକୁ ଏକ ସାଧାରଣ ଭାବକଳ୍ପ ଭାବରେ ଆଲୋଚନା କରିଆସିଛନ୍ତି । ଆମର କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ମିଶି ଇନ୍ଦ୍ରିୟମାନଙ୍କର ସଂଖ୍ୟା (ମନକୁ ଏକ ଇନ୍ଦ୍ରିୟ ବା ଇନ୍ଦ୍ରିୟମାନଙ୍କର ରାଜା ବୋଲି ଧରିଯାଏ ଏବଂ ତାକୁ ମିଶାଇ) ଏଗାର । ଇନ୍ଦ୍ରିୟାସକ୍ତି କହିଲେ ଚକ୍ଷୁ, କର୍ଣ୍ଣ, ନାସିକାଦି ଏହି ଏଗାରଟି ଇନ୍ଦ୍ରିୟର ବିଷୟସବୁକୁ ସମୁଦାୟଭାବରେ ବୁଝାଏ । କିନ୍ତୁ ଗୀତା ଏ ଶ୍ଳୋକରେ କହୁଛନ୍ତି— ସବୁ ଇନ୍ଦ୍ରିୟଙ୍କ କଥା ଛାଡ଼, ଗୋଟିଏ ମାତ୍ର ଇନ୍ଦ୍ରିୟ ସଂପର୍କରେ ଯଦି ଲୋକ ଦୁର୍ବଳତା ଦେଖାଏ, ତେବେ ସେହି ଗୋଟିକହିଁ ତାର ସମସ୍ତ ପ୍ରଜ୍ଞାକୁ ନଷ୍ଟ କରି-ଦେବ ବା ତାର ବୁଦ୍ଧିକୁ ବିପର୍ଯ୍ୟସ୍ତ କରି ଠିଆ କରିଦେବ ।

### ୬୮

ତସ୍ମାତ୍ ଯସ୍ୟ ମହାବାହୋ ନିଗୃହୀତାନି ସର୍ବଶଃ
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୮ ।

ତସ୍ମାତ୍ (ତେଣୁ) ହେ ମହାବାହୋ (ଅର୍ଜୁନ !) [ଏହା ନିଶ୍ଚିତଭାବରେ ଜାଣିରଖ ଯେ] ଯସ୍ୟ ଇନ୍ଦ୍ରିୟାଣି (ଯେଉଁଲୋକର ଇନ୍ଦ୍ରିୟଗୁଡ଼ିକ) ଇନ୍ଦ୍ରିୟାର୍ଥେଭ୍ୟଃ (ଭୋଗ୍ୟ ବିଷୟସବୁରୁ) ସର୍ବଶଃ (ସଂପୂର୍ଣ୍ଣରୂପେ) ନିଗୃହୀତାନି (ଆତ୍ମବଶ) [କେବଳ] ତସ୍ୟ (ସେହି ଲୋକର) ପ୍ରଜ୍ଞା ପ୍ରତିଷ୍ଠିତା (ପ୍ରଜ୍ଞା ପ୍ରତିଷ୍ଠିତ) ।

**ଅନୁବାଦ**

"ତେଣୁ, ହେ ଅର୍ଜୁନ, ଏହା ନିଶ୍ଚିତଭାବରେ ଜାଣିରଖ ଯେ, ଯାର ଉଭୟ ଜ୍ଞାନ ଓ କର୍ମର ଇନ୍ଦ୍ରିୟଗୁଡ଼ିକ ଆତ୍ମବଶ, ମୋ'ଉପରେ ସେହି ଲୋକର ପ୍ରଜ୍ଞାହିଁ ପ୍ରତିଷ୍ଠିତ ।"

**ବିଶେଷ ଭାଷ୍ୟ**

ଇନ୍ଦ୍ରିୟ ସଂଯମର ଶେଷ ଫଳ ହେଉଛି ପ୍ରତିଷ୍ଠିତ ପ୍ରଜ୍ଞା ବା ସ୍ଥିର ବୁଦ୍ଧି । ଗୀତା ଏହି କଥାଟିଏ ପର୍ଯ୍ୟନ୍ତ ବୁଝାଇ ଆସିଲାପରେ ଏ ଶ୍ଳୋକରେ କହୁଛନ୍ତି ଯେ, 'ପ୍ରତିଷ୍ଠିତ ପ୍ରଜ୍ଞା' ବା 'ସ୍ଥିର ବୁଦ୍ଧି' ଇନ୍ଦ୍ରିୟ-ସଂଯମର କେବଳ 'ଫଳ' ନୁହେଁ, ତାର ପ୍ରକୃଷ୍ଟ ଲକ୍ଷଣ ବୋଲି ମଧ୍ୟ ଧରିବାକୁ ହେବ । ଅର୍ଥାତ୍, ଇନ୍ଦ୍ରିୟ-ସଂଯମ ଓ ସ୍ଥିରବୁଦ୍ଧି ଭିତରେ ଅଙ୍ଗାଙ୍ଗୀ ଓ ଅପରିହାର୍ଯ୍ୟ, ଅବିଚ୍ଛେଦ୍ୟ ସଂପର୍କ । ଦୁଇଟିର ଅଲଗା ଅଲଗା ଅବସ୍ଥିତି ଗୀତାଙ୍କ ମତରେ ସମ୍ଭବ ନୁହେଁ । ଉଭୟେ ଉଭୟର ଫଳ ବା ଲକ୍ଷଣ ।

**୬୯**

ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ
ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋ ମୁନେଃ । ୬୯ ।

ସର୍ବଭୂତାନାଂ ଯା ନିଶା (ଜୀବ ବା ଲୋକମାନଙ୍କ ପକ୍ଷରେ ଯାହା ରାତ୍ରି-ସ୍ୱରୂପ ଅର୍ଥାତ୍ ଭୋଗରେ ନିଜକୁ ବୁଡ଼ାଇବାର ବେଳ ବୋଲି ଧାରଣା) ତସ୍ୟାଂ (ସେ କାଳ ବା ସ୍ଥାନରେ) ସଂଯମୀ ଜାଗର୍ତ୍ତି (ସଂଯମୀ ପୁରୁଷ ଚେଇଁରହେ, ଅର୍ଥାତ୍ ସେ ତା ଦିନ ବେଳ) । ଯସ୍ୟାଂ (ଯେଉଁ କାଳରେ ବା ସ୍ଥାନରେ) ଭୂତାନି (ସାଧାରଣ ଜୀବ ବା ଲୋକେ) ଜାଗ୍ରତି (ଜାଗ୍ରତ ହୋଇଥାନ୍ତି, ଅର୍ଥାତ୍ ଯେଉଁ ଯେଉଁ ବିଷୟସବୁପ୍ରତି ସେମାନେ ଅତ୍ୟନ୍ତ ସଚେତନ) ପଶ୍ୟତଃ ମୁନେଃ (ସତ୍ୟଦର୍ଶକ ମୁନିଙ୍କ ପକ୍ଷରେ) ସା ନିଶା (ତାହା ରାତ୍ରିସ୍ୱରୂପ, ଅର୍ଥାତ୍ ସେ ସେଠି ଉଦାସୀନ ହୋଇ କିଛି ଦେଖି ନ ଥାନ୍ତି)' ।

**ଅନୁବାଦ**

"ହେ ଅର୍ଜୁନ, ଯେତେବେଳେ ସମସ୍ତ ଜୀବ ଓ ମନୁଷ୍ୟ ନିଦ୍ରାଭିଭୂତ, ସେହି ଅଜ୍ଞାନତାର ରାତ୍ରିରେ ସଂଯମୀ ଥାଏ ଜାଗ୍ରତ, ଏବଂ ଯେତେବେଳେ ଜନତା କ୍ଷଣସ୍ଥାୟୀ ଭୋଗ ନେଇ ଜାଗ୍ରତ, ଚକ୍ଷୁଷ୍ମାନ୍ ମୁନିର ସେତେବେଳେ ରାତ୍ରି ବୋଲି ଜାଣିବ ।"

**ବିଶେଷ ଭାଷ୍ୟ**

ଏହା ଗୀତାର ଏକ ଶ୍ରେଷ୍ଠ ଶ୍ଳୋକ ଓ ପରମ କାବ୍ୟିକ ଗୁଣସଂପନ୍ନ । ଏହି ଶ୍ଳୋକରେ ଗୀତା ଆସକ୍ତ ଓ ସଂଯମ, ସକ୍ତ ଓ ଯୁକ୍ତର ପ୍ରଭେଦକୁ ଏକ ମନୋଜ୍ଞ ରୂପକରେ ପରିବେଷିତ କରି ଆମଠୁ ଏ ଅଧ୍ୟାୟରେ ବିଦାୟ ନେଉଛନ୍ତି ।

ଏଠାରେ ପାର୍ଥିବ ପ୍ରଲୋଭନ ବା ବିଷୟାହ୍ଲାଦ ହେଲା ଅନ୍ଧକାର ବା ରାତି । ଆଧ୍ୟାତ୍ମିକ ସଚେତନତା ହେଲା ଆଲୋକ ବା ଦିନ । ସାଧାରଣ ମନୁଷ୍ୟ ବିଷୟାସକ୍ତ ବା ଇନ୍ଦ୍ରିୟ-ସଚେତନ । ସେହି ଆସକ୍ତ ବା ସେହି ଅନିତ୍ୟପ୍ରତି ମୋହ ହେଲା ରାତି ବା ଅନ୍ଧକାର । ସେହି ମୋହାନ୍ଧକାର ରାତିରେ କିନ୍ତୁ ଯୋଗୀର ଅନ୍ତର • ନିତ୍ୟାନିତ୍ୟର ବିଚାରପ୍ରତିଷ୍ଠ ଦୈବତାଲୋକରେ ଓ ଦିବ୍ୟାନୁଭବ ରାଜରେ ଆଲୋକିତ । ସେହି ଆତ୍ମିକ ଆଲୋକରେ ଯୋଗୀ ସଂସାରର ଅନିତ୍ୟ ବସ୍ତୁମାନଙ୍କର ପ୍ରଲୋଭନତଳେ ନିତ୍ୟର ସଂଧାନରେହିଁ ଲାଗିଥାଏ । ତେଣୁ ଇତର ଜନର ରାତି ତାର ଦିନ । ପ୍ରାକୃତିକ ଘଟନା ଭାବରେ ଦିନ ଓ ରାତି ଦୁଇଟି ସଂପୂର୍ଣ୍ଣ ଭିନ୍ନ ଭିନ୍ନ ସତ୍ତା ନୁହନ୍ତି । କିନ୍ତୁ ଆମର ଅଜ୍ଞତାରେ ଆମେ ସେପରି ମନେ କରୁଁ । ପୁଣି, ଆମକୁ ଯାହା ଦିନ, ତାହା ନିଶାଚର ପଶୁପକ୍ଷୀଙ୍କର ରାତି । ଆମର ରାତି, ସେମାନଙ୍କର ଦିନ । ସେହିପରି ଏ ସଂସାର ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ଭିନ୍ନ ଭିନ୍ନ । ଶିଳ୍ପୀର ସଂସାର ଓ ବୈଜ୍ଞାନିକର ସଂସାର ଏକା ନୁହେଁ ; ସେହିପରି ମଧ୍ୟ ଏକା ନୁହେଁ ସଂସାରୀ ଲୋକର ଓ ଈଶ୍ୱରାନୁଭବୀର ।

ଗୀତା ଏହା ମଧ୍ୟ ଜାଣନ୍ତି ଯେ ଏ ଜଗତରେ ଆଧ୍ୟାତ୍ମ୍ୟ ଜୀବନ ଖୋଜୁଥିବା ଲୋକଙ୍କ ସଂଖ୍ୟା ମୁଷ୍ଟିମେୟ ଏବଂ ଏମାନଙ୍କର ଯାତ୍ରା ସାଧାରଣତଃ ସଙ୍ଗୀହୀନ । ଏମାନେ ପ୍ରାୟ ଏକାକୀ । ଏମାନେ କିନ୍ତୁ ନିଜର ଊର୍ଦ୍ଧ୍ୱ ସ୍ତରରୁ ଦେଖୁଥାନ୍ତି ଯେ ପୃଥିବୀର ନିଖିଳ ଜନତା ଅନିତ୍ୟ ବିଷୟସୁଖ ନେଇ ଉନ୍ମତ୍ତ । ତେଣୁ ଏମାନେ ମଝିରେ ମଝିରେ ନିରୁତ୍ସାହ ହେବାଟା ସ୍ୱାଭାବିକ । ସେହି ମୁଷ୍ଟିମେୟ ଦେବ-ପଥ-ଯାତ୍ରୀଙ୍କ ନିଃସଙ୍ଗ ପ୍ରାଣରେ ଚିର ଆଶା-ଆଶ୍ୱାସନାର ବର୍ତ୍ତି ଜାଳିରଖିବାପାଇଁହିଁ ଗୀତା ଏହି ଅପୂର୍ବ ଶ୍ଳୋକଟିକୁ ଯେପରି ଥୋଇଯାଇଛନ୍ତି । ସେ ଏଥିରେ ଯେପରି ଶୁଣାଇଯାଇଛନ୍ତି ଯେ, "ହେ ନିଃସଙ୍ଗ ଯାତ୍ରୀ ! ତୁମେ ଭାବୁଛ କି ତୁମେ ଉଦ୍‌ଭ୍ରାନ୍ତ, ଆଉ ସେମାନେ ଠିକ୍ ପଥରେ ଅଛନ୍ତି ? ନା, ସେମାନେ ଯାହାକୁ ଭୋଗ ମନେ କରୁଛନ୍ତି, ସେ କେବଳ ମୋହ ଓ ଅଜ୍ଞତା । ଯାହାକୁ ସେମାନେ ଆଲୋକ ଭାବୁଛନ୍ତି, ତାହା ପ୍ରକୃତରେ ମୋହାନ୍ଧକାର । ହେ ବରେଣ୍ୟ ପଥିକ ! ସେମାନଙ୍କର ତଥାକଥିତ ଆଲୋକକୁ

ଯଥାର୍ଥରେ ସ୍ଥିତି ବୋଲି ମନେ କର ଏବଂ ଭୋଗସୁଖପ୍ରମତ୍ତ ବା ମୋହଜଡ଼ତା-ମଗ୍ନ ସେମାନଙ୍କର ସ୍ଥିତି ସଂପର୍କରେ ତୁମେ ଚିରଜାଗ୍ରତ ରହ । ସେହି ଆପାତ ଦିବାଲୋକ ଆଡ଼କୁ ଚାଲିଯାଇ ଅନ୍ତରର ଶାଶ୍ୱତ ଦିବ୍ୟାଲୋକକୁ ଚିରକାଳ ଲାଗି ହରାଇବସ ନାହିଁ । ଜନତା ଯାହାକୁ ଦିନ ମନେ କରେ ଭୋଗୋନ୍ମତ୍ତ, ହେ ଆତ୍ମାଭିଯାତ୍ରୀ, ତୁମେ ନିଷ୍ଠିତଭାବରେ ଧରିନିଅ ଯେ, ତାହା ଅନ୍ଧକାରମଗ୍ନ ସ୍ଥିତି ମାତ୍ର ଏବଂ ସେହିପରିଭାବରେ ତାଠାରୁ ଦୂରରେ ରହ ।"

୭୦

ଅପୂର୍ଯ୍ୟମାଣମଚଳପ୍ରତିଷ୍ଠଂ
ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍ୱତ୍
ତଦ୍ୱତ୍ କାମା ଯଂ ପ୍ରବିଶନ୍ତି ସର୍ବେ
ସ ଶାନ୍ତିମାପ୍ନୋତି ନ କାମକାମୀ । ୭୦ ।

ଯଦ୍ୱତ୍ (ଯେପରି) ଆପଃ (ଜଳସମୂହ) ଅପୂର୍ଯ୍ୟମାଣଂ [ଅଗଣିତ ନଦନଦୀ ଦେଇ] (ବରାବର ଭର୍ତ୍ତି ହୋଇଚାଲିଥିଲେ ମଧ୍ୟ) ଅଚଳପ୍ରତିଷ୍ଠଂ (କ୍ଷୟ ବୃଦ୍ଧି-ଶୂନ୍ୟଭାବରେ ସ୍ଥିର ଥିବା ପରି) ସମୁଦ୍ରଂ (ସମୁଦ୍ରରେ) ପ୍ରବିଶନ୍ତି (ସବୁବେଳେ ପଶୁ-ଥାନ୍ତି) ତଦ୍ୱତ୍ (ସେହିପରି) ସର୍ବେ କାମାଃ (ସକଳପ୍ରକାର ପାର୍ଥିବ ପ୍ରଲୋଭନ) ଯଂ [ପୁରୁଷଂ] (ଯେଉଁ ଲୋକଭିତରେ) ପ୍ରବିଶନ୍ତି (ପଶନ୍ତି) [ଅଥଚ ସେ ସମୁଦ୍ର ପରି ବିକାରଶୂନ୍ୟ ରହେ] ସଃ ଶାନ୍ତିଂ ଆପ୍ନୋତି (ସେହିଁ ଶାନ୍ତି ପାଏ) । କାମକାମୀ ନ (ବିଷୟାସକ୍ତ ଲୋକ ସେ ଶାନ୍ତି ପାଇପାରେନା) ।

**ଅନୁବାଦ**

"ହେ ଅର୍ଜ୍ଜୁନ, ଯେପରି ଚାରିଆଡ଼ୁ ଅଗଣିତ ନଦନଦୀ ଦେଇ ଅହରହ ଜଳ ଭର୍ତ୍ତି ହୋଇଚାଲିଥିଲେହେଁ, ସମୁଦ୍ର କ୍ଷୟ-ବୃଦ୍ଧିଶୂନ୍ୟ ହୋଇ ସର୍ବଦା ସମାନ ରହିଥାଏ, ସେହିପରି ଚାରିଆଡ଼ୁ ଆସୁଥିବା ସକଳପ୍ରକାର ପାର୍ଥିବ ପ୍ରଲୋଭନ ଯେଉଁ ଲୋକର ଚେତନାଭିତରକୁ ଆସି ମଧ୍ୟ ତାକୁ ଉତ୍‌କ୍ଷିପ୍ତ କରି ନ ପାରନ୍ତି, ସେହିଁ ପ୍ରକୃତ ଆତ୍ମିକ ଶାନ୍ତି ଲାଭ କରିଥାଏ । ଯିଏ ସର୍ବଦା କାମନାମାନଙ୍କ ପଛରେ ଧାବିତ, ସେ କେବେହେଲେ ଶାନ୍ତି ପାଇ ପାରେ ନାହିଁ ।"

**ବିଶେଷ ଭାଷ୍ୟ**

ଗୀତାର ଏହି ମୁଖ୍ୟ ଅଧ୍ୟାୟଟି ଶେଷ ହୋଇ ଆସୁଛି । ଗୀତାକାର ଅପୂର୍ବ ସହଜାତ ସୃଜନୀଶକ୍ତି ହେତୁ ଦ୍ୱିତୀୟ ଅଧ୍ୟାୟର ଏହି ଶେଷାଂଶରେ ଏକ ଏକ ମନୋଜ୍ଞ ରୂପକ ଦେଇ ନିଜର ବକ୍ତବ୍ୟ ବା ବାଣୀକୁ ଆମ ଆଗରେ

sum up ବା ଠୁଳ କରି ସେପରି ଦେଖାଇଯାଉଛନ୍ତି । ପୂର୍ବ ଶ୍ଳୋକରେ ସଂଯମୀ ଓ ଅସଂଯମୀର ଦିନ ଓ ରାତ୍ରିକୁ, ଶୟନ ଓ ଜାଗରଣ ରୂପକ ଛଳରେ ବୁଝାଇଦେଲାପରେ ଏ ଶ୍ଳୋକରେ ନଦୀନଦୀ (ବୈଷୟିକ ପ୍ରଲୋଭନ) ଏବଂ ସମୁଦ୍ରର (ସ୍ଥିତପ୍ରଜ୍ଞର) ଉପମା ଦେଇ ଗୀତା ମାନସିକ harmony ବା ଶାନ୍ତିର ଏକ ଅପୂର୍ବ ଚିତ୍ର ଥୋଇଛନ୍ତି ଆମ ଆଗରେ । ଗୀତା ବୈଷୟିକ ଭୋଗାଦିକୁ କୌଣସିଠାରେ ଏକାବେଳକେ ପରିହାରପାଇଁ କହି ନାହାନ୍ତି । ଅସଂଖ୍ୟ ନଦୀନଦୀର ଜଳ ସମୁଦ୍ରରେ ଅହରହ ମିଶୁଛି । କିନ୍ତୁ ସେଥିରେ ସମୁଦ୍ରର ପରିବର୍ତ୍ତନ ନାହିଁ । ଗୀତା କହୁଛନ୍ତି ଯେ, ସେହିପରି ଜାଗତିକ ସକଳ ପ୍ରଲୋଭନ ଆମର ବ୍ୟକ୍ତିତ୍ୱ ରୂପକ ଜଳଧିକୁ ଅବାଧରେ ଆସୁ । କିନ୍ତୁ ଆମେ ଅନ୍ତରରେ ସମୁଦ୍ରପରି ଅଚଳପ୍ରତିଷ୍ଠ ରହିବା । ତେବେ ଯାଇ ଆମେ ପ୍ରକୃତ ଶାନ୍ତି ଭୋଗ କରିବା ।

୭୧

ବିହାୟ କାମାନ୍ ଯଃ ସର୍ବାନ୍ ପୁମାଂଶ୍ଚରତି ନିସ୍ପୃହଃ
ନିର୍ମମୋ ନିରହଂକାରଃ ସ ଶାନ୍ତିମଧିଗଚ୍ଛତି । ୭୧ ।

[ତେଣୁ] ଯଃ ପୁମାନ୍ (ଯେଉଁ ଲୋକ) ସର୍ବାନ୍ କାମାନ୍ ବିହାୟ (ସମସ୍ତ କାମନା ତ୍ୟାଗ କରି) ନିସ୍ପୃହଃ (ସ୍ପୃହା ବା ଉତ୍ସାହହୀନ) ନିର୍ମମଃ (ମମତା ବା ଆସକ୍ତିଶୂନ୍ୟ) ନିରହଂକାରଃ (କର୍ତ୍ତୃତ୍ୱାଭିମାନଶୂନ୍ୟ ହୋଇ) ଚରତି (ବିଚରଣ କରନ୍ତି, ଜୀବନ ଯାପନ କରନ୍ତି) ସଃ (ସେହି କେବଳ) ଶାନ୍ତିମ୍ ଅଧିଗଚ୍ଛତି (ଶାନ୍ତିକୁ ପ୍ରାପ୍ତ ହୁଅନ୍ତି) ।

## ଅନୁବାଦ

“ହେ ଅର୍ଜୁନ, ଏହିପରିଭାବରେ ଯେଉଁ ଲୋକ ସମସ୍ତ ସାଂସାରିକ, ଜାଗତିକ ପ୍ରଲୋଭନର ବନ୍ଧନରୁ ନିଜକୁ ମୁକ୍ତ ରଖି ନିଃସ୍ପୃହ, ନିରାସକ୍ତ ଓ ନିରହଂକାର ଜୀବନ ଯାପନ କରିଥାନ୍ତି, କେବଳ ସେହିଁ ପ୍ରଚୁର ଆତ୍ମିକ ଶାନ୍ତି ଭୋଗ କରିଥାନ୍ତି ।”

## ବିଶେଷ ଦ୍ରଷ୍ଟବ୍ୟ

‘ନିର୍ମମ’, ‘ନିସ୍ପୃହ’, ‘ନିରହଂକାର’ ପ୍ରଭୃତି ଶବ୍ଦ ଗୀତାରେ ଏହିଠାରେ ପ୍ରଥମ କରି ବ୍ୟବହୃତ ହେଲା । ପରେ ଏଗୁଡ଼ିକ ବିସ୍ତୃତଭାବରେ ବ୍ୟବହୃତ ହେବ । ସେତେବେଳେ ଏସବୁର ଅଧିକ ଆଲୋଚନା ହେବ । ପାଠକେ ଏବେ

ଶବ୍ଦ ମନେ ନ ରଖି ଗୀତା-ପରିବେଷିତ ଜୀବନ-ଦର୍ଶନର ସେହି ଦୁଇଟି ମୌଳିକ ଭାବ-କଳ୍ପ 'ମୁକ୍ତ' ଓ 'ଯୁକ୍ତ'କୁହିଁ ମନେ ରଖନ୍ତୁ । ଯେ 'ଯୁକ୍ତ', ସେ ଆପେ ଆପେ ନିର୍ମମ, ନିସ୍ପୃହ, ନିରହଂକାର ହୋଇଉଠିବେ । ସେହି ମଧ୍ୟ ପ୍ରକୃତ ଶାନ୍ତି ପାଇବେ ଏବଂ ପ୍ରକୃତ ସୁଖ ପାଇବେ । 'ସକ୍ତ' ବା ଆସକ୍ତିର ପରିଣାମ କେବଳ ଦୁଃଖ ।

୭୨

ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ ନୈନାଂ ପ୍ରାପ୍ୟ ବିମୁହ୍ୟତି
ସ୍ଥିତ୍ୱାସ୍ୟାମନ୍ତକାଲେଽପି ବ୍ରହ୍ମନିର୍ବାଣମୃଚ୍ଛତି । ୭୨ ।

[ହେ] ପାର୍ଥ (ଅର୍ଜୁନ) ଏଷା ବ୍ରାହ୍ମୀ ସ୍ଥିତିଃ (ଏହି ସ୍ଥିତି ବା ଅବସ୍ଥାର ନାମ ବ୍ରାହ୍ମୀ ଅର୍ଥାତ୍ ବ୍ରହ୍ମମୟ) । ଏନାଂ ପ୍ରାପ୍ୟ (ଏ ଅବସ୍ଥାକୁ ଆସିଗଲେ) [ଲୋକ] ନ ବିମୁହ୍ୟତି (ଆଉ ସଂସାରମୋହରେ ବିଚଳିତ ହୁଏ ନାହିଁ) । ଅନ୍ତକାଲେ ଅସ୍ୟାଂ ସ୍ଥିତ୍ୱା ଅପି (ମରଣ ସମୟରେ ଏହି ଅବସ୍ଥାରେ ରହିପାରିଲେ) [ଲୋକ] ବ୍ରହ୍ମନିର୍ବାଣଂ ଋଚ୍ଛତି (ବ୍ରହ୍ମରେ ନିର୍ବାଣ ଲାଭ କରେ) ।

**ଅନୁବାଦ**

"ହେ ଅର୍ଜୁନ, ଏହିପରି ଅବସ୍ଥାର ନାମ "ବ୍ରାହ୍ମୀ ସ୍ଥିତି" ବା ବ୍ରହ୍ମମୟ ଅବସ୍ଥା । ଏ ଅବସ୍ଥା ଆସିଗଲେ ମନୁଷ୍ୟ ଆଉ ମୋହଗ୍ରସ୍ତ ହେବାର ଆଶଙ୍କା ନାହିଁ । ମୃତ୍ୟୁବେଳେ, କେବଳ ଶେଷ ମୁହୂର୍ତ୍ତରେ ମଧ୍ୟ ମନୁଷ୍ୟ ଏହି ଅବସ୍ଥାରେ ରହିପାରିଲେ ବ୍ରହ୍ମ-ନିର୍ବାଣ-ପ୍ରାପ୍ତି ହିଁ ଘଟିଥାଏ, ଅର୍ଥାତ୍ ସେ ଲୋକର ଆଉ ଜନ୍ମାନ୍ତର ହୁଏ ନାହିଁ ।"

**ବିଶେଷ ଭାଷ୍ୟ**

ଗୀତାର ଏହି ଦ୍ୱିତୀୟ ଅଧ୍ୟାୟ ଗୀତାର ଏକାଧାରରେ introduction (ପ୍ରବେଶିକା) ଓ summary (ସାରକଥା) କହିଲେ ଚଳେ । ପର ପର ଅଧ୍ୟାୟଗୁଡ଼ିକରେ ଏହି ଦ୍ୱିତୀୟ ଅଧ୍ୟାୟର ଭାବଗୁଡ଼ିକହିଁ କେବଳ ବିସ୍ତୃତ କରି, ଅଧିକ ଜୋର୍ ଦେଇ, ପୁନରାବୃତ୍ତି କରି ବର୍ଣ୍ଣିତ, କହିଲେ ଚଳେ ।

ଯେହେତୁ ଏହି ଦ୍ୱିତୀୟ ଅଧ୍ୟାୟଟି ଇଣ୍ଟ୍ରୋଡକ୍ସନ୍ ବା ଉପକ୍ରମଣିକା ସ୍ୱରୂପ, ତେଣୁ ଗୀତାକାର ଆସ୍ତେ ଆସ୍ତେ ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ବ୍ୟବହୃତ ଶବ୍ଦଗୁଡ଼ିକୁ ମଧ୍ୟ ଏହି ଅଧ୍ୟାୟରେ ପ୍ରଥମ ବ୍ୟବହାର କରିଛନ୍ତି । ପାଠକେ ଦେଖନ୍ତୁ ଯେ, ଗୀତା ବ୍ରହ୍ମ-ବିଦ୍ୟାର ଶାସ୍ତ୍ର ହେଲେହେଁ—(ଶ୍ରୀମଦ୍‌ଭଗବଦ୍‌ଗୀତାସୁ

ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ)—ଏହି ଅଧ୍ୟାୟର ଶେଷ ଶ୍ଳୋକରେ ଆସିହିଁ, 'ବ୍ରହ୍ମ' ଶବ୍ଦଟି ପ୍ରଥମ କରି ବ୍ୟବହୃତ ହୋଇଛି । ଏହି ସମଗ୍ର ଅଧ୍ୟାୟଟିରେ ଦେହ ଓ ଆତ୍ମାର ଭେଦ ବର୍ଣ୍ଣନା ମୁଖ୍ୟ ବିଷୟ ହେଲେହେଁ, ଠିକ୍ 'ଆତ୍ମା' ଅର୍ଥରେ ଆମର ପରିଚିତ ଆତ୍ମା ଶବ୍ଦଟି ଏହି ସମଗ୍ର ଅଧ୍ୟାୟରେ କାହିଁ ହେଲେ ବ୍ୟବହୃତ ହୋଇ ନାହିଁ । ସାଂଖ୍ୟ ଦର୍ଶନ ଅନୁସାରେ 'ପୁରୁଷ' ଶବ୍ଦ ବ୍ୟବହୃତ ହୋଇଛି, ଅଥଚ 'ପ୍ରକୃତି' ଶବ୍ଦଟି ମଧ୍ୟ କାହିଁ ବ୍ୟବହୃତ ହୋଇ ନାହିଁ । କିନ୍ତୁ ସାଂଖ୍ୟର ତ୍ରିଗୁଣ, ମନ, ବୁଦ୍ଧି ଓ ଅହଂକାର ଇତ୍ୟାଦିର ବ୍ୟବହାର ହୋଇଛି ଏବଂ ହଠାତ୍ ଅପ୍ରାସଙ୍ଗିକ ଭାବରେହିଁ ଏକ ସ୍ଥାନରେ ହଠାତ୍ 'ପର' (ଶ୍ରେଷ୍ଠ, ୨/୫୯) ଓ ଆଉ ଏକ ଶ୍ଳୋକ ପରେ 'ମତ୍ପରଃ' (୨/୬୧) ଶବ୍ଦରେ 'ଈଶ୍ୱର' ସୂଚିତ ହୋଇଛନ୍ତି ମାତ୍ର । ଗୀତାର ପର ଅଧ୍ୟାୟମାନଙ୍କରେ ଜ୍ଞାନୀ ଓ ଭକ୍ତମାନେ ଶେଷରେ 'ମୋ ଧାମକୁ' ବା 'ମୋଠାକୁ' ଯିବାର ବହୁ ସ୍ଥାନରେ କଥିତ ହେବାର ଆମେ ଦେଖିବା । ଅଥଚ ଏଠାରେ ହଠାତ୍ 'ବ୍ରାହ୍ମୀ ସ୍ଥିତି' ଓ 'ବ୍ରହ୍ମନିର୍ବାଣ' ଶବ୍ଦ ବ୍ୟବହାର କରିବାର ତାତ୍ପର୍ଯ୍ୟ କଣ ?

ବୌଦ୍ଧ ଦର୍ଶନରେ ଚାରିଟି ମାନସିକ ଅବସ୍ଥାର ନାମ 'ବ୍ରହ୍ମ-ବିହାର' । ସେସବୁ ହେଲେ—ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା । ଏସବୁ ବୌଦ୍ଧ ସାଧନାର ଅଙ୍ଗ । ପାଠକେ ତଳେଇ ଦେଖିଲେ ବୁଝିବେ ଯେ, ୭୧ ଶ୍ଳୋକରେ ବର୍ଣ୍ଣିତ 'ନିର୍ମମ', 'ନିରହଂକାର', 'ନିସ୍ପୃହ' ଶବ୍ଦମାନଙ୍କ ତଳେ ଯେଉଁ ମମତା, ଅହଂକାର, ସ୍ପୃହା ଆଦି ଦୋଷ ସୂଚିତ ହୋଇଛି, ତାର ବିପରୀତ ଗୁଣସବୁ ହେଉଛନ୍ତି ବୌଦ୍ଧ ବ୍ରହ୍ମ-ବିହାର । ଗୀତା ସେଗୁଡ଼ିକୁହିଁ ବ୍ରାହ୍ମୀ ସ୍ଥିତି ବା 'ବ୍ରହ୍ମମୟ ଅବସ୍ଥା' ବୋଲି ନାମ ଦେଇଛନ୍ତି ମାତ୍ର ।

'ନିର୍ବାଣ' ଏକାନ୍ତଭାବରେ ବୌଦ୍ଧ ଭାବ-କଳ୍ପ । ଏ ଶବ୍ଦର ତାତ୍ପର୍ଯ୍ୟ ଯାହା, ଗୀତାର ଶାନ୍ତିଦାୟୀ 'ପ୍ରଜ୍ଞା'ର ତାତ୍ପର୍ଯ୍ୟ ମଧ୍ୟ ଠିକ୍ ସେୟା । ନିର୍ବାଣର ଅର୍ଥ ଆଦୌ ନୁହେଁ ଜୀବନ-ଦୀପ ଲିଭିଯିବା । ଏହାର ଅର୍ଥ ନିମ୍ନ ଜାତିର ମନୁଷ୍ୟର ମୃତ୍ୟୁ ଓ ତା ସ୍ଥାନରେ ମହତ୍ତର ମନୁଷ୍ୟ ବା ଅର୍ହତର ବା ବୋଧି-ସତ୍ତ୍ୱର ଅଭ୍ୟୁଦୟ । କେବଳ ମାନସିକ ସ୍ତରରେ 'ନିର୍ବାଣ' ମଧ୍ୟ ବୁଝାଏ ସକଳ ତୃଷ୍ଣାର ଅବସାନଜନିତ ପରମ ଶାନ୍ତି । ଗୀତା କେବଳ 'ନିର୍ବାଣ' ଶବ୍ଦଟିକୁ ବ୍ୟବହାର ନ କରି, ତାକୁ ମୃତ୍ୟୁ-ପର ଅବସ୍ଥା ସହିତ ଯୋଡ଼ି, ଏକ ନୂତନ 'ବ୍ରହ୍ମନିର୍ବାଣ' ଶବ୍ଦ ବ୍ୟବହାର କରିଛନ୍ତି । ଏ ଅଧ୍ୟାୟରେ ଏପର୍ଯ୍ୟନ୍ତ ଗୀତା କେବଳ ଇହ ଜୀବନରେ ମାନସିକ ଶାନ୍ତି ବର୍ଣ୍ଣନା କରିଆସୁଥିଲାବେଳେ

(ପ୍ରଚିନ୍ତଙ୍କ ଜନର ଈଶ୍ବର ଦେଇ), ହଠାତ୍ ମୃତ୍ୟୁପରେ-ଲଭ୍ୟ 'ବ୍ରହ୍ମ-ନିର୍ବାଣ'କୁ ଆଣି ଥୋଇବା ଏକାନ୍ତ ଆବଶ୍ୟକ ଥିଲା ବୋଲି ମନେ ହୁଏ ନାହିଁ। ତାର ଯଥାର୍ଥ ସ୍ଥାନ ପରେ ଥିଲା। ଗୀତାର ଅଷ୍ଟମ ଅଧ୍ୟାୟ ବିଶେଷଭାବରେ ମୃତ୍ୟୁ-ପର-ଜୀବନ ସମ୍ବନ୍ଧିତ ସଂପୃକ୍ତ। ଅଥଚ ସେଠାରେ 'ବ୍ରହ୍ମନିର୍ବାଣ' ଶବ୍ଦର ଉଲ୍ଲେଖ ନାହିଁ। କିନ୍ତୁ ଏସବୁଦ୍ୱାରା ଗୀତାର ସାମଗ୍ରିକ ଭାବ-ପରିବେଷଣରେ ସାମାନ୍ୟତମ ଆଞ୍ଚ ଆସିଛି ବୋଲି କୁହାଯାଇପାରିବ ନାହିଁ। ଗୀତା ଯେ ଏକ 'ଇନ୍‌ସ୍ପାୟାର୍ଡ' ରଚନା, ଏଥିରେ ସନ୍ଦେହ ନାହିଁ। ସେପରି ନ ହୋଇଥିଲେ ଏହା ଏପରି ପରମ କାବ୍ୟିକ-ଗୁଣ-ଭୂଷିତ ହୋଇପାରି ନ ଥାନ୍ତା। 'ଇନ୍‌ସ୍ପାୟାର୍ଡ' ରଚନାରେ ଗୋଟାଏ ଗୋଟାଏ ଶବ୍ଦ କାହିଁ ଏପଟ ସେପଟ ହୋଇଯିବା ବିଚିତ୍ର ନୁହେଁ, କି ଆଦୌ ମଧ୍ୟ ହାନିକର ନୁହେଁ। ପାଠକେ ତେଣୁ ଗୀତାର ମୋଟ ମେସେଜ୍ ବା ଜୀବନାଦର୍ଶ ଉପରେହିଁ ଆଖି ରଖିଲେ ହେଲା, ଯଦିଓ ଗୀତାର ଗୋଟିଏ ଗୋଟିଏ ଶବ୍ଦ ପଛରେ କିପରି ଭାରତୀୟ ଚିନ୍ତାର ଶତାବ୍ଦୀସବୁ ଅଦୃଶ୍ୟଭାବରେ ଦଣ୍ଡାୟମାନ, ସେହି ବୌଦ୍ଧିକ କୌତୂହଳପ୍ରତି ମଧ୍ୟ ପାଠକେ ଆଖି ବୁଜିଦେବା ଉଚିତ ନୁହେଁ। ଗୀତା କେବଳ ହିନ୍ଦୁ ଧର୍ମର ଗ୍ରନ୍ଥ ନୁହେଁ। ଏହା ସମଗ୍ର ଭାରତୀୟ ଚିନ୍ତାର ପରମ ସିନ୍ଥେସିସ୍, ପରମ ପ୍ରତୀକ, ପୁଣି ଠିକ୍ ସେହି କାରଣରୁ ବିଶ୍ୱ-ଜନୀନ ଓ ସାର୍ବଜନୀନ।

ଇତି ଶ୍ରୀମହାଭାରତେ ଶତସହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମ-ପର୍ବଣି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସଂବାଦେ ସାଂଖ୍ୟଯୋଗୋ ନାମ ଦ୍ୱିତୀୟୋଽଧ୍ୟାୟଃ।

# ତୃତୀୟ ଅଧ୍ୟାୟ

## କର୍ମଯୋଗ

**ଅଧ୍ୟାୟଦୀପିକା :—**

ଗୀତାର ଏହି ଅଧ୍ୟାୟର ମାତ୍ର ଦ୍ୱିତୀୟ ଶ୍ଳୋକରେହିଁ ପାଠକେ ଏକ ବ୍ୟଞ୍ଜନାପୂର୍ଣ୍ଣ ବାକ୍ୟ ପାଇବେ—"ବ୍ୟାମିଶ୍ରେଣେବ ବାକ୍ୟେନ ବୁଦ୍ଧିଂ ମୋହୟସୀବ ମେ" (ଅର୍ଜୁନ ଶ୍ରୀକୃଷ୍ଣଙ୍କୁ କହୁଛନ୍ତି—କେବଳ ଗୁଡ଼ାଏ ମିଶା-ଗୋଳିଆ କଥା କହି ମୋର ବିଚାରଶକ୍ତିକୁ ଆପଣ ଯେପରିକି ବିଭ୍ରାନ୍ତ କରି-ଦେଉଛନ୍ତି !) ଏତେବେଳକୁ ପାଠକେ ନିଜେ ହିଁ ଏତ ବୁଝିବେଣି ଯେ, ଅର୍ଜୁନ ତାଙ୍କର ମନର କଥା ଏହି ବାକ୍ୟଟିରେ ଯେପରି ପ୍ରତିଧ୍ୱନିତ କରିପକାଇଛନ୍ତି । ଅର୍ଜୁନଙ୍କୁ ଯୁଦ୍ଧପାଇଁ ଉତ୍ସାହିତ କରିବା ସମଗ୍ର ଗୀତାର ତ ନିଶ୍ଚୟ, ପୁଣି ବିଶେଷ କରି, ଗୀତାର ଦ୍ୱିତୀୟ ଅଧ୍ୟାୟର ମୁଖ୍ୟ ଆଭିମୁଖ୍ୟ ଅର୍ଥାତ୍ କର୍ମଯୋଗ । କିନ୍ତୁ ଦ୍ୱିତୀୟ ଅଧ୍ୟାୟଟି ହୋଇଗଲା ବିଶୁଦ୍ଧ ଜ୍ଞାନଯୋଗର ଆଲୋଚନା ଏବଂ ତାହା ସ୍ୱାଭାବିକଭାବରେ ଶେଷ ହୋଇଛି 'ବ୍ରାହ୍ମୀ ସ୍ଥିତି' ଓ 'ବ୍ରହ୍ମନିର୍ବାଣ'ରେ । ଏହା ଲଢ଼େଇ ସହିତ କିପରି ସଂପୃକ୍ତ ? ଅର୍ଜୁନଙ୍କ ସନ୍ଦେହ ତେଣୁ ଯଥାର୍ଥ । ଗୀତାର ଅନେକ ସ୍ଥାନରେ ଆମେ ଏପରି ଆପାତତଃ ମିଶା-ଗୋଳିଆ କଥା ଭେଟିବା । ଏହି ତୃତୀୟ ଅଧ୍ୟାୟ ମଧ୍ୟ ତାହାର ଆଉ ଏକ ଅନୁତ୍କୃଷ୍ଟ ଦୃଷ୍ଟାନ୍ତ ନୁହେଁ । କାରଣ ଏହା କର୍ମଯୋଗର ବ୍ୟାଖ୍ୟା କରୁଛି ବୋଲି କୁହାଗଲେ ମଧ୍ୟ ଏଥିରେ ଜ୍ଞାନ ଓ ସଂଯମାଚରଣ ଉପରେ ବକ୍ତୃତା ମଧ୍ୟ ଆମେ ଢେର୍ ଶୁଣିବା ।

କିନ୍ତୁ ଏହି ଅଧ୍ୟାୟଟିର ପ୍ରକୃଷ୍ଟାଂଶ ଏବଂ ଆମର ସମଗ୍ର ଭାରତୀୟ ଧର୍ମ-ଶାସ୍ତ୍ରର ଏକ ଶ୍ରେଷ୍ଠ ସନ୍ଦେଶ ହେଉଛି—ଗୀତା ଏହି ଅଧ୍ୟାୟର ୯ରୁ ୧୬ ଶ୍ଳୋକଭିତରେ 'ଯଜ୍ଞ'ର ଯେଉଁ ସଂପୂର୍ଣ୍ଣ ନୂତନ ପରିକଳ୍ପନା ଦେଇଛନ୍ତି ।

କେବଳ ସେହି ଆଠଟି ଶ୍ଳୋକ ଯୋଗୁଁ ଏହି ଅଧ୍ୟାୟଟି ମହାନ୍ ହୋଇଉଠିଛି ଏବଂ ଆମର ଦୈନନ୍ଦିନ କର୍ମଜାଲ ପ୍ରତି, ଦେବାର୍ପିତ ହୋମର ଗୁଣ ଧାରଣ କରିପାରିବାର ମହତ୍ ସମ୍ଭାବନା ଗୀତା ଆମ ଆଗରେ ଥୋଇପାରିଛନ୍ତି। ବୈଦିକ ସାହିତ୍ୟରେ ଯଜ୍ଞର ଅନ୍ୟ ଯୋଗରୂଢ଼ ନାମ ଥିଲା 'କର୍ମ'। ବୈଦିକ ସାହିତ୍ୟ ସେଥିପାଇଁ କର୍ମକାଣ୍ଡ ଓ ଜ୍ଞାନକାଣ୍ଡ—ଏଇପରି ଦୁଇ ଭାଗରେ ବିଭକ୍ତ। ସେହି 'କର୍ମ'ହିଁ ଦିନେ ଏକ ବିଜ୍ଞାନରେ ପରିଣତ ହୋଇଗଲା ଏବଂ ଲୋକେ ଭାବିଲେ ସେହି 'ଆଗ୍ରହ'ହିଁ 'ଶ୍ରେଷ୍ଠ ଧର୍ମ'। ଗୀତା ସେହି ବୈଦିକ କର୍ମକୁ ଛାଡ଼ି ଆମର ଦୈନନ୍ଦିନ ଜୀବନର କର୍ମକୁ ଆସିଛନ୍ତି ଏବଂ ତାକୁହିଁ ପରିଣତ କରିଛନ୍ତି 'ଯଜ୍ଞ'ରେ। ତାହାହିଁ 'କର୍ମଯୋଗ'। ସେହି ଯୋଗୁଁହିଁ ଏ ଅଧ୍ୟାୟର ଏପରି ନାମ। ବର୍ତ୍ତମାନ ଏକ ପରେ ଏକ ଶ୍ଳୋକ ବିସ୍ତାର କରିବୁଲବା।

୧

ଅର୍ଜୁନ ଉବାଚ
ଜ୍ୟାୟସୀ ଚେତ୍ କର୍ମଣସ୍ତେ ମତା ବୁଦ୍ଧିର୍ଜନାର୍ଦ୍ଦନ
ତତ୍ କିଂ କର୍ମଣି ଘୋରେ ମାଂ ନିୟୋଜୟସି କେଶବ। ୧।

ଅର୍ଜୁନଃ ଉବାଚ (ଅର୍ଜୁନ କହିଲେ) [ହେ] ଜନାର୍ଦ୍ଦନ (ହେ ଶ୍ରୀକୃଷ୍ଣ) ବୁଦ୍ଧିଃ କର୍ମଣଃ ଜ୍ୟାୟସୀ ଚେତ୍ (ଯଦି ଜ୍ଞାନ କର୍ମ ଅପେକ୍ଷା ଶ୍ରେଷ୍ଠ) [ବୋଲି] ତେ ମତା (ତୁମର ମତ ଅଟେ) ତତ୍ (ତାହାହେଲେ) [ହେ] କେଶବ (ହେ ଶ୍ରୀକୃଷ୍ଣ) କିଂ (କାହିଁକି) ମାଂ (ମତେ) ଘୋରେ କର୍ମଣି (ଯୁଦ୍ଧ ରୂପକ ଏହି ବୀଭତ୍ସ କର୍ମରେ) ନିୟୋଜୟସି (ନିୟୋଜିତ କରୁଅଛ)?

**ଅନୁବାଦ**

ଅର୍ଜୁନ କହିଲେ, "ହେ କୃଷ୍ଣ, ଯଦି (ତୁମର କଥାରୁ ଯେତିକି ବୁଝୁଛି) କର୍ମଠାରୁ ବୁଦ୍ଧି ବା ଜ୍ଞାନ ମହତ୍ତର, ତେବେ ତୁମେ ମତେ (ସାଧାରଣ କର୍ମ ନୁହେଁ) ଏହି ଯୁଦ୍ଧ ପରି ବୀଭତ୍ସ କର୍ମରେ ନିୟୋଜିତ କରିବାକୁ ଚାହୁଁଛ କାହିଁକି?

**ବିଶେଷ ଭାଷ୍ୟ**

ଦ୍ୱିତୀୟ ଅଧ୍ୟାୟରେ ସାଂଖ୍ୟ-ଦର୍ଶନାନୁଯାୟୀ ଦେହାତ୍ମଭେଦ-ରୂପକ ଜ୍ଞାନ ଓ ନିଜର କ୍ଷତ୍ରିୟୋଚିତ କୀର୍ତ୍ତି ଓ କର୍ତ୍ତବ୍ୟ ଉପରେ ସଚେତନତା ଜାଗ୍ରତ କରାଇ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଇଲାପରେ 'ବୁଦ୍ଧିଯୋଗ' ବା ସମବୁଦ୍ଧି ହୋଇ ଫଳାଭିଳାଷଶୂନ୍ୟଭାବରେ କର୍ମ କରିବାକୁ ଉପଦେଶ ଦେଲେ। ସେ

ଏ ପ୍ରସଙ୍ଗରେ କହିଲେ ଯେ ପ୍ରତ୍ୟେକ କର୍ମ ପଛରେ 'ବୁଦ୍ଧିଯୋଗ' ରହିବା ଉଚିତ । ବୁଦ୍ଧିଯୋଗହିଁ ମନୁଷ୍ୟକୁ ଠିକ୍ ପଥରେ ନେବ, ଠିକ୍ କର୍ମରେ ନିଯୁକ୍ତ କରିବ । ସେଥିପାଇଁ ସେ ମଧ୍ୟ ଜୋର୍ ଦେଇ କହିଲେ, 'ବୁଦ୍ଧୌ ଶରଣମନ୍ୱିଚ୍ଛ' (ବୁଦ୍ଧିର ଆଶ୍ରୟ ନିଅ) ଏବଂ 'ବୁଦ୍ଧିନାଶାତ୍ ପ୍ରଣଶ୍ୟତି' (ବୁଦ୍ଧିପ୍ରୟୋଗ ନ ଥିଲେ ମନୁଷ୍ୟର ବିନାଶ ନିଶ୍ଚିତ) । ଶେଷ ଆଡ଼କୁ ଗୀତା 'ବୁଦ୍ଧି'ର ପରିପୂର୍ଣ୍ଣ ବିକାଶ 'ପ୍ରଜ୍ଞା' ବା ପ୍ରକୃଷ୍ଟ ଜ୍ଞାନର ଓ ସ୍ଥିତପ୍ରଜ୍ଞ ଲୋକର ସ୍ତୁତି ଗାନ କରି କରିହିଁ ଦ୍ୱିତୀୟ ଅଧ୍ୟାୟ ଶେଷ କଲେ ।

ତୃତୀୟ ଅଧ୍ୟାୟର ଆରମ୍ଭରେ ଅର୍ଜୁନ ତେଣୁ ପଚାରିଲେ, "ମନୁଷ୍ୟର ଶେଷ ଓ ପରମ ବିକାଶ ଯଦି ବୁଦ୍ଧ (ବୋଧି) ବା 'ପ୍ରଜ୍ଞା'ରେ, ତେବେ ଏ ଘୋର ବୀଭତ୍ସ ଜ୍ଞାତିହତ୍ୟା ରୂପକ କର୍ମ (ଯୁଦ୍ଧ)ରେ ମତେ ପ୍ରବୃତ୍ତଉଛ କାହିଁକି ? ମୂଳରୁ ବ୍ୟବସାୟାତ୍ମିକା ବୁଦ୍ଧି ଧରି 'ପ୍ରଜ୍ଞା' 'ସମାଧି'ର ପନ୍ଥା ଧରିଲେ କ୍ଷତି କଣ ? ଲୋକେ ଯାହା କହନ୍ତୁ, ସେଥିରେ ମୋର ଯାଏ ଆସେ କଣ ? ମୁଁ ଆପଣଙ୍କ ଉପଦିଷ୍ଟ 'ବୁଦ୍ଧି ଯୋଗ'ର ଆଶ୍ରୟ ନେଇହିଁ ଭାବୁଛି ଯେ, ଏ ଜ୍ଞାତି-ହତ୍ୟାରେ ପଶିବା ମୋର ଉଚିତ ନୁହେଁ ।"

୨

ବ୍ୟାମିଶ୍ରେଣେବ ବାକ୍ୟେନ ବୁଦ୍ଧିଂ ମୋହୟସୀବ ମେ
ତଦେକଂ ବଦ ନିଶ୍ଚିତ୍ୟ ଯେନ ଶ୍ରେୟୋଽହମାପ୍ନୁୟାମ୍ । ୨ ।

ବ୍ୟାମିଶ୍ରେଣ ଇବ ବାକ୍ୟେନ (କେବଳ ମିଶା-ଗୋଳିଆ କଥାରେ) ମେ ବୁଦ୍ଧିଂ ମୋହୟସି ଇବ (ମୋ ବୁଦ୍ଧି ବା ବିଚାରଶକ୍ତିକୁ ତୁମେ ଜାଣି ଜାଣି ଯେପରି ମୋହଗ୍ରସ୍ତ ବା ଉଦ୍‌ଭ୍ରାନ୍ତ କରୁଛ !) ତତ୍ ଏକଂ ନିଶ୍ଚିତ୍ୟ ବଦ (କର୍ମ ଓ ବୁଦ୍ଧିମଧ୍ୟରୁ ଗୋଟାକୁ ନିଶ୍ଚିତ କରି କହ) ଯେନ ଅହଂ ଶ୍ରେୟଃ ଆପ୍ନୁୟାଂ (ଯାହାଦ୍ୱାରା କି ମୁଁ ସେହି ଗୋଟିଏ ବାଟରେ ଈପ୍‌ସିତ କଲ୍ୟାଣ ଲାଭ କରିବି) ।

**ଅନୁବାଦ**

"ଆପଣ ଗୋଳିଆମିଶା କଥାସବୁ କହି ମୋର ଜ୍ଞାନକୁ ବରଂ ଅଧିକ ଭ୍ରାନ୍ତ କରାଉଛନ୍ତି । ମତେ ଆପଣ ବରଂ ଗୋଟିଏ ପନ୍ଥା ନିଶ୍ଚିତ କରି ଦେଖାନ୍ତୁ, ଯେଉଁ ଗୋଟିକ ବାଟରେ ଯାଇ ମୁଁ ଶେଷରେ ନିଶ୍ଚିତଭାବରେ ଶ୍ରେୟ ଲାଭ କରିବି ।"

୩

ଶ୍ରୀଭଗବାନୁବାଚ

ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାନଘ ।
ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗିନାମ୍ । ୩ ।

ଶ୍ରୀଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) । [ହେ] ଅନଘ (ହେ ନିଷ୍ପାପ ଅର୍ଜୁନ) ମୟା (ମୋଦ୍ୱାରା) ଅସ୍ମିନ୍ ଲୋକେ (ଏ ସଂସାରରେ) ଦ୍ୱିବିଧା ନିଷ୍ଠା (ମୋକ୍ଷପ୍ରାପ୍ତିର ଦୁଇପ୍ରକାର ସାଧନା) ପୁରା ପ୍ରୋକ୍ତା (ପୂର୍ବରୁ ପ୍ରବର୍ତ୍ତିତ ହୋଇ ରହିଛି ) । [ଏହି ଦୁଇ ସାଧନ-ମାର୍ଗ ହେଲା] ଜ୍ଞାନଯୋଗେନ ସାଂଖ୍ୟାନାଂ (ସାଂଖ୍ୟବାଦୀମାନଙ୍କର ଜ୍ଞାନଯୋଗ ଦେଇ) ଯୋଗିନାଂ କର୍ମ-ଯୋଗେନ (ଯୋଗବାଦୀମାନଙ୍କର କର୍ମଯୋଗ ଦେଇ) ।

## ଅନୁବାଦ

ଶ୍ରୀକୃଷ୍ଣ କହିଲେ, "ହେ ନିଷ୍ପାପ ଅର୍ଜୁନ, ମୋଦ୍ୱାରା ଏ ସଂସାରରେ ମୋକ୍ଷ-ପ୍ରାପ୍ତିର ଦୁଇପ୍ରକାର ସାଧନା ପୂର୍ବରୁ ପ୍ରବର୍ତ୍ତିତ ହୋଇଛି । ଏହି ଦୁଇ ମାର୍ଗ ହେଲା ସାଂଖ୍ୟବାଦୀମାନଙ୍କର ଜ୍ଞାନଯୋଗ ଏବଂ ଯୋଗବାଦୀମାନଙ୍କର କର୍ମଯୋଗ ।"

## ବିଶେଷ ଭାଷ୍ୟ

'ମୟା ପୁରା ପ୍ରୋକ୍ତା' (ମୋଦ୍ୱାରା ପୂର୍ବରୁ କୁହା ରହିଛି)ର ତାତ୍ପର୍ଯ୍ୟ ପ୍ରକୃତରେ ବ୍ୟାମିଶ୍ର ( ମିଶାଗୋଳିଆ) କଥା । କାରଣ ଐତିହାସିକ ଶ୍ରୀକୃଷ୍ଣ ନିଜେ ଅନ୍ୟ କୌଣସି ଗ୍ରନ୍ଥ ଲେଖିଯାଇଥିବାର ଜଣା ନାହିଁ, ଯହିଁରେ ଏପ୍ରକାର 'ଦ୍ୱିବିଧା ନିଷ୍ଠା' ବର୍ଣ୍ଣିତ ଅଛି ।

ସମଗ୍ର ବୈଦିକ ସାହିତ୍ୟଭିତରେ କେବଳ ଛାନ୍ଦୋଗ୍ୟ ଉପନିଷଦ୍(୩।୧୭।୬) ରେ 'ଦେବକୀପୁତ୍ର' ଶ୍ରୀକୃଷ୍ଣଙ୍କର ଉଲ୍ଲେଖ ମିଳେ । ସେଠାରେ ପୁଣି ଶ୍ରୀକୃଷ୍ଣ ନିଜେ କୌଣସି ଧର୍ମପ୍ରବର୍ତ୍ତକ ନୁହନ୍ତି, ସେ ସେଠାରେ ଋଷି ଘୋରଆଙ୍ଗିରସଙ୍କର ଶିଷ୍ୟ ଭାବରେହିଁ ଦେଖା ଦେଇଛନ୍ତି । ଆଙ୍ଗିରସ-ଗୋତ୍ର ଘୋର ନାମକ ଋଷିଙ୍କଠାରୁ ତରୁଣ 'ଦେବକୀପୁତ୍ର' କୃଷ୍ଣ 'ପୁରୁଷଯଜ୍ଞ' ବା 'ଯଜ୍ଞବିଜ୍ଞାନ' ଶିକ୍ଷା କରିଥିବାର କୁହାଯାଏ । ଛାନ୍ଦୋଗ୍ୟୋପନିଷଦ୍‌ରେ ଏହା ବିସ୍ତୃତଭାବରେ ବର୍ଣ୍ଣିତ ନ ହେଲେ ମଧ୍ୟ ମନେ ହେଉଛି ଯେ, ଗୀତା 'ଯଜ୍ଞ'ର ଯେଉଁ ବୈପ୍ଳବିକ ନୂତନ ବ୍ୟାଖ୍ୟା ଉପସ୍ଥାପିତ କରିଛନ୍ତି, ହୁଏତ ଏହି ତତ୍ତ୍ୱ ଋଷି ଘୋରଅଙ୍ଗିରସଙ୍କଠାରୁ ତରୁଣ ଶ୍ରୀକୃଷ୍ଣ ପାଇଥିଲେ । ସେହି ଛାନ୍ଦୋଗ୍ୟ ଉପନିଷଦ୍‌ରେ ଅଛି ଯେ,

ଶ୍ରୀକୃଷ୍ଣ ଘୋରଆଙ୍ଗିରସଙ୍କଠାରୁ ଏହି ଯଜ୍ଞବିଜ୍ଞାନ ଶିଖିବାପରେ 'ଅପିପାସ' ହୋଇଯାଇଥିଲେ ଅର୍ଥାତ୍ ଅନ୍ୟ ସାଧନାପାଇଁ ତାଙ୍କର ଆଉ ଉତ୍ସାହ ରହିଲା ନାହିଁ, ସେଇଥିରେହିଁ ସେ ତୃପ୍ତ ରହିଲେ ବା ସେ ପିପାସା ବା ଜୈବିକ ତୃଷ୍ଣା ବା ଆସକ୍ତିସବୁରୁ ମୁକ୍ତ ହୋଇଯାଇଥିଲେ । କର୍ମକାଣ୍ଡ ଓ ଜ୍ଞାନକାଣ୍ଡରେ ବିଭକ୍ତ ବିରାଟ ସମଗ୍ର ବୈଦିକ ସାହିତ୍ୟରେ ଶ୍ରୀକୃଷ୍ଣଙ୍କର କୌଣସି ହାତ ଥିବାର ଜଣାଯାଏ ନାହିଁ, କିନ୍ତୁ ଗୀତାରେ ଶ୍ରୀକୃଷ୍ଣ କର୍ମକାଣ୍ଡର ବିରୋଧୀ । ବୈଦିକ ଧର୍ମ ସଂପୂର୍ଣ୍ଣଭାବରେ ଆଚାର-ସର୍ବସ୍ୱ ଅର୍ଥାତ୍ ଯାଗଯଜ୍ଞମୟ ଥିଲା । ଏବେ ବି ଓଡ଼ିଶାର ଗାଁଗହଳରେ ବ୍ରାହ୍ମଣମାନେ ଯେଉଁ 'କର୍ମକର୍ମାଣି' କରିଥାନ୍ତି ବୋଲି କୁହାଯାଏ, ତାହା ଅଧିକାଂଶରେ ଏହି ବୈଦିକ ଆଚାର ମାତ୍ର । ଅର୍ଥାତ୍ ବୈଦିକ ଆଚାର-ଅନୁଷ୍ଠାନାଦିହିଁ 'କର୍ମ' ନାମରେ ଅଭିହିତ ଥିଲା ଓ ଅଛି । ସେହିସବୁହିଁ ହେଲା ବେଦର କର୍ମକାଣ୍ଡ ବା କର୍ମ ଭାଗ ବା କର୍ମ-ମାର୍ଗ । ପରେ ବୈଦିକ ଋଷିମାନେ ସୃଷ୍ଟି-ତତ୍ତ୍ୱ, ସଂସାର-ତତ୍ତ୍ୱ, ଆତ୍ମ-ତତ୍ତ୍ୱ ଇତ୍ୟାଦିଉପରେ ଗଭୀର ଆଲୋଚନା ଆରମ୍ଭ କଲେ । ଏଗୁଡ଼ିକ ଯେଉଁଥିରେ ଲିପିବଦ୍ଧ, ସେଗୁଡ଼ିକ ହେଲା ପ୍ରଥମେ 'ଆରଣ୍ୟକ' ଓ ପରେ 'ଉପନିଷଦ୍' । ଏସବୁରୁ କ୍ରମେ ଉଦ୍ଭୂତ ହେଲା ଭାରତର ଷଡ଼ଦର୍ଶନ—ମୀମାଂସା, ସାଂଖ୍ୟ, ଯୋଗ, ନ୍ୟାୟ, ବୈଶେଷିକ, ବେଦାନ୍ତ – ଭାରତୀୟ ଚିନ୍ତାର ମହିମାମୟ ପ୍ରକାଶ ଏବଂ ସମୁହଭାବରେ ଏସବୁହିଁ ଧରାଯାଏ ବେଦର 'ଜ୍ଞାନକାଣ୍ଡ' ବୋଲି । କିନ୍ତୁ ଗଭୀର ମନନ ଓ ପ୍ରଜ୍ଞାର ଦ୍ୟୋତକ ହେଲେହେଁ ଉପନିଷଦ୍‌ସବୁ ଏକାବେଳେ 'କର୍ମ'ମୁକ୍ତ ହୋଇପାରି ନାହିଁ । ଔପନିଷଦିକ ସାହିତ୍ୟରେ ବ୍ରହ୍ମ-ଜିଜ୍ଞାସାର ମହାନ୍ ପ୍ରତୀକ ହେଉଛନ୍ତି କଠୋପନିଷଦ୍‌ର କିଶୋର ନାୟକ ନଚିକେତା ଏବଂ ନଚିକେତାଙ୍କ ଜିଜ୍ଞାସାର ଆରମ୍ଭ ତାଙ୍କ ବାପାଙ୍କର ଯାଗଯଜ୍ଞାଦି ବୈଦିକ କର୍ମକାଣ୍ଡରୁ । ଏପରିକି ଛାନ୍ଦୋଗ୍ୟ ଉପନିଷଦ (୨।୨୪)ରେ ଆମେ, ଯଜମାନ (ଯେ ଯଜ୍ଞ କରିଏ) ମଲାପରେ ଏହି ପୃଥିବୀଲୋକକୁ ପୁଣି କିପରି ଫେରି ଆସିବ, ସେଥିପାଇଁ ମଧ୍ୟ ବିଶେଷ ମନ୍ତ୍ର ଓ କର୍ମର ବ୍ୟବସ୍ଥା ଦେଖିବା ।

ବିଶ୍ୱର ପଣ୍ଡିତବର୍ଗ ଭାରତୀୟ ବୈଦିକ ସାହିତ୍ୟକୁ ଖୁବ୍ ମୂଲ୍ୟବାନ୍ ମନେ କରନ୍ତି ଏହି କାରଣରୁ ଯେ, ଏଥିରେ ମାନବିକ ଜିଜ୍ଞାସାର ସ୍ୱାଭାବିକ ସ୍ତର-ସବୁ ଦେଖିବାକୁ ମିଳୁଛି । ଭାରତୀୟ ଧର୍ମରାଜ୍ୟରେ ଅବାଙ୍ମନସଗୋଚର ଅନିର୍ବଚନୀୟ ଭଗବାନଙ୍କର କୌଣସି ଏକମାତ୍ର ଜଣେ 'ପ୍ରଫେଟ୍' ବା ପ୍ରବକ୍ତା ଦେଖା ଦେଇ ନାହାନ୍ତି, ଯେପରି ଦେଖା ଦେଇଛନ୍ତି ଅନ୍ୟ ଧର୍ମମାନଙ୍କରେ ।

ଭାରତବର୍ଷରେ 'ଧର୍ମ' ଗଢ଼ା-ଜିନିଷ ନୁହେଁ । ଏହା ଆସ୍ତେ ଆସ୍ତେ, ସ୍ତରେ ସ୍ତରେ, ଆପେ ଆପେ ଗଢ଼ି ହୋଇଉଠିଛି, ଅର୍ଥାତ୍ ଇଭଲ୍‌ଭ୍ (evolve) କରିଛି । ତେଣୁ ବେଦ ବା ଉପନିଷଦ୍‌ସବୁକୁ କେହି କହିପାରିବ ନାହିଁ 'ମଧ୍ୟା ପ୍ରୋକ୍ତ' ବା 'ମୁଁ ଏସବୁ ଆଗରୁ କହିଥିଲି' ବୋଲି, ଯେପରି ଶ୍ରୀକୃଷ୍ଣ ଏଠାରେ କହିଛନ୍ତି । ସେପରି କହିବା ଏକାନ୍ତ ଅଯୌକ୍ତିକ, କାରଣ ବେଦ ଓ ଉପନିଷଦ୍ ବହୁ ଶତାବ୍ଦୀ ଧରି ବହୁ କବିଋଷିଙ୍କଦ୍ୱାରା ରଚିତ ହୋଇଆସିଛନ୍ତି ଏବଂ ସ୍ୱାଭାବିକଭାବରେ ସେସବୁଭିତରେ ପରସ୍ପରବିରୋଧୀ ଭାବକଳ୍ପସବୁ ଯଥେଷ୍ଟ ଭିତରିହିଛନ୍ତି ଏବଂ ସେପରି ହେବାରେ ସେସବୁର ସମ୍ମାନ ନ କମି ବରଂ ବଢ଼ିଛି, କହିବାକୁ ହେବ । ତେଣୁ 'ମଧ୍ୟା ପ୍ରୋକ୍ତ'ର କୌଣସି ସମୁଚିତ ତାତ୍ପର୍ଯ୍ୟ ଥିଲାପରି ମନେ ହେଉ ନାହିଁ ।

ଭାରତର ବିଖ୍ୟାତ ଷଡ୍‌ଦର୍ଶନ—ମୀମାଂସା, ସାଂଖ୍ୟ, ନ୍ୟାୟ, ବୈଶେଷିକ, ଯୋଗ—ବେଦାନ୍ତ – ଭିତରୁ ସାଂଖ୍ୟ, ଯୋଗ ଓ ବେଦାନ୍ତ ଭାରତୀୟ ଚିନ୍ତାଧାରାକୁ ଓ ସାଧାରଣ ଭାରତୀୟ ଚେତନାକୁ ଗଭୀରଭାବରେ ପ୍ରଭାବିତ କରିପାରିଛନ୍ତି । ଶ୍ରୀକୃଷ୍ଣ ଗୀତାର ଏହି ଶ୍ଳୋକରେ "ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ" ଯୋଗିନାଂ ଏହିପରି ଦୁଇ 'ନିଷ୍ଠା' ଅର୍ଥାତ୍ ଆତ୍ମାର ମୋକ୍ଷଲାଭର ଦୁଇଟି ସାଧନ-ମାର୍ଗ "ମୋଦ୍ୱାରା ପୂର୍ବେ କୁହାଯାଇଛି" ବୋଲି କହିଲାବେଳେ ଆମକୁ ମନେ ରଖିବାକୁ ହେବ ଯେ, ସାଂଖ୍ୟଦର୍ଶନର ସ୍ରଷ୍ଟା ଭାବରେ କପିଳ ଏବଂ ଯୋଗଦର୍ଶନର ସ୍ରଷ୍ଟା ଭାବରେ ପତଞ୍ଜଳିହିଁ ସର୍ବସ୍ୱୀକୃତ, ଶ୍ରୀକୃଷ୍ଣ ନୁହନ୍ତି । ସେ ଯାହା ହେଉ, ସାଂଖ୍ୟ ଦର୍ଶନକୁ ଯଥାର୍ଥରେ ଜ୍ଞାନମାର୍ଗ କୁହାଗଲେ ମଧ୍ୟ ପତଞ୍ଜଳିଙ୍କ ହଠଯୋଗ-ରାଜଯୋଗ ପ୍ରକ୍ରିୟାସବୁକୁ 'କର୍ମଯୋଗ' ବା ଏହା 'କର୍ମଯୋଗୀ'ମାନଙ୍କର ବ୍ୟାପାର ବୋଲି କହିବାର ମଧ୍ୟ କୌଣସି ହେଲେ ଯଥାର୍ଥତା ନାହିଁ । ଗୀତାରେ ପତଞ୍ଜଳି 'ଯୋଗ'ର ପ୍ରକୃତ ରେଫରେନ୍‌ସ ଆମେ ପାଇବା ଯାଇ ଷଷ୍ଠ ଅଧ୍ୟାୟରେ ।

କିନ୍ତୁ ଭଗବଦ୍‌ଗୀତାର ପରମ ମନୋଜ୍ଞ ବୈଶିଷ୍ଟ୍ୟ ହେଲା ଏହି ଯେ, ଏହା ଧର୍ମ, ଦର୍ଶନ ବା ଯାଗଯଜ୍ଞ ଇତ୍ୟାଦି, ଯାହା ସମାଜର ଉପର ସ୍ତରର ଲୋକଙ୍କ ଭିତରେହିଁ ସାଧାରଣତଃ ଆବଦ୍ଧ ଥାଏ, ସେସବୁକୁ ଆମର ଦୈନନ୍ଦିନ ଜୀବନଭିତରକୁ ଟାଣିଆଣିପାରିଛନ୍ତି । ପାତଞ୍ଜଳିଙ୍କ 'ଯୋଗ-ଦର୍ଶନ'ର ଶେଷ ଅବସ୍ଥା ହେଲା 'ସମାଧି' । ଗୀତା ଆମର ପ୍ରତ୍ୟେକ ଦୈନନ୍ଦିନ କର୍ମରେ

ମଧ୍ୟ ଏହି ସମାଧି ଲାଭଟି ଆମଠୁ ଆଶା କରନ୍ତି । ସେହିପରି ମଧ୍ୟ ଗୀତା ଚାହାନ୍ତି ଆମର ପ୍ରତ୍ୟେକ କର୍ମ ପଛରେ ଥିବ 'ବୁଦ୍ଧି' ବା ଜ୍ଞାନ । ଏହିପରିଭାବରେ ଅତି କୌଶଳରେ ଗୀତା କର୍ମଭିତରେ ସାଂଖ୍ୟ ଓ ଯୋଗକୁ ଏକାଠି କରି ଏକ ଅପୂର୍ବ 'କର୍ମଯୋଗ'ର ଆଦର୍ଶ ଆମ ଆଗରେ ଉପସ୍ଥାପିତ କରିଛନ୍ତି । ତେଣୁ ଆପାତ-ବ୍ୟାମିଶ୍ର ବାକ୍ୟାବଳୀଭିତରଦେଇ ଗୀତା ପ୍ରକୃତରେ ଆମକୁ ମହତ୍ ମାନବୀୟ ଜୀବନାଦର୍ଶ ଆଡ଼କୁ ନେଇଚାଲିଛନ୍ତି ବୋଲି ବୁଝିବାକୁ ହେବ ।

୪

ନ କର୍ମଣାମନାରମ୍ଭାନ୍ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।
ନ ଚ ସଂନ୍ୟସନାଦେବ ସିଦ୍ଧିଂ ସମଧିଗଚ୍ଛତି ।୪।

କର୍ମଣାଂ ଅନାରମ୍ଭାତ୍ (କୌଣସି ହେଲେ କାର୍ଯ୍ୟ ନ କରିବସିଲେ) ପୁରୁଷଃ (ଲୋକ) ନୈଷ୍କର୍ମ୍ୟଂ (ନିଷ୍କ୍ରିୟତାର ଆଦର୍ଶକୁ) ନ ଅଶ୍ନୁତେ (ପାଇପାଏ ନାହିଁ) । ଚ (ତେଣୁ କେବଳ) ସଂନ୍ୟସନାତ୍ ଏବ (ସନ୍ନ୍ୟାସ ଗ୍ରହଣ କରିନେଲେ, ଅର୍ଥାତ୍ ସାମାଜିକ-ପାରିବାରିକ ସକଳ କର୍ମ ପରିତ୍ୟାଗ କରିଦେଲେହିଁ) ସିଦ୍ଧିଂ ନ ସମଧିଗଚ୍ଛତି [ଲୋକକୁ] (ସହଜରେ ସିଦ୍ଧି ମିଳିଯାଏ ନାହିଁ) ।

**ଅନୁବାଦ**

"ହେ ଅର୍ଜୁନ, କାମ-ନ-କରିବାକୁ ଅନେକେ 'କର୍ମଯୋଗ' ବୋଲି ଭାବିଥାନ୍ତି ; କିନ୍ତୁ ତା ନୁହେଁ । କାମ ବନ୍ଦ କରିଦେଲେହିଁ 'ନୈଷ୍କର୍ମ୍ୟ' ଆସି-ଯିବନି । ସେହିପରି, କାମ ଛାଡ଼ି ପଳେଇଲେ, ମୋକ୍ଷରୂପକ ସିଦ୍ଧି ଆସିଯିବନି ।"

**ବିଶେଷ ଭାଷ୍ୟ**

ସମଗ୍ର ବୈଦିକ ସାହିତ୍ୟରେ 'କର୍ମଶୂନ୍ୟତା' ଯେ ମନୁଷ୍ୟର ଏକ ଆଦର୍ଶ ହୋଇପାରେ ବା ଏହାଫଳରେ ମୃତ୍ୟୁପରେ ମନୁଷ୍ୟର ଆତ୍ମା ମୋକ୍ଷ-ପ୍ରାପ୍ତ ହୋଇଯିବ, ଏପ୍ରକାର ଉଦ୍ଭଟ ଭାବକଳ୍ପ ବା ଚିନ୍ତା ଦେଖିବାକୁ ମିଳେ ନାହିଁ । ଇଣ୍ଡୋ-ଏରିୟାନ୍ ବା ଭାରତୀୟ ଆର୍ଯ୍ୟମାନେ ଇହଜୀବନକୁ ଏକମାତ୍ର ଓ ପରମ ଉପଭୋଗ୍ୟ ବିଷୟ ବୋଲିହିଁ ମନେ କରୁଥିଲେ । ସେମାନେ ବହୁ ବର୍ଷ ବଞ୍ଚିବାକୁ, ଘିଅ, ଦୁଧ, ମଦ୍ୟ, ମାଂସ ପ୍ରଚୁର ଖାଇବାକୁ, ଶତ୍ରୁ ହନନ କରିବାକୁ ଏବଂ ମଲାପରେ ପୁଣି ଏହିସବୁ ଭୋଗପାଇଁ ପୃଥିବୀକୁ ପୁଣି ଆସିବାକୁ ଚାହୁଁଥିଲେ । ବେଦର ଋକ୍‌ସବୁ ଏହିପ୍ରକାର ପ୍ରାର୍ଥନାରେହିଁ ପୂର୍ଣ୍ଣ ।

ଆରଣ୍ୟକ ବେଳକୁ ଦଳେ ଦଳେ ବୃଦ୍ଧ ଲୋକ ସମାଜ-ପରିବାର ତ୍ୟାଗ କରି, ବନଜଙ୍ଗଲରେ ରହି ସୌଭାଗ୍ୟ-ଦୁର୍ଭାଗ୍ୟ ଓ ଜୀବନ-ମୃତ୍ୟୁର ରହସ୍ୟ ସମ୍ପର୍କରେ ଚିନ୍ତା କରିବାର ଦେଖା ଦେଲା । ଆରଣ୍ୟକମାନଙ୍କର ପୃଷ୍ଠଭୂମିରୁ ପରେ ମାନବିକ ପ୍ରଜ୍ଞାର ସ୍ୱର୍ଣ୍ଣାଭରଞ୍ଜିତ ହୋଇ ବାହାରିଲେ ଉପନିଷଦ୍‌ସବୁ ।

ଆମେ ଧରିନେବା ଯେ, ଯେଉଁମାନେ ଆରଣ୍ୟକ ବା ଉପନିଷଦ୍ ସୃଷ୍ଟି କରିଯାଇଛନ୍ତି, ସେମାନେ ଅବଶ୍ୟ କୌଣସି କର୍ମ ବା ଯାଗଯଜ୍ଞ କରୁ ନ ଥିଲେ । କିନ୍ତୁ ସେମାନେ ବ୍ରାହ୍ମଣ୍ୟ ସାମାଜିକ ବ୍ୟବସ୍ଥାର କର୍ମମୟ ପ୍ରଥମ ଦୁଇ ଅବସ୍ଥା— ବ୍ରହ୍ମଚର୍ଯ୍ୟ (ବିଦ୍ୟା ଶିକ୍ଷା) ଓ ଗାର୍ହସ୍ଥ୍ୟ ସରିଲାପରେ ଯାଇ ସିନା, ଅର୍ଥାତ୍ ଯେତେବେଳେ ସେମାନେ କର୍ମଶକ୍ତି ହରାଇ ବସିଥିବେ ସେତେବେଳେ ଯାଇ ସିନା 'ଯତିବ୍ରତ' ବା 'ବାନପ୍ରସ୍ଥ'ର ଆପାତ-ନୈଷ୍କର୍ମ୍ୟ ଗ୍ରହଣ କରୁଥିଲେ ? ତେଣୁ ବିସ୍ମୟ ଏହି ଯେ,'ନୈଷ୍କର୍ମ୍ୟ' ବା କାମ ନ କରିବାଟା କେବେ, କିପରି, କେଉଁଠି, କାହାଦ୍ୱାରା ଭାରତୀୟ ଚିନ୍ତାରେ ଜୀବନର ଆଦର୍ଶ ବା ଧର୍ମୀୟ ଅଭ୍ୟାସର ଲକ୍ଷ୍ୟ ବୋଲି ଗୃହୀତ ହୋଇଥିଲା ?

ବୁଦ୍ଧ ଜୀବନର ସକଳ ଦୁଃଖରୁ ମୁକ୍ତି ପାଇବାପାଇଁ, 'ତୃଷ୍ଣାତ୍ୟାଗ' ପାଇଁ ଲୋକଙ୍କୁ କହିଥିଲେ—ସମାଜତ୍ୟାଗ ବା କର୍ମତ୍ୟାଗପାଇଁ ନୁହେଁ । କିନ୍ତୁ ସେ ନିଜେ 'ନିର୍ବାଣ' ବା ମୁକ୍ତି ପାଇଲାପରେ ଘରସଂସାରକୁ ଆଉ ଫେରି ନ ଥିଲେ ଏବଂ ରାଜପୁତ୍ର ହୋଇ ମଧ୍ୟ 'ଭିକ୍ଷୁ' ହୋଇହିଁ, ଅର୍ଥାତ୍ ଦୈନନ୍ଦିନ ଖାଦ୍ୟ ଭିକ୍ଷା କରିହିଁ ଚଳିଥିଲେ । ବୁଦ୍ଧ କଣ କହୁଥିଲେ ନ କହୁଥିଲେ ତାହା ଉତ୍ତମରୂପେ ନ ବୁଝିଲେ ମଧ୍ୟ ସମସାମୟିକ କାଳରେ ସହସ୍ର ସହସ୍ର ଭାରତୀୟ ତାଙ୍କର ଅସାଧାରଣ ବ୍ୟକ୍ତିତ୍ୱର ଚୁମ୍ବକସମ ଶକ୍ତିରେ ଟାଣିହୋଇ ତାଙ୍କ ପିଛା ଧରିଲେ ଏବଂ ତାଙ୍କ ଗୋଷ୍ଠୀର ଲୋକ ବୋଲେଇ ସମାଜରୁ ସମ୍ମାନ ଆଦାୟ କରିବାପାଇଁ ହଳଦିଆ ଲୁଗା ପିନ୍ଧି ବୁଲିଲେ । ଏଥିରେ ଅସ୍ୱାଭାବିକତା କିଛି ଦେଖିବାନି, ଯଦି ଆମେ ସ୍ମରଣ କରୁଁ ଗାନ୍ଧିଜୀଙ୍କ ଅସାଧାରଣ ଆକର୍ଷଣୀ ଶକ୍ତି ଯୋଗୁ 'ଗାନ୍ଧିବାଦୀ' ବୋଲି ଦେଖେଇହୋଇ ଏ ଦେଶରେ ଲକ୍ଷ ଲକ୍ଷ ଇତର ନରନାରୀ ଖଦଡ଼ ଧୋତି-ଶାଢ଼ି ଓ ଖଦଡ଼ ଟୋପି ପିନ୍ଧି ଏବଂ ଖଦଡ଼ ବ୍ୟାଗ ଧରି ଦେଶସାରା ପଙ୍ଗପାଳ ପରି କିପରି ଛୁଇ ହୋଇଯାଇ ମାତ୍ର କେତୋଟି ବର୍ଷ ଭିତରେ ଏ ଐତିହାସିକ ଜାତିର ନୈତିକ ମେରୁଦଣ୍ଡକୁ ପୋକରା କରିଦେଲେ ।

ବୁଦ୍ଧଙ୍କ ଜୀବନକାଳରେ ମଧ୍ୟ ଠିକ୍ ଏହିପରି ଘଟିଥିଲା । ଲୋକୋତ୍ତର ବୁଦ୍ଧଙ୍କ ପିଛା ଧରନ୍ତେ ତାଙ୍କ ପାର୍ଶ୍ୱଚରମାନେ ଯୁଆଡ଼େ ଗଲେ ସିଆଡ଼େ

ପାଇଲେ ମାଗଣାରେ ଉତ୍ତମ ଖାଦ୍ୟ ଓ ବାସ, ପୁଣି ଅଯାଚିତ ଲୋକ-ସମ୍ମାନ, ଠିକ୍ ଯେପରି ପାଇଲେ ତଥାକଥିତ ଗାନ୍ଧିବାଦୀମାନେ। ଏହି ପ୍ରଲୋଭନରେ ଲକ୍ଷ ଲକ୍ଷ ଅବାଞ୍ଛିତ ଲୋକ ବୌଦ୍ଧ-ସାଧନାର ଅଙ୍ଗ ବୋଲି ଭାବି 'ନୈଷ୍କର୍ମ୍ୟ' ବରଣ କଲେ। ବ୍ରାହ୍ମଣ୍ୟ ସାମାଜିକ ବ୍ୟବସ୍ଥା ଅନୁସାରେ ବାର୍ଦ୍ଧକ୍ୟ ପ୍ରାପ୍ତ ହେଲେ ଯାଇ ଅର୍ଥାତ୍ ଯତିବ୍ରତ ଓ ବାନପ୍ରସ୍ଥ ଅବସ୍ଥାରେହିଁ ଏପ୍ରକାର 'ନୈଷ୍କର୍ମ୍ୟ' ବରଣ କରାଯାଉଥିଲା—ବାଲ୍ୟ ବା ଯୌବନରେ ନୁହେଁ। ପୁଣି ଏଥି-ପାଇଁ କାହାପ୍ରତି ବାଧ୍ୟବାଧକତା ମଧ୍ୟ ନ ଥିଲା। ମାକ୍ସମୁଲର୍ କହିଲା ପରି ହିନ୍ଦୁମାନଙ୍କର 'ଚତୁରାଶ୍ରମ' କେବଳ ଏକ ଆଦର୍ଶ ଭାବରେ ହିଁ ଲୋକଙ୍କ ଆଗରେ ଥୁଆ ହୋଇଥିଲା। ଶେଷ ଦୁଇ ଆଶ୍ରମ ଖୁବ୍ ଅଳ୍ପ ଲୋକହିଁ ବରଣ କରୁଥିଲେ। ବୁଦ୍ଧ କିନ୍ତୁ 'ଧର୍ମ' ଓ 'ସଂଘ'ପାଇଁ ବୟସର ଅର୍ଗଳ କାଟିଦେଲେ। ପରେ ସେ ଲିଙ୍ଗଭର ଭେଦ ବି କାଟିଦେଲେ। ଫଳରେ ଲକ୍ଷ ଲକ୍ଷ ତରୁଣ-ତରୁଣୀ, ବୃଦ୍ଧ-ବୃଦ୍ଧା ନିଷ୍କର୍ମା ହୋଇ ସଂଘାରାମମାନଙ୍କରେ 'ଧର୍ମ' ସାଧନା କରୁଛନ୍ତି ବୋଲି କୁହାଗଲା ଓ ସମାଜ ସେ ସମସ୍ତଙ୍କୁ ପୋଷିଲା ଏବଂ ମନେ ରଖିବାକୁ ହେବ ଯେ, ବୌଦ୍ଧଧର୍ମର ଅଧଃପତନ ଓ ଧ୍ୱଂସ ହେଲା ସେହି ସୂତ୍ରରେ। ମନେ ହୁଏ ଯେ, ଧର୍ମସାଧନା ଭାବରେ 'ନୈଷ୍କର୍ମ୍ୟ' ବା କର୍ମତ୍ୟାଗ ବା ସନ୍ନ୍ୟାସ ଏହି ବୌଦ୍ଧ ପ୍ରଭାବରୁହିଁ ଭାରତୀୟ ଚେତନାରେ ବଦ୍ଧମୂଳ ହେଲା।

ଅନ୍ୟ ପକ୍ଷେ, ବୈଦିକ ବ୍ୟବସ୍ଥାରେ ଦିନେ ଯେଉଁ 'ଯଜ୍ଞ' କ୍ଷିତି, ଅପ୍, ତେଜ, ମରୁତ୍ ପ୍ରଭୃତି ପ୍ରାକୃତିକ ଶକ୍ତିମାନଙ୍କର ପ୍ରୀତି-ସାଧନ ବ୍ୟବସ୍ଥା ମାତ୍ର ଥିଲା, ପରେ ତାହା ଧରାହେଲା ଏକମାତ୍ର ଧର୍ମ ବୋଲି, ଅର୍ଥାତ୍ ଯଜ୍ଞ ସଂପୂର୍ଣ୍ଣଭାବରେ ଦେବତାଶୂନ୍ୟ ହୋଇ ସ୍ୱୟଂପ୍ରତିଷ୍ଠ ହୋଇଉଠିଲା। ଏଇ ଫର୍ମୁଲାରେ ଏଇ ମନ୍ତ୍ର ଏଇପରି ଉଚ୍ଚାରଣ କରି ଯଜ୍ଞ କଲେ ଇହ ଓ ପର, ଉଭୟ କାଳରେ ଏଇ ଏଇ ଫଳ ନିଶ୍ଚୟ ମିଳିବ ବୋଲି କୁହାଗଲା। ଏ ହେଲା 'ବ୍ରାହ୍ମଣ-ସ୍ତର'ର ଉତ୍କାନ୍ତେଣ ବା କ୍ଷୀୟମାଣ ଚିନ୍ତାଧାରା।

କିନ୍ତୁ 'ବ୍ରାହ୍ମଣ'ପରେ ଦେଖା ଦେଇଥିବା ଆରଣ୍ୟକ ଓ ଉପନିଷଦ୍ ସ୍ତରକୁ, 'ଯଜ୍ଞ' ବା 'କର୍ମ'ରୁ ଏପ୍ରକାର ବସ୍ତୁରହୀନ ବିଶ୍ୱାସ ଛୁଟିଆସିଲାଣି। ଲୋକେ ବେଦର କର୍ମକାଣ୍ଡ ଛାଡ଼ି ଜ୍ଞାନକାଣ୍ଡ ବା ଧ୍ୟାନ-ମନନାଦିରେ ମାତିଲେଣି। ଉପନିଷଦ୍‌ମାନଙ୍କରେ ଜ୍ଞାନ-ମାର୍ଗହିଁ ବିଶେଷ ପ୍ରଶଂସିତ। ସେହି ଔପନିଷଦିକ ଯାଗଯଜ୍ଞାଦିର ପରିତ୍ୟାଗକୁହିଁ ଗୀତା 'କର୍ମତ୍ୟାଗ' ବା 'ନୈଷ୍କର୍ମ୍ୟ' ବୋଲି

ଧରିଛନ୍ତି । ସାଂଖ୍ୟ-ପ୍ରଭାବିତ ଅନେକେ, କର୍ମଶୀଳ ପ୍ରକୃତିର ବନ୍ଧନରୁ ପୁରୁଷଙ୍କୁ ମୁକ୍ତ କରିବାପାଇଁ କର୍ମତ୍ୟାଗକୁ ଏକ ସାଧନ-ପନ୍ଥା ବୋଲି ମଧ୍ୟ ଧରିଲେଣି । ଗୀତା ଏହି ବ୍ରାହ୍ମଣ୍ୟ ଓ ବୌଦ୍ଧ 'ନୈଷ୍କର୍ମ୍ୟ'ର ବିରୋଧ ପ୍ରତିବାଦ । ଗୀତାରେ ଏହା ଭିନ୍ନ ଭିନ୍ନ ସ୍ଥାନରେ ସ୍ପଷ୍ଟ ସୂଚିତ ହୋଇଥିବାର ପାଇବା । କାମ-ନ-କରିବା, ଯୁଦ୍ଧ-ନ-କରିବା ଇତ୍ୟାଦି ଗୀତାର ଆଦର୍ଶ ହୋଇ ନ ପାରେ । ଆମେ ଦେଖିବା ଯେ, ଗୀତା କୌଣସିପ୍ରକାର ହେଲେ 'ନୈଷ୍କର୍ମ୍ୟ'କୁ ପସନ୍ଦ କରୁ ନାହାନ୍ତି । ବରଂ ଗୀତା ଉଭୟ ସାମାଜିକ ଓ ଶାସ୍ତ୍ରୀୟ ସାଧାରଣ 'କର୍ମ' ମାନଙ୍କୁ ହିଁ ଉପରେ ଏକ ବୈପ୍ଳବିକ ରୂପାନ୍ତର ଓ ଭାବାନ୍ତର ଦେଇଦିବେ, ଏହା ଆମେ ଶୀଘ୍ର ଦେଖିବାକୁ ପାଇବା ଏବଂ ତାହାହିଁ ଗୀତାଙ୍କର ଏକ ମହତ୍ତ୍ୱ ଓ ମୌଳିକ ବାଣୀ । ନିମ୍ନ ଶ୍ଳୋକଟିର ମହୀୟସୀ ମର୍ମ ପାଠକେ ଉତ୍ତମଭାବରେ ହୃଦୟଙ୍ଗମ କରିବାକୁ ପ୍ରାର୍ଥନା ।

୫

ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍
କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବଃ ପ୍ରକୃତିଜୈର୍ଗୁଣୈଃ । ୫ ।

ଜାତୁ (କେବେହେଲେ) କଶ୍ଚିତ୍ (କୌଣସି ହେଲେ ମନୁଷ୍ୟ) କ୍ଷଣଂ ଅପି (କ୍ଷଣକପାଇଁ ମଧ୍ୟ) ଅକର୍ମକୃତ୍ (କୌଣସି କାମ ନ କରି) ନ ହି ତିଷ୍ଠତି (ରହିପାରେ ନାହିଁ) । ହି (ଯେହେତୁ) ପ୍ରକୃତିଜୈଃ ଗୁଣୈଃ ଅବଶଃ(ପ୍ରକୃତିସ୍ଥ ଗୁଣ-ମାନଙ୍କଦ୍ୱାରା ବଶୀଭୂତ ହୋଇ) ସର୍ବଃ (ସବୁ ଜୀବ ଓ ମନୁଷ୍ୟ) କର୍ମ କାର୍ଯ୍ୟତେ (ପ୍ରତି ମୁହୂର୍ତ୍ତରେ କୌଣସି-ନା-କୌଣସି କାର୍ଯ୍ୟ କରିବାକୁ ବାଧ୍ୟ ହୋଇଥାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, 'ନୈଷ୍କର୍ମ୍ୟ' ଏକ ଅଯୌକ୍ତିକ ସାଧନ-ପନ୍ଥା । କାରଣ ଏ ଜଗତରେ କେହି କ୍ଷଣକପାଇଁ ହେଲେ କର୍ମହୀନ ହୋଇ ରହି ନ ପାରେ । ପ୍ରକୃତି-ତାଡ଼ିତ ହୋଇ ଲୋକେ କୌଣସି-ନା-କୌଣସି କର୍ମରେ ଅହରହ ବ୍ୟସ୍ତ ।"

**ବିଶେଷ ଭାଷ୍ୟ**

ଗୀତା ଏହି ଶ୍ଳୋକରେ ଏକ ପରମ ପ୍ରାକୃତିକ ସତ୍ୟ ଓ ତଥ୍ୟ ଲିପିବଦ୍ଧ କରିଯାଇଛନ୍ତି । ଜନ୍ମରୁ ମୃତ୍ୟୁଯାଏ ପ୍ରତ୍ୟେକ ଜୀବ କର୍ମଶୀଳ । କେବଳ ନିଃଶ୍ୱାସ ପ୍ରଶ୍ୱାସ ନେବାହିଁ ଏକ କର୍ମ, ନିଦ୍ରା ଓ ବିଶ୍ରାମ ମଧ୍ୟ ଏକ ଏକ କର୍ମ । ପ୍ରତ୍ୟେକ

ଜୀବଜନ୍ତୁ ଏବଂ ଏପରିକି ପ୍ରତି ଜଡ଼-ପଦାର୍ଥସ୍ଥ ପ୍ରତି ଅଣୁ ମଧ୍ୟ ଅବିଲୁପ୍ତଭାବେ ଭାବରେ ଚଳମାନ । ଆମର ଏହି କର୍ମପ୍ରବଣତା ପୁଣି ଅଧିକାଂଶରେ ସ୍ୱାଧୀନ କ୍ରିୟା ନୁହେଁ, ତାହା ଆମର ବାହ୍ୟ ପରିବେଶର ଅର୍ଥାତ୍ ପ୍ରକୃତି ଆମ-ଉପରେ-ପକାଇ-ଚାଲିଥିବା-ପ୍ରଭାବର ପ୍ରତିକ୍ରିୟା ମାତ୍ର । ତେଣୁ ଆମେ 'ଅବଶ' ହୋଇହିଁ ଅହରହ ଚଞ୍ଚଳ ହୋଇ ରହିଛୁ । ପରିବେଶଉପରେ ସ୍ୱବାଞ୍ଛିତ କ୍ରିୟା ସୃଷ୍ଟି କରନ୍ତି କେବଳ ମହାମାନବମାନେ, ଯୋଗୀ ଓ ସିଦ୍ଧମାନେ । ଆମ ପରି ସେମାନେ ମଧ୍ୟ କାମ କରନ୍ତି, କିନ୍ତୁ ପ୍ରକୃତି-ତାଡ଼ିତ ନ ହୋଇ । ସେମାନେ କାମ କରନ୍ତି ନିଜ ରୁଚି ଓ ଅଭିଳାଷ ଅନୁଯାୟୀ । ସେମାନେ ପ୍ରକୃତିକୁ ବଶ କରିହିଁ ସକ୍ରିୟ । ଆମର ସକ୍ରିୟତା ପ୍ରକୃତିର ବଶ୍ୟତା ଯୋଗୁଁ । ସେହିପରି ମଧ୍ୟ ଆମର ଆପାତ-ନିଷ୍କ୍ରିୟତା ଆମଉପରେ ପ୍ରକୃତିର ତମୋଗୁଣ ପ୍ରଭାବରୁ, ଆଳସ୍ୟରୁ ଆସେ । କିନ୍ତୁ ଆଳସ୍ୟଭିତରେ ମଧ୍ୟ ପ୍ରକୃତି କ୍ରିୟାରତ । ତେଣୁ, ନିଷ୍କ୍ରିୟତା ଜୀବନର ଆଦର୍ଶ ହୋଇ ନ ପାରେ । ଗୀତା ପରିପୂର୍ଣ୍ଣ ଯୁକ୍ତିଯୁକ୍ତତାରେ କହନ୍ତି ଯେ ଏହା ଅସମ୍ଭବ । ସୃଷ୍ଟିରେ 'ନିଷ୍କ୍ରିୟତା' ବା କର୍ମତ୍ୟାଗ ଏକ ଆତ୍ମପ୍ରତାରଣା ମାତ୍ର । ଏହା ଧର୍ମ-ସାଧନା ହୋଇ ନ ପାରେ ।

୬

କର୍ମେନ୍ଦ୍ରିୟାଣି ସଂଯମ୍ୟ ଯ ଆସ୍ତେ ମନସା ସ୍ମରନ୍
ଇନ୍ଦ୍ରିୟାର୍ଥାନ୍ ବିମୂଢ଼ାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ । ୬ ।

ଯଃ ବିମୂଢ଼ାତ୍ମା (ଯେଉଁ ମୂଢ଼ ଲୋକ) ଇନ୍ଦ୍ରିୟାର୍ଥାନ୍ (ବିଭିନ୍ନ ଇନ୍ଦ୍ରିୟର ଭୋଗ୍ୟ ବିଷୟସବୁକୁ) ମନସା ସ୍ମରନ୍ (ମନେ ମନେ ସ୍ମରଣ କରି) [ବାହାରେ] କର୍ମେନ୍ଦ୍ରିୟାଣି (କର୍ମେନ୍ଦ୍ରିୟମାନଙ୍କୁ) ସଂଯମ୍ୟ ଆସ୍ତେ (ସଂଯମରେ ରଖିଲାପରି ଚଳପ୍ରଚଳ ହୁଏ) ସଃ (ସେ ଲୋକ) [କୁ] ମିଥ୍ୟାଚାରଃ ଉଚ୍ୟତେ (ମିଥ୍ୟାଚାରୀ ବା କପଟାଚାରୀ କୁହାଯାଇଥାଏ) ।

## ଅନୁବାଦ

"ହେ ଅର୍ଜୁନ ! ଯେଉଁ ମୂଢ଼ ଲୋକ ତାର କେବଳ କର୍ମେନ୍ଦ୍ରିୟଗୁଡ଼ିକୁ ସଂଯତ କରିନେଇ, ମନେ ମନେ ଇନ୍ଦ୍ରିୟ-ଭୋଗ୍ୟ ବିଷୟସବୁକୁ ସ୍ମରୁଥାଏ, ସେ ଆପାତ-କର୍ମହୀନତାରେ ମଧ୍ୟ ପରମ ମିଥ୍ୟାଚାର କରୁଛି ବୋଲି ଜାଣିବ ।"

## ବିଶେଷ ଦ୍ରଷ୍ଟବ୍ୟ

ଇତିହାସର ସାକ୍ଷ୍ୟ ଏହି ଯେ, ବୌଦ୍ଧଧର୍ମ ଭାରତବର୍ଷରେ କ୍ରମେ ଜନ-ସମ୍ମାନ ହରାଇବାର କାରଣ ହେଲା ବୌଦ୍ଧବିହାରମାନଙ୍କରେ ପରିବ୍ୟାପ୍ତ ବ୍ୟଭିଚାର । ଭିକ୍ଷୁମାନଙ୍କ ବିହାର ପାଖେ ଭିକ୍ଷୁଣୀମାନଙ୍କ ବିହାର ଠିଆ ହୋଇ ମନୁଷ୍ୟର ସୁପ୍ତ ଜୈବିକ ପ୍ରବୃତ୍ତିକୁ ପ୍ରଲୋଭନ ଯୋଗାଇରଖିଲା । ଫଳରେ ନିବୃତ୍ତି ଓ ନିରୋଧର ପ୍ରତୀକରୂପେ ବାହାରେ ଅନେକେ ମୁଣ୍ଡ ଖିଅର ହୋଇ, ହଳଦିଆ ଲୁଗା ପିନ୍ଧି ବୁଲୁଥିଲେ ମଧ୍ୟ ସେମାନଙ୍କର ଭିତରେ ଭିତରେ କାମନାର ଯଜ୍ଞାନଳ ଜଳିରହୁଥିଲା । ଖୁବ୍ ସମ୍ଭବ ଗୀତା ସମସାମୟିକ କାଳର ଏହିପ୍ରକାର ଆପାତ-ସଂଯମୀ କିନ୍ତୁ ଅନ୍ତରରେ ସକଳ-ଲାଳସାକୁ-ବଞ୍ଚେଇରଖିଥିବା ବହୁ ନିଷ୍କର୍ମା ବୌଦ୍ଧ ଭିକ୍ଷୁମାନଙ୍କୁ ଲକ୍ଷ୍ୟ କରିହିଁ ଏହି କଥା କହିଛନ୍ତି । ଗୀତା ମୋଟ ଉପରେ ଧର୍ମରେ କୌଣସିପ୍ରକାର ବାହ୍ୟତାକୁ ଅର୍ଥାତ୍ ଆଚାର ଅନୁଷ୍ଠାନ ବା ଯାଗଯଜ୍ଞ ବା କେବଳ ଦେଖେଇହେବାପାଇଁ ସନ୍ନ୍ୟାସ-ନାମରେ-କର୍ମତ୍ୟାଗ ଇତ୍ୟାଦିକୁ ଆଦୌ ସମର୍ଥନ କରୁ ନାହାନ୍ତି । ଗୀତା କହନ୍ତି ଯେ, ଧର୍ମ ବା କର୍ମର ଉତ୍ସ ହେଲା ଆମ ନିଜ ନିଜ ଅନ୍ତରର ଶ୍ରଦ୍ଧା ଓ ନିଷ୍ଠା । ସେହି ଉତ୍ସଟା ଶୁଦ୍ଧ ଅଛି କି ନାହିଁ, ସେଠି ମିଥ୍ୟାଚାର ଅଛି କି ନାହିଁ, ତା ଉପରେହିଁ ଦୃଷ୍ଟି ରଖ । କାରଣ ଧର୍ମ ଆଦୌ ବାହାରର ଜିନିଷ ନୁହେଁ । ଏହାହିଁ ଗୀତାଙ୍କର ମୁଖ୍ୟ ବିଚାର୍ଯ୍ୟ । ସଂଯମ, ନିରୋଧ ବା ସନ୍ନ୍ୟାସ ଆଗ ଅନ୍ତରରେ ସମାହିତ ହେବା ଉଚିତ । ଭିତରେ ସଂଯମ ବା ନିଷ୍କ୍ରିୟତା ଥିଲେ, ବାହାରର ସହସ୍ର କର୍ମ କୌଣସି ବନ୍ଧନର କାରଣ ହୋଇ ନ ପାରନ୍ତି । ପରବର୍ତ୍ତୀ ଶ୍ଲୋକରେ ତାହାହିଁ କୁହାଯାଇଛି ।

୭

ଯସ୍ତ୍ୱିନ୍ଦ୍ରିୟାଣି ମନସା ନିୟମ୍ୟାରଭତେଽର୍ଜୁନ
କର୍ମେନ୍ଦ୍ରିୟୈଃ କର୍ମଯୋଗମସକ୍ତଃ ସ ବିଶିଷ୍ୟତେ । ୭ ।

ହେ ଅର୍ଜୁନ ! ଯଃ ତୁ (କିନ୍ତୁ ଯେଉଁ ଲୋକ) ଇନ୍ଦ୍ରିୟାଣି [ନିଜର] (ଇନ୍ଦ୍ରିୟମାନଙ୍କୁ) ମନସା ନିୟମ୍ୟ (ମନଭିତରୁହିଁ ସଂଯତ କରି) ଅସକ୍ତଃ (ଇନ୍ଦ୍ରିୟଭୋଗ୍ୟ ବିଷୟମାନଙ୍କପ୍ରତି ସତ୍ୟରେ ଆସକ୍ତିଶୂନ୍ୟ ରହି) କର୍ମେନ୍ଦ୍ରିୟୈଃ (ନିଜର କର୍ମେନ୍ଦ୍ରିୟମାନଙ୍କଦ୍ୱାରା ଅର୍ଥାତ୍ ନିଜ ଶରୀର ଦେଇ) କର୍ମଯୋଗଂ ଆରଭତେ (କର୍ମଯୋଗ ଭାବରେ ଦୈନନ୍ଦିନ କର୍ମସବୁ କରିଚାଲନ୍ତି) ସଃ (ସେ ଲୋକ) ବିଶିଷ୍ୟତେ [ସମାଜରେ] (ବିଶିଷ୍ଟତା ପାଇଥାନ୍ତି) ।

## ଅନୁବାଦ

"ହେ ଅର୍ଜୁନ, କିନ୍ତୁ ଯେଉଁ ଲୋକ ନିଜର ଇନ୍ଦ୍ରିୟମାନଙ୍କୁ ମନଭିତରେ ସଂଯତ କରି ଏବଂ ଇନ୍ଦ୍ରିୟମାନଙ୍କର ଭୋଗ୍ୟ ବିଷୟମାନଙ୍କଠାରେ ଅନାସକ୍ତ ରହି, ନିଜର କର୍ମେନ୍ଦ୍ରିୟମାନଙ୍କ ଦେଇ ଦୈନନ୍ଦିନ ଜୀବନର କର୍ମସବୁ, କର୍ମ-ଯୋଗ ଭାବରେ କରିଚାଲନ୍ତି, ସେହି ଲୋକହିଁ ସମାଜରେ ବା ଆଧ୍ୟାତ୍ମିକତାରେ ବିଶିଷ୍ଟତା ପ୍ରାପ୍ତ ହୋଇଥାନ୍ତି ।"

## ବିଶେଷ ଭାଷ୍ୟ

ଆମେ ପାର୍ଥିବ ଜୀବନକୁ ଭୋଗ କରୁଁ ସ୍ପର୍ଶ, ଘ୍ରାଣ, ଆସ୍ୱାଦ, ଶ୍ରବଣ ଓ ଦର୍ଶନାଦିର ପ୍ରୀତିକରତା ଦେଇ । ଭୋଜନରୁ ଆମେ ଯେପରି ପାଉଁ ଆସ୍ୱାଦର ସୁଖ ସେହିପରି ଘ୍ରାଣ-ଦର୍ଶନ-ଶ୍ରବଣାଦିର ସୁଖ । ଏସବୁପାଇଁ ପ୍ରକୃତି ଆମ ଦେହରେ ପାଞ୍ଚଟି ଇନ୍ଦ୍ରିୟ ଯଥାଯଥଭାବରେ ଖଞ୍ଜିରଖିଛି । ସ୍ପର୍ଶପାଇଁ ଚମଡ଼ା ବା ତ୍ୱକ୍, ଶ୍ରବଣପାଇଁ କର୍ଣ୍ଣ, ଘ୍ରାଣପାଇଁ ନାସିକା, ଦର୍ଶନପାଇଁ ଚକ୍ଷୁ, ଆସ୍ୱାଦ-ପାଇଁ ଜିଭ । କିନ୍ତୁ ଏମାନଙ୍କର ନିଜ ନିଜର ସ୍ୱାତନ୍ତ୍ର୍ୟ ନାହିଁ । ଏମାନଙ୍କର ରାଜା ଓ ଚାଳକ ହେଲା ମନ । ତେଣୁ ମନର ସଂଯମହିଁ ପ୍ରକୃତ ସଂଯମ । କୌଣସି ବାହ୍ୟ ଇନ୍ଦ୍ରିୟକୁ ଜବରଦସ୍ତି ନିରୋଧ କରିଦେଲେ ଶୁଦ୍ଧ ସଂଯମ ଆସିଯିବନି । ସୌନ୍ଦର୍ଯ୍ୟ ଏକ ପ୍ରଲୋଭନ ଏବଂ ଏହା ଚକ୍ଷୁର ଦୁର୍ବଳତାରୁ ଆସୁଛି ବୋଲି ମନେ କରି କେହି ନିଜକୁ ଅନ୍ଧ କରିଦେଇପାରେ । କିନ୍ତୁ ତାହା ହେବ ଘୋର ମୂର୍ଖତା । କାରଣ ଚକ୍ଷୁରୂପକ ବାହ୍ୟ କାର୍ଯ୍ୟକାରୀ ଇନ୍ଦ୍ରିୟ (ଦର୍ଶନେନ୍ଦ୍ରିୟର ଆଧାର) ବିନାଶପ୍ରାପ୍ତ ହେଲେହେଁ, ଭିତରେ ବା ମନରେ, ସୌନ୍ଦର୍ଯ୍ୟପ୍ରତି ଆକର୍ଷଣ ବା କୌଣସି ସୁନ୍ଦର ବଦନର ଭାବନା, ବାହାରେ ଆଖି ଦୁଇଟି ଅନ୍ଧୀଭୂତ ହୋଇଥିଲେ ମଧ୍ୟ, ବେଶ୍ ଚାଲିଥିବ । କିନ୍ତୁ ଗୀତା ତାକୁ ମିଥ୍ୟାଚାର କହି ତାର ଠିକ୍ ବିପରୀତ ଅଭ୍ୟାସକୁହିଁ ବିଶିଷ୍ଟ ସମ୍ମାନର ଅଧିକାରୀ ବୋଲି କହିଛନ୍ତି । କୌଣସି ଲୋକ ସାଧାରଣ ଲୋକ ଯାହା ଖାଏ, ଯାହା ଶୁଣେ, ଯାହା ଦେଖେ, ତାହା ମଧ୍ୟ ଖାଏ, ଶୁଣେ ଓ ଦେଖେ । ତାର କୌଣସି ଇନ୍ଦ୍ରିୟକୁ ସେ ଜବରଦସ୍ତି ନିରୋଧ କରୁନି, ଅଥଚ କୌଣସିଟି ହେଲେ ବିଷୟଭୋଗପ୍ରତି ସେ ଲୋକ ଆସକ୍ତ ନୁହେଁ । ସେ ଖାଉଛି, ଅଥଚ ଖାଦ୍ୟପ୍ରତି ତାର ଲାଳସା ନାହିଁ । ସେ ମଧୁର ସଙ୍ଗୀତ ଉପଭୋଗ କରିଥାଏ, ଅଥଚ ସମାନଭାବରେ ଉପଭୋଗ କରିଥାଏ ସଂସାରର ଗୋଳମାଳ । ଗୀତା ଏହିପ୍ରକାର ଅନାସକ୍ତ କର୍ମ କରିଚାଲିଥିବା ଲୋକକୁହିଁ ସମାଜର ଆଦର୍ଶ ବୋଲି ମନେ କରନ୍ତି ।

୮

ନିୟତଂ କୁରୁ କର୍ମ ତ୍ୱଂ କର୍ମ ଜ୍ୟାୟୋ ହ୍ୟକର୍ମଣଃ
ଶରୀରଯାତ୍ରାପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ । ୮ ।

ତ୍ୱଂ (ତୁମେ) ନିୟତଂ (ସର୍ବଦା) କର୍ମ କୁରୁ (କାମ କରିଚାଲ), ହି(ଯେହେତୁ) ଅକର୍ମଣଃ (କାମ ନ କରିବା ଅପେକ୍ଷା) କର୍ମ ଜ୍ୟାୟଃ (କର୍ମବ୍ୟସ୍ତତା ମହତ୍ତର)। ଅକର୍ମଣଃ ତେ (କାମ ନ କଲେ ତୁମର) ଶରୀରଯାତ୍ରା ଅପି ଚ (ଶରୀରଧାରଣ ଅର୍ଥାତ୍ ବଞ୍ଚି ରହିବା ବ୍ୟାପାର ମଧ୍ୟ) ନ ପ୍ରସିଦ୍ଧ୍ୟେତ୍ (ନିର୍ବାହିତ ହୋଇପାରିବ ନାହିଁ) ।

## ଅନୁବାଦ

ତେଣୁ ହେ ଅର୍ଜୁନ, ତୁମେ (ଅନାସକ୍ତ ରହି ହିଁ) ସର୍ବଦା କାମ କରିଚାଲ । କୌଣସି କାମ ନ କରିବା ଅପେକ୍ଷା (ଆସକ୍ତ ବା ଅନାସକ୍ତ, ଯେ କୌଣସି) କର୍ମ ମହତ୍ତର । କାରଣ କର୍ମଶୀଳ ନ ହେଲେ, ତୁମର ଜୀବନ-ଧାରଣ ହିଁ ତ ଅସମ୍ଭବ ହୋଇ ଉଠିବ ।

## ବିଶେଷ ଭାଷ୍ୟ

ଏହି ଶ୍ଲୋକର 'ନିୟତଂ' ଶବ୍ଦକୁ ପ୍ରାଚୀନ ଟୀକାକାରମାନେ ନାନା-ଭାବରେ ବ୍ୟାଖ୍ୟା କରିଚାଲିଛନ୍ତି । ଅର୍ଥାତ୍ ଏହା 'ଅନାସକ୍ତ' କର୍ମ ବା 'ଶ୍ରାଦ୍ଧାଦି ଶାସ୍ତ୍ରବିହିତ କର୍ମ' ଇତ୍ୟାଦି ବୋଲି ବ୍ୟାଖ୍ୟାତ ହୋଇଛି । କିନ୍ତୁ ଶ୍ଲୋକର ପର ପଂକ୍ତିରେ 'ଅକାମଠୁଁ କାମ ଶ୍ରେଷ୍ଠ' ଏହି ଅର୍ଥର ପରିପୋଷକ ଭାବରେ 'ନିୟତଂ'ର ସବୁଠାରୁ ଯଥାର୍ଥ ଓ ଯୁକ୍ତିଯୁକ୍ତ ଅର୍ଥରୂପେ ଏଠାରେ ''ନିୟତଂ—ସବୁବେଳେ କାମ କରିଚାଲ''—ଏହି ଅର୍ଥ ରଖାଗଲା । ଏହା ସ୍ୱାଭାବିକ ଅର୍ଥ ଓ ଯୌକ୍ତିକ ଅର୍ଥ ଏବଂ ଏହାହିଁ ବିଶେଷଭାବରେ ଆମ୍ଭମାନଙ୍କ ପରି ଏକ ଆଳସ୍ୟ-ପରାୟଣ ଜାତିପ୍ରତି ଗୀତାର ଶ୍ରେଷ୍ଠ ବାଣୀ । ଗୀତା ପରି ଶାସ୍ତ୍ର କେଉଁଠି କହିନାହିଁ ଯେ, ଖାଲି ଶାସ୍ତ୍ରାନୁମୋଦିତ କାମ ବା ଆଚାର ପାଳନ କର, ଆଉ ବାକି ସମୟତକ ଶୁଅ । ଗୀତା ପରି ଶାସ୍ତ୍ର ବରଂ କହିବ ଯେ ଅନବରତ କୌଣସି ନା କୌଣସି କାମରେ ନିଜକୁ ବ୍ୟାପୃତ ରଖ, କାରଣ ସଂପୂର୍ଣ୍ଣ କର୍ମହୀନତାଠାରୁ ଯେକୌଣସି କର୍ମ ଭଲ ।

ଗୀତାର ଏହି ଶ୍ଲୋକଟି ମଧ୍ୟ ସୂଚିତ କରାଇଦେଉଛି ଯେ, 'ଧର୍ମ-ଜୀବନ' କହିଲେ କେବଳ ଧ୍ୟାନ-ଧାରଣା ବୁଝାଏ ନାହିଁ । ପ୍ରତ୍ୟେକେ ନିଜର ଜୀବନ-ଯାତ୍ରା କଥା ବୁଝିବେ ଏବଂ ସେହି କର୍ମଭିତର ଦେଇହିଁ ଯୋଗାଭ୍ୟାସ କରିବେ । ଏହାହିଁ ଗୀତାର ଲକ୍ଷ୍ୟ । ଗୀତା ସାଧାରଣ ମନୁଷ୍ୟର ସାଧାରଣ ଜୀବନର ମହାମାନ୍ୟ ଦର୍ଶନ-ଗ୍ରନ୍ଥ ।

୯

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର ଲୋକୋଽୟଂ କର୍ମବନ୍ଧନଃ
ତଦର୍ଥଂ କର୍ମ କୌନ୍ତେୟ ମୁକ୍ତସଙ୍ଗଃ ସମାଚର । ୯ ।

ଯଜ୍ଞାର୍ଥାତ୍ କର୍ମଣଃ (ଯଜ୍ଞ ରୂପରେ ସଂପାଦିତ କର୍ମ ଭିନ୍ନ)ଅନ୍ୟତ୍ର (ଅନ୍ୟ ଭାବରେ ଅନୁଷ୍ଠିତ କର୍ମରେ) ଅୟଂ ଲୋକଃ (ସାଧାରଣ ମନୁଷ୍ୟ) କର୍ମବନ୍ଧନଃ କର୍ମଜନିତ ବନ୍ଧନଦଶା ପ୍ରାପ୍ତ ହୋଇଥାନ୍ତି) । [ତେଣୁ କୌନ୍ତେୟ (ହେ ଅର୍ଜୁନ) ମୁକ୍ତସଙ୍ଗଃ (ନିଃସଙ୍ଗ ବା ଅନାସକ୍ତ ରହି) ତଦର୍ଥଂ (ସେହି ଲକ୍ଷ୍ୟରେ) କର୍ମସମାଚର (କାମ କରିଚାଲ) ।

## ଅନୁବାଦ

"ହେ ଅର୍ଜ୍ଜୁନ, କିନ୍ତୁ ମନେ ରଖିଥିବ ଯେ, ଯଜ୍ଞରୂପେ ସଂପାଦିତ କର୍ମ ବ୍ୟତୀତ ଅନ୍ୟ ସକଳ କର୍ମ ମନୁଷ୍ୟର ଜନ୍ମମୃତ୍ୟୁ-ବନ୍ଧନର କାରଣ ହୋଇଥାନ୍ତି । ତେଣୁ ଆସକ୍ତିଶୂନ୍ୟ ହୋଇ ଯଜ୍ଞରୂପେହିଁ କର୍ମ ସଂପାଦନ କରିଚାଲ ।"

## ବିଶେଷ ଭାଷ୍ୟ

'ଯଜ୍ଞ' ଛଡ଼ା ଅନ୍ୟ ସକଳ କର୍ମ ଆମକୁ ବାନ୍ଧିରଖିବ —ଏହାର ତାତ୍ପର୍ଯ୍ୟ କଣ ? ପୁଣି ଯଜ୍ଞ-କର୍ମ ସାଥିରେ ମୁକ୍ତସଙ୍ଗ ବା ଅନାସକ୍ତ ହୋଇ କାମ କର ବୋଲି କହିବାର ଯୌକ୍ତିକତା କଣ ? 'କର୍ମଯୋଗ' ସହିତ ଯଜ୍ଞର କି ସଂପର୍କ ? ଗୀତା 'କର୍ମ' ବା 'ଯଜ୍ଞ' କହିଲେ କଣ ଠିକ୍ ବ୍ୟଞ୍ଜିତ କରୁଛନ୍ତି ? ଏହିସବୁ ପ୍ରଶ୍ନର ପ୍ରାଞ୍ଜଳ ଉତ୍ତର ଆମେ ପାଇବା ଦରକାର । ଏହିଠାରୁ ଆରମ୍ଭ କରି ସାତଟି ଶ୍ଳୋକରେ ଗୀତା ମହାଭାବପୂର୍ଣ୍ଣ 'ଯଜ୍ଞ-ଚକ୍ର-ଦର୍ଶନ' ଉପସ୍ଥାପିତ କରିବେ । ଏହି କେତୋଟି ଶ୍ଳୋକରେହିଁ ଗୀତା ବୈଦିକ 'ଯଜ୍ଞ' ନାମକ ବାହ୍ୟ ଅନୁଷ୍ଠାନଟିର ଏକ ବିପ୍ଳବାତ୍ମକ ଆଧ୍ୟାତ୍ମିକ ବ୍ୟଞ୍ଜନା ଦେଇଗଲେ ଯାହା ହେଉଛି ଆମ ପ୍ରତ୍ୟେକଙ୍କର ଦୈନନ୍ଦିନ ଜୀବନ ରୂପାନ୍ତରିତ ହୋଇଯିବାର କଥା ।

'ଯଜ୍' ଧାତୁରୁ ନିଷ୍ପନ୍ନ ଯଜ୍ଞ ଶବ୍ଦର ମୂଳ ଅର୍ଥ ହେଲା 'ସନ୍ତୁଷ୍ଟ କରିବା' । ଇଣ୍ଡୋ-ଏରିୟାନ୍ ବା ବୈଦିକ ଆର୍ଯ୍ୟମାନେ ନିଜର ପ୍ରିୟ ଖାଦ୍ୟ ମାଂସ, ଘୃତ ଓ ଶସ୍ୟାଦି ଏବଂ ନିଜର ପ୍ରିୟ ପାନୀୟ ସୋମରସ ଦେଇ କ୍ଷିତ୍ୟପ୍‌ତେଜମରୁତ୍-ବ୍ୟୋମ ଇତ୍ୟାଦି ଭିନ୍ନ ଭିନ୍ନ ପ୍ରାକୃତିକ ଦେବତାଙ୍କ ଉଦ୍ଦେଶ୍ୟରେ ଋକ୍ ବା ମନ୍ତ୍ର ଗାନ କରି 'ଯଜ୍ଞ' ଅର୍ଥାତ୍ 'ସନ୍ତୋଷ' ସମାଧାନ କରୁଥିଲେ ।

ପରେ ସେହି 'ଯଜ୍ଞ' ଏକ ସ୍ୱୟଂପ୍ରତିଷ୍ଠ ଅନୁଷ୍ଠାନରୂପେ ଠିଆ ହେଲା ଅର୍ଥାତ୍ ଏଇ ଏଇ ମନ୍ତ୍ର ଏଇପରି ଉଚ୍ଚାରଣ କରି ଏବଂ ଏଇ ବିଧି ଅନୁସାରେ

ଏଇପରି ଏଇପରି ବ୍ୟବସ୍ଥା କଲେ ଏହିପରି ଫଳ ସୁନିଶ୍ଚିତ—ଏହିଭଳି ପ୍ରଚାର କରିଗଲା । କୌଣସି ବିଶେଷ ଦେବତାଙ୍କୁ ସନ୍ତୁଷ୍ଟ କରିବାର ମଧ୍ୟ ପ୍ରୟୋଜନ ଆଉ ରହିଲା ନାହିଁ ଏବଂ ଏହାରି ଉପରେହିଁ ଜୈମିନିଙ୍କ ମୀମାଂସା ଦର୍ଶନ ଦଣ୍ଡାୟମାନ ହେଲା ।

ଅନ୍ୟ ପକ୍ଷରେ ସାଂଖ୍ୟ ଦର୍ଶନ ଓ ବୌଦ୍ଧ ଦର୍ଶନ ପ୍ରଭାବରେ 'କର୍ମ'ବାଦ ମଧ୍ୟ ଭାରତୀୟ ଚେତନାରେ ସେତେବେଳକୁ ଗଭୀର ରେଖାପାତ କରି-ସାରିଲାଣି । ସେପର୍ଯ୍ୟନ୍ତ ଲୋକେ ଭାବୁଥିଲେ ଯେ, ଆମର ସୁଖ ଓ ଦୁଃଖ ଦେବତାମାନଙ୍କର ଖିଆଲ । ସେହି ଖିଆଲୀ ଦେବତାମାନଙ୍କର ସନ୍ତୋଷପାଇଁ ଯେତେସବୁ ଯଜ୍ଞ । ଏବେ ବି ଭାରତରେ ସେ କଳ୍ପନା ଓ କ୍ରିୟା ଅତ୍ୟନ୍ତ ଜୀବିତ । କିନ୍ତୁ ସାଂଖ୍ୟ ଓ ବୌଦ୍ଧବାଣୀ ଲୋକଙ୍କୁ ଚେତାଇଦେଲା ଯେ, ଆମ ସୁଖଦୁଃଖ-ପାଇଁ ଦାୟୀ କେବଳ ଆମର ନିଜର କର୍ମ । ଅର୍ଥାତ୍, ଆମେ ପ୍ରତିଦିନ ଯେପରି କର୍ମ କରୁଛୁ, କେବଳ ତାରି ଅନୁସାରେ ସୁଖ ବା ଦୁଃଖ ଭୋଗ କରିଥାଉଁ । ଆମେ ଯେ ଏଇ ଜନ୍ମ ନେଇଛୁ, ତାହା ମଧ୍ୟ ଆମ ନିଜ କର୍ମରହିଁ ଫଳ । ଜରା-ବ୍ୟାଧି-ଦାରିଦ୍ର୍ୟ ବିଚ୍ଛେଦ ମରଣାଦି ସକଳ ଦୁଃଖର କାରଣହିଁ ଆମ ନିଜ କର୍ମ । ଆମର ବାରଂବାର ଜନ୍ମ ଓ ମୃତ୍ୟୁର କାରଣ ମଧ୍ୟ ଆମ କର୍ମ ଏବଂ ଏହାରି ନାମହିଁ 'କର୍ମବନ୍ଧନ' ।

ପୂର୍ବେ ଯେପରି କୁହାହୋଇସାରିଛି, ବେଦରେ ଯଜ୍ଞର ଅନ୍ୟ ନାମ ମଧ୍ୟ କର୍ମ । ଅବଶ୍ୟ ତାହା ହେଲା ଦେବୋଦ୍ଦିଷ୍ଟ କର୍ମ । କିନ୍ତୁ ଦେବୋଦ୍ଦିଷ୍ଟ ହେଲେହେଁ ବୈଦିକ ଯଜ୍ଞ ବା କର୍ମର ଲକ୍ଷ୍ୟ ଥିଲା—ସୁଖଭୋଗ । ଗୀତା କିନ୍ତୁ 'ଯଜ୍ଞ' ଶବ୍ଦରେ ସୁଖଭୋଗ ବା ସ୍ୱାର୍ଥପରତାର ଚିହ୍ନମାତ୍ର ନ ରଖି, ବୈଦିକ ଯଜ୍ଞର ଅନ୍ୟ ଦିଗଟି, ଯାହା କି ଥିଲା ଯଜ୍ଞର ସମସ୍ତ ତାତ୍ପର୍ଯ୍ୟ, ସେହି 'ତ୍ୟାଗ'ରେହିଁ ପର୍ଯ୍ୟବସିତ କରିଦେଇଛନ୍ତି ।

ବୈଦିକ ଯଜ୍ଞରେ ବ୍ରାହ୍ମଣ ଠିକ୍ ସ୍ୱର ଓ ଧ୍ୱନିରେ ମନ୍ତ୍ର (ଋକ୍) ପାଠ କରିବା, ପରଂପରାନୁଯାୟୀ ବେଦୀ ଓ ହୋମକୁଣ୍ଡାଦି ତିଆରି କରିବା ଓ ଶାସ୍ତ୍ର-ବିହିତମତେ ଉପାଦାନ ସଂଗ୍ରହ କରିବା ଇତ୍ୟାଦି ଅତ୍ୟାବଶ୍ୟକ ଥିଲା । ବୈଦିକ 'ଯଜ୍ଞ'ର ଏ ହେଲା ଗୋଟାଏ ପାଖ । ଦ୍ୱିତୀୟ ପାଖ ହେଲା 'ଯଜମାନ' ବା ଯଜ୍ଞ କରେଇବା ରଜା ବା ଗୃହସ୍ଥ ଲୋକର 'ଦାନ' ବା 'ତ୍ୟାଗ'ର କ୍ଷମତା ବା ଇଚ୍ଛା । ଏହା ହେଲା ଯଜ୍ଞର 'ଦାନ-ଦକ୍ଷିଣା' ଅଂଶ, ଯାହା ଏବେ ବି ପ୍ରତ୍ୟେକ ହିନ୍ଦୁ ଆଚାରର ଅତ୍ୟାଜ୍ୟ ଅଂଶ ହୋଇ ରହିଛି । କାଳିଦାସଙ୍କ ରଘୁବଂଶରେ ମହାରାଜ

ରଘୁ ଯଜ୍ଞଶେଷରେ 'ସର୍ବସ୍ୱ' ଦାନ କରିଦେଇଥିବାର ଏପରି ବର୍ଣ୍ଣିତ ଅଛି ଯେ, ଯଜ୍ଞସମାପ୍ତିର ଅଳ୍ପ କାଳପରେହିଁ ଜନୈକ ଉପଯାଚକ ବିଦ୍ୟାର୍ଥୀ ଆସି ଦେଖେ ଯେ, ବିଶ୍ୱ-ବିଜୟୀ ମହାରାଜ ରଘୁ ମାଟିପାତ୍ରରେ ଭୋଜନ କରୁଛନ୍ତି। ଐତିହାସିକ କାଳରେ ଅଶୋକ ଓ ହର୍ଷବର୍ଦ୍ଧନଙ୍କର ମଧ୍ୟ ଏହିପ୍ରକାର ସର୍ବସ୍ୱ-ଦାନର ବର୍ଣ୍ଣନା ସୁବିଦିତ। ପାଞ୍ଚ ବର୍ଷରେ ଥରେ ହର୍ଷବର୍ଦ୍ଧନ ପ୍ରୟାଗରେ ଯେଉଁ ଦାନ-ଯଜ୍ଞ କରୁଥିଲେ, ସେଥିରେ ବ୍ରାହ୍ମଣ ଓ ଶ୍ରମଣମାନଙ୍କୁ ଦେଇ ଦେଇ ଶେଷରେ ନିଜର ପିନ୍ଧିଲା ବସ୍ତ୍ର ମଧ୍ୟ ସେ ଦେଇଦେଉଥିଲେ ଏବଂ ସେଠାରୁ ସେ ପ୍ରାସାଦକୁ ଫେରୁଥିଲେ ଭଗିନୀ ରାଜ୍ୟଶ୍ରୀଠାରୁ ଧାର କରିଥିବା ଧୋତି-ଗୃହିର ପିନ୍ଧି।

ଭାରତୀୟ ସାହିତ୍ୟର ଅନ୍ୟତମ ମହାନ୍ ଗ୍ରନ୍ଥ, କଠୋପନିଷଦ୍, ବୈଦିକ ଯଜ୍ଞର ଏହି ଦାନ ବା ତ୍ୟାଗାଂଶରୁହିଁ ଉଦ୍ଭୂତ। ନଚିକେତାର ପିତା ଯଜ୍ଞ କଲେ। କିନ୍ତୁ ବୁଦ୍ଧିମାନ୍ ନଚିକେତା ଦେଖିଲା ଯେ, ପିତା ଯଜ୍ଞଶେଷରେ କେବଳ ବୁଢ଼ା ବୁଢ଼ୀ, ଅକର୍ମଣ୍ୟ ଗାଈ ଘୋଡ଼ାସବୁ ଦାନ କରୁଛନ୍ତି। ନଚିକେତା ଏହାର ପ୍ରତିବାଦ କଲା। ପୁଣି ଗାଈ, ଘୋଡ଼ା, ଜମି, ଘର ମନୁଷ୍ୟର ପ୍ରିୟ ହେଲେହେଁ କେହି ତ ଆଉ ପୁତ୍ରପରି ପ୍ରିୟ ହୋଇପାରିବ ନାହିଁ ଏବଂ ଯଜ୍ଞରେ ଈଶ୍ୱରଙ୍କୁ, ସବୁଠାରୁ ଯାହା ପ୍ରିୟ, ତାକୁହିଁ ଦେବାର କଥା। ଏହା ସବୁ ଧର୍ମରେ ବିଘୋଷିତ। ବୁଦ୍ଧିମାନ୍ ନଚିକେତା ତେଣୁ ପିତାଙ୍କୁ ବାରଂବାର ପଚାରିଲା—'ବାପା, ମତେ କେଉଁ ଦେବତାକୁ ଦେବ ?' ପିତା ଅକଡ଼ଆରେ ପଡ଼ିଲେ। ନଚିକେତା କିନ୍ତୁ ପଚାରି ପଚାରି ବିରକ୍ତ କରନ୍ତେ, ପିତା ରାଗିଯାଇ କହିପକାଇଲେ—'ତତେ ଯମକୁ ଦେବି।' ଯେପରି କଥା ସେପରି କାମ। କିଶୋର ନଚିକେତା ଉଠିଲା ଯାଇ ଯମଙ୍କ ରାଜ୍ୟରେ ଏବଂ ସମଗ୍ର ବିଶ୍ୱ-ସାହିତ୍ୟରେ ଅତୁଳନୀୟ ଏକ ଗ୍ରନ୍ଥ ଆମେ ପାଇଲୁଁ—'କଠୋପନିଷଦ୍'।

ଉପରେ ଯେପରି କୁହାଯାଇଛି, ଯଜ୍ଞ ହେଲା ଅନ୍ୟକୁ ସନ୍ତୋଷ ଦେବା। ଅନ୍ୟକୁ ସନ୍ତୁଷ୍ଟ କରାଯିବ କେବଳ ତ୍ୟାଗ ଦେଇ। ବୈଦିକ ଯଜ୍ଞରେ ସୁରା (ସୋମରସ), ମାଂସ ଓ ଶସ୍ୟାଦି ଅଗ୍ନିରେ ନିକ୍ଷେପ କରି ଯେ ଯଜ୍ଞ କରାଯାଉଥିଲା, ଧରିବାକୁ ହେବ ଯେ, ଗୃହସ୍ଥ ପକ୍ଷରେ ସେସବୁ ଦ୍ରବ୍ୟ ଥିଲା ପ୍ରିୟ। ଗୃହସ୍ଥ ସେ ସବୁକୁ ଏବଂ ପରେ ପ୍ରଚୁର ଦକ୍ଷିଣା ଦେଇ ଯେଉଁ 'ତ୍ୟାଗ' କରୁଥିଲେ, ତାହାହିଁ ଥିଲା ଯଜ୍ଞର ପ୍ରକୃତ ତାତ୍ପର୍ଯ୍ୟ। ମହାଭାରତରେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞପରେ ଅର୍ଦ୍ଧ-ସ୍ୱର୍ଣ୍ଣୀଭୂତ-ଶରୀର ଏକ ମୂଷିକ ଆସି ଯୁଧିଷ୍ଠିରଙ୍କୁ ଉଞ୍ଛବୃତ୍ତି-ବ୍ରାହ୍ମଣର

ତ୍ୟାଗ ନକରିବାରେ ସମ୍ରାଟୋଚିତ ଆଡ଼ମ୍ବରପୂର୍ଣ୍ଣ ସେହି ରାଜସୂୟ ଯଜ୍ଞର ବ୍ୟର୍ଥତା ଉପରେ ବର୍ଣ୍ଣନା କଲି, ପାଠକେ ତାହା ସ୍ମରଣ କରିବେ । ସମ୍ରାଟ ଯୁଧିଷ୍ଠିର ପ୍ରଚୁର 'ବ୍ୟୟ' କରିଥିଲେ । କିନ୍ତୁ ସେ 'ତ୍ୟାଗ' କଲେ କଣ ?

ଇଂରାଜୀରେ ଯଜ୍ଞର ଅନୁବାଦ କରାଯାଇଥାଏ sacrifice ବୋଲି, ଯାହାର ଅନ୍ୟ ଅର୍ଥ ମଧ୍ୟ 'ତ୍ୟାଗ' । ଗୀତାରେ 'ଯଜ୍ଞ' ଶବ୍ଦଟି, ବୈଦିକ ସମାଜର ଅଶ୍ୱମେଧ, ନରମେଧ, ଗୋମେଧ (ମେଧ—ହତ୍ୟା) ପ୍ରଭୃତି ଯଜ୍ଞର ସୀମାବଦ୍ଧତା ହରାଇ, ଏହି ଇଂରାଜୀ 'ସାକ୍ରିଫାଇସ୍' ଶବ୍ଦର ସକଳ ତାତ୍ପର୍ଯ୍ୟ ନେଇହିଁ ମହିମାନ୍ୱିତ ହୋଇଉଠିଛି । ଏହା ଗୀତାକାରଙ୍କ ପକ୍ଷରେ ଏକ ପରମ ଗୌରବ । ପର ଶ୍ଳୋକମାନଙ୍କରେ ଗୀତାର ଏହି ପରମ ଆଧୁନିକ ଓ ସାର୍ବଜନୀନ ବ୍ୟଞ୍ଜନା ଆହୁରି ଅଧିକ ପରିସ୍ଫୁଟ ହେବ ।

### ୧୦-୧୧

ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ
ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟକାମଧୁକ୍ । ୧୦ ।
ଦେବାନ୍ ଭାବୟତାନେନ ତେ ଦେବା ଭାବୟନ୍ତୁ ବଃ
ପରସ୍ପରଂ ଭାବୟନ୍ତଃ ଶ୍ରେୟଃ ପରମବାପ୍ସ୍ୟଥ । ୧୧ ।

ପୁରା (ପୂର୍ବକାଳରେ, ସୃଷ୍ଟି ଆରମ୍ଭରେ) ପ୍ରଜାପତିଃ (ପ୍ରଜାସୃଷ୍ଟିକାରକ ବ୍ରହ୍ମା) ସହଯଜ୍ଞାଃ ପ୍ରଜାଃ (ଯଜ୍ଞ ସହିତହିଁ ପ୍ରଜାମାନଙ୍କୁ) ସୃଷ୍ଟ୍ୱା (ସୃଷ୍ଟିକରି) [ସେହି ପ୍ରଜା ବା ମନୁଷ୍ୟ ସମାଜକୁ] ଉବାଚ (କହିଥିଲେ)—ଅନେନ (ଏହି ଯଜ୍ଞଦ୍ୱାରାହିଁ) ପ୍ରସବିଷ୍ୟଧ୍ୱଂ (ବୃଦ୍ଧିପ୍ରାପ୍ତ ହୁଅ) । ଏଷଃ (ଏହି ଯଜ୍ଞ) ବଃ (ତୁମ୍ଭମାନଙ୍କର) ଇଷ୍ଟକାମଧୁକ୍ (ସକଳ ଅଭୀଷ୍ଟପ୍ରଦ ଗାଈ ପରି) ଅସ୍ତୁ (ହେଉ) ।

ଅନେନ (ଏହି ଯଜ୍ଞଦ୍ୱାରା) ଦେବାନ୍ (ଦେବତାମାନଙ୍କୁ) ଭାବୟତ (ତୁମ୍ଭେମାନେ ସନ୍ତୁଷ୍ଟ କରଅ) । ତେ ଦେବାଃ ସେହି ଦେବତାମାନେ) ବଃ (ତୁମ୍ଭମାନଙ୍କୁ) ଭାବୟନ୍ତୁ (ସନ୍ତୁଷ୍ଟ କରନ୍ତୁ) । [ଏହିପରି] ପରସ୍ପରଂ ଭାବୟନ୍ତଃ (ପରସ୍ପର ସନ୍ତୋଷ-ବିଧାନଦ୍ୱାରା) [ତୁମ୍ଭେମାନେ] ପରଂ ଶ୍ରେୟଃ (ପରମ ମଙ୍ଗଳ) ଅବାପ୍ସ୍ୟଥ (ଲାଭ କରିବ) ।

## ଅନୁବାଦ

"ହେ ଅର୍ଜୁନ, କର୍ମ ଓ ଯଜ୍ଞର ଏହି ସମ୍ପର୍କ କେବଳ ମନୁଷ୍ୟସମାଜ ପାଇଁ ନୁହେଁ । ଏହା ସମଗ୍ର ସୃଷ୍ଟିବ୍ୟାପୀ । ସୃଷ୍ଟିର ଆରମ୍ଭରେହିଁ, ପ୍ରଜା ସୃଷ୍ଟିକାରୀ

ବ୍ରହ୍ମା, ପ୍ରଜା ବା ମନୁଷ୍ୟମାନଙ୍କୁ ସୃଷ୍ଟି କରିବା ସାଥେ ସାଥେ, ଯଜ୍ଞ ସୃଷ୍ଟି କରିଯାଇଛନ୍ତି । ସେପରି କରି ସେ ମନୁଷ୍ୟସମାଜକୁ କହିଥିଲେ—ଏହି ଯଜ୍ଞ-ଦ୍ୱାରହିଁ ବୃଦ୍ଧିପ୍ରାପ୍ତ ହୁଅ । ଏହି ଯଜ୍ଞହିଁ ତୁମପ୍ରତି ସକଳାଭୀଷ୍ଟପ୍ରଦ କାମଧେନୁପରି ହେଉ । କେବଳ ଏହାଦ୍ୱାରହିଁ ତୁମେ ଦେବତାମାନଙ୍କୁ ସନ୍ତୁଷ୍ଟ କରାଇ-ପାରିବ ଏବଂ ଦେବତାମାନେ ମଧ୍ୟ ଏହା ଦେଇ ତୁମକୁ ସନ୍ତୁଷ୍ଟ କରନ୍ତୁ । ଏହିପରି ପାରସ୍ପରିକ ସନ୍ତୋଷ-ବିଧାନରେହିଁ ତୁମ୍ଭେମାନେ ଶ୍ରେଷ୍ଠ ଶ୍ରେୟ ଲାଭ କରିବ ।"

**ବିଶେଷ ଭାଷ୍ୟ**

ଏହି ଦୁଇଟି ମହାନ୍ ଶ୍ଳୋକରେହିଁ ଗୀତା ଯଜ୍ଞକୁ ଏକ ବାହ୍ୟ ସାମାଜିକ ଆଚରଣରୁ ଊର୍ଦ୍ଧ୍ୱକୁ ଉଠାଇନେଇ ତାକୁ ବିଶ୍ୱସୃଷ୍ଟିର ଅନ୍ତର୍ନିହିତ ଏକ ସାର୍ବଭୌମ ନିୟମ ଓ ରହସ୍ୟରେ ପରିଣତ କରିଗଲେ । ଗୀତା କହନ୍ତି ଯେ, ଏହି ସୃଷ୍ଟିର ବିଧାତା-ପୁରୁଷ (ହିନ୍ଦୁମାନଙ୍କ ଭାଷାରେ ପ୍ରଜାପତି—ଅନ୍ୟ ଧର୍ମରେ ଅନ୍ୟ ଯା କିଛି ହୋଇପାରନ୍ତି, କ୍ଷତି ନାହିଁ) ଧରାର ଏହି ପ୍ରକୃତି, ଜୀବଗ୍ରାମ ଓ ମନୁଷ୍ୟଗୋଷ୍ଠୀ ସୃଷ୍ଟି କରିବା ସାଥେ ସାଥେ, ସେମାନଙ୍କ ଜୀବନଧାରାରେ 'ଯଜ୍ଞ' ଅର୍ଥାତ୍ 'ତ୍ୟାଗ'ର ବ୍ୟଞ୍ଜନା ଥୋଇଯାଇ ଇହଜୀବନର 'ଭୋଗ' ସହିତ ଏହି 'ତ୍ୟାଗ'କୁ ଅଙ୍ଗାଙ୍ଗୀଭାବରେ ଜଡ଼ିତ କରି ରଖିଯାଇଛନ୍ତି । ପ୍ରଜାପତିଙ୍କ ମତରେ ଇହଜଗତରେ 'ଯଜ୍ଞ' ଅର୍ଥାତ୍ 'ତ୍ୟାଗ'ହିଁ ଜୀବ ଓ ମନୁଷ୍ୟର ଅଭୀଷ୍ଟମାନଙ୍କର ପ୍ରକୃତ କାମଧେନୁ ଏବଂ ତାହାରିଦ୍ୱାରହିଁ ସେମାନଙ୍କର ଅଭ୍ୟୁଦୟ ହେବ । କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ ପ୍ରଭୃତି ପ୍ରାକୃତିକ 'ଦେବତା'ଙ୍କର 'ତ୍ୟାଗ' ବା ଦାନ ଯୋଗୁଁହିଁ ଧରାରେ ଜୀବ ଓ ଉଦ୍ଭିଦ ପ୍ରତିଷ୍ଠିତ । ମନୁଷ୍ୟ ତେଣୁ ସେହିପରି 'ତ୍ୟାଗ'ଦ୍ୱାରହିଁ ଦେବତାମାନଙ୍କୁ ସନ୍ତୁଷ୍ଟ କରିବା ଉଚିତ ; ଏବଂ ସେହିପ୍ରକାର ପାରସ୍ପରିକ 'ତ୍ୟାଗ'ଫଳରେହିଁ ମନୁଷ୍ୟ ଓ ଦେବତା କେବଳ ପରସ୍ପରପ୍ରତି ସନ୍ତୁଷ୍ଟ ରହିବେନି, ସୃଷ୍ଟି ଓ ସମାଜ ମଧ୍ୟ ସୁବିନ୍ୟସ୍ତ ଭାବରେ ଚାଲୁ ରହିବ ।

ବୈଦିକ ସାହିତ୍ୟରେ ଏହି ନିଖିଳ ସୃଷ୍ଟି ସ୍ରଷ୍ଟା (ପ୍ରଜାପତି ବା ବ୍ରହ୍ମା)ଙ୍କର 'ତପ' ବା 'ଯଜ୍ଞ'ର ଫଳ ବୋଲିହିଁ ରୂପକ ଭାବରେ ବର୍ଣ୍ଣିତ । ଅର୍ଥାତ୍, ଏହି ସମଗ୍ର ସୃଷ୍ଟିହିଁ ଏକ ଚିର ଚଳମାନ ବିରାଟ ଯଜ୍ଞ, ଯାହାର ମୌଳିକ ବିଧି ଓ ରହସ୍ୟ ହେଲା କେବଳ 'ତ୍ୟାଗ' । ବିଧାତାର ତପ (ଦହନ, ତାପ) ଫଳରେ କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ ଇତ୍ୟାଦି ସୃଷ୍ଟ ହେଲେ ଏବଂ ସେଇ-ମାନଙ୍କଠାରୁ ପରେ ସୃଷ୍ଟ ହେଲେ ଜଡ଼, ଉଦ୍ଭିଦ, ଜୀବ ଓ ମନୁଷ୍ୟ । କ୍ଷିତି, ଅପ୍,

ତେଜଃ, ମରୁତ୍, ବ୍ୟୋମ —ଏ ସମସ୍ତଙ୍କର ପ୍ରତି ମୁହୂର୍ତ୍ତର 'ତ୍ୟାଗ' ବା 'ଯଜ୍ଞ'-ଉପରେହିଁ ଆମ୍ଭମାନଙ୍କର ଅବସ୍ଥିତି ସମ୍ଭବ ହୋଇଛି । ଜଡ଼କୁ ଖାଇ (ଅର୍ଥାତ୍ ଜଡ଼ର ଯଜ୍ଞଉପରେହିଁ) ବୃକ୍ଷଲତା ଦଣ୍ଡାୟମାନ । ସେହିପରି ବୃକ୍ଷଲତାର ଯଜ୍ଞ ବା ତ୍ୟାଗଉପରେ ଜୀବର, ଏବଂ ଜଡ଼ ଓ ଜୀବ ଉଭୟର ଯଜ୍ଞ ବା ତ୍ୟାଗ-ଉପରେହିଁ ମନୁଷ୍ୟର ଅବସ୍ଥିତି ସମ୍ଭବ । ଏହିପ୍ରକାରେ ଏହି ନିଖିଳ ସୃଷ୍ଟି ଏକ ଯଜ୍ଞ-ଚକ୍ର ବା ତ୍ୟାଗ-ଚକ୍ରଉପରେହିଁ ପ୍ରତିଷ୍ଠିତ ଓ ଚଳମାନ । ପୁଣି, ଏ ଚକ୍ର ସୃଷ୍ଟିର ଶ୍ରେଷ୍ଠ ଶିଳ୍ପ ମନୁଷ୍ୟଠାରେ ଶେଷ ହୋଇଯାଉନାହିଁ । ଗୀତା ଗୁହାନ୍ତି ଏବଂ ପ୍ରତ୍ୟେକ ଧର୍ମ ମଧ୍ୟ କୁହେଁ ଯେ, ମନୁଷ୍ୟ ତାହାଲାଗି କ୍ଷିତ୍ୟପ୍-ତେଜଃମରୁତ୍-ବ୍ୟୋମାଦି ଦେଇ ପ୍ରକୃତିର ଅହରହ ତ୍ୟାଗପାଇଁ ସବୁବେଳେ କୃତଜ୍ଞ ବୋଧକରୁ । ଯାହା ସେ ଅନ୍ୟମାନଙ୍କଠାରୁ ପାଉଛି, ତାର କିଛି ହେଲେ ସେ ଅନ୍ୟକୁ ଦେଉ—ହେଉ ପଛେ ସେ ଦେବତା ନାଁରେ ବା ଅନ୍ୟ ଜୀବ ବା ମନୁଷ୍ୟ ନାଁରେ । ସୃଷ୍ଟିରେ ମୂଳ ତତ୍ତ୍ୱ ଯେ ହେଲା 'ତ୍ୟାଗ' (Sacrifice), ତାହା ମନୁଷ୍ୟ ସର୍ବଦା ସ୍ମରଣ ରଖୁ । ତାହାହିଁ ତାହା ପକ୍ଷରେ 'ଯଜ୍ଞ' । ବୀଜର ଧ୍ୱଂସଉପରେ ଉଦ୍ଭିଦର ଅଭ୍ୟୁଦୟ । କାଷ୍ଠ ନିଜକୁ ଜାଳି ତେଜୋମୟ ଅଗ୍ନିରେ ପରିଣତ ହେଉଛି । ଜନନୀର ତ୍ୟାଗ ରୂପକ ଯଜ୍ଞଉପରେ ଆମ ପ୍ରତ୍ୟେକଙ୍କର ଜୀବନ ଗଢ଼ା । ତାହାହିଁ ପ୍ରତ୍ୟେକ ଜନନୀର ଯଜ୍ଞ ବା ତପସ୍ୟା ପିଲାଙ୍କ ପାଇଁ । ପୁଣି ଗୋଷ୍ଠୀ, ଜାତି, ଦେଶ—ଏ ସମସ୍ତଙ୍କର ସାମୂହିକ ତ୍ୟାଗ ନ ଥିଲେ ଆମ ପ୍ରତ୍ୟେକର ଜୀବନ ମଧ୍ୟ ଅସହ୍ୟ ହୁଅନ୍ତା । ତେଣୁ ପ୍ରେମ ଓ ତ୍ୟାଗହିଁ ସୃଷ୍ଟିର ମୌଳିକ ବିଧି, ନୁହେଁ ସ୍ୱାର୍ଥପରତା ବା ହିଂସା । ତେଣୁହିଁ ଗୀତା କହୁଛନ୍ତି,'ଯଜ୍ଞ' ବା 'ତ୍ୟାଗ' ରୂପରେ ଆମେ 'ପରସ୍ପରଂ ଭାବୟନ୍ତଃ' ଅର୍ଥାତ୍ ପ୍ରତ୍ୟେକେ ପ୍ରତ୍ୟେକକୁ ସନ୍ତୁଷ୍ଟ କରିଚାଲିଲେହିଁ 'ଶ୍ରେୟଃ ପରଂ ଅବାପ୍ସ୍ୟଥ''—ଆମେ ଆମର ଶ୍ରେଷ୍ଠ କଲ୍ୟାଣକୁ ଜୀବନରେ ଲାଭ କରିପାରିବା ।

ପ୍ରାଚୀନ ହିନ୍ଦୁ ସମାଜ ଏହିପ୍ରକାର ପରସ୍ପର ସାହାଯ୍ୟ-ପ୍ରତିଷ୍ଠ ଭାବନାରେହିଁ ସହସ୍ର ସହସ୍ର ବର୍ଷ ଧରି ଶାନ୍ତ, ସମାହିତ, ସମୃଦ୍ଧ ଭାବରେ ଚାଲିଆସିଥିଲା । ସମାଜର ପ୍ରତ୍ୟେକ ଅଂଶ ଓ ପ୍ରତ୍ୟେକ ବ୍ୟକ୍ତିର ପ୍ରେରଣା ନ ଥିଲା । ତାର 'ଦାବି' ବା 'ଅଧିକାର' ଥିଲା ତାର ନୈତିକ ଦାୟିତ୍ୱ ବା କର୍ତ୍ତବ୍ୟ । ସମାଜର ଶ୍ରେଷ୍ଠ ଶୀର୍ଷସ୍ଥ ଜୀବ 'ବ୍ରାହ୍ମଣ' ଥିଲା ସଂପତ୍ତିହୀନ । ତାର ଏକମାତ୍ର ସମ୍ପତ୍ତି ଥିଲା ଶାସ୍ତ୍ରଜ୍ଞାନ ଓ ଆଧ୍ୟାତ୍ମିକ ସାଧନା । ସେସବୁକୁ ବିନା ମୂଲ୍ୟରେ ବିତରଣ କରିବା ଓ ସମଗ୍ର ସମାଜର କଲ୍ୟାଣ ପ୍ରାର୍ଥନା କରିବାହିଁ ଥିଲା ତାହାର ପାର୍ଥିବ ଜୀବନର ସୁଖ ଓ ମର୍ଯ୍ୟାଦା । ସେହିପରି ବିପନ୍ନଙ୍କୁ ରକ୍ଷା କରିବା ଥିଲା 'କ୍ଷତ୍ରିୟ'ର ଧର୍ମ ।

'ବୈଶ୍ୟ'ର ଧର୍ମ ଥିଲା ବ୍ୟବହାର୍ଯ୍ୟ ଦ୍ରବ୍ୟ ଯୋଗାଇଦେବା । 'ଶୂଦ୍ର'ର ଧର୍ମ ଥିଲା ଅନ୍ୟମାନଙ୍କର ସେବା କରିବା ।

ଗତ ଶହେ ବର୍ଷ ହେଲା, ପାଶ୍ଚାତ୍ୟ ଦେଶର ଆର୍ଥିକ-ପ୍ରତିଯୋଗିତା ଜୀବନର ଏକମାତ୍ର ଆଦର୍ଶରୂପେ ଗୃହୀତ ହେବା ଫଳରେ ଶାନ୍ତିପୂର୍ଣ୍ଣ ଓ ସମୃଦ୍ଧ ଭାରତୀୟ ସମାଜ ଆଜି ବୀଭତ୍ସଭାବରେ ବିକଳ ଓ ବିପର୍ଯ୍ୟସ୍ତ । ସମଗ୍ର ପୃଥିବୀ ମଧ୍ୟ ଏଥିମଧ୍ୟରେ ଠିକ୍ ଏହି ଜୀବନାଦର୍ଶର ପରିଣାମ ଭାବରେହିଁ ଦୁଇ ଦୁଇଟି ମାରାତ୍ମକ ବିଶ୍ୱ-ଯୁଦ୍ଧ ଦେଇ କୌଣସିମତେ ବର୍ତ୍ତିଗଲେ ମଧ୍ୟ ବର୍ତ୍ତମାନ ତୃତୀୟ ବିଶ୍ୱଯୁଦ୍ଧପାଇଁ ପ୍ରସ୍ତୁତ, ଯାହା ସମଗ୍ର ମାନବ-ସଭ୍ୟତାକୁ ଧ୍ୱଂସ କରି-ଦେଇପାରେ ।

ଏହାହିଁ ହିଂସା ଓ ପ୍ରତିଯୋଗିତା ଏବଂ ପାର୍ଥିବତାର ଏକମାତ୍ର ପରିଣତି । ଈଶ୍ୱରହୀନ ଓ ନୈତିକତାହୀନ ଏବଂ ଜାନ୍ତବ-ଜାଙ୍ଗଲ-ତତ୍ତ୍ୱ-ପ୍ରତିଷ୍ଠ କମ୍ୟୁନିଜମ୍ ଏହି ଜୀବନାଦର୍ଶର ପରିଣତି, ଯେଉଁଠି ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ବା ସ୍ୱାଧୀନ ମତର ଏକମାତ୍ର ପ୍ରତିକ୍ରିୟା ହେଉଛି – ବୁଲେଟ୍ ବା କାରାର ଅମାନୁଷିକ ଯନ୍ତ୍ରଣା ।

ସମଗ୍ର ଭାରତୀୟ ସଭ୍ୟତା ଜାଙ୍ଗଲ ଓ ଜାନ୍ତବ ସ୍ତରର ଡାରୁଇନୀୟ ପ୍ରତିଯୋଗିତା ବା ନିଷ୍ଠୁର ଜୀବନସଂଗ୍ରାମର, ଯୋଗ୍ୟତମର ଉଦ୍‌ବର୍ତ୍ତନ-ତଥ୍ୟକୁ ପରିତ୍ୟାଗ କରି, ସଭ୍ୟତା-ମାନବିକତା ଓ ସାଂସ୍କୃତିକତା-ସମ୍ପନ୍ନ ପାରସ୍ପରିକ-ସହଯୋଗ-ତତ୍ତ୍ୱଉପରେହିଁ ଠିଆ ହୋଇଥିଲା । ସଂସ୍କୃତି ଠିଆ ହୋଇଥିଲା ତ୍ୟାଗ ଉପରେ—ଭୋଗ ବା ସ୍ୱାର୍ଥଉପରେ ନୁହେଁ । ଅର୍ଥାତ୍ 'ଯଜ୍ଞ'ଉପରେ, ଏବଂ ସବୁଠାରୁ ବଡ଼ ଯଜ୍ଞ ଥିଲା 'ଆତ୍ମତ୍ୟାଗ' ବା 'ଆତ୍ମଯଜ୍ଞ', ଯେଉଁଥିରେ ବ୍ୟକ୍ତି ଆପଣାକୁ ସମାଜ ବା ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସଂପୂର୍ଣ୍ଣରୂପେ, ସାମାନ୍ୟ ଅହଂଭାବ ସୁଦ୍ଧା ନ ରଖି, ସମର୍ପଣ କରିଦେଇପାରୁଥିଲା ।

ଗୀତା ଆମର ସାମାଜିକ, ବ୍ୟକ୍ତିଗତ ଦୈନନ୍ଦିନ ଜୀବନ ଓ ଆଧ୍ୟାତ୍ମିକ ଜୀବନକୁ ଆତ୍ମଭୋଗରୁ, ଆତ୍ମକୈନ୍ଦ୍ରିକତାରୁ ଟାଣିଆଣି ଏହିପ୍ରକାର ତ୍ୟାଗଭିତ୍ତିକ ଯଜ୍ଞରେ ପରିଣତ କରିବାକୁହିଁ ଉପଦେଶ ଦେଇଥିଲେ ।

ସମଗ୍ର ବିଶ୍ୱ-ସାହିତ୍ୟରେ ଏହା ଏକ ବିରାଟ ଓ ସଂପୂର୍ଣ୍ଣ ଯୁକ୍ତିଯୁକ୍ତ ଭାବନା ଓ ଜୀବନାଦର୍ଶ ।

ଗୀତା ପରି ଶ୍ଳୋକାବଳୀରେ ସୃଷ୍ଟିରେ ଅବସ୍ଥିତ ଥିବା ଏହି ନିବିଡ଼ ପାରସ୍ପରିକ ସଂପର୍କଟିକୁ ଆହୁରି ଭଲକରି ବୁଝାଉଛନ୍ତି—ଏହାର ବିପରୀତାତ୍ମକ ଜୀବନର ଭୟାବହତା ବର୍ଣ୍ଣନା କରି ।

୧୨-୧୩

ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା ଦାସ୍ୟନ୍ତେ ଯଜ୍ଞଭାବିତାଃ
ତୈର୍ଦତ୍ତାନପ୍ରଦାୟୈଭ୍ୟୋ ଯୋ ଭୁଙ୍କ୍ତେ ସ୍ତେନ ଏବ ସଃ । ୧୨ ।
ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍ବିଷୈଃ
ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ । ୧୩ ।

ହି (ଯେହେତୁ) ଦେବାଃ (ଦେବତାମାନେ) ଯଜ୍ଞଭାବିତାଃ (ଯଜ୍ଞଦ୍ୱାରା ସନ୍ତୁଷ୍ଟ ହୋଇ) ବଃ (ତୁମ୍ଭମାନଙ୍କୁ) ଇଷ୍ଟାନ୍ ଭୋଗାନ୍ (ଈପ୍ସିତ ଭୋଗ୍ୟବସ୍ତୁସବୁ) ଦାସ୍ୟନ୍ତେ (ଦେବେ), ତୈଃ ଦତ୍ତାନ୍ (ସେମାନଙ୍କଦ୍ୱାରା ପ୍ରଦତ୍ତ ଭୋଗ୍ୟବସ୍ତୁସବୁକୁ) ଏଭ୍ୟଃ (ସେମାନଙ୍କୁ) ଅପ୍ରଦାୟ (ନ ଦେଇ) ଯଃ ଭୁଙ୍କ୍ତେ (ଯେ ଭୋଗ କରେ) ସଃ (ସେ ଲୋକ) ସ୍ତେନଃ ଏବ (ନିଶ୍ଚୟ ଚୋର ବୋଲି କଥିତ ହେବ) ।

ଯଜ୍ଞଶିଷ୍ଟାଶିନଃ (ଯଜ୍ଞର ଅବଶିଷ୍ଟକୁହିଁ ଭୋଜନ କରୁଥିବା) ସନ୍ତଃ (ଉତ୍ତମ ଜନମାନେ) ସର୍ବକିଲ୍ବିଷୈଃ ମୁଚ୍ୟନ୍ତେ (ସକଳ ପାପରୁ ମୁକ୍ତ ହୋଇ-ଥାନ୍ତି) । ତୁ ଯେ (କିନ୍ତୁ ଯେଉଁମାନେ) ଆତ୍ମକାରଣାତ୍ (କେବଳ ନିଜପାଇଁ) ପଚନ୍ତି (ପାକ କରନ୍ତି) ତେ ପାପାଃ (ସେହିପରି ପାପୀ ଲୋକେ) ଅଘଂ ଭୁଞ୍ଜତେ (କେବଳ ପାପହିଁ ଭୋଜନ କରିଥାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ଯେହେତୁ ଯଜ୍ଞ-ସନ୍ତୁଷ୍ଟ ଦେବତାମାନେ ତୁମ୍ଭମାନଙ୍କୁ ଇଷ୍ଟ ବସ୍ତୁସବୁ ଦେବେ, ସେମାନଙ୍କଦ୍ୱାରା ପ୍ରଦତ୍ତ ଭୋଗ୍ୟବସ୍ତୁସବୁକୁ ସେମାନଙ୍କୁ ନ ଦେଇ ଯେଉଁମାନେ ସେସବୁ ଭୋଗ କରିଚାଲିଯାନ୍ତି, ସେମାନେ ଚୋର ବୋଲିହିଁ ଗଣା ହେବେ । ସନ୍ଥ ଜନମାନେ ଯଜ୍ଞ(ତ୍ୟାଗ)ର ଅବଶେଷ ଉପରେ ନିର୍ଭର କରିହିଁ ସକଳ ପାପରୁ ମୁକ୍ତ ହୋଇଥାନ୍ତି । କିନ୍ତୁ ଯେଉଁମାନେ କେବଳ ନିଜପାଇଁ ଭୋଜନ ସଂଗ୍ରହ କରିଥାନ୍ତି, ସେମାନେ କେବଳ ପାପ ଭୋଜନ କରିଥାନ୍ତି ବୋଲି ଧରିନେବ ।"

**ବିଶେଷ ଭାଷ୍ୟ**

ଗୀତା ଏଠାରେ ପ୍ରାଚୀନ ଭାରତୀୟ ବୈଦିକ ଆଚାରକୁ ରୂପକ ଭାବରେ ବ୍ୟବହାର କଲେହେଁ ଏହି ଦୁଇ ଶ୍ଳୋକର ବ୍ୟଞ୍ଜନା ସାର୍ବଭୌମ ଓ ସାର୍ବଜନୀନ । ଉଦାର ବୈଦିକ-ବ୍ରାହ୍ମଣ୍ୟ ବ୍ୟବସ୍ଥା ଅନୁସାରେ ପ୍ରତ୍ୟେକ ଗୃହସ୍ଥର ପ୍ରତିଦିନର ଜୀବନଟିକୁ ମଧ୍ୟ ଏକ ଧାରାବାହିକ ଯଜ୍ଞ ବା ତ୍ୟାଗରୂପେ

କଳ୍ପନା କରାଯାଇଥିଲା । ବହୁ ସହସ୍ର ବର୍ଷ ପୂର୍ବେ, ସଭ୍ୟତାର ଉଷାକାଳରେ ମଧ୍ୟ, ଭାରତୀୟ ଚିନ୍ତାନାୟକମାନେ ଗଭୀର ଅନ୍ତର୍ଦୃଷ୍ଟି ଫଳରେ ସ୍ପଷ୍ଟ ଦେଖି-ପାରିଥିଲେ, ଆମେ ଆମ ପ୍ରାତ୍ୟହିକ ଜୀବନରେ କିପରି ଅଦୃଶ୍ୟଭାବରେ ବହୁ ଦିଗରୁ ଅନ୍ୟମାନଙ୍କଦ୍ୱାରା ଉପକୃତ ହୋଇଥାଉଁ । ଅନ୍ୟ ପକ୍ଷରେ, ଆମର ନିଜର ବଞ୍ଚିବା ହେଉଛି ଆମେ ଆମର ଅଜାଣତରେ କୋଟି କୋଟି ଛୋଟ-ବଡ଼ ଜୀବର ଯନ୍ତ୍ରଣା ଓ ବିନାଶର ମଧ୍ୟ କାରଣ ହୋଇଥାଉଁ । ତେଣୁ ଏକ ଦିଗରେ କୃତଜ୍ଞତା ପ୍ରକାଶ ଓ ଅନ୍ୟ ଦିଗରେ ଜୀବନବିନାଶଜନିତ ପ୍ରାୟଶ୍ଚିତ୍ତ ବା କ୍ଷତିପୂରଣ-ପାଇଁ ବୈଦିକ ଧର୍ମ ଆଶା କରୁଥିଲା ଯେ, ଗୃହସ୍ଥର ଦୈନନ୍ଦିନ ଜୀବନଟି ନିଜର ଭୋଗାୟୋଜନ ହେବା ସାଥେ ସାଥେ ଯେପରିକି ଅନ୍ୟମାନଙ୍କ ପାଇଁ ଏକ ଯଜ୍ଞ ହେବା ଉଚିତ, ଠିକ୍ ଯେପରି ପୃଥିବୀର ଅନ୍ୟ ବହୁ ଜୀବନ ଓ ସ୍ୱୟଂ ପ୍ରକୃତି ମଧ୍ୟ ତା ପାଇଁ ଅଦୃଶ୍ୟଭାବରେ ଅହରହ ଯଜ୍ଞୀଭୂତ ହୋଇ-ଚାଲିଛନ୍ତି । ଫଳରେ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥ ତାଙ୍କର ପ୍ରାତ୍ୟହିକ ଜୀବନରେ ଦେବ-ଯଜ୍ଞ (ଈଶ୍ୱରଙ୍କ ପ୍ରତି କୃତଜ୍ଞତା ଜ୍ଞାପନ), ପିତୃଯଜ୍ଞ (ଜୀବିତ ପିତାମାତାଙ୍କ ସେବା ବା ମୃତ ପିତାମାତାଙ୍କ ସୁଖଶାନ୍ତିପାଇଁ ସ୍ମରଣ ଓ ପ୍ରାର୍ଥନା), ନୃଯଜ୍ଞ (ଅତିଥି ସେବା, ଦରିଦ୍ର ଭୋଜନ ବା ଯେକୌଣସି ସାମାଜିକ କଲ୍ୟାଣ), ଋଷି-ଯଜ୍ଞ (ସମାଜର ବିଜ୍ଞ ଆଦର୍ଶସ୍ଥାନୀୟ ଲୋକର ସେବା) ଓ ଭୂତଯଜ୍ଞ (ଜୀବ-ଜନ୍ତୁଙ୍କ ସେବା) ଇତ୍ୟାଦି ଦେଇ ନିଜର ପାନ-ଭୋଜନର ଆୟୋଜନ ସାଥେ ସାଥେ ଦୃଶ୍ୟ-ଅଦୃଶ୍ୟ, ସୃଷ୍ଟିର ଯେତେ ଯେତେ ଅଂଶରୁ ଉପକାର ପାଉଛନ୍ତି, ସେମାନଙ୍କୁ ତାହା ପ୍ରତ୍ୟର୍ପଣର କଥା ମଧ୍ୟ ଯେପରି ଭାବନ୍ତି, ତାପାଇଁ ଦୃଢ଼ ଶାସ୍ତ୍ରୀୟ ନିର୍ଦ୍ଦେଶ ଥିଲା । ଅର୍ଥାତ୍ କୌଣସି ଗୃହସ୍ଥ କେବଳ ନିଜ-ପାଇଁ ରାନ୍ଧିବା କଥା ନ ଥିଲା । ନିଜପାଇଁ ରାନ୍ଧିଲାବେଳେ ଅନ୍ୟମାନଙ୍କର ଖାଦ୍ୟ-ପ୍ରୟୋଜନର କଥା ମଧ୍ୟ ଭାବିବା ଉଚିତ । ଯେଉଁମାନେ, ପ୍ରତ୍ୟହ ନିଜପାଇଁ ପ୍ରସ୍ତୁତ ଭୋଜ୍ୟବସ୍ତୁ-ସବୁକୁ ପ୍ରଥମେ ଦେବତାମାନଙ୍କୁ, ପରେ ଅତିଥି ଏବଂ ତାପରେ କାକ-ପିପୀଳିକା-ବିଡ଼ାଳ-ଗୋରୁ ଇତ୍ୟାଦି ପାଖ-ଆଖର ଜୀବଜନ୍ତୁଙ୍କୁ ଯଥାନୁରୂପ ଦେଇସାରି ତାପରେ ଯାଇ ନିଜର ଭୋଜନ କଥା ଭାବନ୍ତି, ଗୀତା, କେବଳ ସେହି-ମାନଙ୍କୁହିଁ ସନ୍ତଃ ବା 'ଉତ୍ତମ' ଲୋକ ବୋଲି କହିଛନ୍ତି । କାରଣ, ସେମାନେ 'ଯଜ୍ଞଶିଷ୍ଟାଶିନଃ'—ଯଜ୍ଞ ବା ତ୍ୟାଗ ପରେ ଯାହା ବଳେ ତାହାହିଁ ସେମାନେ ନିଜେ

ଭୋଜନ କରିଥାନ୍ତି । କିନ୍ତୁ ଯେଉଁମାନେ ପ୍ରତିଦିନ କେବଳ ନିଜର ଉଦର-ରସନାର କଥାହିଁ ଭାବିଥାନ୍ତି, ଅନ୍ୟ କାହାରି କଥା ଭାବନ୍ତି ନାହିଁ, ଗୀତା ସେମାନଙ୍କୁ କେବଳ 'ପାପ-ଖାଦକ' ବୋଲି ବା ଚୋର ବୋଲି ବର୍ଣ୍ଣନା କରିଛନ୍ତି । କାରଣ ସେହି ସ୍ୱାର୍ଥ-କେନ୍ଦ୍ରିକ ଲୋକେ ଅନ୍ୟଠୁ ନେଇ ଜାଣନ୍ତି, କିନ୍ତୁ କାହାକୁ ଦେଇ ଜାଣନ୍ତି ନାହିଁ । ଠିକ୍ ଏହି କାରଣରୁହିଁ ୟୁରୋପୀୟ ଚିନ୍ତାନାୟକ ସନ୍ ପ୍ରୁଧୋଁ ପ୍ରଥମେ କହିଥିଲେ 'Property is theft'—ସଂପତ୍ତି ମାନେ ଚୋରି । ସମାଜର ଯେକୌଣସି ଲୋକ ଅନ୍ୟର ଧନ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ଭାବରେ ଅସତ୍ ଉପାୟରେ ସଂଗ୍ରହ ନ କଲେ ଧନବାନ୍ ହେବ କିପରି ? Honest (ଅନେଷ୍ଟ) ବା ସାଧୁ ଲୋକ କେବେ ହେଲେ ଧନୀ ହୋଇପାରେ ନାହିଁ । ଏବଂ ଠିକ୍ ଏହି କାରଣରୁହିଁ ଯୀଶୁଖ୍ରୀଷ୍ଟ କହିଥିଲେ ଯେ, ଛୁଞ୍ଚିର କଣାଭିତରେ ଗୋଟିଏ ଓଟ ପଶିଯିବା ଯେତେ ସହଜ, ଧନୀ ଲୋକର ସ୍ୱର୍ଗକୁ ଯିବା ସେତେ ସହଜ ନୁହେଁ । କାରଣ ଧନୀ ସାଧାରଣତଃ ଯଜ୍ଞଧର୍ମୀ ବା ତ୍ୟାଗଧର୍ମୀ ନୁହେଁ । ସେ ବିତ୍ତ-ସଂଗ୍ରହଦ୍ୱାରା, ସ୍ୱାର୍ଥ-କେନ୍ଦ୍ରିକ ହେବାଦ୍ୱାରା ସୃଷ୍ଟି-ନିହିତ ଯଜ୍ଞ ଧର୍ମର ନୀତିର ବ୍ୟତିକ୍ରମ ଏବଂ ସେହି କାରଣରୁ ପାପଭାଗୀ ହୋଇଥାନ୍ତି ।

## ୧୪-୧୫

ଅନ୍ନାଦ୍‌ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନସମ୍ଭବଃ
ଯଜ୍ଞାଦ୍‌ଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍ଭବଃ । ୧୪ ।
କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି ବ୍ରହ୍ମାକ୍ଷରସମୁଦ୍ଭବମ
ତସ୍ମାତ୍ ସର୍ବଗତଂ ବ୍ରହ୍ମ ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତମ୍ । ୧୫ ।

ଅନ୍ନାତ୍ (ଅନ୍ନରୁ ବା ଖାଦ୍ୟପଦାର୍ଥରୁ) ଭୂତାନି (ପ୍ରାଣିଗଣ) ଭବନ୍ତି (ଜନ୍ମନ୍ତି ବା ଜୀବନପ୍ରାପ୍ତ ହୁଅନ୍ତି । ପର୍ଜନ୍ୟାତ୍ (ମେଘରୁ) ଅନ୍ନସମ୍ଭବଃ (ଖାଦ୍ୟ-ପଦାର୍ଥ ଉତ୍ପନ୍ନ ହୁଅନ୍ତି) । ଯଜ୍ଞାତ୍ (ଯଜ୍ଞ ହେତୁରୁ) ପର୍ଜନ୍ୟଃ (ମେଘ) ଭବତି (ଉତ୍ପନ୍ନ ହୁଏ) । ଯଜ୍ଞଃ (ଯଜ୍ଞ) କର୍ମସମୁଦ୍ଭବଃ (କର୍ମରୁ ସମ୍ଭବ ହୁଏ) ।

କର୍ମବ୍ରହ୍ମୋଦ୍ଭବଂ (କର୍ମ ବ୍ରହ୍ମରୁ ଉତ୍ପନ୍ନ ବୋଲି) ବିଦ୍ଧି (ଜାଣ) । ବ୍ରହ୍ମ (ବ୍ରହ୍ମ) ଅକ୍ଷର-ସମୁଦ୍ଭବଂ (ପରମାତ୍ମାଙ୍କଠାରୁ ଉତ୍ପନ୍ନ) । ତସ୍ମାତ୍ (ସେହି ହେତୁରୁ) ସର୍ବଗତଂବ୍ରହ୍ମ (ସର୍ବତ୍ରାବସ୍ଥିତ ବ୍ରହ୍ମ) ନିତ୍ୟଂ (ସର୍ବଦା) ଯଜ୍ଞେ ପ୍ରତିଷ୍ଠିତଂ (ଯଜ୍ଞରେ ମଧ୍ୟ ପ୍ରତିଷ୍ଠିତ) [ବୋଲି ଜାଣିବ] ।

## ଅନୁବାଦ

"ହେ ଅର୍ଜୁନ, ଅନ୍ନରୁହିଁ ସମସ୍ତ ପ୍ରାଣୀ ଜୀବନ ପ୍ରାପ୍ତ ହୋଇଥାଆନ୍ତି, ଅନ୍ନ ମେଘରୁ ସମ୍ଭବ ହୁଏ, ମେଘ (ବୃଷ୍ଟିଧାର) ଯଜ୍ଞରୁ ସମ୍ଭବ ହୁଏ । (ଏହିପରି) ପ୍ରତ୍ୟେକ ଯଜ୍ଞ କର୍ମ-ସମ୍ଭବ । କର୍ମ ବ୍ରହ୍ମୋଦ୍ଭବ, ଏବଂ ବ୍ରହ୍ମ ଅକ୍ଷରରୂପୀ ପରମାତ୍ମାଙ୍କଠାରୁ ଉଦ୍ଭବ । ତେଣୁ ସର୍ବମୟ ବ୍ରହ୍ମ ପ୍ରତ୍ୟେକ ଯଜ୍ଞ ବା କର୍ମରେ ମଧ୍ୟ ପ୍ରତିଷ୍ଠିତ ବୋଲି ଜାଣିବ ।"

## ବିଶେଷ ଭାଷ୍ୟ

ଏ ଶ୍ଳୋକର 'ବ୍ରହ୍ମ' ଓ 'ଅକ୍ଷର' ଏ ଦୁଇଟି ଶବ୍ଦ କିଞ୍ଚିତ୍ ବ୍ୟାଖ୍ୟା ଦରକାର କରେ ।

ସୃଷ୍ଟ ଜଗତର ମୌଳିକ ବସ୍ତୁ ବହୁ ନା ଏକ ଏହା ଖୋଜୁ ଖୋଜୁ ବୈଦିକ ଋଷିମାନେ ଆବିଷ୍କାର କଲେ ଯେ, ଏହା ଗୋଟିଏମାତ୍ର ଏକକ, ମୌଳିକ ବସ୍ତୁରୁ ଉତ୍ପନ୍ନ, ଯାହାର ନାମ ସେମାନେ ଦେଲେ 'ବ୍ରହ୍ମ' । ଏହି ସମଗ୍ର ସୃଷ୍ଟି କେବଳ ବ୍ରହ୍ମମୟ । କିନ୍ତୁ ଏହି ବ୍ରହ୍ମର ଗୁଣ କଣ ? ସେମାନେ ବହୁ ଆଲୋଚନା-ପରେ ଏହି ସିଦ୍ଧାନ୍ତକୁ ଆସିଲେ ଯେ, ବ୍ରହ୍ମ ଖାଣ୍ଟି ଚେତନ ପଦାର୍ଥ ଏବଂ ଏହା ଉଭୟ ନିର୍ଗୁଣ ଓ ସଗୁଣ । ସୃଷ୍ଟି, ସ୍ଥିତି, ଲୟ ରୂପକ ଚଳମାନ ସୃଷ୍ଟି ସଗୁଣ ବ୍ରହ୍ମ ବା ଈଶ୍ୱର । ପୁଣି ଏହି ଈଶ୍ୱର ବା ସଗୁଣ ବ୍ରହ୍ମ ନିଖିଳ ସୃଷ୍ଟିବ୍ୟାପୀ ନିର୍ଗୁଣ ବ୍ରହ୍ମ ବା 'ଅକ୍ଷର'ଙ୍କର ଏକ ଅଂଶମାତ୍ର ।

ମନୁଷ୍ୟ ପ୍ରତ୍ୟହ ଯାହା ଖାଇ ବଞ୍ଚେ ସେଇଠୁ ଆରମ୍ଭ କରି ସେହି ଗୁଣହୀନ ଅକ୍ଷର ବ୍ରହ୍ମ ପର୍ଯ୍ୟନ୍ତ ସୃଷ୍ଟିର ସକଳ ସ୍ତର କିପରି ପରସ୍ପରବନ୍ଧିତ ଏବଂ ସେ ସଂପର୍କଟା କିପରି ଯଜ୍ଞ ବା ତ୍ୟାଗ ଭାବରେହିଁ ଶ୍ରେଷ୍ଠ-ପ୍ରକାଶିତ, ଗୀତା ତାହା ଏହି ଶ୍ଳୋକଦୁଇଟିରେ ଅତି କୌଶଳ ସହକାରେ ଉପସ୍ଥାପିତ କରି-ଯାଇଛନ୍ତି । ଆମେ ଦୈନନ୍ଦିନ ଖାଦ୍ୟ ଯୋଗୁଁ ସମ୍ଭବ ହୋଇ ରହିଛୁଁ । ଖାଦ୍ୟ (ଅନ୍ନ) ମେଘ ଯୋଗୁଁ ସମ୍ଭବ । ମେଘ ଉତ୍ପନ୍ନ ହୁଏ ବୃଷ୍ଟିଧାରା ପଞ୍ଚରୁ, ଅର୍ଥାତ୍ ସୂର୍ଯ୍ୟକିରଣରେ ଧରଣୀ ନିଜକୁ ପୋଡ଼େଇଲେ ଯାଇ ମେଘ ସୃଷ୍ଟି ହୁଏ । ଏହିପରି ସୃଷ୍ଟିରେ ପ୍ରତ୍ୟେକ ପ୍ରକ୍ରିୟା (ଖାଦ୍ୟୋତ୍ପତ୍ତି ବା ମେଘୋତ୍ପତ୍ତି) 'କର୍ମମୟ' ବା 'ଯଜ୍ଞମୟ' । ସମଗ୍ର 'ବ୍ରହ୍ମ', ଅର୍ଥାତ୍ ପରିବ୍ୟାପ୍ତ ସୃଷ୍ଟିଭିତରେହିଁ ଏହି କର୍ମ ବା ଯଜ୍ଞ ଅହରହ କ୍ରିୟମାଣ । ପୁଣି ସେହି 'ବ୍ରହ୍ମ' ସୃଷ୍ଟିର ଶେଷ ଅଧିଷ୍ଠାତ୍ରୀ ଦେବତା 'ଅକ୍ଷର'ଙ୍କଠାରୁହିଁ ଉତ୍ପନ୍ନ । ତେଣୁ ମନେ କରିବାକୁ ହେବ ଯେ, ଏ ସୃଷ୍ଟିରେ ସର୍ବତ୍ର ଯେପରି କେବଳ ବ୍ରହ୍ମ, ସେହିପରି ମଧ୍ୟ ସର୍ବତ୍ର କେବଳ ଯଜ୍ଞ

ବିଦ୍ୟମାନ । ଅର୍ଥାତ୍ ଏ ସୃଷ୍ଟିରେ କୌଣସି ସ୍ଥାନ, କୌଣସି ଅବସ୍ଥା ଯେପରି ବ୍ରହ୍ମଶୂନ୍ୟ ନୁହେଁ, ସେହିପରି ମଧ୍ୟ ଯଜ୍ଞଶୂନ୍ୟ ନୁହେଁ ବା କର୍ମଶୂନ୍ୟ ନୁହେଁ । ଗୀତାଙ୍କ ମତରେ ବ୍ରହ୍ମ = ଯଜ୍ଞ = କର୍ମ = ଜୀବନ ବା ସୃଷ୍ଟି । ଆମ ପ୍ରତ୍ୟେକର ଜୀବନ ତେଣୁ ସଚେତନଭାବରେ ଏକ ଏକ ଯଜ୍ଞ ହୋଇ ରହିବା ଉଚିତ । ସେହି ସଚେତନତାକୁ ହରାଇବସିଲେ ଆମେ କେବଳ ଗୋଟିଏ ଗୋଟିଏ ସ୍ୱାର୍ଥ-କୈନ୍ଦ୍ରିକ, ପାପ-ଭୁକ୍ ଜୀବମାତ୍ର ହୋଇ ରହିବୁ—'ମନୁଷ୍ୟ' ବୋଲାଇବାର କୌଣସି ଯଥାର୍ଥତା ଆମଠି ନ ଥିବ । ପର ଶ୍ଳୋକରେ ଗୀତା ତାହାହିଁ ଦୃଢ଼ ସ୍ୱରରେ ଘୋଷଣା କରୁଛନ୍ତି ।

୧୬

ଏବଂ ପ୍ରବର୍ତ୍ତିତଂ ଚକ୍ରଂ ନାନୁବର୍ତ୍ତୟତୀହ ଯଃ
ଅଘାୟୁରିନ୍ଦ୍ରିୟାରାମୋ ମୋଘଂ ପାର୍ଥ ସ ଜୀବତି । ୧୬ ।

ପାର୍ଥ (ହେ ଅର୍ଜୁନ) ଇହ (ଏହି ସୃଷ୍ଟିରେ) ଏବଂ ପ୍ରବର୍ତ୍ତିତଂ ଚକ୍ରଂ (ଏହିପରିଭାବରେ ପରସ୍ପରର ତ୍ୟାଗଉପରେ ପ୍ରତିଷ୍ଠିତ ଯଜ୍ଞ-ଚକ୍ରକୁ) ଯଃ (ଯେଉଁ ଲୋକ) ନ ଅନୁବର୍ତ୍ତୟତି (ଅନୁବର୍ତ୍ତନ ବା ଅନୁସରଣ କରେ ନାହିଁ) ଇନ୍ଦ୍ରିୟାରାମଃ (ଇନ୍ଦ୍ରିୟ-ସୁଖାନ୍ୱେଷୀ ଓ କେବଳ ସେହିଥିରେ ସନ୍ତୁଷ୍ଟ) ସଃ ଅଘାୟୁଃ (ସେହି ପାପ-ଜୀବନ ଅର୍ଥାତ୍ ପାପୀ ଲୋକ) ମୋଘଂ ଜୀବତି (ବୃଥାହିଁ ମନୁଷ୍ୟ-ଜୀବନ ପରି ଦୁର୍ଲଭ ଜୀବନକୁ କଟାଇନିଏ) ।

## ଅନୁବାଦ

ହେ ଅର୍ଜୁନ, ଏ ସୃଷ୍ଟିରେ ଏପରିଭାବରେ ପରସ୍ପର-ତ୍ୟାଗ-ପ୍ରତିଷ୍ଠିତ ଯଜ୍ଞ-ଚକ୍ରକୁ ଯେଉଁ ଲୋକ ଅନୁସରଣ ନ କରେ, କେବଳ ଇନ୍ଦ୍ରିୟ-ସୁଖାନ୍ୱେଷୀ ସେହି ପାପାୟୁ ଲୋକ ଦୁର୍ଲଭ ମନୁଷ୍ୟ-ଜୀବନ ପାଇ ବୃଥା ବଞ୍ଚେ ବୋଲି ଧରିବାକୁ ହେବ ।

## ବିଶେଷ ଭାଷ୍ୟ

ଏହି ଶ୍ଳୋକରେ ଗୀତାର ପ୍ରସିଦ୍ଧ 'ଯଜ୍ଞ-ଚକ୍ର'ବାଦ ଶେଷ ହୋଇଛି । ଏହା ନିଃସନ୍ଦେହ ଯେ, ଉପରର ସାତଟି ଶ୍ଳୋକରେ ଗୀତା ସମ୍ପୂର୍ଣ୍ଣ ବୈଦିକ ଥାଇ ମଧ୍ୟ ଏକ ସମ୍ପୂର୍ଣ୍ଣ ନୂତନ ଦୃଷ୍ଟିକୋଣରୁ ବୈଦିକ 'ଯଜ୍ଞ' ଶବ୍ଦର ଏକ ଉଦାର ବୈଜ୍ଞାନିକ ତାତ୍ପର୍ଯ୍ୟ ପରିବେଷିତ କରି ଜୀବନର ଯେଉଁ ମୌଳିକ ତତ୍ତ୍ୱ ଆମ ଆଗରେ ଥୋଇଦେଇଗଲେ, ସେହି ତତ୍ତ୍ୱଟି ହେଉଛି ଏହି ଯେ,

ଏ ଜୀବନକୁ ସୁଖମୟ, ଅର୍ଥବାନ୍ ଓ ପ୍ରକୃତରେ ଐଶ୍ବର୍ଯ୍ୟବାନ୍ କରିବାକୁ ହେଲେ ସ୍ଵାର୍ଥ-କେନ୍ଦ୍ରିକତା ବା କେବଳ ଆତ୍ମ-ସଚେତନତା ବା କେବଳ ଇନ୍ଦ୍ରିୟ-ପରିତୋଷଣ ଛାଡ଼ି ମନୁଷ୍ୟକୁ ପଦେ ପଦେ ଦୈନନ୍ଦିନ ଜୀବନର ପ୍ରତି କର୍ମରେ ନିଜକୁ ଅନ୍ୟମାନଙ୍କ ପାଇଁ ବା କୌଣସି ମହତ୍ କର୍ମ ଲକ୍ଷ୍ୟରେ ଯଜ୍ଞାୟିତ କରିବାକୁ ହେବ । ଅର୍ଥାତ୍ ଏହି ସମଗ୍ର ସୃଷ୍ଟି ପଛରେ ଥିବା ମୌଳିକ ନିୟମ ଭୋଗ, ହିଂସା ବା ସ୍ଵାର୍ଥପରତା ନୁହେଁ—ମୌଳିକ ବିଧି ହେଉଛି ତ୍ୟାଗ, ଦୟା, ମୈତ୍ରୀ ଇତ୍ୟାଦି ବା ଗୋଟିଏ କଥାରେ 'ଯଜ୍ଞ' । ସମଗ୍ର ସୃଷ୍ଟିରେ ପ୍ରତ୍ୟେକେ ଅନ୍ୟପାଇଁ ଅହରହ ଯଜ୍ଞାୟିତ ହେଉଛନ୍ତି ବୋଲି, ଜୀବନ ସମ୍ଭବ ହେଉଛି । ବୀଜ ନିଜକୁ ନଷ୍ଟ କରି ଉଠେଇଦିଏ ଉଦ୍ଭିଦକୁ ଜଗତର କଲ୍ୟାଣପାଇଁ । ଉଦ୍ଭିଦ ନିଜକୁ ନୀରବରେ ଉଭୟ ଜୀବ ଓ ମାନବର ଉପକାର ପାଇଁ ଯଜ୍ଞାୟିତ କରେ । ପୃଥିବୀର ନିଖିଳ ମୂଳ ଜୀବଗ୍ରାମର ପରମ ତ୍ୟାଗ(ବା ଯଜ୍ଞ) ଉପରେ ହିଁ ଏ ଧରାରେ ମନୁଷ୍ୟ-ଜୀବନ ସମ୍ଭବ ହୋଇ ପାରିଛି । ଯଜ୍ଞର ଫଳକୁ ବୈଦିକ ଭାଷାରେ କୁହାଯାଇଛି ଅ-ପୂର୍ବ, ଅର୍ଥାତ୍ ଯାହା ପୂର୍ବେ ନ ଥିଲା ଏପରି ଏକ ଜିନିଷ ଅର୍ଥାତ୍ 'ରୂପାନ୍ତରୀଭବନ' । ଆମର ପରିତ୍ୟକ୍ତ ମଳମୂତ୍ର ପରମସୁନ୍ଦର ଜୀବନଦାୟୀ ଉଦ୍ଭିଦରେ ରୂପାନ୍ତରିତ ହୁଅନ୍ତି ; ପାଣି ନେହିପରି ବାଷ୍ପରେ ରୂପାନ୍ତରିତ ହୋଇ ମହତ୍ କର୍ମ ସମ୍ପାଦନ କରେ । ତପସ୍ୟା ଫଳରେ ସେହିପରି ଶରୀର, ସ୍ପେନ୍ସ ଟୋକା ମୋହନ ଦାସ ପରେ ବିଶ୍ଵବରେଣ୍ୟ 'ମହାତ୍ମା'ରେ ରୂପାନ୍ତରିତ ହୁଏ ବା ଅପୂର୍ବତା ଲଭ କରେ ।

ଗୀତାର ଯଜ୍ଞ ସେହିପରି ପ୍ରକୃତରେ ଅହରହ ରୂପାନ୍ତରୀକରଣ କରିଚାଲିଛି ଏବଂ ମନୁଷ୍ୟଠାରେ ମଧ୍ୟ କରିବ, ଯଦି ଆମେ ଏହା ଆମପ୍ରତି ଆରୋପ କରୁଁ । ସୃଷ୍ଟିରେ ମାଧ୍ୟାକର୍ଷଣ ନିୟମ ପରି ଏହି ଆତ୍ମିକ ନିୟମ ମଧ୍ୟ ଅର୍ଥାତ୍ ଅନ୍ୟପାଇଁ ନିଜକୁ ନଷ୍ଟ କରି, ମହତ୍ତର ରୂପ ଧାରଣ କରି ବାହାରିବାର ଧାରା ଅହରହ କର୍ମଶୀଳ ହୋଇ ଚାଲିଛି । ଏ ନିୟମକୁ ଅନୁସରଣ ନ କରି ଯେ କେବଳ ସ୍ଵାର୍ଥପର, ଆତ୍ମକେନ୍ଦ୍ରିକ ବା ସ୍ଵ-ଇନ୍ଦ୍ରିୟ-ସନ୍ତୋଷ-ସର୍ବସ୍ଵ ଜୀବନ ଯାପନ କରିବେ, ଗୀତାଙ୍କ ମତରେ ସେ ଜୀବନ କେବଳ ପାପମୟ ଜୀବନ ଏବଂ ଇହସଂସାରରେ ସେ ପ୍ରକାର ମନୁଷ୍ୟ ଜୀବନ, ବସ୍ତୁତଃ ବୃଥା (ମୋଘ) ।

୧୭

ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ
ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ । ୧୭ ।

ତୁ ଯଃ ମାନବଃ (କିନ୍ତୁ ଅନ୍ୟ ପକ୍ଷରେ, ଯେଉଁ ମନୁଷ୍ୟ) ଆତ୍ମରତିଃ, ଆତ୍ମତୃପ୍ତଃ, ଆତ୍ମନି ଏବ ଚ ସନ୍ତୁଷ୍ଟଃ ସ୍ୟାତ୍ (ଆପଣାଠାରେ ନିବଦ୍ଧ ରହି ଆପଣାରେହିଁ ସନ୍ତୁଷ୍ଟ ରହେ), ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ (ସେପରି ଲୋକର କୌଣସି ହେଲେ କାମ କରିବା ଦରକାର ହେବ ନାହିଁ) ।

**ଅନୁବାଦ**

"ହେ ଅର୍ଜୁନ, ଅନ୍ୟ ପକ୍ଷରେ, ଯେଉଁ ଲୋକ ସ୍ୱ-ଅନ୍ତରସ୍ଥ ଆତ୍ମାରେହିଁ ଅଭିନିବିଷ୍ଟ ଓ ସନ୍ତୁଷ୍ଟ, ସେହି କେବଳ କାର୍ଯ୍ୟ ବା କର୍ମହୀନ ବା ସଂପୂର୍ଣ୍ଣ ଯଜ୍ଞ-ହୀନ ଜୀବନ ଯାପନ କରିପାରନ୍ତି ।"

**ବିଶେଷ ଭାଷ୍ୟ**

ଯଜ୍ଞ-ଚକ୍ର-ଦର୍ଶନ ଶେଷ କରି ଗୀତା ବର୍ତ୍ତମାନ ଆଉ ଏକ ଭାବ-କଳ୍ପକୁ ଆସିଲେ । ଯଜ୍ଞ-ଚକ୍ର ହେଲା କର୍ମମୟ । ଗୀତା ଚାହାନ୍ତି, ଆମେ ପ୍ରତ୍ୟେକେ ନିଜ-ପାଇଁ ଓ ତା ସାଥେ ସାଥେ ଅନ୍ୟପାଇଁ କାମ କରିଚାଲିବା । ଆମର ପ୍ରତି କର୍ମରେ ଆମେ ଅନ୍ୟଠୁ ଯାହା ପାଉଛୁ, ସେଥିପାଇଁ କୃତଜ୍ଞତା ପ୍ରକାଶ କରିବା ଓ ତାର ପ୍ରତିଦାନ ଦେଇ ଚାଲିଥିବା । ଏ ହେଲା ଯଜ୍ଞ-ଚକ୍ର ।

କିନ୍ତୁ ଜଗତରେ ଏକ ଶ୍ରେଣୀର ଲୋକ ଦେଖାଯାନ୍ତି, ଯଦିବା ସେମାନଙ୍କ ସଂଖ୍ୟା ସବୁ କାଳ ଓ ଦେଶରେ ଅତି କମ୍, ଯେଉଁମାନେ କି ଧାଁ-ଧପଡ଼ ନ କରି ଖାଲି ଗୋଟିଏ ଜାଗାରେ ବସିଥିଲେ ମଧ୍ୟ ସର୍ବଦା-ଅତିବ୍ୟସ୍ତ ଧାଁ-ଧପଡ଼-ବାଲାଙ୍କଠାରୁ ବହୁ ଅଧିକ ମୂଲ୍ୟବାନ୍ କାମ କରିଥାନ୍ତି । ଏହି ସ୍ୱଳ୍ପସଂଖ୍ୟକ ଶ୍ରେଣୀଟିହିଁ ହେଉଛି ପୃଥିବୀର ଶ୍ରେଷ୍ଠ ରତ୍ନ । ଏଇମାନେ ହେଲେ କବି, ବିଜ୍ଞାନୀ, ଦାର୍ଶନିକ, ପଣ୍ଡିତ ଓ ଋଷି । ଗୀତା ସାଧାରଣ ଲୋକଙ୍କ କଥା କହିଲାବେଳେ ଏମାନଙ୍କୁ ଭୁଲିଯାଇ ନାହାନ୍ତି । ଶ୍ରୀକୃଷ୍ଣ ଅର୍ଜୁନଙ୍କର ସାଂପ୍ରତିକ କର୍ମବିମୁଖୀ, ପଳାୟନୀ ମାନସିକତାକୁ ପୋଛିଦେବାପାଇଁ, ସମଗ୍ର ସୃଷ୍ଟି କିପରି ଅହରହ କର୍ମମୟ, ଆମେ ଅଜ୍ଞାତସାରରେ ମଧ୍ୟ କିପରି ସର୍ବଦା କର୍ମ କରିଚାଲିଛୁ, ତେଣୁ ଆମକୁ କିପରି ସର୍ବଦା କର୍ମ କରିବାକୁ ହେବ କେବଳ କର୍ମଯୋଗ ଭାବରେ, ତାହା ଏପର୍ଯ୍ୟନ୍ତ କହିଚାଲିଲେ । ତାପରେ ସେହି କର୍ମ କିପରି କୃତଜ୍ଞତାବାହୀ ଓ ତ୍ୟାଗପୂତ ହେବ, ଯଜ୍ଞ-ଚକ୍ର-ଦର୍ଶନ ଦେଇ ତାହା ମଧ୍ୟ ବୁଝାଇଦେଲେ ।

କିନ୍ତୁ ଯେହେତୁ ଆମେ ସାଧାରଣତଃ 'କର୍ମ' କହିଲେ କେବଳ ବୁଝୁଁ ଧାଁ-ଧପଡ଼ ବା ପାଚିଲୁଣ୍ଠି, ଗୋଳମାଳ, ଇତ୍ୟାଦି, ଗୀତା ଏଇଠି ଆମକୁ ବୁଝେଇବସିଲେ ଯେ, ଏପ୍ରକାର ଶାରୀରିକ କର୍ମ ବା ଏଣେତେଣେ ଧାଁ-ଧପଡ଼ କରି ବୁଲିବା ଏକମାତ୍ର କର୍ମ ନୁହେଁ। ଏପରି ଲୋକ ଅଛନ୍ତି, ଯେ ଖାଲି ବସିରହିଥିଲେ ମଧ୍ୟ ପ୍ରକୃଷ୍ଟ କର୍ମ କରୁଛନ୍ତି ବୋଲି କହିବାକୁ ହେବ। ସେଭଳି ଲୋକଙ୍କର ଅନ୍ୟ କିଛି କାମ କରିବା ଦରକାର ନାହିଁ। କବି ତାର ସ୍ୱପ୍ନ ଓ ଛନ୍ଦ ନେଇ, ବୈଜ୍ଞାନିକ ତାର ପରୀକ୍ଷା ନେଇ, ସଙ୍ଗୀତଜ୍ଞ ତାର ଧ୍ୱନି ନେଇ ଆତ୍ମତୃପ୍ତ ଓ ଆତ୍ମତୁଷ୍ଟ। ଏ ଶ୍ରେଣୀର ଆତ୍ମସ୍ଥ ଲୋକେ ସେଇମିତି ରହନ୍ତି। ଧାଁ-ଧପଡ଼ ନ କଲେ ମଧ୍ୟ ଏ ଶ୍ରେଣୀର ଲୋକେ ଜଗତକୁ ମହାନ୍ ଦାନ ଦେଇଯାଆନ୍ତି—ସେମାନଙ୍କର ସେହି ଆତ୍ମକେନ୍ଦ୍ରିକ ସାଧନାରୁ।

ଗୀତା, ଠିକ୍ ଏହାର ପୂର୍ବ ଶ୍ଳୋକଟିରେହିଁ, ସ୍ୱାର୍ଥପର, ସ୍ୱାର୍ଥ-କେନ୍ଦ୍ରିକ ଓ କେବଳ ଇନ୍ଦ୍ରିୟ-ସୁଖମଗ୍ନ ବ୍ୟକ୍ତିମାନଙ୍କୁ ଭର୍ତ୍ସନା କରିଛନ୍ତି। ଏମାନେ ମଧ୍ୟ ଏକପ୍ରକାର 'ଆତ୍ମତୁଷ୍ଟ'। ଅଥଚ ଠିକ୍ ପର ଶ୍ଳୋକରେ ଗୀତା 'ଆତ୍ମତୁଷ୍ଟ'-ମାନଙ୍କର ପ୍ରଶଂସା କପରି କରୁଛନ୍ତି ?

ଏଠି ତେଣୁ ପାଠକଙ୍କୁ ଗୀତାର ସେହି 'ଯଜ୍ଞ-ଚକ୍ର-ତତ୍ତ୍ୱ' ସ୍ମରଣ କରିବାକୁ ଅନୁରୋଧ। ଏ ସୃଷ୍ଟିରେ ପ୍ରତ୍ୟେକ ଗୁଣର ଗୋଟିଏ ନିମ୍ନ-ପ୍ରକାଶ ଓ ଗୋଟିଏ ଉଚ୍ଚ-ପ୍ରକାଶ ଅଛି। ଜଣେ ଗୁଣ୍ଡା ଓ ଜଣେ ବୀର ସୈନିକ ଭିତରେ, ଗୋଟିଏ ଗୁଣହିଁ ପ୍ରକାଶିତ ହୋଇଥାଏ। ଗୁଣ୍ଡାଠାରେ ତାହା ପ୍ରକାଶିତ ହୁଏ ନିଜ ସୁଖ ଓ ଦମ୍ଭପାଇଁ, ଏବଂ ଦେଶପ୍ରାଣ ବୀର ସୈନିକଠାରେ ତାହା ପ୍ରକାଶିତ ହୁଏ ଦେଶ ଓ ଜାତିପାଇଁ ପ୍ରାଣୋତ୍ସର୍ଗରେ, ଏବଂ ସେହି କାରଣରୁହିଁ ତାହା 'ଯଜ୍ଞ'ରେ ପରିଣତ ହୋଇଯାଏ। ଗୁଣ୍ଡାମି ଯଜ୍ଞ ହୋଇ ନ ପାରେ। ସେହିପରି ସ୍ୱାର୍ଥ-କେନ୍ଦ୍ରିକ ଲୋକ ଆତ୍ମତୁଷ୍ଟ ଏବଂ କବି ଓ ବୈଜ୍ଞାନିକ ମଧ୍ୟ ଆତ୍ମତୁଷ୍ଟ। କିନ୍ତୁ ଆମେ ଏ ଦୁହିଙ୍କୁ ଅଲଗା ଦେଖିପାରିବା କେବଳ ଗୀତାର ଯଜ୍ଞ-ଦର୍ଶନର ପ୍ରୟୋଗ ଦ୍ୱାରା। ଅଳସୁଆ ଘରେ ବସିରହୁଛି। ସେହିପରି ବସି ରହିବାର ମଧ୍ୟ ଆମେ ଦେଖିବା ଏକ କବି ବା ପଣ୍ଡିତ ଲୋକକୁ। କିନ୍ତୁ ଅଳସୁଆ କାମ କରିବାକୁ ନାରାଜ ଥିଲାବେଳେ, କବି ଓ ପଣ୍ଡିତ ସେମାନଙ୍କର ଆପାତ-ବିଶ୍ରାମ ତଳେ ମହାର୍ଘ, କଠିନ କର୍ମ କରିଚାଲିଥାନ୍ତି ; ଏବଂ ଯେହେତୁ ସେହି କର୍ମସବୁ ସେମାନଙ୍କର ଉପକାରରେ ସେତେ ନୁହେଁ, ଯେତେ ଦେଶ, ଜାତି ଓ ପୃଥିବୀର

ଉପକାରରେ ଆସେ, ସେମାନଙ୍କର ସେହି ଆପାତ-ଆଳସ୍ୟ ବା 'ଆତ୍ମ-ପରିତୃଷ୍ଟ' ଭାବ ମହାନ୍ 'ଯଜ୍ଞ'ରେ ପରିଣତ ହୋଇଯାଏ ।

ପୁଣି ଏହାର ଆଧ୍ୟାତ୍ମିକ ବ୍ୟାଖ୍ୟା ମଧ୍ୟ ଅତ୍ୟନ୍ତ ମୂଲ୍ୟବାନ୍ । ଆମେ ଯେ ପାର୍ଥିବ ସୁଖସବୁପାଇଁ ଅହରହ ଧାବମାନ, ତାହା ଏକାନ୍ତରେ ଆମର ମନର କ୍ରିୟା । ମନତଳେ ଅଛି ଆତ୍ମା ବା ମୂଳ ଚୈତନ୍ୟ, ଯାହା ଯୋଗୁଁ ଆମେ ଓ ମନ ଏବଂ ଜୀବନ କହିଲେ ଯାହା ବୁଝାଯାଏ, ସେସମସ୍ତହିଁ ସମ୍ଭବ ହୁଏ ଏବଂ ଯାହା ଚାଲିଗଲାପରେ ଆପାତ-କ୍ରିୟମାଣ ଏହି ଶରୀର ପୁଣି ଜଡ଼ପିଣ୍ଡମାତ୍ର ହୋଇ ପଡ଼ିରହେ । ସେହି ଆତ୍ମା ବା ଚେତନା-ପୁରୁଷ ସତ୍-ଚିତ୍-ଆନନ୍ଦର ଅଂଶ । ସେହିହିଁ ଆମ ଜୀବନର ଓ ଜୀବନୋଦ୍‌ଭବ ସକଳ ଆନନ୍ଦର ଉତ୍ସ । ବାହ୍ୟାନନ୍ଦ କ୍ଷଣସ୍ଥାୟୀ ଓ ପରିଣାମରେ ଜଞ୍ଜାଳମୟ । ଆନନ୍ଦ-ପିପାସୀ ପ୍ରାଣ ଶାଶ୍ବତ ଆନନ୍ଦ କେବଳ ପାଇବ, ଯଦି ବହିର୍ମୁଖୀ ଆମର ମନ ପୁଣି ଆତ୍ମା ବା ଆମର ଅନ୍ତରସ୍ଥ ଚେତନା-ପୁରୁଷଠାରେ ଯାଇ ମିଶେ । ଜଳସ୍ରୋତର ଦୀର୍ଘ ଯାତ୍ରାର ଶେଷ ପରିଣତି ସମୁଦ୍ର-ମିଳନ-ଜନିତ ଶାନ୍ତିରେ । ଗୀତା ଏହି ଶ୍ରେଣୀର ମନୁଷ୍ୟମାନଙ୍କୁ ଆତ୍ମତୃପ୍ତ ଓ ଆତ୍ମରତ ବୋଲି ବର୍ଣ୍ଣନା କରିଛନ୍ତି । ଏମାନଙ୍କର କର୍ମ-ନିର୍ଘଣ୍ଟ ସମାପ୍ତ । ପୁଣି ଏ ଶ୍ରେଣୀର ମହତ୍ତ୍ବ ଜନ କିଛି କାମ ନ କରି ଖାଲି ବସିଥିଲେ ମଧ୍ୟ ଅନ୍ତରରେ ପ୍ରଚଣ୍ଡ କର୍ମଶୀଳ ରହନ୍ତି । ଏମାନଙ୍କର ବ୍ୟକ୍ତିତ୍ବ ଚୈତନ୍ୟମୟ ହୋଇଯାଇଥିବାରୁ ଏମାନଙ୍କର ପ୍ରତ୍ୟେକ ଚିନ୍ତାହିଁ ସାଧାରଣ ଲୋକର ସହସ୍ର ଧାଁ-ଦଉଡ଼ଠାରୁ ଅଧିକ ଫଳପ୍ରଦ ହୋଇଥାଏ । ଗାନ୍ଧିଙ୍କର ଜନତାଉପରେ ରହସ୍ୟମୟ ପ୍ରଭାବର କାରଣ ସମ୍ଭବତଃ ଏହିଠାରେ ।

ପର ଶ୍ଳୋକଟିରେ ଗୀତା ଏହି ଭାବଟିକୁ ଆହୁରି ପ୍ରସାରିତ କରିବାକୁ ଯାଇଛନ୍ତି ।

୧୮

ନୈବ ତସ୍ୟ କୃତେନାର୍ଥୋ ନାକୃତେନେହ କଶ୍ଚନ
ନ ଚାସ୍ୟ ସର୍ବଭୂତେଷୁ କଶ୍ଚିଦର୍ଥବ୍ୟପାଶ୍ରୟଃ । ୧୮ ।

ଇହ (ଏ ଜଗତରେ) କୃତେନ (କର୍ମାନୁଷ୍ଠାନଦ୍ୱାରା) ତସ୍ୟ ଅର୍ଥଃ ନ ଏବ (ତାଙ୍କର କୌଣସି ପ୍ରୟୋଜନ ନାହିଁ) । ଅ-କୃତେନ ଚ (ଅ-କର୍ମା ହେବାପାଇଁ ମଧ୍ୟ) କଃ ଚନ (ତାଙ୍କର କୌଣସି ଅର୍ଥ ବା ପ୍ରୟୋଜନ ନ ଥାଏ ) । ଅସ୍ୟ (ଏହାଙ୍କର) ସର୍ବଭୂତେଷୁ (ସକଳ ପ୍ରାଣୀ ବା ମନୁଷ୍ୟଭିତରୁ କାହାରିଠାରେ

ହେଲେ) ଅର୍ଥବ୍ୟପାଶ୍ରୟଃ ନ (କୌଣସି ପ୍ରୟୋଜନ-ସଂବନ୍ଧ ନ ଥାଏ) ।

## ଅନୁବାଦ

"ହେ ଅର୍ଜୁନ, ଏପରି ଲୋକଙ୍କର କର୍ମାନୁଷ୍ଠାନର କୌଣସି ପ୍ରୟୋଜନ ନାହିଁ ବା ନାହିଁ ମଧ୍ୟ କୌଣସି କାମ ନ ହେଲେ । ଜଗତର ଜୀବଗ୍ରାମଭିତରୁ କାହାରି ପାଖରୁ ହେଲେ ତାଙ୍କର ପାଇବାର କିଛି କଥା ନାହିଁ ।"

## ବିଶେଷ ଭାଷ୍ୟ

ବିରାଟ ବିଜ୍ଞାନୀ ଆଇନ୍‌ଷ୍ଟାଇନ୍‌ଙ୍କ ସମ୍ବନ୍ଧରେ ବହୁ କୌତୂହଳୋଦ୍ଦୀପକ ଗଳ୍ପ ଶୁଣାଯାଇଥାଏ । ଏହି ଅସାଧାରଣ ପ୍ରତିଭାଧର ବ୍ୟକ୍ତି ଖାତା-ପେନ୍‌ସିଲ୍ ନେଇ ଗୋଟିଏ ଜାଗାରେ ଘଣ୍ଟା ଘଣ୍ଟା ଧରି ଖାଲି ବସିଥାନ୍ତି, ଅଥଚ ଧାଡ଼ିଏ ମଧ୍ୟ ଲେଖନ୍ତି ନାହିଁ । ଯଦିବା ଦିନଯାକ ବସି ବସି ଧାଡ଼ିଏ କ'ଣ ଲେଖିଲେ, ଯାହା କି ତାନ୍ତ୍ରିକମାନଙ୍କ ହ୍ରୀଂ-କ୍ଲୀଂ ପରି, ତାହା ଅନ୍ୟ ଲୋକ ପକ୍ଷରେ ଏକାନ୍ତ ଦୁର୍ବୋଧ । ଯେକୌଣସି ପାଷଣ୍ଡ ତା ଦୃଷ୍ଟିକୋଣରୁ ସଂପୂର୍ଣ୍ଣ ଯଥାର୍ଥତା ସହିତ କହିବ ଯେ, ଏ ଲୋକଟା ବୃଥା ବସି ଖାଉଛି—ଏଙ୍କୁ ନେଇ କାରଖାନାରେ ଶ୍ରମିକଭାବରେ ଭର୍ତ୍ତି କରିବା ଉଚିତ ।

କିନ୍ତୁ ଆପାତ-ଅଳସୁଆ ଥିବା ଜଣେ ଆଇନ୍‌ଷ୍ଟାଇନ୍ ଯେଉଁ କାମ କରିଚାଲିଥାଏ, ଜଗତର କୋଟି କୋଟି ତଥାକଥିତ କର୍ମଶୀଳ ଲୋକ ଏକାଠି ହେଲେ ମଧ୍ୟ ତାହା କରିପାରିବେ ନାହିଁ ।

ଜୀବନକୁ ଯଜ୍ଞାୟିତ କରିବା ଲକ୍ଷ୍ୟରେ ସାଧନା କରିଚାଲିଲେ ସାଧକ ଏପରି ଏକ ଅବସ୍ଥାକୁ ଆସେ, ଯେତେବେଳେ ତାର ଶୋଇଲା-ବସିଲାଭିତରେ ମଧ୍ୟ ସେହି ଯଜ୍ଞ ଅନବସରଭାବରେ ଚାଲିଥାଏ । ଏପରି ଲୋକର କାମ କରିବା ଓ ନ କରିବା ସମାନ ହୋଇଯାଏ ।

ସୂର୍ଯ୍ୟ ଚାରିପାଖରେ ଗ୍ରହ-ଉପଗ୍ରହମାନେ ପ୍ରଚଣ୍ଡ ବେଗରେ ଅହରହ ଧାଇଁଛନ୍ତି, ଅଥଚ ସୂର୍ଯ୍ୟ ସ୍ଥିର ଓ ନିର୍ବିକାର । କିନ୍ତୁ ମନେ ରଖିବାକୁ ହେବ ଯେ, ଗ୍ରହ-ଉପଗ୍ରହମାନଙ୍କର ପ୍ରଚଣ୍ଡ କ୍ଷିପ୍ରତା ପଛରେ ସେହି ସ୍ଥିର ନିର୍ବିକାର ସୂର୍ଯ୍ୟ । ଏବଂ ଯେହେତୁ ସେ ସ୍ଥିର, ତାଙ୍କୁ ଆମେ ଆଳସ୍ୟପରାୟଣ ବୋଲି କହିପାରିବା ନାହିଁ, କାରଣ ସେହି ସ୍ଥିର ସୂର୍ଯ୍ୟ ଯୋଗୁଁ ହିଁ ଏ ସୃଷ୍ଟି ସମ୍ଭବ ହୋଇଛି ।

ଗୀତା ମନୁଷ୍ୟ-ଜୀବନର ଏହି ଶ୍ରେଷ୍ଠ ଅବସ୍ଥାଟିକୁହିଁ ଆଦର୍ଶ-ଲକ୍ଷ୍ୟ ଭାବରେ ମୂଳରୁ ଶେଷଯାଏ, ନାନା ଭାବରେ ପରିବେଷିତ କରି ଚାଲିଥିବାର ପାଠକେ ଦେଖିବେ । ସ୍ଥିତଧୀ, ସ୍ଥିତପ୍ରଜ୍ଞ, ଆତ୍ମତୃପ୍ତ, ଆତ୍ମାରାମ ଇତ୍ୟାଦି

ବନ୍ଧୁ ଶବ୍ଦଦ୍ୱାରା ଗୀତା ସେହି ଏକ ଆଦର୍ଶକୁହିଁ ବ୍ୟଞ୍ଜିତ କରିଥିଲେଛନ୍ତି । ଏ ଆଦର୍ଶରେ ଆତଙ୍କିତ ହୋଇଉଠିବାର କୌଣସି କାରଣ ନାହିଁ । କାରଣ ଏହି ଆଦର୍ଶହିଁ ଏ ଧରାରେ ସମ୍ଭବ କରିଛି ବୁଦ୍ଧ, ଗାନ୍ଧି ଓ ଖ୍ରୀଷ୍ଟ, ବା ନିଉଟନ୍, ଆଇନ୍‌ଷ୍ଟାଇନ୍, ବା ଦାନ୍ତେ, କାଳିଦାସ ଆଦିଙ୍କୁ । ଏମାନଙ୍କର ସଂସାର ହେଲା ନିଜ ଅନ୍ତରର ସଂସାର । ଏମାନେ ବାହାରର ଜୀବଜନ ସହିତ ସେପରି କୌଣସି ଅଚ୍ଛେଦ୍ୟ ବା ଅତ୍ୟାବଶ୍ୟକ ବନ୍ଧନ ସ୍ୱୀକାର କରନ୍ତି ନାହିଁ, ଯେପରି କରନ୍ତି ଆମପରି ଇତର ସାଧାରଣ । ଗୀତା ସେଇଥିପାଇଁ କହିଛନ୍ତି—ନ ଚାସ୍ୟ ସର୍ବଭୂତେଷୁ କଶ୍ଚିଦର୍ଥବ୍ୟପାଶ୍ରୟଃ—ଏହି ଆଦର୍ଶ ଆତ୍ମତୁଷ୍ଟ ଲୋକର ବାହାର ଜୀବନ ସହିତ (ସର୍ବଭୂତେଷୁ) କୌଣସି ଅତ୍ୟାବଶ୍ୟକ ସମ୍ବନ୍ଧ ନ ଥାଏ । ଏ ଶ୍ରେଣୀର ଲୋକେ ତାଙ୍କର ସକଳ ପ୍ରୟୋଜନର ଉତ୍ସ ଖୋଜି ପାଇଥାନ୍ତି ନିଜ-ଭିତରେ ।

## ୧୯

ତସ୍ମାଦସକ୍ତଃ ସତତଂ କାର୍ଯ୍ୟଂ କର୍ମ ସମାଚର
ଅସକ୍ତୋହ୍ୟାଚରନ୍ କର୍ମ ପରମାପ୍ନୋତି ପୂରୁଷଃ । ୧୯ ।

ତସ୍ମାତ୍ (ତେଣୁ) ଅସକ୍ତଃ (ଅନାସକ୍ତ ରହି) ସତତଂ (ସବୁବେଳେ) କାର୍ଯ୍ୟଂ କର୍ମ (ଯାହା ତୁମର କର୍ତ୍ତବ୍ୟ ସେହି କାମସବୁ) ସମାଚର (କରିଚାଲ), ହି (ଯେହେତୁ) ପୁରୁଷଃ (ଯେକୌଣସି ଲୋକ) ଅସକ୍ତଃ (ଅନାସକ୍ତ ରହି ) କର୍ମ ଆଚରନ୍ (କାମ କରିଚାଲିଲେ) ପରଂ (ଯାହା ଶ୍ରେଷ୍ଠ ତାହା) ଆପ୍ନୋତି (ଲାଭ କରିଥାଏ) ।

### ଅନୁବାଦ

"ତେଣୁ ହେ ଅର୍ଜୁନ, ତୁମେ ସର୍ବଦା ଅନାସକ୍ତଭାବରେହିଁ କର୍ତ୍ତବ୍ୟ-କର୍ମ କରିଚାଲ । ଅସକ୍ତଭାବରେ କର୍ମ କରିଚାଲିଲେ ଲୋକ ମନୁଷ୍ୟ-ଜୀବନର ଶ୍ରେଷ୍ଠତା ପ୍ରାପ୍ତ ହୁଏ ।

### ବିଶେଷ ଦ୍ରଷ୍ଟବ୍ୟ

ବର୍ତ୍ତମାନ ଆମର ଆଉ ବୁଝିବାରେ କଷ୍ଟ ହେବ ନାହିଁ ଯେ, ଅନାସକ୍ତ କର୍ମହିଁ ହେଉଛି ଯଜ୍ଞାର୍ପିତ କର୍ମ, ଅର୍ଥାତ୍ ସେହି କର୍ମ ଯାହା ନିଜ ସୁଖ-ସୁବିଧା-ଅହମିକା-ପରିତୋଷଣପାଇଁ ନୁହେଁ, ବରଂ ଯାହା ଅନ୍ୟମାନଙ୍କର ବା ଜଗତର କଲ୍ୟାଣପାଇଁ ଉଦ୍ଦିଷ୍ଟ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ତେଣୁ କହୁଛନ୍ତି—ଏହିପରି

ସଙ୍କଳ୍ପିତଭାବରେ 'କାର୍ଯ୍ୟଂ କର୍ମ'(କର୍ତ୍ତବ୍ୟ କର୍ମ) ସବୁହିଁ (ସତତଂ) ସଦା-ସର୍ବଦା କରିଚାଲ—କାମ ନ କରିବାର କୌଣସି ପ୍ରକାର ପେଖନା (ଛଳନା) ଦେଖାଇ ଆଳସ୍ୟରେ ବସିଯାଅ ନାହିଁ ଏବଂ କନ୍ଦ ନାହିଁ ତାହା ଏକ ଧର୍ମ। ସଙ୍କଳ୍ପିତ ଜୀବନ ବା ଅନାସକ୍ତ କର୍ତ୍ତବ୍ୟ-କର୍ମ ସାଧନଦ୍ୱାରହିଁ ମନୁଷ୍ୟ-ଜୀବନର ଶ୍ରେଷ୍ଠ ସିଦ୍ଧି ମିଳେ। ଆମେ ସଚେତନ ନ ହେଲେ ମଧ୍ୟ ଆମର ହୃତ୍ପିଣ୍ଡ ଅନବରତ କାମ କରିଚାଲିଛି, ଯା ଯୋଗୁଁ ଆମ ଜୀବନ ସମ୍ଭବ ହୋଇଛି। ଅନାସକ୍ତ କର୍ମ ସେହିପରି। ଏହି ଲକ୍ଷ୍ୟରେ ଗୀତା ପର ଶ୍ଳୋକରେ 'ଲୋକ-ସଂଗ୍ରହ' ନାମକ ଏକ ଉଦାର ମନୋଜ୍ଞ ଭାବ-କଳ୍ପ ପୁଣି ଆଣି ଥୋଇଛନ୍ତି।

୨୦

କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ
ଲୋକସଂଗ୍ରହମେବାପି ସଂପଶ୍ୟନ୍ କର୍ତ୍ତୁମର୍ହସି। ୨୦।

ଜନକାଦୟଃ (ଜନକ ପ୍ରଭୃତି ମହାତ୍ମାମାନେ) କର୍ମଣା ଏବ ହି (କେବଳ କର୍ମମଧ୍ୟ ଦେଇ ପନ୍ଥାରେହିଁ) ସଂସିଦ୍ଧିଂ ଆସ୍ଥିତାଃ (ସିଦ୍ଧିପ୍ରାପ୍ତ ହୋଇଥିଲେ)। ଲୋକ-ସଂଗ୍ରହଂ ଏବ ଅପି ସଂପଶ୍ୟନ୍ (ଜନରକ୍ଷା, ଅର୍ଥାତ୍ ସମାଜ-କଲ୍ୟାଣଉପରେ ଆଖି ରଖି ମଧ୍ୟ ଅର୍ଥାତ୍ ନିଜର କୌଣସି ଦରକାର ନ ଥାଇ କେବଳ ଜନତାର କଲ୍ୟାଣପାଇଁ ମଧ୍ୟ) [ତୁମେ] କର୍ତ୍ତୁମ୍ ଅର୍ହସି (ସର୍ବଦା କର୍ମରତ ରହି ଚାଲିବା ଉଚିତ)।

## ଅନୁବାଦ

ଜନକ ପ୍ରଭୃତି ମହାତ୍ମାମାନେ ଏହି କର୍ମଯୋଗ ପନ୍ଥାରେହିଁ ମାନବର ଶ୍ରେଷ୍ଠ ସିଦ୍ଧି ପ୍ରାପ୍ତ ହୋଇଥିଲେ। କେବଳ ଲୋକ-ସଂଗ୍ରହ ବା ସମାଜକଲ୍ୟାଣ-ପାଇଁ ମଧ୍ୟ (ନିଜର କୌଣସି ଆବଶ୍ୟକତା ନ ଥିଲେ ମଧ୍ୟ) ଲୋକ ସର୍ବଦା କର୍ମରତ ରହିବା ଉଚିତ।

## ବିଶେଷ ଭାଷ୍ୟ

ସମଗ୍ର ଭାରତୀୟ ସାହିତ୍ୟରେ ଗୀତାହିଁ ଏହି ମନୋଜ୍ଞ 'ଲୋକ-ସଂଗ୍ରହ' ଶବ୍ଦଟିକୁ ବିଖ୍ୟାତ କରାଯାଇଛନ୍ତି।

ପୂର୍ବ ଶ୍ଳୋକରେ ଅର୍ଜୁନଙ୍କୁ ଉପଦେଶ ଦିଆଗଲା ଯେ, ସେ ସତତ କାମ କରିଚାଲନ୍ତୁ ଏବଂ ଅସକ୍ତଭାବରେହିଁ କାମ କରିଚାଲନ୍ତୁ ଅର୍ଥାତ୍ ପ୍ରତ୍ୟେକ କାମକୁ ସଙ୍କଳ୍ପିତ କରିଚାଲନ୍ତୁ। ଏହି ଶ୍ଳୋକରେ ସେହି ଉପଦେଶକୁ ଶକ୍ତିଶାଳୀ କରିବା ପାଇଁ

ନୂତନ ଦୃଷ୍ଟାନ୍ତ ଓ ନୂତନ ଲକ୍ଷ୍ୟ ମଧ୍ୟ ପରିବେଷିତ କରାଗଲା । କାରଣ ଅର୍ଜୁନ ବା ଯେକୌଣସି ଶ୍ରୋତା ବା ପାଠକ ପଚାରିପାରନ୍ତି ଯେ, ଏପ୍ରକାର ଅନାସକ୍ତ କର୍ମଠତା କେବଳ ପୋଥିଗତ ଆଦର୍ଶ ନା ଏଇମିତି ଲୋକ କେବେ ଦେଖାଦେଇଛନ୍ତି ? ସେଥିପାଇଁ ଶ୍ରୀକୃଷ୍ଣ ଜନକଙ୍କର ଉଦାହରଣ ଦେଲେ । ଜନକ ରାଜା ଥିଲେ । ରାଜାର ତ ଅଭାବ କିଛି ନାହିଁ । ଅଧିକନ୍ତୁ, ସକଳ ବିଳାସ ତାର ପାଦ ତଳେ ଥୁଆ । ରାଜା ଜନକ କେଉଁଠିକି କେବେ ଯୋଗ-ତପସ୍ୟା କରିବାକୁ ଯାଇ ନ ଥିଲେ । ଅଥଚ ବିଳାସ-ବର୍ଜିତ ଏହି ରାଜାହିଁ ସମଗ୍ର ଭାରତୀୟ ପୁରାଣ-ଉପନିଷଦ୍ ସାହିତ୍ୟରେ ଏକ ଅସାଧାରଣ ତତ୍ତ୍ୱଜ୍ଞ ମହାତ୍ମା ବୋଲି ବର୍ଣ୍ଣିତ ହୋଇଛନ୍ତି । ବଡ଼ ବଡ଼ ବ୍ରାହ୍ମଣପଣ୍ଡିତମାନେ ତାଙ୍କ ରାଜସଭାକୁ ଯାଉଥିଲେ ତାଙ୍କଠାରୁ ଜ୍ଞାନ ବା ଜୀବନାଦର୍ଶ ଶିଖିବା ପାଇଁ । ରାଜା ଜନକଙ୍କର ଏପ୍ରକାର ପରମ ସିଦ୍ଧିମୂଳରେ ଥିଲା କେବଳ ଯଜ୍ଞାର୍ପିତ ଜୀବନ । ଅର୍ଥାତ୍, ସେ କେବଳ 'ଲୋକ-ସଂଗ୍ରହ' ବା ଜନକଲ୍ୟାଣସର୍ବସ୍ୱ ରହିହିଁ ଅହରହ କାମ କରିଚାଲିଥିଲେ । ଶ୍ରୀକୃଷ୍ଣ ତେଣୁ ଅର୍ଜୁନଙ୍କୁ କହୁଛନ୍ତି—ତୁମେ ସେହି ଜନକ ପ୍ରଭୃତି କର୍ମଯୋଗୀ-ମାନଙ୍କ ଆଦର୍ଶରେ କେବଳ ଲୋକ-ସଂଗ୍ରହ(ଜନକଲ୍ୟାଣ) ଉପରେ ଆଖି ରଖିହିଁ କାମ କରିଚାଲ । ନିଜର ଲାଭାଲାଭ କଥା ବିଚାରି ବସୁଛ କାହିଁକି ?

ଗୀତା ଯେ ଏକ ପଳାୟନ-ପନ୍ଥୀ ଜୀବନାଦର୍ଶ ପ୍ରଚାର କରିବାକୁ ଯାଇ-ନାହାନ୍ତି, ତାହାର ଶ୍ରେଷ୍ଠ ପ୍ରମାଣ ଏହି 'ଲୋକ-ସଂଗ୍ରହ' ଶବ୍ଦଟି । କୌଣସି ଲୋକ ଈଶ୍ୱରଙ୍କୁ ବିଶ୍ୱାସ ନ କରିପାରେ । ଗୀତା ସେଥିପାଇଁ କୌଣସିଠାରେ ହେଲେ ବାଧ୍ୟବାଧକତା ପ୍ରୟୋଗ କରି ନାହାନ୍ତି । ଏପର୍ଯ୍ୟନ୍ତ ତ ଆମେ ସେ ପ୍ରକାର ବାଧ୍ୟବାଧକତାକୁ ଭେଟିନୁ । କିନ୍ତୁ ଗୀତା ଚାହାନ୍ତି ଯେ, ସଭ୍ୟ, ସମାହିତ, ଶୋଭନ, ସିଦ୍ଧିମନ୍ତ ଓ ଋଦ୍ଧିମନ୍ତ ଜୀବନପାଇଁ ଆମର ପ୍ରତ୍ୟେକର ଜୀବନ ସର୍ବଦା ଅନ୍ୟମାନଙ୍କ ପାଇଁ ଯଜ୍ଞାର୍ପିତ ହେଉ । ସ୍ୱାର୍ଥକୈନ୍ଦ୍ରିକ ବା କେବଳ କ୍ଷଣିକ ଇନ୍ଦ୍ରିୟସୁଖସର୍ବସ୍ୱ ନ ହୋଇ ଏହା ଦାନ, ତ୍ୟାଗ ଓ କୃତଜ୍ଞତାଦ୍ୱାରା ବିମଣ୍ଡିତ ହେଉ । କୌଣସି ଈଶ୍ୱରଙ୍କୁ ମାନ ବା ନ ମାନ, ଅନ୍ତତଃ ସାମାଜିକ କଲ୍ୟାଣ (ଲୋକ-ସଂଗ୍ରହ) ଦୃଷ୍ଟିରୁହିଁ ସର୍ବଦା କର୍ମ କରିଚାଲ । ଗୀତା ; ତାର ଯଥାର୍ଥତା ପରବର୍ତ୍ତୀ ଶ୍ଳୋକରେ ଦୃଢ଼ତରଭାବରେ ଉପସ୍ଥାପିତ କରୁଛନ୍ତି ।

୨୧

ଯଦ୍ ଯଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ
ସ ଯତ୍ ପ୍ରମାଣଂ କୁରୁତେ, ଲୋକସ୍ତଦନୁବର୍ତ୍ତତେ । ୨୧ ।

ଶ୍ରେଷ୍ଠଃ [ଜନଃ] (ସମାଜର ଉପରିସ୍ତରର ଲୋକ) ଯତ୍ ଯତ୍ (ଯାହା ଯାହା) ଆଚରତି (କରନ୍ତି) ଇତରଃ ଜନଃ (ଅନ୍ୟ ସାଧାରଣ ଲୋକ) ତତ୍ ତତ୍ ଏବ (ଠିକ୍ ସେପ୍ସା ସେପ୍ସା) [କରିଥାନ୍ତି] । ସଃ (ସେହି ଉପରିସ୍ତରର ଲୋକ) ଯତ୍ ପ୍ରମାଣଂ କୁରୁତେ (ନିଜର ବ୍ୟବହାରଦ୍ୱାରା ଯାହା କରଣୀୟ ବୋଲି ପ୍ରମାଣିତ କରନ୍ତି) ଲୋକଃ (ସାଧାରଣ ଲୋକ) ତତ୍ ଅନୁବର୍ତ୍ତତେ (ତାହାଙ୍କୁ ଅନୁସରଣ କରିଥାନ୍ତି) ।

## ଅନୁବାଦ

ହେ ଅର୍ଜ୍ଜୁନ, ମନେ ରଖିଥିବ ଯେ, ସମାଜର ଶ୍ରେଷ୍ଠ ଜନମାନେ ଯେପରି ଆଚରଣ କରିଥାନ୍ତି, ଅନ୍ୟ ସାଧାରଣ ଲୋକେ (କିଛି ନ ବିଚାରି) ସେପ୍ସାହିଁ କରିଥାନ୍ତି । ସେମାନେ ଯେପରି କର୍ମର ମାନଦଣ୍ଡ ସ୍ଥାପନ କରନ୍ତି, ସାଧାରଣ ଲୋକେ ତାହାହିଁ ଅନୁସରଣ କରିଥାନ୍ତି ।”

## ବିଶେଷ ଦ୍ରଷ୍ଟବ୍ୟ

ପୂର୍ବ ଶ୍ଳୋକରେ ‘ଲୋକ-ସଂଗ୍ରହ’ ବୋଲି ଯେଉଁ କଥାଟି କୁହାଗଲା, ତାହା ପ୍ରକୃତରେ କାହାପ୍ରତି ବିଶେଷଭାବରେ ପ୍ରଯୁଜ୍ୟ ? ‘ଲୋକ-ସଂଗ୍ରହ’ଚିନ୍ତା କିଏ କରିବ ? ସମାଜରେ ବିବିଧ ଗୋଷ୍ଠୀର ଲୋକ ଥାନ୍ତି । ଆମେ କଣ ଆଶା କରିବା ଯେ, ବ୍ୟକ୍ତିଗତଭାବରେ ନିରକ୍ଷର ଓ ନିର୍ଦ୍ଧନ ଏବଂ ଉଦରପୋଷଣବ୍ୟସ୍ତ ବଢ଼େଇ, ଚଷା, ଗଉଡ଼, କେଳା—ଏମାନେ ‘ଲୋକ-ସଂଗ୍ରହ’ କଥା ଭାବି କାମ କରିବେ ? ସେପରି ଭାବିପାରିବାର ଶକ୍ତି କଣ ସେମାନଙ୍କର ଥାଏ ? ତେବେ ଏ କାମ କିଏ କରିବ ?

ସବୁ କାଳେ ଓ ସବୁ ଦେଶରେ ପ୍ରତ୍ୟେକ ସମାଜରେ ଉପର, ମଧ୍ୟ ଓ ନୀଚ, ଏହିପରି ତିନି ସ୍ତର ରହିବହିଁ ରହିବ । ସମସମାଜବାଦୀ କମ୍ୟୁନିଷ୍ଟ ରାଷ୍ଟ୍ର-ମାନଙ୍କରେ ମଧ୍ୟ ସ୍ୱାଭାବିକଭାବରେ ସମାଜ ଏହିପରି ବିଭକ୍ତ ହୋଇଯିବାର ଆମେ ଦେଖୁଁ । ସର୍ବବ୍ୟାପୀ ‘ସମାନତା’ କେବଳ ପ୍ରୋପାଗାଣ୍ଡା (propaganda) ବା ପରିପ୍ରଶ୍ନର ମାତ୍ର । ପ୍ରକୃତିରେ ଓ ଜୀବଜଗତରେ ଯେପରି, ମନୁଷ୍ୟସମାଜରେ ମଧ୍ୟ ସେହିପରି ସାର୍ବଜନୀନ ସାମ୍ୟ ଏକ ଅସମ୍ଭବ ଓ ଅକଲ୍ୟାଣକର ବ୍ୟାପାର । କମ୍ୟୁନିଷ୍ଟ ରୁଷିଆର କ୍ରେମଲିନ୍‌ରେ ରହୁଥିବା ଭାଗ୍ୟବାନ୍ ଲୋକଗୁଡ଼ିକ ଓ ସାଇବେରିଆର ଖଣି-ଶ୍ରମିକ ମାନେବାହାରେ ଉଭୟେ ଉଭୟଙ୍କୁ ‘କମ୍ରେଡ୍’ (Comrade) (ସାଙ୍ଗ) ବୋଲି ଡାକିଲେ ମଧ୍ୟ ଉଭୟେ ଜାଣନ୍ତି ସେପରି ‘ସାଙ୍ଗ’ର ତାତ୍ପର୍ଯ୍ୟ କଣ !

କିନ୍ତୁ ଗୀତାର 'ସାମ୍ୟବାଦ' ବା କମ୍ୟୁନିଜମ୍ ହେଲା, ସମାଜରେ ଉପର-ତଳ ରହିଲେହେଁ ତଳ ଶ୍ରେଣୀ ଅପେକ୍ଷା ଉପର ଶ୍ରେଣୀର (ଶ୍ରେଷ୍ଠମାନଙ୍କର, ସମାଜର ଶୀର୍ଷସ୍ଥାନୀୟ ଲୋକଙ୍କର) ଦାୟିତ୍ୱ ବହୁ ବେଶୀ । ଉପର ଶ୍ରେଣୀ, ଯେଉଁ ଅଧିକ ସୁଖ-ସୁବିଧା ପାଉଛି ସେଥିପାଇଁ ନୈତିକ ଦାୟିତ୍ୱରେ ସେ ଅନବରତ କେବଳ 'ଲୋକ-ସଂଗ୍ରହ' ବା ଜନକଲ୍ୟାଣ ଚିନ୍ତା କରିବ ; ସେତିକି କେବଳ ନୁହେଁ, ଉପର ଶ୍ରେଣୀର ଲୋକେ (ଶ୍ରେଷ୍ଠମାନେ) ସେମାନଙ୍କର ଦୈନନ୍ଦିନ ଜୀବନରେ ଏପରି କୌଣସି ଆଚରଣ ମଧ୍ୟ କରି ପାରିବେ ନାହିଁ, ଯାହା ସମାଜରେ ବ୍ୟାପ୍ତ ହୋଇଗଲେ ସମାଜ କ୍ଷୟପ୍ରାପ୍ତ ବା ଧ୍ୱଂସପ୍ରାପ୍ତ ହେବ । କାରଣ ନିମ୍ନ ସ୍ତରର ଲୋକେ ଉଚ୍ଚ ସ୍ତରର ଲୋକଙ୍କୁ ସର୍ବଦା, ସବୁ କାଳେ ଅନୁକରଣ କରିଥାନ୍ତି ।

ସ୍ୱାଧୀନତାପରେ ଭାରତର ରାଜ୍ୟ ରାଜ୍ୟ ମନ୍ତ୍ରୀମାନେ, ନେତାମାନେ ଯାହା ଯାହା ଯେପରି କରିଗ୍ଲଲେ, ମାତ୍ର କୋଡ଼ିଏଟା ବର୍ଷଭିତରେ ସେସବୁର ପୁଞ୍ଜୀଭୂତ କୁଫଳ ସମଗ୍ର ଜାତିକୁ ଭୋଗିବାକୁ ପଡ଼ିଲା । ବସ୍ତୁତଃ ଉପରସ୍ତରର କଳୁଷମୟତାହିଁ ସମଗ୍ର ଏକ ବିରାଟ ଉପମହାଦେଶକୁ ଅନାଗ୍ଭରମୟ କରିଦେଲା ମାତ୍ର କୋଡ଼ିଏଟା ବର୍ଷଭିତରେ । ତେଣୁ ପାଠକେ ମନେ ରଖନ୍ତୁ ଯେ, ଆମର ସ୍ୱାଧୀନତୋତ୍ତର ଭାରତବର୍ଷର ଦୁର୍ଦ୍ଦଶାହିଁ ଗୀତାର ଏହି ମହାନ୍ ଶ୍ଳୋକଟିର ପରମ ସତ୍ୟ ଓ ପରମ ଯଥାର୍ଥତା ପ୍ରମାଣ କରୁଛି । ଅର୍ଜୁନ ଉପର ଶ୍ରେଣୀର ଲୋକ । ସେ ଯଦି ତାଙ୍କର ସାମାଜିକ କର୍ତ୍ତବ୍ୟ ନ କରିବେ, ତେବେ ସମଗ୍ର ସମାଜରେ କର୍ତ୍ତବ୍ୟ କର୍ମ ନ କରିବାର ମନ୍ଦ ଆଦର୍ଶ ବ୍ୟାପିଯିବ । ତେଣୁ ଅର୍ଜୁନ ନିଜର ଲାଭାଲାଭ ବିଚାର ନ କରି, ସମାଜ ଆଗରେ ଅନ୍ତତଃ ଆଦର୍ଶ ଛାଡ଼ିଯିବା-ପାଇଁହିଁ ଯୁଦ୍ଧ ରୂପକ ତାଙ୍କର କର୍ତ୍ତବ୍ୟ କର୍ମ କରିଗ୍ଲଲିବା ଉଚିତ । ସମଗ୍ର ସମାଜପ୍ରତି କୃଷ୍ଣ ବା ଅର୍ଜୁନ ଯେପରି, ଗୋଟିଏ ପରିବାରରେ ବାପା ଓ ମାଆ ମଧ୍ୟ ସେହିପରି । ପ୍ରତି ପରିବାର, ଗ୍ରାମ, ନଗର, ଦେଶ ଓ ସମାଜରେ ସେହିପରି 'ଶ୍ରେଷ୍ଠ' ବା ଶ୍ରେଷ୍ଠର ଶ୍ରେଣୀ ଅଛନ୍ତି । ସେମାନେ ନିଜ ପୁତ୍ରକନ୍ୟାଙ୍କ ପାଇଁ, ବା ଗ୍ରାମବାସୀ ବା ଦେଶବାସୀଙ୍କୁ ଆଦର୍ଶ-ଜୀବନ ଦେଖାଇଯିବା ଲକ୍ଷ୍ୟରେହିଁ, ନିଜର ସୁଖ ସୁବିଧା ଭୁଲି, ଉଚିତ କଥା କହିବା ଓ କରିବାପ୍ରତି ନଜର ଦେଇ-ଗ୍ଲଲିବେ । ପ୍ରତି ପରିବାରରେ ମଧ୍ୟ ପରିବାରମୁଖ୍ୟ ପ୍ରତ୍ୟହ ପରାର୍ଥପରତାର ଆଦର୍ଶ ଥୋଇଗ୍ଲଲିଥିବା ଉଚିତ, ନିଜ ପିଲାପିଲି ଓ ସ୍ତ୍ରୀଙ୍କ ଆଗରେ । ପିତାମାତା ସେହିପରି ଦେଖାଇଗ୍ଲଲିବେ ପୁତ୍ରକନ୍ୟାଙ୍କ ଆଗରେ ।

୨୨-୨୩

ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ ତ୍ରିଷୁ ଲୋକେଷୁ କିଂଚନ
ନାନବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି । ୨୨ ।
ଯଦି ହ୍ୟହଂ ନ ବର୍ତ୍ତେୟଂ ଜାତୁ କର୍ମଣ୍ୟତନ୍ଦ୍ରିତଃ
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ । ୨୩ ।

[ହେ] ପାର୍ଥ (ଅର୍ଜୁନ) ତ୍ରିଷୁ ଲୋକେଷୁ (ତିନି ଲୋକମଧ୍ୟରେ, ଅର୍ଥାତ୍ ସମଗ୍ର ସୃଷ୍ଟିରେ) ମେ (ମୋର, ଅର୍ଥାତ୍ ଭଗବାନଙ୍କର) କିଂଚନ କର୍ତ୍ତବ୍ୟଂ ନାସ୍ତି (ନିଜର ବୋଲି କୌଣସି କରିବା କର୍ମ ନାହିଁ) । (ମୋର ବା ଭଗବାନଙ୍କର) ଅନବାପ୍ତଂ (ଅପ୍ରାପ୍ତ) [ଅଥବା] ଅବାପ୍ତବ୍ୟଂ (ଅପ୍ରାପ୍ୟ) ନ (କିଛି ନାହିଁ) । [ତଥାପି ମୁଁ] କର୍ମଣି ବର୍ତ୍ତ ଏବ ଚ (କର୍ମରେ ଲାଗିରହିଛି) । [ହେ] ପାର୍ଥ (ହେ ଅର୍ଜୁନ) ଯଦି ଅହଂ ଜାତୁ (ଯଦି ମୁଁ ଥରେ ହେଲେ) ଅତନ୍ଦ୍ରିତଃ କର୍ମଣି ନ ବର୍ତ୍ତେୟଂ (ନିରଳସ ହୋଇ କର୍ମରେ ଲାଗି ନ ରହେ) [ତାହାହେଲେ] ମନୁଷ୍ୟାଃ (ମନୁଷ୍ୟମାନେ) ମମ ବର୍ତ୍ମହି (ମୋ ବାଟକୁହିଁ) ସର୍ବଶଃ (ସବୁପ୍ରକାରେ) ଅନୁବର୍ତ୍ତନ୍ତେ (ଅନୁସରଣ କରିବେ, ଅର୍ଥାତ୍ କାମ କରିବେନି) ।

**ଅନୁବାଦ**

"ହେ ଅର୍ଜୁନ, ତିନି ଲୋକରେ ଅର୍ଥାତ୍ ସମଗ୍ର ସୃଷ୍ଟିରେ ମୋର ନିଜର ବୋଲି କୌଣସି କର୍ତ୍ତବ୍ୟ ନାହିଁ । ମୋର ଅପ୍ରାପ୍ତ ବା ଅପ୍ରାପ୍ୟ କିଛି ନାହିଁ । କିନ୍ତୁ ମୁଁ ଅହରହ କାମ କରିଚାଲିଛି । ହେ ଅର୍ଜୁନ, ମୁଁ ଯଦି ଥରେ ମୋର ନିରଳସ କର୍ମରୁ ବିରତ ରହିଯାଏ, ତେବେ ମନୁଷ୍ୟମାନେ ମୋର ପନ୍ଥାହିଁ ଧରିବେ ।"

**ବିଶେଷ ଭାଷ୍ୟ**

ଯଜ୍ଞ-ଚକ୍ର-ଦର୍ଶନ ଉପସ୍ଥାପିତ କଲାଭିତରେ ଗୀତା ଦେଖାଇସାରିଛନ୍ତି ଯେ, ସମଗ୍ର ସୃଷ୍ଟି ଅହରହ ଯଜ୍ଞମୟ ବା କର୍ମମୟ । କେବଳ ସେତିକି ନୁହେଁ, 'ଅକ୍ଷର'ଠାରୁ 'ଅନ୍ନ' ପର୍ଯ୍ୟନ୍ତ ଏହି ବିରାଟ କର୍ମ-ଶୃଙ୍ଖଳା କିପରି ପରସ୍ପରାପେକ୍ଷୀ ହୋଇ ରହିଛନ୍ତି ଗୀତା ତାହା ମଧ୍ୟ ଦେଖାଇଦେଇଛନ୍ତି । ଏହି ଶ୍ଳୋକରେ ଗୀତା କିନ୍ତୁ, ଏପର୍ଯ୍ୟନ୍ତ-ରଖିଆସିଥିବା-'ନିର୍ବ୍ୟକ୍ତିକ' ନିୟମ-ପରମ୍ପରାକୁ ଛାଡ଼ି, ସେସବୁକୁ ଏକ ବ୍ୟକ୍ତିତ୍ୱସଂପନ୍ନ ଈଶ୍ୱରଙ୍କଠାରେ ଆରୋପ କରିଛନ୍ତି ମାତ୍ର । ସୃଷ୍ଟି କର୍ମମୟ କହିବାର ଅର୍ଥ, ସ୍ରଷ୍ଟା ଅର୍ଥାତ୍ ଈଶ୍ୱରହିଁ କର୍ମମୟ । ଏହି ବିଶ୍ୱର ସ୍ରଷ୍ଟା ଓ ଅଧିପତି ଯେଉଁ ଈଶ୍ୱର, ତାଙ୍କର ନିଜର କେଉଁ ଅଭିଳାଷପୂରଣପାଇଁ ବା ସେ କାମ କରିଚାଲିଛନ୍ତି ? କାରଣ, ସେ ତ ନିଜେ ସମସ୍ତଙ୍କର ସକଳ ଅଭିଳାଷ ପୂରଣ କରନ୍ତି ବୋଲି କୁହାଯିବାର କଥା । କିନ୍ତୁ

ସୃଷ୍ଟି-ସ୍ଥିତି-ଲୟମୂଳକ ଏହି ବିଶ୍ୱକୁ ପରିଚାଳିତ ରଖିବାପାଇଁ ଈଶ୍ୱରଙ୍କୁ ଅହରହ କର୍ମରତ ରହିବାକୁ ପଡ଼ୁଛି । ନିଜପାଇଁ ନୁହେଁ, ସୃଷ୍ଟିପାଇଁ । ଏହାହିଁ ପୂର୍ବ ଶ୍ଳୋକରେ କଥିତ ସାମାଜିକ 'ଶ୍ରେଷ୍ଠ' ଅର୍ଥାତ୍ ଉପର ଶ୍ରେଣୀର ଲୋକ-ମାନଙ୍କର, କେଉଁ ଦୃଷ୍ଟି-କୋଣରୁ କର୍ତ୍ତବ୍ୟପରାୟଣ ଓ ଆଦର୍ଶବାଦୀ ହେବା କଥା, ତାହାରହିଁ ଦୃଢ଼ତର ସୂଚନାକ ଦୃଷ୍ଟାନ୍ତ । ସମାଜର ଶ୍ରେଷ୍ଠମାନେ ଆଦର୍ଶମୟ-ଭାବରେ କର୍ମରତ ରହିବେ ; କାରଣ ସୃଷ୍ଟିର ଶ୍ରେଷ୍ଠ ଯେ ଈଶ୍ୱର, ସେ ତାଙ୍କର କୌଣସି କର୍ମାବଶ୍ୟକତା ନ ଥିଲେହେଁ ସର୍ବଦାକର୍ମରତ ।

୨୪

ଉତ୍ସୀଦେୟୁରିମେ ଲୋକା ନ କୁର୍ଯ୍ୟାଂ କର୍ମ ଚେଦହଂ
ସଂକରସ୍ୟ ଚ କର୍ତ୍ତା ସ୍ୟାମୁପହନ୍ୟାମିମାଃ ପ୍ରଜାଃ । ୨୪ ।

ଚେତ୍ (ଯଦି) ଅହଂ (ମୁଁ) କର୍ମ ନ କୁର୍ଯ୍ୟାଂ (କର୍ମ ନ କରେ) [ତେବେ] ଇମେ ଲୋକାଃ (ଏହି ସମସ୍ତ ସଂସାର) ଉତ୍ସୀଦେୟୁଃ (ଉତ୍ସନ୍ନ ହୋଇଯିବେ) । [ମୁଁ] ସଂକରସ୍ୟ କର୍ତ୍ତା ସ୍ୟାଂ (ସମାଜରେ ସଂକର ସୃଷ୍ଟିର କାରଣ ମଧ୍ୟ ହେବି) । ଚ ଇମାଃ ପ୍ରଜାଃ (ଏବଂ ଏହି ପ୍ରଜାମାନଙ୍କୁ) ଉପହନ୍ୟାଂ (ବିନାଶ କଲି ବୋଲି ମଧ୍ୟ କୁହାଯିବ) ।

## ଅନୁବାଦ

"ହେ ଅର୍ଜ୍ଜୁନ, ମୁଁ ଯଦି କାମ ନ କରେଁ, ତେବେ କେବଳ ମନୁଷ୍ୟମାନେ ଯେ ବିପଥଗାମୀ ହେବେ ତାହା ନୁହେଁ, ଏହି ସମସ୍ତ ସଂସାରହିଁ ଉତ୍ସନ୍ନ ଯିବ । ସମାଜରେ ସଂକର-ସୃଷ୍ଟିହୋଇଚାଲିବେ, ଏବଂ ସକଳପ୍ରକାର ବିନାଶରହିଁ ମୁଁ କାରଣ ହେବି ।"

## ବିଶେଷ ଭାଷ୍ୟ

ଈଶ୍ୱର କର୍ମହୀନ ହୋଇଯିବା ଅର୍ଥାତ୍ ସୃଷ୍ଟିର ନିୟମତନ୍ତ୍ରତା କ୍ଷଣକ-ପାଇଁ ମଧ୍ୟ ବନ୍ଦ ହୋଇଯିବା ଏକ ଅକଳ୍ପନୀୟ ବ୍ୟାପାର । ତଥାପି ସମାଜର ଉପରସ୍ତରର ଲୋକେ ପ୍ରତ୍ୟେକେ ଜନକଲ୍ୟାଣ ବା ଲୋକ-ସଂଗ୍ରହ ଦୃଷ୍ଟିରୁ କିପରି ଅହରହ କର୍ମଶୀଳ ରହିବା ଉଚିତ, ଏହି କଥାଟିକୁ ଜୋର୍ ଦେଇ ବୁଝେଇବାପାଇଁ, ସୃଷ୍ଟିର ନିୟମତନ୍ତ୍ରତା ଓ କର୍ମତତ୍ପରତା ବନ୍ଦ ହୋଇଗଲେ ସମଗ୍ର ସୃଷ୍ଟି କିପରି କ୍ଷଣକେ ଉତ୍ସନ୍ନ ହୋଇଯିବ, ସେହି ଭୟାବହ ଚିତ୍ର ଶ୍ରୀକୃଷ୍ଣ ଏଠାରେ ଅର୍ଜ୍ଜୁନଙ୍କୁ ଦେଖାଇବସିଲେ । ଈଶ୍ୱର କାମ ବନ୍ଦ କଲେ ସୃଷ୍ଟି ଯେପରି

ମୁହୂର୍ତ୍ତକେ ଉତ୍ସନ୍ନ ହୋଇଯିବ, ଠିକ୍ ସେହିପରି ସମାଜପତି ସ୍ଥାନୀୟ ଲୋକେ ଯଦି 'ମୋର ଏ କାମ କିଏ କରିବ ? ମୋର କି ଦରକାର, ଏ କାମ କରିବି ?' ଇତ୍ୟାଦି ମନୋଭାବ ଧରି କାମ ନ କରନ୍ତି, ତେବେ ସମାଜ ଉପରି ଉତ୍ସନ୍ନ ଅବସ୍ଥାକୁ ଯିବ, ତାହା ମଧ୍ୟ ଗୀତା 'ସଂକର' ଶବ୍ଦରେ ଓ 'ଉତ୍ସେଦ' ଶବ୍ଦରେ ସ୍ପଷ୍ଟ ସୂଚିତ କରିଛନ୍ତି । ସମାଜର ଉପରିସ୍ତରର ଲୋକେ 'ଲୋକ-ସଂଗ୍ରହ'ପ୍ରତି ଆଖି ରଖି ନିଜର କିଛି ଦରକାର ନ ଥିଲେ ମଧ୍ୟ ଅହରହ ଆଦର୍ଶମୟଭାବରେ କର୍ମଠ ନ ରହିଲେ ସମାଜ ଅନାଚାରମୟ ହୋଇଯିବାର, ସମାଜରୁ ନ୍ୟାୟାନ୍ୟାୟ ବିଚାର ବି ଲୁପ୍ତ ହେବାର, ସମାଜ ସାଂସ୍କୃତିକ-ସାଂକର୍ଯ୍ୟମୟ ହୋଇଯିବାର ଓ ଶେଷରେ ସମୂଳେ ଧ୍ୱଂସପ୍ରାପ୍ତ ହେବାର ଏକାନ୍ତ ସମ୍ଭାବନା ।

୨୫

ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ
କୁର୍ଯ୍ୟାଦ୍ ବିଦ୍ୱାଂସ୍ତଥାସକ୍ତଶ୍ଚିକୀର୍ଷୁର୍ଲୋକସଂଗ୍ରହମ୍ । ୨୫ ।

ଭାରତ (ହେ ଅର୍ଜୁନ) ଅବିଦ୍ୱାଂସଃ (ମୂର୍ଖ ଲୋକେ) କର୍ମଣି ସକ୍ତାଃ (କର୍ମ-ପ୍ରତି ଆସକ୍ତ ହୋଇ) ଯଥା କୁର୍ବନ୍ତି (ଯେପରି କାମ କରିଥାନ୍ତି) ବିଦ୍ୱାନ୍ (ପଣ୍ଡିତ ଲୋକ) ଅସକ୍ତଃ (ଅନାସକ୍ତ ରହି) ଲୋକସଂଗ୍ରହଂ ଚିକୀର୍ଷୁଃ (ଲୋକ-ସଂଗ୍ରହ ଅର୍ଥାତ୍ ଜନକଲ୍ୟାଣ କରିବା ଉଦ୍ଦେଶ୍ୟରେ) ତଥା କୁର୍ଯ୍ୟାତ୍ (ଠିକ୍ ସେହିପରି କାମ କରିଚାଲିବା ଉଚିତ) ।

## ଅନୁବାଦ

"ତେଣୁ, ହେ ଅର୍ଜୁନ, ଅଜ୍ଞ ସାଧାରଣ ପାର୍ଥିବ ଲାଭପାଇଁ ଯେଉଁ ଆସକ୍ତି ନେଇ ନିଜ ନିଜ କାମରେ ଲାଗିଥାନ୍ତି, ପଣ୍ଡିତ ଲୋକେ ଜନକଲ୍ୟାଣ ଉଦ୍ଦେଶ୍ୟରେହିଁ ସ୍ୱାର୍ଥପ୍ରତି ଅନାସକ୍ତ ରହି ଠିକ୍ ସେହିପରି କର୍ମଶୀଳ ରହିବା ଉଚିତ ।

## ବିଶେଷ ଭାଷ୍ୟ

ଈଶ୍ୱରଙ୍କର ଅହରହ କର୍ମଠତାର ଯେଉଁ ଦୃଷ୍ଟାନ୍ତଟି ଶ୍ରୀକୃଷ୍ଣ ପୂର୍ବ ଶ୍ଳୋକରେ ଦେଲେ, କାଳେ ତାହା ଟିକିଏ କଷ୍ଟକଳ୍ପିତ ବୋଧ ହେବ, ଏହା ଭାବି ସେ ବର୍ତ୍ତମାନ ଅର୍ଜୁନଙ୍କ ପରି ସମାଜର ଉଚ୍ଚ ସ୍ତରର ଲୋକ ଉପରି ଅନାସକ୍ତଭାବରେ କେବଳ ଜନକଲ୍ୟାଣ ଲକ୍ଷ୍ୟରେହିଁ କାମ କରିଚାଲିବେ, ସେଥିପାଇଁ ଏ ଶ୍ଳୋକରେ ସମାଜର ନିମ୍ନ ସ୍ତରରୁ ମଧ୍ୟ ଏକ ଦୃଷ୍ଟାନ୍ତ ଆଣି ତାଙ୍କ ଆଗରେ ଥୋଇଲେ ।

ଗୀତା ଫଳାଭିଳାଷ ନ ରଖି କାମ କରିବାକୁ ଉପଦେଶ ଦେଲେହେଁ ଏହା ମଧ୍ୟ ସ୍ବୀକାର କରନ୍ତି ଯେ, ଆମେ ସର୍ବଦା କୌଣସି-ନା-କୌଣସି କର୍ମ କରୁଛୁ । ଗୀତା ଆଳସ୍ୟର ପରମ ବିରୋଧୀ । ସାଧାରଣ ଲୋକେ ଫଳର ଆକର୍ଷଣ ଯୋଗୁଁ ହିଁ କର୍ମପ୍ରତି ଆସକ୍ତ ରହିଥାନ୍ତି । ତାହାହିଁ ସେମାନଙ୍କର ଏକମାତ୍ର ପ୍ରେରଣା । ତାହା ହେଉ ପଛେ, ସେମାନେ ଯେ କର୍ମରତ, ଗୀତାଙ୍କ ମତରେ ତାହାହିଁ ଏକ ଲାଭ । କିନ୍ତୁ ସମାଜର ଯେଉଁ ଉପରସ୍ତରର ଲୋକମାନଙ୍କର ନିଜର କିଛି ଆବଶ୍ୟକତା ନାହିଁ, ସେମାନେ କାହିଁକି କାମ କରିବେ ? ଗୀତା କହନ୍ତି ଯେ, ସାଧାରଣ ଲୋକେ ଫଳାସକ୍ତି-ପ୍ରେରଣାରେ ଯେପରି କାମ କରୁଥାନ୍ତି, ଉପର ଶ୍ରେଣୀର ଲୋକେ ବା ସମାଜମୁଖ୍ୟମାନେ ମଧ୍ୟ ନିଜକୁ ଅନାସକ୍ତ ରଖି ଲୋକ ସଂଗ୍ରହପାଇଁ ହିଁ ସେହିପରି ଅହରହ କର୍ମଠ ରହିବା ଉଚିତ । ନିମ୍ନ ଶ୍ରେଣୀର ଲୋକେ ଫଳାସକ୍ତି ଯୋଗୁଁ ଯେମିତି ମନପ୍ରାଣ ଦେଇ କାମରେ ଲାଗିପଡ଼ିଥାନ୍ତି, ସମାଜର ପଣ୍ଡିତ ଲୋକେ, ଉପରସ୍ତରର ଲୋକେ ଲୋକ ସଂଗ୍ରହପାଇଁ, ଜନକଲ୍ୟାଣପାଇଁ, ଅଥଚ ଫଳାଭିଳାଷୀ ନ ହୋଇ, ଆସକ୍ତିଶୂନ୍ୟଭାବରେ ଠିକ୍ ସେହିପରି ମନପ୍ରାଣ ଦେଇ କୌଣସି-ନା-କୌଣସି କାମରେ ନିଜକୁ ନିୟୋଜିତ ରଖିବା ଉଚିତ ।

୨୬

ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍
ଯୋଜୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ । ୨୬ ।

କର୍ମସଙ୍ଗିନାଂ ଅଜ୍ଞାନାଂ (ସ୍ୱ ସ୍ୱ କର୍ମରେ ଆସକ୍ତ ଅଜ୍ଞ ଲୋକମାନଙ୍କର) ବୁଦ୍ଧିଭେଦଂ ନ ଜନୟେତ୍ (ଅକାରଣ ବିଚାର-ବିଭ୍ରାଟ ଘଟାଇବ ନାହିଁ) । [ବରଂ] ବିଦ୍ୱାନ୍ (ଜ୍ଞାନୀଲୋକ) ଯୁକ୍ତଃ (ଅବହିତ ହୋଇ) ସର୍ବକର୍ମାଣି (ସବୁ କାମ) ସମାଚରନ୍ (ଉତ୍ତମଭାବରେ ଅନୁଷ୍ଠିତ କରି) [ନିମ୍ନ ଶ୍ରେଣୀର ଲୋକଙ୍କୁ ସେହିପରିଭାବରେ କାମ କରିବାକୁ] ଯୋଜୟେତ୍ (ଲଗେଇବେ) ।

**ଅନୁବାଦ**

"ତେଣୁ ହେ ଅର୍ଜୁନ, ସ୍ୱ ସ୍ୱ କାମପ୍ରତି ଆସକ୍ତ ହୋଇ କର୍ମରତ ଥିବା ଅଜ୍ଞସାଧାରଣରେ ବିଚାର-ବିଭ୍ରାଟ ଘଟାଇ ସେମାନଙ୍କୁ କୌଣସିମତେ ନିଷ୍କର୍ମା ରହିବାକୁ ଉପଦେଶ ଦେବ ନାହିଁ । ସମାଜର ଜାଣିବା-ଶୁଣିବା ଲୋକେ ବରଂ ଅନାସକ୍ତ କର୍ମଠତାର ଆଦର୍ଶ ସେମାନଙ୍କୁ ଦେଖାଇଚାଲିବା ଉଚିତ ।"

## ବିଶେଷ ଭାଷ୍ୟ

ଏହି ଶ୍ଳୋକରେ ପୂର୍ବ ଶ୍ଳୋକମାନଙ୍କରେ ବର୍ଣ୍ଣିତ ସମାଜର ଇଣ୍ଟେଲେକ୍‌ଚୁଆଲ୍ ବା ବୁଦ୍ଧିଜୀବୀମାନଙ୍କର ବା ଉଚ୍ଚ ଶ୍ରେଣୀର ଲୋକମାନଙ୍କର ସମାଜର ନିମ୍ନ ସ୍ତରର ଲୋକମାନଙ୍କପ୍ରତି କର୍ତ୍ତବ୍ୟ ଆହୁରି ବିସ୍ତାରିତ କରି କୁହାଯାଉଛି । ପୂର୍ବ ଶ୍ଳୋକରେ କୁହାଗଲା ଯେ, ବିଦ୍ୱାନ୍ ଲୋକେ, ଶିକ୍ଷିତ ଲୋକେ, ଜାଣିବା-ଶୁଣିବା ଲୋକେ ଅସକ୍ତ ଭାବ ଧରି ମଧ୍ୟ ସେହିପରି କାମରେ ଲାଗିଥିବେ, ଯେପରି କାମରେ ଲାଗିଥାନ୍ତି ଅଜ୍ଞ ଲୋକେ ଆସକ୍ତ ଭାବ ଧରି । କେବଳ ତାହାହିଁ ହେବ ସମାଜର ଉଚ୍ଚ ଶ୍ରେଣୀର ଲୋକଙ୍କର ସମାଜପ୍ରତି ଯଥେଷ୍ଟ ଶିକ୍ଷା ଓ ଦାନ । ସେମାନେ ନିଜ ଆଦର୍ଶ ଦ୍ୱାରାହିଁ ସମାଜକୁ ଉଦ୍‌ବୁଦ୍ଧ କରିବେ, ଲୋକ-ସଂଗ୍ରହ କରିବେ । ସମାଜର ନିମ୍ନ ଶ୍ରେଣୀର ଲୋକମାନେ, ଯେଉଁମାନେ ନିଜ ନିଜ ଫଳାଭିଳାଷଜନିତ ଆସକ୍ତି ନେଇ କାମରେ ଲାଗିଛନ୍ତି, ସେମାନଙ୍କ ଭିତରେ ମୁକ୍ତିର ଉପାୟରୂପେ ନୈଷ୍କର୍ମ୍ୟ ଆଦର୍ଶ ବା ଅଫଳାଭିଳାଷରୂପକ ଆଦର୍ଶ ପ୍ରଚାର କରିବା ଏକାନ୍ତ ଅନାବଶ୍ୟକ । ଆଳସ୍ୟ ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି । କିନ୍ତୁ ଏହା ମନୁଷ୍ୟର ଅଭ୍ୟୁଦୟ ପକ୍ଷରେ ମାରାତ୍ମକ । ଫଳଲାଭର ପ୍ରଲୋଭନ, ସମୃଦ୍ଧି ପ୍ରଲୋଭନରେ ଲୋକ ବରଂ କର୍ମଠ ରହିବା ଉଚିତ ; କିନ୍ତୁ ଆଦର୍ଶ ଜୀବନର ଭ୍ରାନ୍ତ ଧାରଣାରେ ଆଳସ୍ୟମୟ ଜୀବନ ଗୀତା ଆଦୌ ଗ୍ରହଣୀୟ ନାହିଁ । ବିଦ୍ୱାନ୍ ଲୋକେ ବରଂ ଅନାସକ୍ତ କର୍ମର ଆଦର୍ଶ ନିଜର ଦୈନନ୍ଦିନ ଜୀବନରେ ଦେଖାଇ, ଅଜ୍ଞ ଲୋକଙ୍କୁ ଅନାସକ୍ତ କର୍ମଠତାର ମାଧୁର୍ଯ୍ୟ ଓ ମହିମା ଯୋଗାଇଦେବା ଉଚିତ । କିନ୍ତୁ ଫଳ-ପ୍ରତି ଆସକ୍ତି ଥାଉ ବା ନ ଥାଉ, ବଡ଼, ସାନ, ଉଚ୍ଚ ନୀଚ, ସମସ୍ତଙ୍କର ଅହରହ କର୍ମଠ ରହିବା ଉଚିତ । କୌଣସି ଆଦର୍ଶର ଛଳନାରେ ଆଳସ୍ୟ ଗ୍ରହଣୀୟ ନୁହେଁ । ଏଥିପାଇଁ ବାପୁଜୀ କହିଥିଲେ ଯେ, ଭୀରୁତା ଓ ହିଂସାଭିତରେ ମୁଁ ବରଂ ହିଂସାକୁ ଗ୍ରହଣ କରିବି ।

୨୭

ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ
ଅହଂକାର-ବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ । ୨୭ ।

ପ୍ରକୃତେଃ ଗୁଣୈଃ (ପ୍ରକୃତିର ଗୁଣମାନଙ୍କ ଯୋଗୁଁହିଁ) [ଲୋକମାନଙ୍କର] କର୍ମାଣି ସର୍ବଶଃ କ୍ରିୟମାଣାନି (ସବୁପ୍ରକାର କାମ ଆପେ ଆପେ ହୋଇଚାଲିଛି) । [କିନ୍ତୁ] ଅହଂକାର-ବିମୂଢ଼ାତ୍ମା (ଅହଂ ରୂପକ ଅଜ୍ଞତାରେ ବିମୂଢ଼ ମନୁଷ୍ୟ) ଅହଂ କର୍ତ୍ତା (ମୁଁ ହିଁ କର୍ତ୍ତା) ଇତି ମନ୍ୟତେ (ଏହା ମନେକରେ) ।

## ଅନୁବାଦ

"ପୁଣି ହେ ଅର୍ଜୁନ, କର୍ମ ପ୍ରକୃତରେ କିଏ କରେ, ତାହା ମଧ୍ୟ ଜାଣି ରଖିବା ଉଚିତ । ସତ୍ତ୍ୱ-ରଜଃ-ତମଃ-ଗୁଣମୟୀ ପ୍ରକୃତିହିଁ ବିବିଧ କର୍ମ କରିଚାଲିଥାଏ । ଆତ୍ମା ବା ପୁରୁଷ କର୍ମହୀନ । ଅଜ୍ଞ ଲୋକ ବାହାରର ପ୍ରକୃତି ଓ ଭିତରର ପୁରୁଷକୁ ଯୋଡ଼ିନେଇ ବିମୂଢ଼ ବୁଦ୍ଧିରେହିଁ 'ମୁଁ କରୁଛି' 'ମୁଁ କରୁଛି' ହୋଇଥାନ୍ତି ।"

## ବିଶେଷ ଭାଷ୍ୟ

କର୍ମରେ ଅନାସକ୍ତ ଭାବ ଅନୁପ୍ରବିଷ୍ଟ କରିବାପାଇଁ ଗୀତା ପୁଣି ଏହି ଶ୍ଲୋକରେ ସାଂଖ୍ୟ-ଦର୍ଶନର ଦେହାତ୍ମଭେଦକୁ ଚାଲିଆସିଲେ—ସେହି ଦେହାତ୍ମଭେଦ, ଯାହାଦ୍ୱାରା ଶ୍ରୀକୃଷ୍ଣ ପ୍ରଥମେ ଅର୍ଜୁନଙ୍କୁ "କିଏ ପ୍ରକୃତରେ ମରେ ?" "ଦେହଟା ନା ଆତ୍ମା ପ୍ରକୃତ ମନୁଷ୍ୟ ?" ଇତ୍ୟାଦି ବୁଝାଇଦେଇଥିଲେ ଦ୍ୱିତୀୟ ଅଧ୍ୟାୟରେ ।

ବର୍ତ୍ତମାନ ସେହିପରି ପ୍ରଶ୍ନ ହେଲା "କିଏ ପ୍ରକୃତରେ କାମ କରେ ?"

ସାଂଖ୍ୟ ଦର୍ଶନ ଅନୁସାରେ 'ପୁରୁଷ'ଠାରୁ ଚେତନା ସଂଗ୍ରହ କରି କେବଳ 'ପ୍ରକୃତି'ହିଁ ଜୀବନଲୀଳା ଭୋଗ କରିଚାଲିଛି । ସେହି ନାରୀ, ସେହି ପୁରୁଷ, ସେହି କବି, ସେହି ଗାୟକ, ସେହି ଶାସକ, ସେହି ଶାସିତ—ଏହିପରି ନାନାଭାବରେ ପ୍ରକୃତି ଜୀବନ-ନାଟକକୁ ଅଭିନୟ ଓ ଅଭିନୟ-ଜନିତ ଉପଭୋଗ ଉଭୟ କରିଚାଲିଛି । ଜଗତରେ ଭଙ୍ଗା ଚାଲିଛି, ଗଢ଼ା ଚାଲିଛି । ଜାଣିବାକୁ ହେବ ଯେ, ଏସବୁ ପ୍ରକୃତିହିଁ କରିଚାଲିଛି । ମନୁଷ୍ୟର ଇଚ୍ଛା-ଅନିଚ୍ଛା ମଧ୍ୟ ଏଥିରେ ବେଶୀ କିଛି କାମ ଦିଏ ନା । ପ୍ରକୃତି-ତାଡ଼ିତ ହୋଇହିଁ ମନୁଷ୍ୟର ଇଚ୍ଛା-ଅନିଚ୍ଛା ବର୍ତ୍ତି ଗ୍ରହଣ କରିଥାଏ । ପ୍ରକୃତି ଯାହାଦ୍ୱାରା ଯାହା କରିବାକୁ ବସିଛି, ସେ ତାହା କରିଚାଲିଯିବ । ତେଣୁ "ମୁଁ କରୁଛି" "ମୁଁ ଏହା କଲି" ବୋଲି କହିବା କେବଳ ଅହଂକାର-ବିମୂଢ଼ତାହିଁ ପ୍ରକାଶ କରେ । କାରଣ 'ପ୍ରକୃତି'ହିଁ ପ୍ରକୃତରେ ସବୁ କରିଚାଲିଛି ।

୨୮

ତତ୍ତ୍ୱବିତ୍ତୁ ମହାବାହୋ ଗୁଣକର୍ମବିଭାଗୟୋଃ
ଗୁଣା ଗୁଣେଷୁ ବର୍ତ୍ତନ୍ତ ଇତି ମତ୍ୱା ନ ସଜ୍ଜତେ । ୨୮ ।

ତୁ (କିନ୍ତୁ) ମହାବାହୋ (ହେ ମହାବାହୁ ଅର୍ଜୁନ) ଗୁଣକର୍ମବିଭାଗୟୋଃ (ଗୁଣ ଓ କର୍ମର ବିଭାଗ ସଂପର୍କରେ) ତତ୍ତ୍ୱବିତ୍ (ଯଥାର୍ଥ ତତ୍ତ୍ୱଜ୍ଞ) ଗୁଣାଃ (ସତ୍ତ୍ୱ, ରଜଃ ତମଃ ଆଦି ଗୁଣ) ଗୁଣେଷୁ [ଉପରି] (ରୂପରସାଦି ଇନ୍ଦ୍ରିୟଭୋଗ୍ୟ

ବିଷୟମାନଙ୍କରେ ବା ବିଷୟମାନଙ୍କ ଆଡ଼କୁ) ବର୍ତ୍ତନ୍ତେ (ପ୍ରବୃତ୍ତ ହୋଇଥାନ୍ତି) ଇତି ମତ୍ୱା (ଏହା ଜାଣି) ନ ସଜ୍ଜତେ (ଆସକ୍ତ ହୋଇ କର୍ମ କରନ୍ତି ନାହିଁ ବା କର୍ତ୍ତୃତ୍ୱାଭିମାନ କରି ନ ଥାନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ଗୁଣ-କର୍ମର-ବିଭାଗ-ସଂପୃକ୍ତ-ତତ୍ତ୍ୱ ଜାଣିଥିବା ଲୋକେ ଆମଠାରେ ଥିବା ସତ୍ତ୍ୱ-ରଜଃ-ତମଃ ଆଦି ଗୁଣସବୁ, ବାହ୍ୟ ଜଗତରେ ଥିବା ସେହି ସେହି ଗୁଣମାନଙ୍କପ୍ରତି ସ୍ୱାଭାବିକଭାବରେ ଆକୃଷ୍ଟ ହୋଇଥାନ୍ତି ଜାଣି କର୍ମମାନଙ୍କ ପ୍ରତି ଅହଙ୍କାର ପୋଷଣ କରି ନ ଥାନ୍ତି ବା ଆସକ୍ତ ହୋଇ ନ ଥାନ୍ତି ।"

## ବିଶେଷ ଭାଷ୍ୟ

କେଉଁ ନଗରରେ ଚୋର ବା ଦୁଷ୍ଟଚରିତ୍ରା ସ୍ତ୍ରୀ ନ ଥାନ୍ତି ? ସେହି ନଗରରେ ଜନ୍ମ ହୋଇଥିବା ଓ ଦୀର୍ଘକାଳ ବାସ କରୁଥିବା କୌଣସି ସାଧୁ ଲୋକ ସଂପର୍କରେ ସଂପୂର୍ଣ୍ଣ ନିଶ୍ଚିହ୍ନ ନିରପରାଧ ରହିଥିବେ । କିନ୍ତୁ ବହୁ ଦୂରରୁ ମାତ୍ର ଗତକାଲି ଆସିଥିବା ଦୁଷ୍ଟଚରିତ୍ର ବ୍ୟକ୍ତି ସେ ନଗରସ୍ଥ ଚୋର ବା ଦୁଷ୍ଟଚରିତ୍ରା ସ୍ତ୍ରୀଜନଙ୍କ ସଂଧାନ ପାଇସାରିଥିବେ । ସେହିପରି, ସେ ନଗରର ଅବହେଳିତ ଗୁଣୀ ଲୋକକୁ ଦୂରାଗତ ଗୁଣୀ ଲୋକର ସମ୍ମାନ । ଆମର ସଖ୍ୟ ଓ ଆସକ୍ତି ଏକାନ୍ତରେ ଆମ ଦେହସ୍ଥ ପ୍ରକୃତିର ଗୁଣଉପରେ ନିର୍ଭର କରେ ଏବଂ ତାହା ସେହି ଗୁଣ-ସଂପନ୍ନ ବ୍ୟକ୍ତି ବା କ୍ଷେତ୍ରକୁ ବାହାରେ ସହଜରେ ଖୋଜି ପାଏ । ଏହା ଜଳସ୍ରୋତର ସାଗରସଂଗମ ପରି । ରବୀନ୍ଦ୍ରନାଥଙ୍କୁ ବନ୍ଧୁବର୍ଗ ସଂବର୍ଦ୍ଧନା ଦେବା ଅବସରରେ ଥରେ ସେ କହିଥିବାର ଶୁଣା ଅଛି ଯେ "ମୁଁ ଅଧିକାଂଶ କଣ କରିଛି ଯେ, ଏତେ ସଂବର୍ଦ୍ଧନା କରୁଛ ? ମୁଁ ଯାହା କରିଛି ତାହା କେବଳ ମୋର ନିଜର ସନ୍ତୋଷ-ବିଧାନପାଇଁହିଁ କରିଆସିଛି ।" ଅର୍ଥାତ୍ ରବୀନ୍ଦ୍ରନାଥ ନାମକ ଏକ ବ୍ୟକ୍ତିଠାରେ ଏକ କବି-ପ୍ରତିଭାହିଁ କାମ କରିଚାଲିଥିଲା । ସେହିପରି ବୀର, ନେତା, ଶିଳ୍ପପତି, କବି, ଔପନ୍ୟାସିକ ଇତ୍ୟାଦି । ବିବିଧ-କର୍ମାନନ୍ଦ-ପିପାସିନୀ ପ୍ରକୃତି ପୁରୁଷକୁ ଆଶ୍ରୟ କରି ନାନାଭାବରେ ବ୍ୟକ୍ତ କରିଚାଲିଛି—ଚୋରଠାରୁ ମହର୍ଷିପର୍ଯ୍ୟନ୍ତ ; ଏବଂ ଯାହା ଦେଇ ଯେଉଁ ଅଭିନୟ ସେ ଭୋଗିବାକୁ ଚାହେଁ, ତାର ପରିପୂରକ ଗୁଣାତ୍ମକ କ୍ଷେତ୍ର ମଧ୍ୟ ପ୍ରକୃତି ପ୍ରସ୍ତୁତ କରି ରଖିଥାଏ, ଅଭିନୟର ସ୍ୱାଦପାଇଁ । ଆମ ଅନ୍ତଃସ୍ଥ ସତ୍ତ୍ୱଃ-ରଜଃ-ତମଆଦି ଗୁଣ ଧାଇଁଥାନ୍ତି ବାହାରର ସତ୍ତ୍ୱ-ରଜଃ-ତମଃଆଦି ଗୁଣ ଆଡ଼କୁ । ଜଳସ୍ରୋତ ଧାଇଁଯାଏ ଜଳାଧାର ଆଡ଼କୁ । ତାହାହିଁ ସୃଷ୍ଟି କରେ କର୍ମ-ପ୍ରବାହ । ଏ ସକଳ କର୍ମାଭିନୟ କେବଳ

ଗୁଣାନ୍ୱିତା ପ୍ରକୃତି ଯୋଗୁଁ ବୋଲି ଅବବୋଧ କରି, ପଣ୍ଡିତ ଲୋକେ ନିଜ ନିଜର କର୍ମପ୍ରତି ଅହଙ୍କାର ଅନୁଭବ କରନ୍ତି ନାହିଁ ବା ସେସବୁପ୍ରତି ଆସକ୍ତ ହୁଅନ୍ତି ନାହିଁ ।

୨୯

ପ୍ରକୃତେର୍ଗୁଣସଂମୂଢ଼ାଃ ସଜ୍ଜନ୍ତେ ଗୁଣକର୍ମସୁ
ତାନକୃତ୍ସ୍ନବିଦୋ ମନ୍ଦାନ୍ କୃତ୍ସ୍ନବିନ୍ନ ବିଚାଳୟେତ୍ । ୨୯ ।

ପ୍ରକୃତେଃ ଗୁଣସଂମୂଢ଼ାଃ (ପ୍ରକୃତିର ନିଜର ତ୍ରିଗୁଣାତ୍ମକ ସ୍ୱାଭାବିକ କ୍ରିୟାସବୁରେ ଭୁଲିଯାଇ ମୂଢ଼ ବା ଅଜ୍ଞ ଲୋକେ) ଗୁଣକର୍ମସୁ ସଜ୍ଜନ୍ତେ (ସେସବୁକୁ ନିଜର ଗୁଣ ଓ କର୍ମ ବୋଲି ସେସବୁପ୍ରତି ଆସକ୍ତ ହୋଇଥାନ୍ତି ) । [କିନ୍ତୁ] କୃତ୍ସ୍ନବିଦ୍ (ପରିପୂର୍ଣ୍ଣ ସୃଷ୍ଟିରହସ୍ୟକୁ ଜାଣୁଥିବା ଜ୍ଞାନୀ ବ୍ୟକ୍ତି) ତାନ୍ ଅକୃତ୍ସ୍ନବିଦଃ ମନ୍ଦାନ୍ (ସେହି ଅଳ୍ପଜ୍ଞ ବ୍ୟକ୍ତିମାନଙ୍କୁ) ନ ବିଚାଳୟେତ୍ ( ବିଭ୍ରମ-ବିଭ୍ରାଟରେ ପକାଇ କର୍ମଚ୍ୟୁତ କରାଇବେ ନାହିଁ ) ।

## ଅନୁବାଦ

"ହେ ଅର୍ଜୁନ, ତେଣୁ ମନେ ରଖ ଯେ, ପ୍ରକୃତିଜାତ ଏହି ଗୁଣ ଓ କର୍ମର ତତ୍ତ୍ୱ ଯେଉଁମାନେ ଜାଣି ନାହାନ୍ତି, ସେହିମାନେହିଁ ନିଜର ଗୁଣ ଓ କର୍ମପ୍ରତି ଆସକ୍ତ ହୋଇଥାନ୍ତି । କିନ୍ତୁ ପୂର୍ଣ୍ଣଜ୍ଞାନ ଲାଭ କରିଥିବା ବ୍ୟକ୍ତିମାନେ ସେହି ଅଜ୍ଞ ଜନମାନଙ୍କର ବୁଦ୍ଧି-ବିଭ୍ରାଟ ଘଟାଇ ସେମାନଙ୍କର ସେହି ଆସକ୍ତିପୂର୍ଣ୍ଣ କର୍ମଶୀଳତାରୁ ମଧ୍ୟ ସେମାନଙ୍କୁ ଦୂରୀଭୂତ କରିବା ଉଚିତ ନୁହେଁ ।"

## ବିଶେଷ ଭାଷ୍ୟ

ତିନୋଟି ଶ୍ଳୋକ ପୂର୍ବରୁ, ୨୬ଶ ଶ୍ଳୋକରେ ଯେଉଁ କଥାଟି ଗୀତା ଆମକୁ ଅର୍ଥାତ୍ ପଢ଼ିବା-ଜାଣିବା ଲୋକଙ୍କୁ ସାବଧାନୀ ବାଣୀରୂପେ ଶୁଣାଇଦେଇଥିଲେ, (ନ ବୁଦ୍ଧିଭେଦଂ ଜନୟେତ୍ ଅଜ୍ଞାନାଂ କର୍ମସଙ୍ଗିନାଂ) ସେହି ସାବଧାନୀ ବାଣୀହିଁ ଏ ପର୍ଯ୍ୟନ୍ତ ବିସ୍ତାରିତ ହୋଇଆସିଲା ।

ଗୀତା ବ୍ୟକ୍ତିଗତ ଓ ସାମାଜିକ ଉଭୟ ଜୀବନ-ଦର୍ଶନର ମହାନ୍ ଗ୍ରନ୍ଥ । ବିଶେଷତଃ ଏହି ଅଧ୍ୟାୟଟି, ଯେଉଁଥିରେ ଆମେ 'ଯଜ୍ଞ-ଚକ୍ର-ଦର୍ଶନ' ଓ 'ଲୋକ-ସଂଗ୍ରହ' ପ୍ରଭୃତି ନୂତନ ଓ ବୈପ୍ଲବିକ ଭାବ-କଳ୍ପ ପାଇଲୁଁ ସେଥିରେ ଗୀତାଙ୍କଠାରୁ ଆମେ ଯେ ଏକ ପରିପୂର୍ଣ୍ଣ, ସାମଗ୍ରିକ ଦୃଷ୍ଟିକୋଣ ସମାଜ ପରିଚାଳନାପାଇଁ ପାଉଛୁଁ, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

କଥା ଏହି ଯେ, ଏହି ଯଜ୍ଞ-ଚକ୍ର, ଲୋକ-ସଂଗ୍ରହ, ଦେହାତ୍ମଭେଦ ଏବଂ ପ୍ରକୃତିର ଏ ସଂସାରରେ ତ୍ରିଗୁଣାତ୍ମିକା କର୍ମକାରିତା ଇତ୍ୟାଦି କଥା ସମାଜର କେତେ ଜଣ ବୁଝିବେ ? ଯେକୌଣସି ସମାଜରେ ପ୍ରକୃତ ବୁଝିବାସୁଝିବା ଲୋକଙ୍କ ସଂଖ୍ୟା ସବୁବେଳେ କମ୍ । ସେହି ମୁଷ୍ଟିମେୟ ଜ୍ଞାନୀ ଲୋକଙ୍କର ଏହି କର୍ମଦର୍ଶନ ସଂପର୍କରେ ନିଜପ୍ରତି ଓ ସମାଜର ଅଗଣିତ ଅଳ୍ପବୁଦ୍ଧି ଅପାଠୁଆ ଲୋକଙ୍କପ୍ରତି ଦାୟିତ୍ୱ କଣ ?

ଗୀତା ଏ କ୍ଷେତ୍ରରେ ଆମକୁ ଏକ ଗୁରୁତ୍ୱପୂର୍ଣ୍ଣ ଉପଦେଶ ଦେଉଛନ୍ତି । ସେ କହୁଛନ୍ତି—ସାବଧାନ, କର୍ମକୁ 'ବନ୍ଧନ'ର କାରଣ ବୋଲି ସମାଜର ନିମ୍ନସ୍ତରର ଲୋକଙ୍କ ଭିତରେ ପ୍ରଚାର କରି ସେମାନଙ୍କ ମଧ୍ୟରେ ବୁଦ୍ଧିର-ବିଭ୍ରାଟ ସୃଷ୍ଟି କରାଅ ନାହିଁ । ସେମାନେ କିଛି ନ ବୁଝି କାମ ଛାଡ଼ି ବସିଯିବେ । ଫଳରେ, ସେମାନେ ନା ପାଇବେ ଜ୍ଞାନ, ନା ପାଇବେ କର୍ମ । ବରଂ ଉପରିସ୍ତରର ଲୋକେ ଲୋକ-ସଂଗ୍ରହ ଉଦ୍ଦେଶ୍ୟରେହିଁ ଅନାସକ୍ତ, ନିରହଂକାରଭାବରେ ଅଥଚ ମନପ୍ରାଣ ଦେଇ କିପରି ନିଃସ୍ୱାର୍ଥଭାବରେ ମଧ୍ୟ ଅହରହ କର୍ମବ୍ୟସ୍ତ ରହାଯାଇପାରିବ, ତାର ଆଦର୍ଶହିଁ ଦେଖାଇଚାଲନ୍ତୁ । ସେଇଥିରୁହିଁ ସମାଜ ଉଚିତ ଶିକ୍ଷା ପାଇବ ଏବଂ ପରିପୂର୍ଣ୍ଣତା ଆସିବ ମଧ୍ୟ ସେମାନଙ୍କ ନିଜ ଜୀବନରେ ।

ପାଠକମାନଙ୍କୁ ଏଠାରେ ପୁଣି ସ୍ମରଣ କରାଇଦେଉଛୁ ଯେ, ଖୁବ୍ ସମ୍ଭବ ଗୀତାର ଏହି ରଚନାବେଳା, ବୌଦ୍ଧଧର୍ମ ପ୍ରଭାବରେ ଏ ଦେଶରେ ଲକ୍ଷଲକ୍ଷ ଲୋକ ସ୍ୱ ସ୍ୱ ପାରିବାରିକ କର୍ମ ଛାଡ଼ିଦେଇ ଯେପରି ସଂଘାରାମମାନଙ୍କରେ ହଳଦିଆ ଲୁଗା ପିନ୍ଧି ଅଳସୁଆ ଜୀବନ କଟେଇବା ଆରମ୍ଭ କରିଥିଲେ, ତାହାର ପ୍ରତି ଲକ୍ଷ୍ୟକରି ଲେଖା । ସାଂଖ୍ୟ-ପ୍ରଭାବରେ ତା ଆଗରୁ ମଧ୍ୟ କେତେକେ କେବଳ କର୍ମତ୍ୟାଗ ଦେଇହିଁ ପୁରୁଷକୁ ପ୍ରକୃତି ପାଶରୁ ମୁକ୍ତ କରାଯାଇପାରିବ ଭାବି, କର୍ମହୀନତାର ଆଶ୍ରୟ ନେଇଥିଲେ । ଭଗବଦ୍‌ଗୀତା ଧର୍ମ-ସାଧନା ନାମରେ ଏହି 'କର୍ମତ୍ୟାଗ'ର ଏକ ଦୃଢ଼ ଓ ଜୀବନ୍ତ ପ୍ରତିବାଦ । ଗୀତାର ଏକାନ୍ତ ଯୌକ୍ତିକ ଉପଦେଶ ହେଲା— କର୍ମହୀନତା ନୁହେଁ, ବରଂ ବୁଦ୍ଧିଯୁକ୍ତ, ଅନାସକ୍ତ ଓ ନିରହଙ୍କାର କର୍ମ ; ଏବଂ ସେହି ତତ୍ତ୍ୱର ଅନୁପୂରକଭାବରେ ଗୀତା କହନ୍ତି—ଯିଏ ଏହା ନିଜ ଜୀବନରେ ଦେଖାଇପାରୁନି, ସେ ଅନ୍ୟକୁ ଉପଦେଶ ଦେଇ ବୁଦ୍ଧିର-ବିଭ୍ରାଟ ଓ ସମାଜ-ବିଭ୍ରାଟ ସୃଷ୍ଟି କରି କେବଳ ଅକର୍ମା କରିବା ଏକାନ୍ତ ଅନ୍ୟାୟ, ଅନାବଶ୍ୟକ ଓ ମାରାତ୍ମକ ।

ଗୀତାରେ ଆମେ ଏହି ଶ୍ଳୋକ ପରି ଅନେକ ସ୍ଥାନରେ 'କୃତ୍ସ୍ନ' ଶବ୍ଦଟି ପାଇବା । ଚମତ୍କାର ଏକ ଶବ୍ଦ, ଯାହାର ଅର୍ଥ —ସମଗ୍ର, ବ୍ୟାପକ । କୃତ୍ସ୍ନବିଦ୍ ଯେ ଗୋଟିଏ ବିଷୟର ସବୁପାଖଟା ବୁଝିଛନ୍ତି । ଏଠି କୃତ୍ସ୍ନବିଦ୍ ସେହି, ଯିଏ ଉତ୍ତମରୂପେ ଜାଣନ୍ତି, ଜୀବ ବା ମନୁଷ୍ୟ ପ୍ରତ୍ୟେକେ କାହାଦ୍ୱାରା ପ୍ରେରିତ ହୋଇ କାମ କରେ । "ମୁଁ କରେ ବା କରିଛି" ଏପରି ବାକ୍ୟର ମର୍ମ କଣ ? ଆମର ତଥା-କଥିତ ଅହମିକାସବୁ ଭିତରେ ତ୍ରିଗୁଣାତ୍ମିକା ପ୍ରକୃତିର ଭୂମିକା କେତେ ଏବଂ 'ମୁଁ'ର ଭୂମିକା କେତେ, ଇତ୍ୟାଦି ଇତ୍ୟାଦି ।

୩୦

ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟାଧ୍ୟାତ୍ମଚେତସା
ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ । ୩୦ ।

ମୟି (ମୋଠାରେ, ଈଶ୍ୱରଙ୍କଠାରେ) ସର୍ବାଣି କର୍ମାଣି (ସବୁ କାମ) ସଂନ୍ୟସ୍ୟ (ଅର୍ପଣ କରି) ଅଧ୍ୟାତ୍ମଚେତସା (ମନକୁ ଆତ୍ମସ୍ଥ କରି) ନିରାଶୀଃ (ଫଳାଶାରହିତ) ନିର୍ମମଃ (ଆସକ୍ତିଶୂନ୍ୟ) ବିଗତଜ୍ୱରଃ (ଅକାରଣ ଆଶଙ୍କାଶୂନ୍ୟ) ଭୂତ୍ୱା (ହୋଇ) ଯୁଧ୍ୟସ୍ୱ (ଯୁଦ୍ଧ କରିଚାଲ, କର୍ତ୍ତବ୍ୟ କରିଚାଲ । )

**ଅନୁବାଦ**

"ହେ ଅର୍ଜୁନ, 'ସରଳ' ଉପାୟ ଦେଉଛି, ପ୍ରକୃତିର ଅଧୀଶ୍ୱର ମୋଠାରେ (ଈଶ୍ୱରଙ୍କଠାରେ) ସବୁ କାମ ପ୍ରତ୍ୟର୍ପଣ କରିଦେଇ, ସମସ୍ତ ଚିନ୍ତା ଅନ୍ତରସ୍ଥ ଆତ୍ମାରେ ନ୍ୟସ୍ତ କରି, ମନକୁ ଫଳାଶା ଓ ଆସକ୍ତିରୁ ମୁକ୍ତ ରଖି ଏବଂ ବିଫଳତାରେ ଆଶଙ୍କାଶୂନ୍ୟ ହୋଇ କର୍ତ୍ତବ୍ୟ କର୍ମ ଭାବରେ ତୁମେ ଯୁଦ୍ଧ କର ।"

**ବିଶେଷ ଭାଷ୍ୟ**

ଆମେ ବର୍ତ୍ତମାନ ଜାଣିଲୁଣି ଯେ, ଗୀତା ଏକାନ୍ତଭାବରେ ଅନାସକ୍ତ-କର୍ମ-ଦର୍ଶନ । ସାଂଖ୍ୟ, ଯୋଗ, ବେଦାନ୍ତ ଆଦି ନାନା ଦୃଷ୍ଟିକୋଣରୁ ଗୀତା ଭିନ୍ନ ଭିନ୍ନ ଅଧ୍ୟାୟରେ ତାହାହିଁ ବାରମ୍ବାର ବୁଝାଇଚାଲିଛନ୍ତି । ଗୌତମ ବୁଦ୍ଧ ନିଜେ ମହାନ୍ ବ୍ୟକ୍ତି ହେଲେହେଁ ତାଙ୍କ ବାଣୀର ଆପାତ-ଅପବୋଧଫଳରେ ସାମାଜିକ ବିଭ୍ରାଟ ଦେଖା ଦେଇଥିଲା, ଯେପରି ମଧ୍ୟ ଦେଖା ଦେଲା ଆମ ସମୟରେ ଗାନ୍ଧିଜୀଙ୍କ ବାଣୀର ପ୍ରତିକ୍ରିୟାସ୍ୱରୂପ । ଗୀତା ସେହି ସମ୍ଭାବିତ ବିଭ୍ରାଟରେ ବଳବାନ୍ ପ୍ରତିରୋଧ ଓ ପ୍ରତିବାଦ । ଗୀତା ସେପ୍ରକାର ସ୍କୁଲ ଛାଡ଼ିବା ବା ଘର ଛାଡ଼ିବା ବା କର୍ତ୍ତବ୍ୟ-କାମ-ଛାଡ଼ି ପଳେଇବା ଇତ୍ୟାଦି ବିରୁଦ୍ଧରେ ଏକ ପ୍ରଚଣ୍ଡ

ଏବଂ ସଫଳ ପ୍ରତିବାଦ । ଗୀତା ଜୋର୍‌ରେ କହିଯାଇଛନ୍ତି ଯେ, ଘର ଛାଡ଼ିବା ବା କାମ ଛାଡ଼ିବାର (ସନ୍ନ୍ୟାସ) କୌଣସି ଆବଶ୍ୟକତା ବା ଯୁକ୍ତିଯୁକ୍ତତା ନାହିଁ । ଘରେ ରହି, ନିଜ କାମ କରିହିଁ ଆଧ୍ୟାତ୍ମିକ ଜ୍ଞାନ ଲାଭ କରିପାରିବ । କିନ୍ତୁ କର୍ମ ହେବା ଉଚିତ ଅନାସକ୍ତ ଓ ନିରହଂକାର ।

କିନ୍ତୁ ଗୀତା ଏହା ମଧ୍ୟ ସ୍ପଷ୍ଟ ଜାଣିଥିଲେ ଯେ, ଘର ଛାଡ଼ିବା, କାମ ଛାଡ଼ିବା ଯେତେ ସହଜ, ଅନାସକ୍ତ ଓ ନିରହଙ୍କାର ରହି କାମ କରିବା ସେତେ ସହଜ ଆଦୌ ନୁହେଁ । ସେଇଥିପାଇଁହିଁ ଗୀତା ଏତେ ବୁଝାବୁଝିର ଆୟୋଜନ କରିଯାଇଛନ୍ତି । ଏହା ପୁଣି ଏକ ନୂତନ ତତ୍ତ୍ୱ । ନୂତନ ତତ୍ତ୍ୱ ନାନା ଭାବରେ ବୁଝେଇବା ଦରକାର କରିବହିଁ କରିବ । ପୁନରାବୃତ୍ତି ଏଠି ଅବଶ୍ୟମ୍ଭାବୀ । ଗୀତାରେ ତାହାହିଁ ହୋଇଛି ।

ତେଣୁ ଗୀତା ଅନାସକ୍ତ ଓ ନିରହଙ୍କାର କର୍ମ କରିବାର ଏକ ସହଜ ପନ୍ଥା ଏହି ଶ୍ଳୋକରେ ଉପସ୍ଥାପିତ କଲେ । ତାହା ଏହି:—"ଅନ୍ୟ କିଛି କରିବା ସମ୍ଭବ ନ ହେଲେ, ଅନ୍ତତଃ ଏତିକି କରିପାର । କାମ କରିଯାଅ ଏବଂ ସେସବୁ କାମ (ଅର୍ଥାତ୍ ସେସବୁର ଫଳାଫଳ) ମୋତେ (ଭଗବାନଙ୍କୁ) ସମର୍ପଣ କରିଦିଅ, ମୋ ଉପରେ ସେ ଦାୟିତ୍ୱ ସଂପୂର୍ଣ୍ଣ ଛାଡ଼ିଦିଅ ।"

ସାଧାରଣ ଲୋକପାଇଁ ଏହିପ୍ରକାର ବ୍ୟକ୍ତିଗତ ଈଶ୍ୱର-ନିର୍ଭରତା ଯେ ସହଜତର ଆଧ୍ୟାତ୍ମିକ ପନ୍ଥା, ଏଥିରେ କୌଣସି ସନ୍ଦେହ ନାହିଁ । ଏ କ୍ଷେତ୍ରରେ ଗୀତାଙ୍କର ଏ ଶ୍ଳୋକର ଏହି ଈଶ୍ୱର-ସମର୍ପଣ-ରୂପକ ଭାବ-କଳ୍ପଟି ତେଣୁ ଏକାନ୍ତ ଯୌକ୍ତିକ ଓ ସ୍ୱାଭାବିକ । ଏ ପନ୍ଥା ମଧ୍ୟ ସର୍ବଧର୍ମଦ୍ୱାରା ପରିଗୃହୀତ ।

ପତଞ୍ଜଳିଙ୍କ ଯୋଗ-ଶାସ୍ତ୍ର ଯେ ଏକପ୍ରକାର ନିରୀଶ୍ୱର, ତାହା ଆଗରୁ କୁହାଯାଇଛି, ଏବଂ କୁହା ମଧ୍ୟ ଯାଇଛି, ଯୋଗର ଶେଷ ଲକ୍ଷ୍ୟ ଯେ ସମାଧି ତାହା ପାଇବା ଦିଗରେ ସହାୟତା ଆଣିବାପାଇଁ ପତଞ୍ଜଳି ମଧ୍ୟ "ଈଶ୍ୱର-ପ୍ରଣିଧାନ" ସୁପାରିଶ କରିଛନ୍ତି । କେଉଁ ସାଧକ ତାହା କରିପାରେ, କାହାର ବା ତାହା ଆଦୌ ଦରକାର ନ ହୋଇପାରେ । ଏଠାରେ ମଧ୍ୟ ସେୟା । ଗୀତା ନାନା ପନ୍ଥାଭିତରେ ଏହାକୁ ଏକ ପନ୍ଥା ବୋଲି ଥୋଇଛନ୍ତି । ପାଠକ ଯେଉଁ ପନ୍ଥା ଧରିପାରନ୍ତି । ପରବର୍ତ୍ତୀ ଶ୍ଳୋକରେ ସେହି ବ୍ୟକ୍ତିଗତ ସାଧନାର ସ୍ୱାତନ୍ତ୍ର୍ୟ ବିଶେଷ ଭାବରେ ପରିସ୍ଫୁଟ ।

### ୩୧-୩୨

ଯେ ମେ ମତମିଦଂ ନିତ୍ୟମନୁତିଷ୍ଠନ୍ତି ମାନବାଃ
ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ମୁଚ୍ୟନ୍ତେ ତେଽପି କର୍ମଭିଃ । ୩୧ ।
ଯେ ତ୍ୱେତଦଭ୍ୟସୂୟନ୍ତୋ ନାନୁତିଷ୍ଠନ୍ତି ମେ ମତମ୍
ସର୍ବଜ୍ଞାନବିମୂଢ଼ାଂସ୍ତାନ୍ ବିଦ୍ଧି ନଷ୍ଟା ନଚେତସଃ । ୩୨ ।

ଯେ ମାନବାଃ (ଯେଉଁ ଲୋକେ) ଶ୍ରଦ୍ଧାବନ୍ତଃ (ଶ୍ରଦ୍ଧାବାନ୍) ଅନସୂୟନ୍ତଃ (ଅସୂୟାଶୂନ୍ୟ, ଅଦୋଷଦର୍ଶୀ) [ହୋଇ] ମେ (ଆମ୍ଭର) ଇଦଂ ମତଂ (ଏହି ମତକୁ) ନିତ୍ୟଂ (ସର୍ବଦା) ଅନୁତିଷ୍ଠନ୍ତି (ଅନୁସରଣ କରିଚାଲନ୍ତି) ତେ ଅପି (ସେମାନେ ମଧ୍ୟ) କର୍ମଭିଃ ମୁଚ୍ୟନ୍ତେ (କର୍ମବନ୍ଧନରୁ ମୁକ୍ତ ହୁଅନ୍ତି) । ଯେ ତୁ (କିନ୍ତୁ ଯେଉଁମାନେ) ମେ (ଆମ୍ଭର) ଏତତ୍ ମତଂ (ଏହି ମତକୁ) ଅଭ୍ୟସୂୟନ୍ତଃ (ଅସୂୟାଯୁକ୍ତ ହୋଇ, ଏହାର ଦୋଷ ଦେଖାଇ) ନ ଅନୁତିଷ୍ଠନ୍ତି (ଅନୁସରଣ ନ କରନ୍ତି) ତାନ୍ (ସେମାନଙ୍କୁ) ସର୍ବଜ୍ଞାନବିମୂଢ଼ାନ୍ (ସକଳ ଜ୍ଞାନରେ ବିଭ୍ରାନ୍ତ) ଅଚେତସଃ (ବିବେକଶୂନ୍ୟ) ନଷ୍ଟାନ୍ (ପଥଭ୍ରଷ୍ଟ) ବିଦ୍ଧି (ବୋଲି ଜାଣ) ।

## ଅନୁବାଦ

"ହେ ଅର୍ଜୁନ, ଯେଉଁ ଲୋକେ ଅଦୋଷଦର୍ଶୀ ଓ ଶ୍ରଦ୍ଧାବାନ୍ ହୋଇ ମୋର ଏହି (ଈଶ୍ୱରାର୍ପିତ ରୂପକ) ମତକୁ ସର୍ବଦା ଅନୁସରଣ କରନ୍ତି, ସେମାନେ ମଧ୍ୟ କର୍ମବନ୍ଧନରୁ ମୁକ୍ତ ହୋଇଥାନ୍ତି । କିନ୍ତୁ ଯେଉଁମାନେ ଅସୂୟାଯୁକ୍ତ ହୋଇ ଏହାର ଦୋଷ ଦେଖାଇ ଏହାକୁ ଅନୁସରଣ ନ କରନ୍ତି, ବିମୂଢ଼ ଓ ବିବେକ-ଶୂନ୍ୟ ସେହିମାନେ ନଷ୍ଟ ହେଲେ ବୋଲି ଜାଣ ।

## ବିଶେଷ ଭାଷ୍ୟ

ଏଠାରେ 'ତେଽପି' (ସେମାନେ ମଧ୍ୟ) ଶବ୍ଦ ପ୍ରୟୋଗ ବିଶେଷ ତାତ୍ପର୍ଯ୍ୟ-ପୂର୍ଣ୍ଣ । "ସେମାନେ ମଧ୍ୟ କର୍ମବନ୍ଧନରୁ ମୁକ୍ତ ହୁଅନ୍ତି"—ସେମାନେ କିଏ ?

ସେମାନେ ହେଲେ ଠିକ୍ ପୂର୍ବ ଶ୍ଳୋକରେ ବର୍ଣ୍ଣିତ ଈଶ୍ୱର-ସମର୍ପିତ-କର୍ମା ଲୋକେ, ଯେଉଁମାନେ କି କୌଣସି ଦର୍ଶନ, ଉପନିଷଦ୍ ବା ଜ୍ଞାନତତ୍ତ୍ୱ ଜାଣନ୍ତିନି ଅଥଚ ନିଜପ୍ରତି କୌଣସି ଅହଂକାର ଆରୋପ ନ କରି ସବୁ କାମ, ସବୁ ଫଳା-ଫଳ ଈଶ୍ୱରଙ୍କଠାରେହିଁ ଅର୍ପଣ କରିଦେଇଥାନ୍ତି । ଗୀତା କହନ୍ତି, ଯଜ୍ଞ-ଚକ୍ର ବୁଝୁଥିବା, ଲୋକ ସଂଗ୍ରହ କରୁଥିବା ଉଚ୍ଚସ୍ତରର ଜ୍ଞାନୀମାନଙ୍କ ସହିତ ଏହି-ସରଳବିଶ୍ୱାସୀ ସାଧାରଣ ଲୋକଗୁଡ଼ିକ ମଧ୍ୟ ସେମାନଙ୍କର ସେହି ସରଳ

ନିଷ୍କପଟ ବିଶ୍ୱାସ ଯୋଗୁଁ ହିଁ କର୍ମର ସକଳ ବନ୍ଧନରୁ ମୁକ୍ତ ହୋଇଯାନ୍ତି । ଅଥଚ ସମାଜରେ ଅନେକେ ବାହାରିବେ, ଯେଉଁମାନେ ଏ ଯୁକ୍ତିକୁ କୁସଂସ୍କାର ବା ମନର ଦୁର୍ବଳତା ବୋଲି କହି ନିଜର ଚତୁରତା ଓ ବୁଦ୍ଧିମତ୍ତା ପ୍ରମାଣିତ କରିବାର ଅଦମିକାରେହିଁ ଏ ପଥକୁ ତୁଚ୍ଛତାଚ୍ଛଲ୍ୟ କରିବେ, ଥଟ୍ଟା କରିବେ । ଛତା ସୂର୍ଯ୍ୟଙ୍କୁ ଆଡ଼ୁଆଳ କରିଦେଇପାରେ, କିନ୍ତୁ ତାର ପ୍ରମାଣ ନୁହେଁ ଯେ ସୂର୍ଯ୍ୟ ନାହାନ୍ତି । ସେହିପରି ବୁଦ୍ଧିର ଦାମ୍ଭିକତା ପ୍ରମାଣିତ କରେ ନାହିଁ ଈଶ୍ୱରଙ୍କ ନାସ୍ତିତ୍ୱ ।

ସେହି ଶ୍ରେଣୀର ଦୋଷଦର୍ଶୀ (ଅଭ୍ୟସୂୟନ୍ତଃ) ଦାମ୍ଭିକମାନଙ୍କୁ ଗୀତା ଦ୍ୱିତୀୟ ଶ୍ଳୋକଟିରେ ମୋଟାମୋଟି ଅଜ୍ଞ, ଭ୍ରାନ୍ତ ଓ ସେହି ପରିମାଣରେ ନଷ୍ଟ ବୋଲି ବର୍ଣ୍ଣନା କରିଛନ୍ତି । ପରବର୍ତ୍ତୀ ଶ୍ଳୋକମାନଙ୍କରେ ଏହି ଈଶ୍ୱର-ସମର୍ପଣ ଆଧ୍ୟାତ୍ମ୍ୟଜୀବନପାଇଁ କିପରି ଆବଶ୍ୟକ, ତାହା ମଧ୍ୟ ଦେଖାଇଦେଇଛନ୍ତି । କିନ୍ତୁ ବିଚାରହୀନ, ଦୋଷଦର୍ଶୀ, ଅଶ୍ରଦ୍ଧ ଓ ନଷ୍ଟପଥ ଲୋକ ଏ ସଂସାରରେ କାହିଁକି ଦେଖାଯାନ୍ତି ? ଗୀତା ତାର ଉତ୍ତର ମଧ୍ୟ ଦେଉଛନ୍ତି ।

### ୩୩

ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ ପ୍ରକୃତେର୍ଜ୍ଞାନବାନପି
ପ୍ରକୃତିଂ ଯାନ୍ତି ଭୂତାନି ନିଗ୍ରହଃ କିଂ କରିଷ୍ୟତି । ୩୩ ।

ଜ୍ଞାନବାନପି (ଜ୍ଞାନବାନ୍ ଲୋକ ମଧ୍ୟ) ସ୍ୱସ୍ୟାଃ ପ୍ରକୃତେଃ (ନିଜ ପ୍ରକୃତିର) ସଦୃଶଂ (ଅନୁରୂପ) ଚେଷ୍ଟତେ (କାର୍ଯ୍ୟ କରନ୍ତି) । ଭୂତାନି (ପ୍ରାଣିଗଣ) ପ୍ରକୃତିଂ ଯାନ୍ତି (ପ୍ରକୃତିରହିଁ ଅନୁସରଣ କରିଥାନ୍ତି) । ନିଗ୍ରହଃ (ଇନ୍ଦ୍ରିୟସଂଯମ) [ସେ କ୍ଷେତ୍ରରେ] କିଂ କରିଷ୍ୟତି (କଣ କରିବ) ?

**ଅନୁବାଦ**

"ହେ ଅର୍ଜ୍ଜୁନ, ଜ୍ଞାନୀ ଲୋକ ମଧ୍ୟ ସ୍ୱ-ପ୍ରକୃତି ଅନୁଯାୟୀ କାମ କରିଥାଏ । ଲୋକ ପ୍ରକୃତିବଶ । ତାର ବିପରୀତରେ ଯିବା ସହଜ ନୁହେଁ ।"

**ବିଶେଷ ଭାଷ୍ୟ**

ଈଶ୍ୱର-ସମର୍ପଣକୁ ଯେଉଁମାନେ ପସନ୍ଦ କରନ୍ତି ନାହିଁ, ସେହିମାନଙ୍କୁ ଲକ୍ଷ୍ୟ କରି ଏହା କୁହାଗଲା ।

ଈଶ୍ୱର ବୋଲି କୌଣସି ବ୍ୟକ୍ତିତ୍ୱକୁ ଯେଉଁମାନେ ସ୍ୱୀକାର କରନ୍ତି ନାହିଁ ବା ଈଶ୍ୱର-ସମର୍ପଣ ମାନନ୍ତି ନାହିଁ, ସେମାନେ ନିଜକୁ 'ଜ୍ଞାନୀ' ମନେ

କରିବା ସ୍ୱାଭାବିକ। ଏମାନେ ନିଜ ବିଶୃଙ୍ଖଳବୁଦ୍ଧି ଓ ସ୍ୱ-ପ୍ରଚେଷ୍ଟାଉପରେ ବିଶ୍ୱାସ ରଖିଥାନ୍ତି। କିନ୍ତୁ ଏମାନଙ୍କ ଜୀବନରେ ଦେଖାଯାଏ ଯେ, ଏମାନେ ଏକ ଦିଗରେ ଜ୍ଞାନୀ ସତ, କିନ୍ତୁ ଅନ୍ୟ ଦିଗରେ ଏମାନଙ୍କର ସକଳ ଜ୍ଞାନ ସତ୍ତ୍ୱେ ଏମାନଙ୍କ ବ୍ୟକ୍ତିତ୍ୱରେ ପ୍ରକୃତିହିଁ ଅବାଧରେ ତାର ନିଜ ବିସ୍ତାର କରିଚାଲିଥାଏ। ନେତା, ମନ୍ତ୍ରୀ, ବଡ଼ ସାହେବ, ଅଧ୍ୟାପକ, ସଂପାଦକ, ବୁଦ୍ଧିମାନଙ୍କ—ଏମାନଙ୍କର ବାହାରେ ପ୍ରତିପତ୍ତିଶୀଳ ଏକ ଛବି, କିନ୍ତୁ ଭିତରେ ଆଉ ଏକ। ସେ ଛବି ହେଲା ସକଳ ସ୍ୱଭାବିକ ଦୁର୍ବଳତାର। ଅର୍ଥାତ୍ ପ୍ରକୃତି-ହାତରେ ସେମାନଙ୍କର ଦୈନନ୍ଦିନ ପରାଜୟ। ସେମାନେ ଏହି ଦୁର୍ବଳତାରୁ ରକ୍ଷା ପାଇବାପାଇଁ ଚେଷ୍ଟା ନ କରୁଥିବେ, ନୁହେଁ, କିନ୍ତୁ ଅସହାୟ। ଈଶ୍ୱର ନିର୍ଭରତା ହିଁ ଏଠି ସହାୟତା ଦିଅନ୍ତା। କିନ୍ତୁ ସେଥିରେ ସେ ବିଶ୍ୱାସ କରନ୍ତି ନାହିଁ, ସେମାନେ ବିଶ୍ୱାସ କରନ୍ତି ଧରାଧରି, ଚରଣଚାଟିଆ-ନୀତି, କୂଟ-କାପଟ୍ୟ, ଏବଂ ଧନ ଓ ପରିବାରିକ ଗୋଷ୍ଠୀଗତ ଶକ୍ତିଉପରେ। ପାର୍ଥିବ ପ୍ରେୟପ୍ରତି ଆସକ୍ତି ଓ ଅପ୍ରିୟ ଶ୍ରେୟ ପ୍ରତି ବିଦ୍ୱେଷ ଏମାନଙ୍କର ସ୍ୱଭାବିକ ଦୁର୍ବଳତା। ଗୀତା ପରବର୍ତ୍ତୀ ଶ୍ଳୋକରେ ତାହାର ବର୍ଣ୍ଣନା କରୁଛନ୍ତି।

୩୪

ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ
ତୟୋର୍ନବଶମାଗଚ୍ଛେତ୍ ତୌ ହ୍ୟସ୍ୟ ପରିପନ୍ଥିନୌ। ୩୪।

ଇନ୍ଦ୍ରିୟସ୍ୟ ଇନ୍ଦ୍ରିୟସ୍ୟ ଅର୍ଥେ (ପ୍ରତ୍ୟେକ ଇନ୍ଦ୍ରିୟର ସ୍ୱ ସ୍ୱ ବିଷୟରେ) ରାଗଦ୍ୱେଷୌ (ଆଗ୍ରହ ବା ଅନାଗ୍ରହ) ବ୍ୟବସ୍ଥିତୌ (ପ୍ରକୃତି ବ୍ୟବସ୍ଥା କରି ରଖିଛି, ଅର୍ଥାତ୍ ତାହା ଅବଶ୍ୟମ୍ଭାବୀ)। [ଲୋକ] ତୟୋଃ (ସେ ଦୁଇଟିଯାକରୁ, ରାଗ ବା ଦ୍ୱେଷ କେଉଁଟାରେ ହେଲେ) ବଶଂ ନ ଆଗଚ୍ଛେତ୍ (ବଶୀଭୂତ ହେବା ଉଚିତ ନୁହେଁ।) ହି (ଯେହେତୁ) ତୌ (ସେ ଦୁହେଁ, ରାଗ ଓ ଦ୍ୱେଷ ଉଭୟ) ଅସ୍ୟ (ଏହି ଜୀବ ବା ଲୋକର) ପରିପନ୍ଥିନୌ (ପରମ ଶତ୍ରୁ)।

**ଅନୁବାଦ**

"ହେ ଅର୍ଜୁନ, ପ୍ରତ୍ୟେକ ଲୋକଠାରେ ତାର ଇନ୍ଦ୍ରିୟମାନଙ୍କର ସ୍ୱ ସ୍ୱ ବିଷୟମାନଙ୍କପ୍ରତି ଆସକ୍ତି ଓ ବିରକ୍ତି ସେମାନଙ୍କର ସହଜାତ। ଆଦର୍ଶ କଥା ହେଉଛି ଆସକ୍ତି ଓ ବିରାଗ, କୌଣସିଟାର ମନୁଷ୍ୟ ବଶୀଭୂତ ହୋଇଯିବା ଉଚିତ ନୁହେଁ। ମନୁଷ୍ୟର ଆଧ୍ୟାତ୍ମିକ ଉନ୍ନୟନ ଯାହାରେ ରାଗ ଓ ଦ୍ୱେଷ ଉଭୟଙ୍କୁ ଶତ୍ରୁ ବୋଲି ଜାଣିବ।"

**ବିଶେଷ ଦ୍ରଷ୍ଟବ୍ୟ**

ପାଠକେ, ତୃତୀୟ ଅଧ୍ୟାୟ ଶେଷ ହୋଇଆସୁଛି । ତେଣୁ ଗୀତାର ଦକ୍ଷ ଓ ଚତୁର ବକ୍ତା ସମଗ୍ର ଅଧ୍ୟାୟର ମୁଖ୍ୟ ବକ୍ତବ୍ୟ ବୁଝାଇସାରିଲାପରେ ଶ୍ରୋତାର ମୂଳ ସନ୍ଦେହକୁ ପୁଣି ଫେରିଯାଉଛନ୍ତି । ଗୀତାର ଆରମ୍ଭ ହୋଇଛି, କ୍ଷତ୍ରିୟ ହୋଇ ମଧ୍ୟ ଅର୍ଜୁନ "ନିଜେ ମରିବି ପଛେ, ଭିକ ମାଗି ବଞ୍ଚିବି ପଛେ, ଏପ୍ରକାର ଯୁଦ୍ଧ କରିବି ନାହିଁ" ଏପରି ଅନାର୍ଯ୍ୟଜନୋଚିତ କଥା କହିବାରେ ।

ଶ୍ରୀକୃଷ୍ଣ, ଦେହାତ୍ମଭେଦ, ଯଜ୍ଞ-ଚକ୍ର, କର୍ମ-ଚକ୍ର ଓ ଲୋକ-ସଂଗ୍ରହ ଆଦି ଦେଇ କର୍ମ-ଦର୍ଶନ ଓ କର୍ମ-ଯୋଗ ବୁଝାଇସାରିବା ପରେ, ମନସ୍ତତ୍ତ୍ୱର ଏକ ମୂଳ କଥା ଏଠାରେ କହୁଛନ୍ତି । ତାହା ଏହି ଯେ, ଆମର ପ୍ରତ୍ୟେକ ଇନ୍ଦ୍ରିୟାଭିଳାଷର ଅଭିବ୍ୟକ୍ତି ଦୁଇ ପ୍ରକାରେ ଘଟିଥାଏ—ଗୋଟିଏ ଆଗ୍ରହ, ଆଉଟି ହେଲା ଘୃଣା ବା ଦ୍ୱେଷ । ଆମର କାହାକୁ ଭଲ ପାଇବା ଏବଂ କାହାକୁ ଭଲ ନ ପାଇବା, ଏ ହେଲା ଗୋଟିଏ ପ୍ରବଣତାର ଦୁଇଟି ପାଖ ମାତ୍ର । ଏହା ମଧ୍ୟ ଆଧୁନିକ ମନସ୍ତତ୍ତ୍ୱର ନବ ଆବିଷ୍କାର । ସାଧାରଣ ଲୋକେ କହିପାରନ୍ତି ଯେ, କେଉଁଠି ଅନୁରାଗ ଠିକ୍, କେଉଁଠି ବା ବିରାଗ ମଧ୍ୟ ଠିକ୍ । ସେଥିରେ କ୍ଷତି କଣ ? କିନ୍ତୁ ଗୀତା କହନ୍ତି ଯେ, ଯେଉଁମାନେ ଉନ୍ନତ ମନୁଷ୍ୟତ୍ୱ ଚାହାନ୍ତି, ଚାହାନ୍ତି ଆଧ୍ୟାତ୍ମିକ ଉନ୍ନତି, ସେମାନେ ଦ୍ୱେଷ ବା ଅନୁରାଗ ଦୁଇଟିଭିତରୁ କୌଣସିଟିଦ୍ୱାରା ନିଜକୁ ବଶୀଭୂତ କରିବାକୁ ଦେବେନି । ମନର ଉଭୟ ପ୍ରବଣତାହିଁ ଆଧ୍ୟାତ୍ମିକ ଜୀବନପ୍ରତି ଶତ୍ରୁ । କିନ୍ତୁ 'ବୁଦ୍ଧିଯୋଗ' ପ୍ରୟୋଗରେ ସେହି ଇନ୍ଦ୍ରିୟମାନଙ୍କ ଓ ସେମାନଙ୍କର ରାଗ ଓ ଦ୍ୱେଷକୁ କାମରେ ଲଗାଇ ଜାଣିଲେ, ଆଧ୍ୟାତ୍ମିକ ଉନ୍ନତିରେ ସେହିମାନେହିଁ ପରମ ସହାୟକ ହୋଇ-ଉଠନ୍ତି । ଏବର ମନସ୍ତତ୍ତ୍ୱରେ ଏହାକୁ Sublimation କୁହାଯାଏ । ଅର୍ଥାତ୍ ଆମର ପ୍ରବୃତ୍ତିମାନଙ୍କୁ, ଇନ୍ଦ୍ରିୟମାନଙ୍କୁ ଆମେ ନିମ୍ନଗମନରୁ ଓଟାରିଆଣି ଊର୍ଦ୍ଧ୍ୱଗ କରାଇପାରୁଁ । କବି, ଶିଳ୍ପୀ, ସାଧକମାନଙ୍କ ଜୀବନରେ ତାହାହିଁ ଘଟେ । ସାଧାରଣ ଜାନ୍ତବ ଯୌନଲାଳସା କବି-ପ୍ରତିଭା ହୋଇ ସୃଷ୍ଟି କରେ ମେଘଦୂତ ଓ ଡିଭାଇନ୍ କମେଡ଼ି । ପାପୀ ଓ ଆତତାୟୀ ପ୍ରତି ଘୃଣା ଓ କ୍ରୋଧ ସଂସ୍କାରକଭିତରେ ପ୍ରକଟିତ ହୁଏ, ପାପ-ଅପରାଧକୁ ସମାଜରୁ ଦୂରୀଭୂତ କରିବାର ପରମ ପ୍ରଚେଷ୍ଟାରେ ।

ପରବର୍ତ୍ତୀ ପ୍ରସିଦ୍ଧ ଶ୍ଲୋକ ସହିତ ଏହି ଭାବାର୍ଥ ଘନିଷ୍ଠଭାବରେ ଜଡ଼ିତ ।

୩୫

ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍
ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହଃ । ୩୫ ।

ସ୍ୱନୁଷ୍ଠିତାତ୍ ପରଧର୍ମାତ୍ (ଉତ୍ତମରୂପେ ଅନୁଷ୍ଠିତ କରିପାରୁଥିବା ପରଧର୍ମଠାରୁ) ବିଗୁଣଃ ସ୍ୱଧର୍ମଃ (ଆକର୍ଷଣହୀନ ସ୍ୱଧର୍ମ) ଶ୍ରେୟାନ୍ (ଶ୍ରେଷ୍ଠ) । ସ୍ୱଧର୍ମେ (ସ୍ୱକର୍ତ୍ତବ୍ୟ-ପାଳନରେ) ନିଧନଂ ଶ୍ରେୟଃ (ମୃତ୍ୟୁ ମଧ୍ୟ କଲ୍ୟାଣକର), [କିନ୍ତୁ] ପରଧର୍ମଃ (ପରର କର୍ତ୍ତବ୍ୟ) ଭୟାବହଃ (ବିପତ୍‌ସଂକୁଳ) ।

## ଅନୁବାଦ

"ହେ ଅର୍ଜୁନ, ପାର୍ଥିବ ରାଗ-ଦ୍ୱେଷଦ୍ୱାରା ବିଚଳିତ ନ ହୋଇ, ନିଜର ସ୍ୱ-ଧର୍ମ, ସ୍ୱ-କର୍ତ୍ତବ୍ୟ(ପାର୍ଥିବ ଓ ଆଧ୍ୟାତ୍ମିକ)ପ୍ରତି ଅନୁରକ୍ତ ରହିବା ଉଚିତ । ସ୍ୱ-ଧର୍ମରେ ଅସଂପୂର୍ଣ୍ଣତା ଥିଲେହେଁ ଅନ୍ୟର ପରିପୂର୍ଣ୍ଣ-ବୋଧ ହେଉଥିବା ଧର୍ମଠାରୁ ତାହା ଅଧିକ କରଣୀୟ ବୋଲି ଜାଣିବ । ନିଜ ଧର୍ମର ପାଳନରେ ମରଣ ବରଂ ଶ୍ରେୟସ୍କର, ପରଧର୍ମ କିନ୍ତୁ ଭୟାବହ ।"

## ବିଶେଷ ଭାଷ୍ୟ

ଏହି ବିଖ୍ୟାତ ଶ୍ଳୋକଟିକୁ ସାଧାରଣତଃ ହିନ୍ଦୁ ସମାଜର ଜାତି-ପ୍ରଥାର ସମର୍ଥନଭାବରେ ବ୍ୟାଖ୍ୟା କରାଯାଇଥାଏ । କିନ୍ତୁ ତାହା ସଂପୂର୍ଣ୍ଣ ଅଯୌକ୍ତିକ । କାରଣ ଗୀତା ଆମକୁ ଠିକ୍ ପୂର୍ବବର୍ତ୍ତୀ ଶ୍ଳୋକରେ ଇନ୍ଦ୍ରିୟ ବା ପ୍ରବୃତ୍ତି-ନିଗ୍ରହ କଥା ବ୍ୟାଖ୍ୟା କରିଛନ୍ତି । ସେଠି ହଠାତ୍ ଜାତି-ପ୍ରଥାର ପ୍ରସଙ୍ଗ ଆସିବ କିପରି ? ଗୀତା ପୂର୍ବ ଓ ପର ଶ୍ଳୋକ ସହିତ ସଂପୂର୍ଣ୍ଣ ସଂପର୍କହୀନଭାବରେ ହଠାତ୍ ଏ ପ୍ରସଙ୍ଗ ଉଠେଇବେ କାହିଁକି ? ତାର ଆଲୋଚନା ଗୀତାକାର ଏହି ଗୀତାରେ ପରେ ଖୋଲାଖୋଲିଭାବରେ ୧୮ଶ ଅଧ୍ୟାୟରେ କରିଛନ୍ତି ।

ଏ ଶ୍ଳୋକର ତାତ୍ପର୍ଯ୍ୟ ଠିକ୍-ପୂର୍ବବର୍ତ୍ତୀ ଶ୍ଳୋକର ଅନୁରାଗ-ବିରାଗରୁହିଁ ଆସୁଛି ଏବଂ ଏହା ପ୍ରତ୍ୟେକ ଲୋକର କର୍ତ୍ତବ୍ୟାକର୍ତ୍ତବ୍ୟ-ଚିନ୍ତାପ୍ରତିହିଁ ପ୍ରଯୁଜ୍ୟ—କେବଳ ଭାରତବର୍ଷର ହିନ୍ଦୁସମାଜର କୌଳିକ ବା ଗୋଷ୍ଠୀଗତ ଧନ୍ଦାପାଇଁ ନୁହେଁ । ଆଉପକ୍ଷେ ଦ୍ରୋଣ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ ପ୍ରଭୃତି ବିଦ୍ୱାନ୍ ଦ୍ୱିଜୋତ୍ତମମାନେ ମଧ୍ୟ ଯୁଦ୍ଧପାଇଁ ଠିଆ ହୋଇଥିଲାବେଳେ 'ପରଧର୍ମ ଭୟାବହ' ବୋଲି କହିବାର ଅର୍ଥ କେବେ ନୁହେଁ ଯେ, ଏହା ଏକ ଜାତି(କାଷ୍ଟ)ର ଲୋକେ ଅନ୍ୟ ଜାତି(କାଷ୍ଟ)ର କର୍ମ କରିବେ ନାହିଁ ବୋଲି ବୁଝାଯିବ ।

ପୂର୍ବବର୍ତ୍ତୀ ଶ୍ଳୋକରେ ଏବଂ ଅନ୍ୟ ବହୁ ସ୍ଥାନରେ ଗୀତା ଆମଭିତରେ ଥିବା ମୋହ-ପ୍ରବଣ ରାଗ ଓ ଦ୍ୱେଷ ଏହି ଉଭୟ ପ୍ରକାଶଭିତରୁ କୌଣସିଟିରେ ମାତି ନ ଯିବାକୁ ଉପଦେଶ ଦେଇଛନ୍ତି । ସମଗ୍ର ପୃଥିବୀର ସବୁ ନର ବା ନାରୀ କୌଣସି-ନା-କୌଣସି କର୍ତ୍ତବ୍ୟ ସହିତ ସଂପୃକ୍ତ । କିନ୍ତୁ ଅଧିକାଂଶ ସ୍ଥଳରେ ପ୍ରାୟ ପ୍ରତ୍ୟେକ ସାଧାରଣ ନର ଓ ନାରୀଭିତରେ ଆମେ ଦୈନନ୍ଦିନ କର୍ମାଦିପ୍ରତି 'ବିରାଗ' ବା 'ଦ୍ୱେଷ'ହିଁ ପ୍ରକାଶିତ ହେଉଥିବାର ଦେଖିବା । ଏପରିକି, ଜନନୀମାନେ ମଧ୍ୟ ପିଲାଙ୍କ ପାଇଁ କାମ କରି କରି ବା ମୋଟଉପରେ ସେମାନଙ୍କର ପାରିବାରିକ ଜୀବନପ୍ରତି ବିରକ୍ତ । ଏ ଧରଣର ଦୈନନ୍ଦିନ ଜୀବନ ସାଧାରଣ ମନୁଷ୍ୟପାଇଁ ପ୍ରକୃତରେ କଷ୍ଟଦାୟକ ଓ ଜଞ୍ଜାଳମୟ । କପାଳର ଝାଳ ଦେଇ ଉଦର-ପୋଷଣ ମନୁଷ୍ୟପ୍ରତି ବାଇବଲୀୟ ଅଭିଶାପ । ଆମର ଚିନ୍ତାରାଜ୍ୟରେ, ଏହି ନିଷ୍ଠୁରତାରୁ ପଳାୟନ, ମନୁଷ୍ୟର ଏକ ସ୍ୱାଭାବିକ ଓ ସାର୍ବଜନୀନ ମାନସିକତା । ସେଇଥିପାଇଁହିଁ ଆମ ନିକଟରେ ଗଳ୍ପ, ଉପନ୍ୟାସ ଓ କବିତା ଏତେ ପ୍ରିୟ । କାରଣ ସେସବୁ ଆମକୁ ଦୈନନ୍ଦିନ ଜୀବନର ରୁକ୍ଷତାରୁ ଉଠାଇନେଇ ଏକ ମନୋହରଣ କାଳ୍ପନିକ ଜଗତକୁ ନେଇଯାଇଥାନ୍ତି । ଦୈନନ୍ଦିନ ଜୀବନରେ ମଧ୍ୟ ଆମେ ପ୍ରତ୍ୟେକେ ଯେ ଅନ୍ୟକୁହିଁ "ସେ ମୋଠୁ ଭଲରେ ଅଛି" ବୋଲି ଭାବିଥାଉଁ, ତାହା ମଧ୍ୟ ଏହି ପଳାୟନୀ ମନସ୍ତତ୍ତ୍ୱର ଏକ ପ୍ରକାଶ ମାତ୍ର ; ଏବଂ ପ୍ରତ୍ୟେକ ସାଧାରଣ ନର-ନାରୀ ସ୍ୱପ୍ନ ଦେଖନ୍ତି—ଧନିକର, ରାଜାର, ମନ୍ତ୍ରୀର ଜୀବନ, ଯାହାକୁ ସେ ଧରିନିଅନ୍ତି ସର୍ବସୁଖମୟ ବୋଲି, କାରଣ ସେହି ଜୀବନରେ ସେ ବାହାରୁ ଦେଖନ୍ତି ଧନ ଓ କ୍ଷମତାର ପ୍ରାଚୁର୍ଯ୍ୟ, ଏବଂ ଶ୍ରମ କମ୍ ଓ ସୁଖକର—କେବଳ ଆଦେଶପ୍ରଦାନ ମାତ୍ର ।

ଗୀତା କହିଆସୁଛନ୍ତି ଯେ, କର୍ତ୍ତବ୍ୟ କର୍ମ କଲାବେଳେ ଏପ୍ରକାର ଆସକ୍ତି ଓ ଅସନ୍ତୋଷ ଉଭୟ ଅନୁଚିତ । ଏହି ମତଟିକୁ ଗଭୀରଭାବରେ ଆମ ମନରେ ଅନୁପ୍ରବିଷ୍ଟ କରାଇରଖିବାପାଇଁହିଁ ଗୀତା ଯେପରିକି ଏହି ଶ୍ଳୋକଟି ଦେଇ ପ୍ରଚ୍ଛନ୍ନଭାବରେ ଆମକୁ ଏହିପରି ପ୍ରଶ୍ନ କରୁଛନ୍ତି "ତୁମେ ନିଜ କର୍ତ୍ତବ୍ୟ (ସ୍ୱଧର୍ମ)ପ୍ରତି ଯଥୋଚିତ ଆନ୍ତରିକତା ଦେଇପାରୁଛ ତ ? ତୁମେ ଭାବୁଛ କି, ତୁମେ ମନ୍ତ୍ରୀ ହୋଇଥାନ୍ତ ଏବଂ ନ ହେବାରୁ ଅସନ୍ତୁଷ୍ଟ ଜୀବନ ଯାପନ କରୁଛ ? କିନ୍ତୁ ମନେ ରଖ ଯେ, ପ୍ରତ୍ୟେକ କର୍ମରେ ଜଞ୍ଜାଳ ଅଛି, ବିଫଳତା ଅଛି—ରାଜା, ନେତା, ଧନୀ ଓ ମନ୍ତ୍ରୀର ମଧ୍ୟ । କର୍ତ୍ତବ୍ୟ କର୍ମ ସୁସଂପନ୍ନ କରିବାହିଁ ଏକମାତ୍ର ଉଚିତ ଆଦର୍ଶ । କିଏ କି ଚୌକିରେ ଏହିକ୍ଷଣି ବସିଯାଇଛି, ତାହାର ବିଶ୍ରର

ସଂପୂର୍ଣ୍ଣ ଅପ୍ରାସଙ୍ଗିକ । ଉତ୍ତମ ମେନେଜର, ଉତ୍ତମ ଚଷା, ଉତ୍ତମ କର୍ମଣିଟିଏ ଅପେକ୍ଷା ଖରାପ ଯଥେଚ୍ଛାଚାରୀ, ମୂର୍ଖ ଓ ଅନିପୁଣ ମନ୍ତ୍ରୀ, ବା ଦୁରାଚାରୀ ଉଚ୍ଚ କର୍ମଚାରୀ କିପରି ବାଞ୍ଛନୀୟ ହେବେ ? ଧନ ଓ କ୍ଷମତା ଆସେ ଓ ବାଟେ ବାଟେ କିପରି ଚାଲିଯାଏ, ତାହା କି ଦେଖୁନା ? ବିଧାତାର ରାଜ୍ୟରେ, ସବୁ ସ୍ଥାନରେ, ଚକ୍ରାକାରରେ ଯୋଗ-ବିଯୋଗ ଖଞ୍ଜାହୋଇ ରଖାଯାଇଛି । ତେଣୁ ଏ ଧର୍ମ (କର୍ତ୍ତବ୍ୟ) ବା ସେ ଧର୍ମ (କର୍ତ୍ତବ୍ୟ) ଭିତରେ କୌଣସି ହେଲେ ପ୍ରଭେଦ ନାହିଁ । ଯେଉଁ କାମ ତୁମ ହାତରେ ଦିଆଯାଇଛି, ତାକୁହିଁ ଉତ୍ତମଭାବରେ ସଂପନ୍ନ କର । ତାହାହିଁ ତୁମର ଜୀବନ-ବିଦ୍ୟାଳୟର ଶେଷ ପରୀକ୍ଷା । ତାର ଫେଲ୍ ବା ପାସ୍ ତୁମ ଜୀବନର ପ୍ରକୃତ ମୂଲ୍ୟ । ଆମେ ସମସ୍ତେ ଯଦି ନିଜ ନିଜ କାମପ୍ରତି ବୀତଶ୍ରଦ୍ଧ ହୋଇ କେବଳ ନେତା ବା ମନ୍ତ୍ରୀ ହେବାକୁ ଚାହିବା, ତେବେ ସମାଜ ରହିବ କି ? ତେଣୁ ସବୁବେଳେ 'ପରଧର୍ମ' ଚିନ୍ତା କରିବା କି 'ଭୟାବହ', ଦେଖି ପାରୁଛ ?"

ଏ ଗଲା ସ୍ୱ-ଧର୍ମର ବାହ୍ୟ ସାମାଜିକ ତାତ୍ପର୍ଯ୍ୟ । ଏହାର ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ମଧ୍ୟ ଗଭୀର ଓ ସାମାଜିକ ତାତ୍ପର୍ଯ୍ୟ ସହିତ ଅଙ୍ଗାଙ୍ଗୀଭାବରେ ସଂପୃକ୍ତ ।

ଗୀତା ପରେ ପରେ 'ସ୍ୱ-ଧର୍ମ' ଓ 'ସ୍ୱ-ଭାବ' ଏହି ଦୁଇଟି ମନସ୍ତାତ୍ତ୍ୱିକ ଭାବ-କଳ୍ପନାପରେ ଯଥୋଚିତ ପ୍ରାଧାନ୍ୟ ଦେଇଥିବାର ଆମେ ଦେଖିବା । ଜନ୍ମ ଯୋଗୁଁ ସାମାଜିକ ଓ ପାରିବାରିକ ଉତ୍ତରାଧିକାର ସୂତ୍ରରେ ପ୍ରତ୍ୟେକ ଲୋକ ନିଜର ପାରିବାରିକ, କୌଳିକ ବା ସାମାଜିକ ଏକ ଧର୍ମ ବା କର୍ତ୍ତବ୍ୟ ପାଇଥାଏ । ସୈନିକର ପୁଅ ସୈନିକ, ଚିକିତ୍ସକର ପୁଅ ଚିକିତ୍ସକ ଓ କୃଷକର ପୁଅ କୃଷକ ହେବାଟା ସ୍ୱାଭାବିକ କଥା । ଭାରତବର୍ଷରେ ଏହା ଅଲଂଘ୍ୟଭାବରେ କେବଳ ଜନ୍ମଗତ ବୋଲି ଧରାହୋଇଥିବାରୁ 'କାଷ୍ଟ୍' ବା ଜାତି-ପ୍ରଥା ଠିଆ ହୋଇଯାଇଛି । କିନ୍ତୁ ଅନ୍ୟ ଦେଶମାନଙ୍କରେ ପାରିବାରିକ ରୀତି ବା କୁଳଧର୍ମ ଅନୁସାରେ ଏପ୍ରକାର ଉତ୍ତରାଧିକାରପ୍ରାପ୍ତ ଧର୍ମ ବା କର୍ତ୍ତବ୍ୟ ଅଧିକାଂଶ କ୍ଷେତ୍ରରେ ଆପେ ଆପେ ଘଟିଯାଇଥାଏ । ଆମେ ଜାପାନରେ ଦେଖିବା, ଯେ ଗତ ଚାରି ଶହ ବର୍ଷ ଧରି ଏକ ଏକ ପରିବାରରେ କେବଳ ଗୋଟାଏ ଧନ୍ଦା ଆଶ୍ରିତ ହୋଇଆସିଛି । ସେହିପରି ମଧ୍ୟ ଇଂଲଣ୍ଡ ଓ ଅନ୍ୟ ଦେଶମାନଙ୍କରେ । ଗୀତାଙ୍କ ମତ ଏହି ଯେ, ଏଇ ଯେ ଉତ୍ତରାଧିକାରପ୍ରାପ୍ତ ସାମାଜିକ କର୍ତ୍ତବ୍ୟ, କେବଳ ଅନ୍ତରର ସ୍ୱ-ଭାବ ବା ସ୍ୱ-ଧର୍ମର ପ୍ରେରଣା ନ ପାଇଲେ ତାକୁ ଘୃଣା ବା ବିରକ୍ତିରେ ଛାଡ଼ିଦେଇ 'ପରଧର୍ମ' ଗ୍ରହଣ କରିବା ଉଚିତ ନୁହେଁ । ବରଂ, ନିଜର ଯାହା

ଜନ୍ମଗତ ସାମାଜିକ କର୍ତ୍ତବ୍ୟ, ବା ଯାହା ତୁମେ ନିଜେ ଜୀବିକାର୍ଜନର ଉପାୟ-ରୂପେ ଗ୍ରହଣ କଲ, ତାକୁ ସୁସଂପାଦିତ କରିବାହିଁ ତୁମର ମୁଖ୍ୟ ଲକ୍ଷ୍ୟ ହେବା ଉଚିତ। You must give your best to the task in hand.

କିନ୍ତୁ ବାହାରୁ, ସମାଜ ବା ପରିବାରଠୁ ପାଇବା ଧର୍ମ ବା କର୍ତ୍ତବ୍ୟ ଛଡ଼ା, ନିଜର ଉତ୍ତରାଧିକାର ସୂତ୍ରରେ ନିଜେ ପାଇଥିବା ଧର୍ମ ବା କର୍ତ୍ତବ୍ୟ ଅଛି, ଏବଂ ସେଇଟାହିଁ ହେଲା ସତ୍ୟରେ ସ୍ୱ-ଧର୍ମ ଓ ସ୍ୱ-ଭାବ। ଏହି ସ୍ୱ-ଧର୍ମର ତାଡ଼ନାରେହିଁ ବଢ଼େଇପୁଅ ଯୀଶୁ ଓ ରାଜାର ପୁଅ ସିଦ୍ଧାର୍ଥ ଗୌତମ ନିଜ ନିଜର କୌଳିକ ଧର୍ମ ଛାଡ଼ି ଝାମ୍ପ ଦେଇଥିଲେ ଅନିଶ୍ଚିତତାର ସମୁଦ୍ରକୁ। ଏ ସ୍ୱ-ଧର୍ମର ଆହ୍ୱାନ ଆମ ସମସ୍ତଙ୍କ ଅନ୍ତରରେ ଦେଖାଦିଏ। ଯିଏ ଶୁଣନ୍ତି, ସେ ହୁଅନ୍ତି ମହାତ୍ମା, ମହା-ମାନବ। ଯିଏ ନ ଶୁଣନ୍ତି, ସେ ରହନ୍ତି ପଶୁସ୍ତରରେ—ଆମପରି ଅଗଣିତ ନର-ନାରୀ ଗୋଷ୍ଠୀ। ଉପନିଷଦର ଏକାନ୍ତ ସତ୍ୟ—ସ୍ତ୍ରୀ ବା ପୁତ୍ର ବା ସ୍ୱାମୀ କେହି ନିଜ ଯୋଗୁଁ ପ୍ରିୟଭାଜନ ନୁହନ୍ତି, ସେ ପ୍ରତ୍ୟେକେ କାମ୍ୟ ହୋଇଥାନ୍ତି ଅନ୍ତର୍ନିହିତ ବ୍ରହ୍ମ ଯୋଗୁଁ। ସାଧାରଣ ମନୁଷ୍ୟ କିନ୍ତୁ ବ୍ରହ୍ମ ବା ଈଶ୍ୱରଙ୍କୁ ଚିହ୍ନିପାରି ନ ଯାଇ ପ୍ରମତ୍ତ ହୁଏ ସ୍ୱାମୀ, ପୁତ୍ର, ସ୍ତ୍ରୀର ମାୟାମୋହରେ। ଜୀବନର ସତ୍ୟ ନିର୍ଦ୍ଦେଶ ତେଣୁ ଏହି ଯେ, ଆମେ ପ୍ରତ୍ୟେକେ କେବେ ବିସ୍ମୃତ ହେବା ନାହିଁ ଯେ, ଆମର ମୁଖ୍ୟ ସ୍ୱ-ଧର୍ମ ହେଲା ବିନ୍ଦୁକୁ ମହାସାଗରରେ, ଅଂଶକୁ ପୂର୍ଣ୍ଣରେ, ଅଣୁକୁ ଭୂମାରେ ମିଶାଇବା। ଯେପର୍ଯ୍ୟନ୍ତ ସେ ମିଳନ ନ ଘଟିଛି, ଆତ୍ମାର ତ ଶାନ୍ତି ନାହିଁ, ବରଂ ଜରା-ବ୍ୟାଧି-ମୃତ୍ୟୁ-ଦାରିଦ୍ର୍ୟ-ଦୁର୍ଭାଗ୍ୟ ଜଡ଼ିତ ଜନ୍ମ ପରେ ଜନ୍ମ। ତେଣୁ ଗୀତାଙ୍କର ମହନୀୟ ପ୍ରସ୍ତାବ ହେଉଛି ଏହି ଯେ, ବାହାରେ ଯେମିତି ରାଗଦ୍ୱେଷ-ହୀନ, ନିରହଙ୍କାର ଓ ଫଳାଶାରହିତ ସାମାଜିକ ସ୍ୱ-ଧର୍ମ ପାଳନ କରିବ, ସେହିପରି ମଧ୍ୟ କରିବ ଅନ୍ତରର ସ୍ୱ ଧର୍ମ, ଯାହା ଏକାଧାରରେ ତୁମକୁ ଦେବ 'ପ୍ରକୃତି'ର ସର୍ବନାଶୀ ଫାଶରୁ 'ପୁରୁଷ'କୁ ମୁକ୍ତି ଏବଂ 'ପୁରୁଷ'କୁ ନେଇ ନିତ୍ୟ ମିଳନ ଓ ଶାନ୍ତିର ପରମାନନ୍ଦ ଦେବ ସଚ୍ଚିଦାନନ୍ଦ ପୁରୁଷୋତ୍ତମଙ୍କ ସହିତ ଏକୀଭୂତ କରାଇ। ଏ ସେହି ଆନନ୍ଦ ଯାହାପାଇଁ ବିଶ୍ୱର ପ୍ରତ୍ୟେକ ଜଳବିନ୍ଦୁ ପାଗଳାପରି ଧାବମାନ ମହୋଦଧିର ମହାବକ୍ଷରେ ଲୋଟିବାପାଇଁ। କ୍ଷୁଦ୍ରର ପୂର୍ଣ୍ଣତା, ଅଂଶର ସମଗ୍ରତାପ୍ରାପ୍ତିର ଅକଳ୍ପନୀୟ ଆନନ୍ଦ। ଏ ଆନନ୍ଦ ଅନ୍ୱେଷଣର ବାହାରେ ଯେତେସବୁ ଆନନ୍ଦ, ତାହା ଆତ୍ମାର ଅର୍ଥାତ୍ ଆମ ପ୍ରତ୍ୟେକପ୍ରତି ଯେ 'ଭୟାବହ ପରଧର୍ମ', ଏହା ନିଃସନ୍ଦେହ।

ପୁଣି ଗୀତା ଯଦି ବୁଦ୍ଧ-ପରଯୁଗର ରଚନା ହୋଇଥାଏ, ଯାହା କହିବାର ଯଦ୍‌ଯଥେଷ୍ଟ ଯଥାର୍ଥତା ଅଛି, ତେବେ 'ପରଧର୍ମ' ଯେ ବ୍ରାହ୍ମଣ୍ୟଧର୍ମ-ବିରୋଧୀ ବୌଦ୍ଧ ଧର୍ମକୁ ମଧ୍ୟ ବୁଝାଇପାରେ, ତାହା ମଧ୍ୟ ବିଚାର୍ଯ୍ୟ । ଅର୍ଜ୍ଜୁନଙ୍କର 'ଯୁଦ୍ଧ କରିବିନି' ଭାବ ଏକାନ୍ତ ବୌଦ୍ଧଚିନ୍ତା ।

୩୬

ଅର୍ଜ୍ଜୁନ ଉବାଚ

ଅଥ କେନ ପ୍ରଯୁକ୍ତୋଽୟଂ ପାପଂ ଚରତି ପୂରୁଷଃ
ଅନିଚ୍ଛନ୍ନପି ବାର୍ଷ୍ଣେୟ, ବଳାଦିବ ନିୟୋଜିତଃ । ୩୬ ।

ଅର୍ଜ୍ଜୁନ ଉବାଚ (ଅର୍ଜ୍ଜୁନ କହିଲେ) । ବାର୍ଷ୍ଣେୟ (ହେ ବୃଷ୍ଣିବଂଶ-ଜାତ ଶ୍ରୀକୃଷ୍ଣ,) ଅଥ (ତେବେ) କେନ ପ୍ରଯୁକ୍ତଃ (କାହାଦ୍ୱାରା ପ୍ରଣୋଦିତ ହୋଇ) ଅୟଂ ପୂରୁଷଃ (ଏହି ମନୁଷ୍ୟ) ଅନିଚ୍ଛନ୍ ଅପି (ଇଚ୍ଛା ନ କଲେ ମଧ୍ୟ) ବଳାତ୍ ନିୟୋଜିତଃ ଇବ (ଯେପରିକି ଅନ୍ୟଦ୍ୱାରା ବଳାତ୍କାରରେ ନିୟୋଜିତ ହେଲା ପରି) ପାପଂ ଚରତି (ପାପ କର୍ମ ଅର୍ଥାତ୍ ସ୍ୱ-ଧର୍ମ-ବିରୋଧୀ ବି-ଧର୍ମ ଆଚରଣ କରିଥାଏ) ?

**ଅନୁବାଦ**

ଅର୍ଜ୍ଜୁନ କହିଲେ "ହେ ଶ୍ରୀକୃଷ୍ଣ, ଲୋକ ଅନିଚ୍ଛାସତ୍ତ୍ୱେ ପାପ ବା ଧର୍ମହୀନ କର୍ମରେ ବଳେ ବଳେ ନିୟୋଜିତ ହୁଏ କିପରି ?"

**ବିଶେଷ ଭାଷ୍ୟ**

ଅର୍ଜ୍ଜୁନ ପୂର୍ବବର୍ତ୍ତୀ ଶ୍ଳୋକରେ ଶ୍ରୀକୃଷ୍ଣଙ୍କଠାରୁ ପରଧର୍ମ-ସ୍ୱଧର୍ମର ତାତ୍ପର୍ଯ୍ୟ ଶୁଣିଲେ । କିନ୍ତୁ ଧର, ଆମେ ଆମର ନିଜ ନିଜ କର୍ତ୍ତବ୍ୟପ୍ରତି ଅନାସକ୍ତ ରହି, ଅନ୍ୟମାନେ କି କାମ କରି କି ଫଳ ପାଉଛନ୍ତି ସେ କଥା ନ ଭାବି, ଜୀବନ ଯାପନ କଲୁଁ । କିନ୍ତୁ ଏପ୍ରକାର ସାବଧାନତା ସତ୍ତ୍ୱେ ବହୁ ଜୀବନରେ ଏହା ମଧ୍ୟ ଦେଖାଯାଇଛି ଯେ, ପ୍ରବଣତା ନ ଥିଲେ ମଧ୍ୟ ଲୋକ ଅଜ୍ଞାତସାରରେ ଓ ଇଚ୍ଛା ନ ଥାଇ ମଧ୍ୟ ଏକ ଏକ ଦୁଷ୍କର୍ମ ବା ସ୍ୱ-ଧର୍ମ-ବିରୋଧୀ କର୍ମ କରିବସେ । ଏହା କିପରି ଘଟେ ? ଏହାର ବା ପ୍ରତିକାର କଣ ?

୩୭

ଶ୍ରୀ ଭଗବାନୁବାଚ

କାମ ଏଷଃ କ୍ରୋଧ ଏଷ ରଜୋଗୁଣସମୁଦ୍ଭବଃ
ମହାଶନୋ ମହାପାପ୍ମା ବିଦ୍ଧ୍ୟେନମିହ ବୈରିଣମ୍ । ୩୭ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) । ରଜୋଗୁଣ ସମୁଦ୍ଭବଃ (ପ୍ରକୃତିରେ ଅବସ୍ଥିତ ତ୍ରିଗୁଣ ସତ୍ତ୍ୱ, ରଜ ଓ ତମ ଭିତରେ, ରଜୋଗୁଣରୁ ଜାତ) ମହାଶନଃ (ଯାହାର ଗ୍ରାସର ଶେଷ ନାହିଁ) ମହାପାପ୍ମା (ଅତି ପାପମୟ) ଏଷଃ କାମଃ (ଏହି କାମ) [ଓ] ଏଷଃ କ୍ରୋଧଃ (ଏହି କ୍ରୋଧ) । ଇହ (ଏହି ସଂସାରରେ) ଏନଂ (ଏହାଙ୍କୁ) ବୈରିଣଂ ବିଦ୍ଧି [ମନୁଷ୍ୟର] (ଶତ୍ରୁ ବୋଲି ଜାଣ) ।

## ଅନୁବାଦ

ଶ୍ରୀ ଭଗବାନ୍ କହିଲେ "ହେ ଅର୍ଜୁନ, ସାଧନା-ପଥରେ ରଜୋଗୁଣ-ସମୁଦ୍ଭବ କାମ-କ୍ରୋଧ(ରାଗଦ୍ୱେଷ)କୁ ମହାନାଶକ ଶତ୍ରୁ ବୋଲି ଜାଣିବ ।"

## ବିଶେଷ ଭାଷ୍ୟ

ଗୀତା ମୂଳରୁ ଅର୍ଜୁନଙ୍କୁ ଅର୍ଥାତ୍ ଆମ ପ୍ରତ୍ୟେକଙ୍କୁ 'ନିସ୍ତ୍ରୈଗୁଣ୍ୟ' ଅର୍ଥାତ୍ ପ୍ରକୃତିରେ ଚିର କର୍ମଶୀଳ ସତ୍ତ୍ୱ-ରଜ-ତମ ଏ ତିନି ଗୁଣର ଉପରକୁ ଯିବାକୁ ଉପଦେଶ ଦେଇଆସିଛନ୍ତି । ସତ୍ତ୍ୱଗୁଣ ଆଧ୍ୟାତ୍ମିକ ଜୀବନପାଇଁ ସହାୟକ ହେଲେହେଁ ତାହା ନିଜେ ମୁକ୍ତିଦାୟକ ନୁହେଁ । ତାହା ମଧ୍ୟ, ରଜ ଓ ତମ ପରି, ବାରଂବାର ଜନ୍ମ-ଜରା-ମୃତ୍ୟୁ-ଜନିତ ଦୁଃଖ ଆଣୁଥିବ । କିନ୍ତୁ ସତ୍ତ୍ୱ-ରଜ-ତମ ଭିତରେ ତମୋଗୁଣ ସର୍ବଥା ଅକଲ୍ୟାଣଜନକ ଏବଂ ରଜ ସର୍ବଥା ପରିଣାମରେ ଦୁଃଖ-ଅଶାନ୍ତି-ଦାୟୀ ।

ମୋଟଉପରେ ଦେଖିଲେ, ଆମେ ଭାରତବର୍ଷର ଲୋକେ ଏବେ ତମୋଗୁଣ ବଶବର୍ତ୍ତୀ ହୋଇ ଦୁର୍ଦ୍ଦଶାଗ୍ରସ୍ତ, ତେଣେ ୟୁରୋପୀୟ ଲୋକେ ରଜୋଗୁଣ-ବଶବର୍ତ୍ତୀ ହୋଇ ପ୍ରତି କୋଡ଼ିଏ ବର୍ଷରେ ଏକ ବିଶ୍ୱ-ଯୁଦ୍ଧ ସୃଷ୍ଟି କରିଚାଲିଛନ୍ତି । ତମୋଗୁଣ ମନୁଷ୍ୟକୁ ପଶୁମାନଙ୍କ ସ୍ତରରେହିଁ ରଖିବ ; ରଜୋଗୁଣ ଆପାତ ଦୃଷ୍ଟିରେ ଉପରକୁ ଉଠାଇଲେ ମଧ୍ୟ ସେହି ଉତ୍ଥାନଭିତରେ ଅଧଃପତନର ବୀଜ ବୁଣି-ରଖିଥିବ । ବ୍ୟକ୍ତିଗତ ଓ ରାଷ୍ଟ୍ରଗତ ଉଭୟ ଅଧଃପତନପାଇଁ ଶ୍ରୀକୃଷ୍ଣ ରଜୋଗୁଣ-ସମୁଦ୍ଭବ କାମ ଓ କ୍ରୋଧକୁହିଁ ଦାୟୀ କରୁଛନ୍ତି । କିନ୍ତୁ ବିଚାରିବାର କଥା ଏହି ଯେ, କାମ ଓ କ୍ରୋଧ ଉଭୟ, ଜୀବ ପ୍ରବୃତ୍ତି-ମାର୍ଗ ଦେଇ ଆଗେଇ ଚାଲିଥିଲାବେଳେ, ଏକାନ୍ତ ଆବଶ୍ୟକ । ଦେଖିବାକୁ ଗଲେ, ମୂଳତଃ କାମରୁହିଁ ଶିଳ୍ପ ଓ କବିତାର ଉଦୟ ଏବଂ କାମହିଁ ସମାଜକୁ କ୍ରମାଗତ ଗତିଶୀଳ କରିରଖିଛି । ଅନ୍ୟାୟକୁ ସମାଜରେ ପ୍ରସାରିତ ନ କରିବାପାଇଁ କ୍ରୋଧ ଏକାନ୍ତ ଦରକାର । କିନ୍ତୁ ନିବୃତ୍ତି-ମାର୍ଗ ଧରିଲା ପରେ, ଆଧ୍ୟାତ୍ମିକ ଜୀବନ ଦେଇ ଜୀବ ତାର ଆତ୍ମିକ ଉନ୍ନତିକୁ

ଫେରିଗୃଳାଲାବେଳେ, ସାଧକର କାମ ଓ କ୍ରୋଧ ଉଭୟପ୍ରତି ସାବଧାନ ହେବା ଉଚିତ । ସକଳ ଧର୍ମରେ ତେଣୁ କାମ ଓ କ୍ରୋଧ ନିନ୍ଦିତ । ଉପରେ ବର୍ଣ୍ଣିତ'ରାଗ ଓ ଦ୍ୱେଷ ଯାହା, କାମ ଓ କ୍ରୋଧ ମଧ୍ୟ, ସେହି ଏକା କଥା । ବୌଦ୍ଧ ଧର୍ମରେ ଏହି କାମକ୍ରୋଧ 'ଲୋଭ'-'ଦ୍ୱେଷ'ରୂପେ ପରିଜ୍ଞାତ । ପୁଣି ନିବୃତ୍ତି-ମାର୍ଗ ବା ଆଧ୍ୟାତ୍ମିକ ସାଧନା କଥା ଛାଡ଼ିଦେଲେ ମଧ୍ୟ, ପ୍ରବୃତ୍ତି ମାର୍ଗରେ ବି ପ୍ରତ୍ୟେକ ନାଗରିକ କାମ ଓ କ୍ରୋଧପ୍ରତି ସାବଧାନ ରହିବା ଉଚିତ । ସାମାନ୍ୟ ଜଣେ ଦୁଇ ଜଣ ଲୋକର କ୍ରୋଧରୁ ବୀଭତ୍ସ ସାଂପ୍ରଦାୟିକ ଦଙ୍ଗାହାଙ୍ଗାମା ଘଟିଯିବା ଭାରତରେ ସୁପରିଚିତ ଘଟଣା ; ଏବଂ ମାତ୍ର ଏକ ଏକ ବ୍ୟକ୍ତିର କାମ-ପ୍ରବଣତା ଏକ ଏକ ସମାଜରେ କି ବିଭ୍ରାଟ ସୃଷ୍ଟି କରିଥାଏ, ତାହା ମଧ୍ୟ କାହାକୁ ଅଜଣା ନୁହେଁ । ଗୀତା ଯେ ଏ ଉଭୟଙ୍କୁ ସଭ୍ୟତାର, ଭଦ୍ର ସମାଜର ବା ଉନ୍ନତ ଜୀବନର ଘୋରତମ ଶତ୍ରୁ ବୋଲି ବର୍ଣ୍ଣନା କରିଛନ୍ତି, ଏହା ଯଥାର୍ଥ କଥା । ଆମର ପୁରାଣମାନଙ୍କରେ ବହୁ ସାଧନାପରେ ମଧ୍ୟ ମୁନିଋଷିଙ୍କର କାମ ଓ କ୍ରୋଧ ଦେଇ ସ୍ୱ-ଧର୍ମରୁ ଅଧଃପତନ ବାରବାର ବର୍ଣ୍ଣିତ ହୋଇ ରହିଛି । ଗୀତା ତାହାହିଁ ସ୍ମରଣ କରାଇଦେଉଛନ୍ତି । ପ୍ରତ୍ୟେକ ନର ଓ ନାରୀର ଯଦି ବ୍ରହ୍ମ-ମିଳନହିଁ ସ୍ୱ-ଧର୍ମ ହୁଏ, ତେବେ ପାର୍ଥିବ ରାଗ (କାମ) ବା ଦ୍ୱେଷ (କ୍ରୋଧ) ଏକାନ୍ତ ଅବାନ୍ତର ଓ ଅକାରଣ ବିଘ୍ନ । ପୁଣି ମନେ ରଖିବାକୁ ହେବ ଯେ, ରାଗ ଓ ଦ୍ୱେଷ ମୂଳତଃ ଗୋଟାଏ କଥା— କାମ । କାମର ବିଘ୍ନହିଁ କ୍ରୋଧ, ଅସନ୍ତୋଷ, ଦ୍ୱେଷ, ହିଂସା, ଈର୍ଷାଦି ସକଳ ମାନସିକ ବିକାର ।

କାମହିଁ ପ୍ରକୃତିର ପ୍ରଧାନ ଅସ୍ତ୍ର, ପୁରୁଷକୁ ନିଜାୟତ୍ତ କରି ରଖିବାରେ । କାମର ଅନ୍ୟ ନାମ ମଧ୍ୟ ବାସନା ଓ ତୃଷ୍ଣା । ଯୌନ ସୁଖ, ଭୋଜନ-ସୁଖ, ଧନ-କ୍ଷମତା, ଲୋକ-ମାନ୍ୟତା ଆଦି ପ୍ରତି ଅଭିଳାଷ ମନୁଷ୍ୟର ସହଜାତ ବାସନା । ବାସନା ବିନାଶହିଁ ମୁକ୍ତି ବା ନିର୍ବାଣ, ଯାହାହିଁ ସ୍ୱ ଧର୍ମ । ଫଳାଶା ରଖି କାମ କରିବା ବା କାମରେ ଅହଂକାର ରଖିବା, ମନୁଷ୍ୟର ପୂର୍ବଜନ୍ମସଂଚିତ ବାସନାସବୁକୁ ଧ୍ୱଂସ କରିବା ପରିବର୍ତ୍ତିରେ ମନୁଷ୍ୟ-ଚିତ୍ତରେ ନୂତନ ନୂତନ ବାସନାର ଲେପ ଛାଡ଼ିଯାନ୍ତି, ଯାହାଯୋଗୁଁ ସେହି ସେହି ବାସନାର ଶେଷ ପରିଣତିପାଇଁ ମନୁଷ୍ୟ ବାରମ୍ବାର ଜନ୍ମ ନେବାକୁ ବାଧ୍ୟ । ତେଣୁ ଯେଉଁମାନେ ମନୁଷ୍ୟ ଜୀବନର ଶ୍ରେଷ୍ଠ ଆଦର୍ଶ ଇହଜୀବନରେ ସ୍ଥିତ-ପ୍ରଜ୍ଞତା-ଲାଭ ବା ମୃତ୍ୟୁପରେ ବ୍ରହ୍ମ-ନିର୍ବାଣ-ଲାଭ ଚାହାନ୍ତି, ସେମାନେ ସ୍ୱ-ଧର୍ମପ୍ରତି ଜାଗ୍ରତ ରହିବା ଉଚିତ । ଏହି ସ୍ୱ-ଧର୍ମାଚରଣ-ପଥରେ ପ୍ରଧାନ ବାଧା ଯେ କାମ ଓ ତାର ଆରପଟ କ୍ରୋଧ, ଏହା ସାଧକ ଯେପରି ଆଦୌ ବିସ୍ମୃତ ହେବେ ନାହିଁ ।

୩୮

ଧୂମେନାବ୍ରିୟତେ ବହ୍ନିର୍ଯଥାଦର୍ଶୋ ମଲେନ ଚ
ଯଥୋଲ୍ବେନାବୃତୋ ଗର୍ଭସ୍ତଥା ତେନେଦମାବୃତମ୍ । ୩୮ ।

ଯଥା (ଯେପରି) ବହ୍ନିଃ (ନିଆଁ) ଧୂମେନ (ଧୂଆଁଦ୍ୱାରା) ଆବ୍ରିୟତେ (ଆବୃତ ହୋଇଥାଏ), ଯଥା (ଯେପରି) ଆଦର୍ଶଃ (ଦର୍ପଣ) ମଲେନ (ମଇଳାଦ୍ୱାରା) [ଆବୃତ ହୋଇପଡ଼ିଥାଏ], ଯଥା (ଯେପରି) ଉଲ୍ବେନ (ଜରାୟୁଦ୍ୱାରା) ଗର୍ଭଃ ଆବୃତଃ (ଗର୍ଭ ଆବୃତ ହୋଇଥାଏ) ତଥା (ସେହିପରି) ତେନ (କାମ ବା କ୍ରୋଧଦ୍ୱାରା) ଇଦଂ (ଏହି ଜ୍ଞାନ) ଆବୃତଂ (ଆବୃତ ରହିଥାଏ) ।

**ଅନୁବାଦ**

ନିଆଁ ଯେପରି ଧୂଆଁରେ ଘୋଡ଼ିହୋଇପଡ଼ିଥାଏ, ଦର୍ପଣ ଯେପରି ଧୂଳିରେ ଘୋଡ଼େଇହୋଇପଡ଼ିଥାଏ ଏବଂ ଭ୍ରୂଣ ଯେପରି ଜରାୟୁଦ୍ୱାରା ଆବୃତ ରହିଥାଏ, ସେହିପରି ଜ୍ଞାନ ଆବୃତ ରହିଯାଏ କାମକ୍ରୋଧଦ୍ୱାରା ।

**ବିଶେଷ ଭାଷ୍ୟ**

ଧୂଆଁ ନିଆଁପ୍ରତି, ଧୂଳି ଦର୍ପଣପ୍ରତି ଏବଂ ଜରାୟୁ ଗର୍ଭସ୍ଥ ଶିଶୁପ୍ରତି ଯେଉଁ ଆବରଣ ସୃଷ୍ଟି କରିଥାନ୍ତି, ଅନ୍ତରର ସମୁଜ୍ଜ୍ୱଳ ଆତ୍ମା ସେହିପରି ନିମ-ଘନ ଭାବରେ ସତ୍ତ୍ୱ, ରଜ ଓ ତମ ଗୁଣଦ୍ୱାରା ଆବୃତ ରହିଥିବାରୁ ଆମେ ତାକୁ ଦେଖିପାରୁ ନା । ସତ୍ତ୍ୱ ଗୁଣର ଆବରଣ ଧୂଆଁ ସହିତ ତୁଳିତ, ଅର୍ଥାତ୍ ତାହା ବିବେକ-ବିଗ୍ରହର ବାୟୁରେ ଆପେ ଆପେ ଉଡ଼ିଯିବ । ରଜଗୁଣ ଦର୍ପଣଉପର ଧୂଳି ସହିତ ତୁଳିତ । ଫୁଙ୍କିଲେ ବା କନାରେ ପୋଛିଲେ ଯାଇ ସେ ଧୂଳି ଯିବ । କିନ୍ତୁ 'ତମ'ର ଜରାୟୁ-ଆବରଣ ଫାଟିବାକୁ ସମୟ ନେବ । ତାହା ଶିଶୁର ବର୍ଦ୍ଧନ-ଉପରେ ନିର୍ଭର କରେ, ଅର୍ଥାତ୍ ସାଧକର ନିରବଚ୍ଛିନ୍ନ ବ୍ୟାୟାମଉପରେ ନିର୍ଭର କରେ ।

ଏହି ଉପମାଗୁଡ଼ିକ ଦେଇ ଗୀତା, ଆମେ ଆମ କାମକ୍ରୋଧ-ପ୍ରବଣତା ପ୍ରତି କିପ୍ରକାର ସାବଧାନ ରହିବା ଉଚିତ, ତାହାହିଁ ସୂଚାଇଦେଇଛନ୍ତି । ପର ଶ୍ଳୋକରେ ଏହା ପ୍ରସାରିତ ହୋଇଛି ।

୩୯

ଆବୃତଂ ଜ୍ଞାନମେତେନ ଜ୍ଞାନିନୋ ନିତ୍ୟବୈରିଣା
କାମରୂପେଣ କୌନ୍ତେୟ ଦୁଷ୍ପୂରେଣାନଲେନ ଚ । ୩୯ ।

କୌନ୍ତେୟ (ହେ ଅର୍ଜୁନ), ଜ୍ଞାନିନଃ (ଜ୍ଞାନୀ ଲୋକମାନଙ୍କର ମଧ୍ୟ) ନିତ୍ୟ-ବୈରିଣା (ଚିରଶତ୍ରୁ) ଏତେନ (ଏହି) କାମରୂପେଣ (କାମରୂପକ) ଦୁଷ୍ପୂରେଣ (ଦୁଷ୍ପୂରଣୀୟ, ଅର୍ଥାତ୍ ଯାହାର ଇଚ୍ଛାପୂରଣ ଅସମ୍ଭବ, ଏପରି) ଅନଲେନ (ଅଗ୍ନି-ଦ୍ୱାରା) ଜ୍ଞାନଂ (ଜ୍ଞାନ) ଆବୃତମ୍ (ଆବୃତ ରହିଥାଏ) ।

## ଅନୁବାଦ

"ହେ ଅର୍ଜୁନ, ସାଧାରଣଙ୍କର କଥା ଛାଡ଼ିଦିଅ, ଜ୍ଞାନୀ ଲୋକଙ୍କ ବୁଦ୍ଧି ମଧ୍ୟ ଦୁଷ୍ପୂରଣୀୟ ଏହି କାମରୂପକ ଅଗ୍ନିଦ୍ୱାରା ଆବୃତ ହୋଇ ରହିଥାଏ ।"

## ବିଶେଷ ଭାଷ୍ୟ

ସାଧାରଣ ଲୋକଙ୍କ କଥା ଛାଡ଼, ଜ୍ଞାନୀ ଲୋକଙ୍କ ଜ୍ଞାନ ମଧ୍ୟ ଏହି କାମାଗ୍ନି-ଦ୍ୱାରା ଆବୃତ ହୋଇ ରହିଥାଏ ଅର୍ଥାତ୍ ଏକାବେଳକେ ଲିଭିଯାଇ ନ ଥାଏ, ଅନୁକୂଳ ଅବସ୍ଥା ପାଇଲେ ବାହାରିପଡ଼େ । ଦେଖିବାର କଥା ଏହି ଯେ, ଗୀତା ଆଉ 'କ୍ରୋଧ'ର ଉଲ୍ଲେଖ କରୁନାହାନ୍ତି—କେବଳ 'କାମ' କଥା କହୁଛନ୍ତି । କାରଣ 'କ୍ରୋଧ' 'କାମ'ର ନେଗେଟିଭ୍ ବା ବିପରୀତାତ୍ମକ ପ୍ରକାଶ ମାତ୍ର । ବିଫଳ କାମହିଁ କ୍ରୋଧ । ମାନବିକ ବ୍ୟକ୍ତିତ୍ୱର ତେଣୁ ଏକମାତ୍ର ମୌଳିକ ଶତ୍ରୁ ହେଲା 'କାମ', ଯାହାକି ବୁଦ୍ଧବାଣୀରେ 'ତୃଷ୍ଣା' ନାମରେ ପରିଚିତ ଏବଂ ଇଂରାଜୀରେ ଯାହାର ନାମ 'Desire' । ଯେଉଁମାନେ ଆଧ୍ୟାତ୍ମିକ ଜୀବନ ଚାହାନ୍ତି, ତାଙ୍କର ସଦା ଜାଗ୍ରତ ଦୃଷ୍ଟି ରହିବା ଉଚିତ ଏହି 'କାମ'ପ୍ରତି । କିନ୍ତୁ ଏହି କାମ ଥାଏ କେଉଁଠି ? ଆସେ କେଉଁଠୁ ? ତା ଜାଣିଲେ ଯିନା ସାଧକ ସାବଧାନ ହେବେ । ପରବର୍ତ୍ତୀ ଶ୍ଳୋକ ତାହାହିଁ ନିର୍ଦ୍ଦେଶ କରୁଛନ୍ତି ।

**୪୦**

ଇନ୍ଦ୍ରିୟାଣି ମନୋବୁଦ୍ଧିରସ୍ୟାଧିଷ୍ଠାନମୁଚ୍ୟତେ
ଏତୈର୍ବିମୋହୟତ୍ୟେଷ ଜ୍ଞାନମାବୃତ୍ୟ ଦେହିନମ୍ । ୪୦ ।

ଇନ୍ଦ୍ରିୟାଣି (ଚକ୍ଷୁ-କର୍ଣ୍ଣାଦି ଇନ୍ଦ୍ରିୟସକଳ) ମନଃ, ବୁଦ୍ଧିଃ (ପୁଣି ମନ ଓ ମନର ଅନ୍ତରସ୍ଥ ବୁଦ୍ଧି) ଅସ୍ୟ ଅଧିଷ୍ଠାନଂ (ଏହାର ବାସସ୍ଥାନ ବା ଆଶ୍ରୟସ୍ଥଳ) ଉଚ୍ୟତେ (ବୋଲି କଥିତ ହୁଏ) । ଏଷଃ (ଏହି କାମ) ଏତୈଃ (ଏଇମାନଙ୍କଦ୍ୱାରା) ଜ୍ଞାନଂ ଆବୃତ୍ୟ ( ଜ୍ଞାନକୁ ଘୋଡ଼ାଇଦେଇ ) ଦେହିନଂ (ଦେହଧାରୀ ଜୀବମାନଙ୍କୁ) ବିମୋହୟତି (ମୋହାଭିଭୂତ କରିପକାଏ) ।

## ଅନୁବାଦ

"ହେ ଅର୍ଜୁନ, କାମ ମନୁଷ୍ୟର ସମଗ୍ର ସତ୍ତାରେ ବ୍ୟାପ୍ତ ଜାଣିବ— ଚକ୍ଷୁକର୍ଣ୍ଣାଦି ଇନ୍ଦ୍ରିୟସକଳ, ମନ, ବୁଦ୍ଧି—ଏ ସମସ୍ତହିଁ କାମର ଅଧିଷ୍ଠାନ । କାମ ଏ ସମସ୍ତଙ୍କୁ ନିଜ ବ୍ୟବହାରରେ ଏପରି ଲଗାଇଥାଏ ଯେ, ଜ୍ଞାନ ସଂପୂର୍ଣ୍ଣରୂପେ ଲୁଚିଯାଏ, ଏବଂ ଲୋକ ମୋହାଭିଭୂତ ପରି କାମ କରେ ।"

## ବିଶେଷ ଭାଷ୍ୟ

ଏହି ଶ୍ଳୋକରେ ଗୀତା, ଆମ ପ୍ରତ୍ୟେକର ବ୍ୟକ୍ତିତ୍ୱଭିତରେ କାମ ବା ତୃଷ୍ଣାର ପରିବ୍ୟାପ୍ତତା ଓ ଓତପ୍ରୋତତା ସୂଚିତ କରି ରଖୁଛନ୍ତି, ଯେପରିକି ଆମେ ସାବଧାନ ରହିପାରିବା । ଆମେ ସାଧାରଣତଃ ଭାବିନେଉଁ ଯେ, କାମ-ଭାବ (ଯୌନ-ସୁଖାଶା) କେବଳ ଆମ ଜନନେନ୍ଦ୍ରିୟର କାମ । ଏଠାରେ 'କାମ' ଶବ୍ଦ-ତଳେ ଅବଶ୍ୟ ଯୌନ-ସୁଖାଶା ଅଛି । କିନ୍ତୁ ତା ସାଥେ ସାଥେ ଅନ୍ୟ ସକଳ ସୁଖାଶା ମଧ୍ୟ ବ୍ୟଞ୍ଜିତ । ଭୋଜନ-ସୁଖାଶା ମଧ୍ୟ ଏକ କାମ । କିନ୍ତୁ ଯୌନ ସୁଖାଶା ଯେପରି କେବଳ ଜନନେନ୍ଦ୍ରିୟରୁ ଆସେ ନା, ଭୋଜନ-ସୁଖାଶା ସେହିପରି ମଧ୍ୟ ରସନାରୁ ଆସେ ନା, ସେସବୁ ଆସନ୍ତି ଆମର ଅବଚେତନାରୁ, ମନର ଗଭୀର ସ୍ତରରୁ । ଏପରିକି ମନର ନ୍ୟାୟାନ୍ୟାୟ ବିଚାର କରିବା ଶକ୍ତି, ଯାହାକୁହିଁ 'ବୁଦ୍ଧି' କୁହାଯାଏ, ସେ ବି ଅଧିକାଂଶ ସମୟରେ ଆମ କାମ-ପ୍ରବଣତାକୁ ସମର୍ଥନ କଲାଭଳି ଯୁକ୍ତି ତିଆରି କରି ଥୋଇଦେଇଥାଏ । ଅର୍ଥାତ୍ କାମ, ବୁଦ୍ଧିକୁ ମଧ୍ୟ ନିଜ କାମରେ ଲଗାଇପାରେ । ଏବେ ସକଳପ୍ରକାର ଯୌନ ବ୍ୟଭିଚାରପାଇଁ ଫ୍ରୟେଡ୍‌ଙ୍କୁ ଆଣି ଠିଆ କରାଯାଉଛି । କିନ୍ତୁ ଦେଶେ ଦେଶେ ତାର ବିଭୀଷିକା ଦେଖା ଦେଇସାରିଲାଣି ।

ତୃଷ୍ଣା ବା କାମ ଯେ କେବଳ ଏକ ବାହ୍ୟ ଇନ୍ଦ୍ରିୟର କାମ ନୁହେଁ, ଏହା ହୁଏତ ଦୁଇ ହଜାର ବର୍ଷତଳେ ଗୀତାଙ୍କୁ ଅଜଣା ନ ଥିଲା । ଗୀତାକାର ଜାଣିଥିଲେ ଯେ, ଏହା ଆମର ସମଗ୍ର ବ୍ୟକ୍ତିତ୍ୱଭିତରେ ପରିବ୍ୟାପ୍ତ । ତେଣୁ କେହି ବାହ୍ୟ ଇନ୍ଦ୍ରିୟକୁ ସଂଯତ ରଖି ଭାବିନଅନ୍ତି ଯେ, ସେ କାମକୁ ଜୟ କଲେ, ଅଥଚ ସ୍ଥାନକାଳପାତ୍ର ସଂଯୋଗ ଘଟିଲେ ସେମାନଙ୍କର ଗୋଡ଼ ଖସିଯାଏ, କାରଣ ସେ ତାଙ୍କ ଅବଚେତନ ସ୍ତରରୁ ଏ ଭାବକୁ ପୋଛିବାକୁ ଭୁଲିଯାଇଥାନ୍ତି । କିଂଚିତ୍ ପୂର୍ବେ ଯେପରି କୁହାଯାଇଛି, ଆମ ପୁରାଣମାନଙ୍କରେ ଅପ୍ସରାମାନଙ୍କ ଦେଇ ଋଷିମାନଙ୍କର ତପୋଭଙ୍ଗ କାହାଣୀ ଓ ସଂଯମୀ ଲୋକମାନଙ୍କର ଏହି ଅବଚେତନୀୟ ଦୁର୍ବଳତାହିଁ ସୂଚିତ କରେ ।

ସମସାମୟିକ କାଳରେ, କାମଜୟର ପରମ ଦୃଷ୍ଟାନ୍ତ ହେଉଛନ୍ତି ଶ୍ରୀ ରାମକୃଷ୍ଣ । ସେହି ଲୋକୋତ୍ତର ପୁରୁଷ ସତ୍ୟରେ କାମିନୀ ଓ କାଞ୍ଚନ ତ୍ୟାଗ କରିଥିଲେ । ତାହା ଖାଲି କଥା ନ ଥିଲା ତାଙ୍କଠାରେ । ତାଙ୍କର ସମଗ୍ର ଅବଚେତନରୁ ମଧ୍ୟ ତତ୍‌ସଂପୃକ୍ତ ସକଳ ଭାବ ସଂପୂର୍ଣ୍ଣ ଅପସାରିତ ହୋଇ-ଯାଇଥିଲା । ଫଳରେ ନିଜ ସ୍ତ୍ରୀ ଏପରିକି, ପ୍ରତ୍ୟେକ ସ୍ତ୍ରୀଲୋକହିଁ ତାଙ୍କ ନିକଟରେ 'ମା' ହୋଇଯାଇଥିଲେ । ନିଜେ ବିବେକାନନ୍ଦ ମଧ୍ୟ ଗୁରୁଙ୍କୁ ପରୀକ୍ଷା କରିବାପାଇଁ ସେ ଶୋଇଥିବା ଅବସ୍ଥାରେ ତାଙ୍କ ଶେଯତଳେ ଟଙ୍କାଟିଏ ଗୁଞ୍ଜିଦେବାରୁ ଶ୍ରୀ ରାମକୃଷ୍ଣଙ୍କର ହାତ-ଆଙ୍ଗୁଠିସବୁ କିପରି କେଁପାକେଁପା ହୋଇଗଲା ଓ ସେ କିପରି ଦୁଃସ୍ୱପ୍ନ ଦେଖିଲାପରି ଆତଙ୍କରେ ଉଠିପଡ଼ିଲେ, ସେହି ଅଦ୍ଭୁତ ବର୍ଣ୍ଣନା ସମସ୍ତେ ଜାଣନ୍ତି ।

ସମଗ୍ର ବିଶ୍ୱର ଧର୍ମ-ସାହିତ୍ୟରେ ଏପ୍ରକାର ପରମ ବରେଣ୍ୟ ଦୃଷ୍ଟାନ୍ତ ଆଉ ନାହିଁ ।

ଗୀତା ଯେ କାମଭାବକୁ ଆମର ଇନ୍ଦ୍ରିୟ, ମନ, ବୁଦ୍ଧି, ସବୁଠି ନେଇ ପହଁଚେଇଛନ୍ତି, ତାର ଜ୍ୱଳନ୍ତ ଉଦାହରଣ ଓ ସ୍ପଷ୍ଟୀକରଣ ହେଉଛି ପରମହଂସଙ୍କର ଏହି ଅସାଧାରଣ ବ୍ୟବହାର । ଅନ୍ୟ କଥାରେ, ପ୍ରକୃତ 'କାମଜୟ' ଯେ ଅତି କଠିନ, ଗୀତାଙ୍କର ସେହି ବାଣୀ ଆଦୌ ଅତିରଞ୍ଜିତ ନୁହେଁ, ଚାଟକେ !

୪୧

ତସ୍ମାତ୍ ତ୍ୱମିନ୍ଦ୍ରିୟାଣ୍ୟାଦୌ ନିୟମ୍ୟ ଭରତର୍ଷଭ
ପାପ୍ମାନଂ ପ୍ରଜହି ହ୍ୟେନଂ ଜ୍ଞାନବିଜ୍ଞାନନାଶନମ୍ । ୪୧ ।

ଭରତର୍ଷଭ (ହେ ଅର୍ଜ୍ଜୁନ) ତସ୍ମାତ୍ (ସେହି ହେତୁରୁ) ତ୍ୱଂ (ତୁମେ) ଆଦୌ (ପ୍ରଥମେ) ଇନ୍ଦ୍ରିୟାଣି (ଇନ୍ଦ୍ରିୟମାନଙ୍କୁ) ନିୟମ୍ୟ (ସଂଯତ କରି) ଜ୍ଞାନବିଜ୍ଞାନନାଶନଂ (ଜ୍ଞାନ ଓ ବିଜ୍ଞାନ ନାଶକାରୀ) ପାପ୍ମାନଂ ଏନଂ (ପାପରୂପୀ ଏହି କାମକୁ) ହି ପ୍ରଜହି (ଭଲ କରି ବିନାଶ କର) ।

**ଅନୁବାଦ**

"ହେ ଅର୍ଜ୍ଜୁନ, ତୁମେ ସର୍ବାଦୌ ସକଳ ପାପର ଉତ୍ସସ୍ୱରୂପ ଜ୍ଞାନବିଜ୍ଞାନ-ନାଶକାରୀ କାମକୁ ଜୟ କରିବା ପାଇଁ ସକଳ ଇନ୍ଦ୍ରିୟଙ୍କୁ ବଶୀଭୂତ କର, କାରଣ ସକଳ ଇନ୍ଦ୍ରିୟରେ କାମର ବସତି ।"

## ବିଶେଷ ଭାଷ୍ୟ

ଏ ଶ୍ଳୋକରେ ଥିବା ଜ୍ଞାନ ଓ ବିଜ୍ଞାନ ଶବ୍ଦର ନାନା ଟୀକା ଆମେ ଦେଖୁଁ । ସେସବୁ ଭିତରେ ଆମେ 'ବିଜ୍ଞାନ'କୁ ଏବର ଧାରଣା ଅନୁସାରେ ବସ୍ତୁର ଜ୍ଞାନ ବା ଜାଗତିକ ଜ୍ଞାନ ଏବଂ 'ଜ୍ଞାନ'କୁ ଏକକର ବା ଆତ୍ମିକ ଜ୍ଞାନ ବୋଲି ଧରିଲେ କିଛି କ୍ଷତି ନାହିଁ ।

କାମ ଉଭୟପ୍ରକାର ଜ୍ଞାନର ଶତ୍ରୁ ବୋଲି ଗୀତା କହୁଛନ୍ତି ଏବଂ ଏହା ଆମ ବ୍ୟକ୍ତିଭିତରେ ଓତପ୍ରୋତଭାବରେ ଓ ଗଭୀର ସ୍ତରରେ ବ୍ୟାପ୍ତ । ତେଣୁ ଗୀତା କହୁଛନ୍ତି ଯେ, ତାକୁ ପରାଜିତ କରିବାକୁ, ବଶକୁ ଆଣିବାକୁ ଆମକୁ ସଂଗ୍ରାମ କରିବାକୁ ହେବ ସକଳ ଇନ୍ଦ୍ରିୟଙ୍କ ସହିତ । କୌଣସି ଗୋଟିଏ ଇନ୍ଦ୍ରିୟ ଆମର ଆୟତ୍ତାଧୀନ ନ ଥିଲେ, କାମ ସେଇ ବାଟ ଦେଇ ପଶିଆସି ଆମଉପରେ ରାଜତ୍ୱ କରିବ, ଧର୍ମର ବାଟରୁ ନେଇଯିବ ।

### ୪୨

ଇନ୍ଦ୍ରିୟାଣି ପରାଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ
ମନସସ୍ତୁ ପରାବୁଦ୍ଧିର୍ଯୋ ବୁଦ୍ଧେଃ ପରତସ୍ତୁ ସଃ । ୪୨ ।

ଇନ୍ଦ୍ରିୟାଣି (ଇନ୍ଦ୍ରିୟସବୁ) ପରାଣି ଆହୁଃ (ଆମ ଦେହରେ ଶ୍ରେଷ୍ଠ ବୋଲି କୁହାଯାଇଥାଏ) । ଇନ୍ଦ୍ରିୟେଭ୍ୟଃ ମନଃ ପରଂ [କିନ୍ତୁ] (ଇନ୍ଦ୍ରିୟମାନଙ୍କଠାରୁ ମନହିଁ ଶ୍ରେଷ୍ଠ) । ମନସଃ ତୁ ବୁଦ୍ଧି ପରାଃ [ପୁଣି] (ମନଠାରୁ ବୁଦ୍ଧି ଶ୍ରେଷ୍ଠ) । ଯଃ ତୁ (କିନ୍ତୁଯିଏ)ବୁଦ୍ଧେଃ ପରତଃ (ବୁଦ୍ଧିର ମଧ୍ୟ ଉପରେ) [ତାହା ହେଉଛନ୍ତି] ସଃ(ଆତ୍ମା) ।

## ଅନୁବାଦ

"ହେ ଅର୍ଜୁନ, ଜାଣିରଖ ଯେ ତୁମର ସ୍ଥୂଳ ଦେହଠାରୁ ଇନ୍ଦ୍ରିୟସବୁ ଶ୍ରେଷ୍ଠ, ଇନ୍ଦ୍ରିୟମାନଙ୍କଠାରୁ ମନ ଓ ମନଠାରୁ ବୁଦ୍ଧି ଶ୍ରେଷ୍ଠ ଏବଂ ବୁଦ୍ଧିଠାରୁ ଯେ ଶ୍ରେଷ୍ଠ ହୋଇ ସର୍ବୋପରି ଅବସ୍ଥିତ, ସେ ହେଉଛନ୍ତି ଆତ୍ମା ।"

## ବିଶେଷ ଭାଷ୍ୟ

ଗୀତା ପୂର୍ବ ଶ୍ଳୋକରେ କାମଜୟ ପ୍ରସଙ୍ଗରେ ସ୍ଥୂଳ ଇନ୍ଦ୍ରିୟମାନଙ୍କଠାରୁ କ୍ରମସୂକ୍ଷ୍ମତର ସ୍ତରରେ ଭିତରକୁ ଭିତରକୁ ଯାଇ ବୁଦ୍ଧିପର୍ଯ୍ୟନ୍ତ ଆମକୁ ନେଇ ଯାଇଥିଲେ । କାମର ପ୍ରଭାବ—ଇନ୍ଦ୍ରିୟ, ମନ ଓ ବୁଦ୍ଧି, ସବୁଠି । ତେଣୁ ତାକୁ ଜୟ କରିବାରେ ଆମକୁ ଅତ୍ୟନ୍ତ ଜାଗ୍ରତ ରହିବାକୁ ହେବ । ତେବେ, ଆମେ ଯଦି ବୁଦ୍ଧି ସ୍ତରରେ ମଧ୍ୟ କାମକୁ ଜୟ କରିପାରିବା, ଅନ୍ୟ ଦୁଇ ସ୍ତରରେ

କାମଜୟ ଆମପ୍ରତି ସହଜତର ହେବ । ବୁଦ୍ଧି ସ୍ତରରେ ଜୟ ହେଲେ ଯାଇ କାମ ସ୍ତରର ଜୟ ସହଜ ହେବ, ପୁଣି ମନ ସ୍ତରରେ ଜୟ ହେଲେ ଯାଇ କାମ ଇନ୍ଦ୍ରିୟ ସ୍ତରରେ ସତ୍ୟରେ ଆମ ଆୟତ୍ତକୁ ଆସିବ । କିନ୍ତୁ ଆମକୁ ସଂଗ୍ରାମଟା ଆରମ୍ଭ କରିବାକୁ ହେବ ଇନ୍ଦ୍ରିୟ ସ୍ତରରୁ । ସେଠୁ ଆମେ ଯିବା କ୍ରମେ ମନକୁ ଓ ମନରୁ ବୁଦ୍ଧିକୁ । ଗୀତା ବର୍ତ୍ତମାନ କହୁଛନ୍ତି ଯେ, ବୁଦ୍ଧିର ଉପରେ ଆଉ ଏକ ଚେତନ-ସ୍ତର ଅଛି । ତାହା ସାଧାରଣତଃ 'ଆତ୍ମା' ବୋଲି ବିଦିତ ହେଲେହେଁ ଏଠି ଗୀତା ତାକୁ ବର୍ଣ୍ଣନା କରିଛନ୍ତି କେବଳ 'ସେ' ବୋଲି । Soul ଅର୍ଥରେ 'ଆତ୍ମା' ଶବ୍ଦ ଗୀତା ଏପର୍ଯ୍ୟନ୍ତ ବ୍ୟବହାର କରି ନାହାନ୍ତି ।

କଠୋପନିଷଦ୍(୧।୩)ରେ ଅବିକଳ ସମାନ୍ତରାଳ ଶ୍ଳୋକ ପାଠକେ ଦେଖିବେ—

ଇନ୍ଦ୍ରିୟେଭ୍ୟଃ ପରାହ୍ୟର୍ଥା
 ଅର୍ଥେଭ୍ୟଶ୍ଚ ପରଂ ମନଃ
ମନସସ୍ତୁ ପରା ବୁଦ୍ଧି-
 ର୍ବୁଦ୍ଧେରାତ୍ମା ମହାନ୍ ପରଃ ।
ମହତଃ ପରମବ୍ୟକ୍ତଂ
 ଅବ୍ୟକ୍ତାତ୍ ପୁରୁଷଂ ପରଃ
ପୁରୁଷାନ୍ନ ପରଂ କିଂଚିତ୍
 ସା କାଷ୍ଠା, ସା ପରା ଗତିଃ ।

**୪୩**

ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା ସଂସ୍ତଭ୍ୟାତ୍ମାନମାତ୍ମନା
ଜହି ଶତ୍ରୁଂ ମହାବାହୋ କାମରୂପଂ ଦୁରାସଦମ୍ । ୪୩ ।

ମହାବାହୋ (ହେ ଅର୍ଜୁନ), ଏବଂ (ଏହିପ୍ରକାରେ) ବୁଦ୍ଧେଃ ପରଂ ବୁଦ୍ଧ୍ୱା (ବୁଦ୍ଧିଠାରୁ ତାଙ୍କୁ ଶ୍ରେଷ୍ଠ ବୋଲି ଜାଣି) ଆତ୍ମାନଂ ଆତ୍ମନା ସଂସ୍ତଭ୍ୟ (ଆତ୍ମା-ଦ୍ୱାରାହିଁ ଆତ୍ମାକୁ ସଂଯତ କରି) କାମରୂପଂ ଦୁରାସଦଂ (କାମରୂପକ ଦୁର୍ବିଜ୍ଞେୟ) ଶତ୍ରୁଂ ଜହି (ଶତ୍ରୁକୁ ବିନାଶ କର) ।

**ଅନୁବାଦ**

"ହେ ମହାଶକ୍ତିଶାଳୀ ଅର୍ଜୁନ, ଆମର ବୁଦ୍ଧିଠାରୁ ମଧ୍ୟ ଯେ ଶ୍ରେଷ୍ଠ ସେହି ଆତ୍ମା-ଦ୍ୱାରାହିଁ ନିଜର ବ୍ୟକ୍ତିତ୍ୱକୁ (ଆତ୍ମାକୁ) ସଂଯତ କରି ଦୁର୍ଜୟ କାମକୁ ହତ୍ୟା କର ।"

## ବିଶେଷ ଭାଷ୍ୟ

କାମଜୟ ବ୍ୟାପାରରେ ସାଧକ ଇନ୍ଦ୍ରିୟମାନଙ୍କଠାରୁ ଆରମ୍ଭ କଲେହେଁ କ୍ରମେ ଭିତରକୁ ଭିତରକୁ ଯାଇ ମନ, ତାପରେ ବୁଦ୍ଧି ଏବଂ ଶେଷରେ ଆତ୍ମା ଦର୍ଶନ ଦେଇହିଁ ସ୍ପୃହାକୁ ନିର୍ମୂଳ କରିବାପାଇଁ ଗୀତା ଶେଷ ଉପଦେଶ ଦେଉଛନ୍ତି, ଯାହାହିଁ ଶ୍ରୀ ରାମକୃଷ୍ଣ ପରମହଂସଙ୍କ ଜୀବନରେ ପ୍ରମାଣିତ ହୋଇସାରିଛି । ପରମହଂସ ଦେବଙ୍କୁ ମଧ୍ୟ କାମଜୟ କରିବାପାଇଁ ତାଙ୍କ 'ମା'ଙ୍କ ଆଶ୍ରୟ ନେବାକୁ ପଡ଼ିଥିଲା । ମନୁଷ୍ୟ ସ୍ୱତଃ ଦୁର୍ବଳ । ତାଠାରୁ ଅଧିକ ଶକ୍ତିଶାଳୀ ଈଶ୍ୱରଙ୍କ ଅନୁଗ୍ରହହିଁ ମନୁଷ୍ୟକୁ ନିଷ୍ପାପ କରିପାରେ ; ଏହାହିଁ ଖ୍ରୀଷ୍ଟୀୟ ଧାରଣା ଏବଂ ସେହି ତ୍ରାଣକର୍ତ୍ତା ଓ କରୁଣାମୟ ପରମେଶ୍ୱରଙ୍କୁ ପ୍ରାଣପୂର୍ଣ୍ଣ ପ୍ରାର୍ଥନାହିଁ ଏହି ମହାନ୍ ଧର୍ମର ମୁଖ୍ୟ ଆଧ୍ୟାତ୍ମିକ ସାଧନା । ବୌଦ୍ଧ ଧର୍ମ-ସାଧନାର ଦୁଇ ମୁଖ୍ୟ ଦିଗ ହେଲା ଶୀଳ ଓ ଭାବନା । ଶୀଳ ହେଲା ଦୈନନ୍ଦିନ ଜୀବନରେ ନୈତିକତା (ଶୀଳ) ଆଚରଣ କରିବା ଏବଂ କରୁଣା ଓ ମୈତ୍ରୀ ପ୍ରଭୃତି ଅଭ୍ୟାସ କରିବା । ଭାବନା ହେଲା ଜଗତର ସୁଖସବୁ କିପରି ଅନିତ୍ୟ, କିପରି ପରିଣାମରେ ଦୁଃଖଦାୟୀ ଓ ଜଞ୍ଜାଳମୟ, ବସ୍ତୁତଃ ନାରୀ-ଶରୀରରେ କଣ ଅଛି ପ୍ରଲୋଭିତ କରିବାକୁ, ଇତ୍ୟାଦି ଇତ୍ୟାଦି ସଂପର୍କରେ ଗଭୀର ଧ୍ୟାନ ଅଭ୍ୟାସ କରିବା । ମୋଟରେ ବୌଦ୍ଧମାନେ ତାହା ଲୋଭ-ଦ୍ୱେଷରୁ ମୁକ୍ତ କରି ନିର୍ବାଣ ଆଡ଼କୁ ଆମକୁ ନେଇଯିବ ବୋଲି ତାହାରି ଧ୍ୟାନ ଓ ଅଭ୍ୟାସ କରିଥାନ୍ତି ।

ପାଠକେ ନିଜ ରୁଚି ଅନୁସାରେ ଯେଉଁ ପନ୍ଥା ଗ୍ରହଣ କରିପାରନ୍ତି । ଗୀତାରେ ଏହି ପ୍ରତ୍ୟେକ ପନ୍ଥା ପରିବେଷିତ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି
ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ
ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ କର୍ମଯୋଗୋ ନାମ ତୃତୀୟୋଽଧ୍ୟାୟଃ

---

# ଚତୁର୍ଥ ଅଧ୍ୟାୟ

## ଜ୍ଞାନ ଯୋଗ

**ଅଧ୍ୟାୟ-ଦୀପିକା**

ଏହି ଅଧ୍ୟାୟରେ ଜ୍ଞାନ, କର୍ମ ଓ ସନ୍ନ୍ୟାସ ଏହି ତିନି ମାର୍ଗର ଆପେକ୍ଷିକ ମହତ୍ତ୍ୱ ଆଲୋଚିତ ହୋଇଛି । ଏହି ଅଧ୍ୟାୟଟି ପୂର୍ବ ତିନି ଅଧ୍ୟାୟ ପରି ଅର୍ଜୁନଙ୍କ ଜିଜ୍ଞାସାରୁ ଆରମ୍ଭ ହୋଇ ନାହିଁ—ଶ୍ରୀକୃଷ୍ଣ ତୃତୀୟ ଅଧ୍ୟାୟର ଅନୁକ୍ରମଣିକାରୂପେହିଁ ଏହି ଅଧ୍ୟାୟଟିକୁ ଆପେ ଆପେ ଆରମ୍ଭ କରିଛନ୍ତି ।

ଏହି ଅଧ୍ୟାୟର ବୈଶିଷ୍ଟ୍ୟ ହେଲା ଏହି ଯେ, ଏଥିରେ ଅବତାରବାଦ ପ୍ରତିପାଦିତ ହୋଇଛି ଏବଂ ଗୀତାର ବ୍ୟାଖ୍ୟାପକ ଶ୍ରୀକୃଷ୍ଣ ନିଜକୁ ଅବତୀର୍ଣ୍ଣ ଈଶ୍ୱର ବୋଲି ଘୋଷଣା କରିଛନ୍ତି । ପୁଣି ଏଥିରେ ଭିନ୍ନ ଭିନ୍ନ କର୍ମର ଆଲୋଚନା ଓ ଭିନ୍ନ ଭିନ୍ନ ଯଜ୍ଞର ଆଲୋଚନା ହୋଇ ଶେଷରେ 'ଜ୍ଞାନଯଜ୍ଞ'ରହିଁ ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଛି ।

ଶ୍ରୀ ଭଗବାନୁବାଚ

୧

ଇମଂ ବିବସ୍ୱତେ ଯୋଗଂ ପ୍ରୋକ୍ତବାନହମବ୍ୟୟମ୍
ବିବସ୍ୱାନ୍ ମନବେ ପ୍ରାହ ମନୁରିକ୍ଷ୍ୱାକବେଽବ୍ରବୀତ୍ । ୧ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) । ଅହଂ (ମୁଁ) ଇମଂ ଅବ୍ୟୟଂ ଯୋଗଂ (ଏହି ଶାଶ୍ୱତ ଯୋଗତତ୍ତ୍ୱକୁ) ବିବସ୍ୱତେ (ସୂର୍ଯ୍ୟଙ୍କୁ) ପ୍ରୋକ୍ତବାନ୍ (କହିଥିଲି) । ବିବସ୍ୱାନ୍ (ସୂର୍ଯ୍ୟ) ମନବେ (ମନୁଙ୍କୁ) ପ୍ରାହ (କହିଥିଲେ) । ମନୁଃ (ମନୁ) ଇକ୍ଷ୍ୱାକବେ (ଇକ୍ଷ୍ୱାକୁଙ୍କୁ) ଅବ୍ରବୀତ୍ (କହିଥିଲେ) ।

**ଅନୁବାଦ**

ଶ୍ରୀ ଭଗବାନ୍ କହିଲେ, "ତୁମକୁ ଯେଉଁ କର୍ମଯୋଗ ଓ ବୁଦ୍ଧିଯୋଗର କଥା କହିଆସୁଛି, ପ୍ରଥମେ ତାହା ମୁଁ ସୂର୍ଯ୍ୟଙ୍କୁ କହିଥିଲି, ସୂର୍ଯ୍ୟ ମନୁଙ୍କୁ କହିଥିଲେ,

ମନୁ ଇକ୍ଷ୍ୱାକୁଙ୍କୁ ମଧ୍ୟ କହିଥିଲେ । ଏହା ଆଜିର କଥା ନୁହେଁ । ଏହା ଶାଶ୍ୱତ ଓ ଅକ୍ଷୟ ।"

**ବିଶେଷ ଭାଷ୍ୟ**

ଗୀତା ଲେଖା ହେବା ପର୍ଯ୍ୟନ୍ତ ଏବଂ ତାପରେ ମଧ୍ୟ ବହୁ ଶତାବ୍ଦୀ ଧରି ଭିବସ୍ୱାନ୍ ବା ସୂର୍ଯ୍ୟ ଇଣ୍ଡୋ-ଏରିୟାନ୍ ବା ଭାରତୀୟ ଆର୍ଯ୍ୟମାନଙ୍କ ନିକଟରେ ଏକ ଜୀବନ୍ତ ଦେବତା ଥିଲେ । ଏବେ ବି ଓଡ଼ିଶାର ଜନ ଚେତନାରେ 'ଧର୍ମ-ଦେବତା' କହିଲେ ସୂର୍ଯ୍ୟଙ୍କୁ ହିଁ ବୁଝାଏ ପ୍ରାୟ ସକଳ ଆଦିମ ସଭ୍ୟତାରେ (କେବଳ ଆର୍ଯ୍ୟମାନଙ୍କ ନିକଟରେ ନୁହେଁ) ସୂର୍ଯ୍ୟହିଁ ମୁଖ୍ୟ ଉପାସିତ ଦେବତା ଥିଲେ । ମିତ୍ର ବା ସୂର୍ଯ୍ୟଙ୍କ ପୂଜା ସମଗ୍ର ରୋମାନ୍ ସାମ୍ରାଜ୍ୟରେ ମଧ୍ୟ ବହୁ ଶତାବ୍ଦୀ ଧରି ଶକ୍ତିଶାଳୀ ହୋଇ ବିରାଜିତ ଥିଲା । ଇଜିପ୍ଟରେ ମଧ୍ୟ ସୂର୍ଯ୍ୟ-ଉପାସନା ପ୍ରଚଳିତ ଥିଲା । କେତେକ ପଣ୍ଡିତଙ୍କ ମତରେ ଯୀଶୁଖ୍ରୀଷ୍ଟଙ୍କର ରହସ୍ୟମୟ ମୃତ୍ୟୁ ଓ ପୁଣି ଅକ୍ଷତ ଶରୀରରେ ଉତ୍‌ଥାନ ପ୍ରତିଦିନ ଘଟୁଥିବା ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟର ରୂପାନ୍ତର କଳ୍ପନା ମାତ୍ର । ଏବେ ମଧ୍ୟ ଭାରତବର୍ଷର ଲକ୍ଷ ଲକ୍ଷ ନିଷ୍ଠାପର ହିନ୍ଦୁ ଯେଉଁ ପ୍ରସିଦ୍ଧ ସାବିତ୍ରୀ-ମନ୍ତ୍ର ପାରାୟଣ କରିଥାନ୍ତି, ତାହା ସୂର୍ଯ୍ୟ(ସବିତା) କୈନ୍ଦ୍ରିକ ।

ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କୁ 'ବିଷ୍ଣୁ'ଙ୍କ ଅବତାର କୁହାଯାଏ । ସେଥିପାଇଁ ଏମାନଙ୍କୁ କେନ୍ଦ୍ର କରି ଉଠିଥିବା ଭକ୍ତିମୂଳକ ଧର୍ମର ଅନ୍ୟ ନାମ 'ବୈଷ୍ଣବ' ଧର୍ମ । କିନ୍ତୁ ବେଦରେ 'ବିଷ୍ଣୁ' ଶବ୍ଦଟି ସୂର୍ଯ୍ୟଦେବତାଙ୍କର ଅନ୍ୟ ନାମ ମାତ୍ର । ମିତ୍ର ବା ସୂର୍ଯ୍ୟ ପ୍ରଥମେ ଆଦିତ୍ୟରୂପେ ସୁପରିଚିତ ହୋଇ ପରେ, ବେଦର ଶେଷଆଡ଼କୁ, ଯୁଗ୍ମ-ଦେବତା 'ମିତ୍ରାବରୁଣ' ଭାବରେ ଦେଖା ଦେଲେ । 'ମିତ୍ରାବରୁଣ' ହେଲେ 'ଘନନୀଳ ଆକାଶର ଦେବତା' । ପୌରାଣିକ କାଳରେ ଏହି 'ଘନନୀଳ ଆକାଶର ଦେବତା'ହିଁ (ଅର୍ଥାତ୍ ମିତ୍ର ବା ସୂର୍ଯ୍ୟ ବା ବିଷ୍ଣୁ) ବିଷ୍ଣୁଭାବରେ ପୂଜିତ ହେଲେ ଏବଂ ଖୁବ୍ ସମ୍ଭବ, ସେହି କାରଣରୁ ବିଷ୍ଣୁଙ୍କର ସାଧାରଣ କଳ୍ପନା ନୀଳବର୍ଣ୍ଣରେ । ବୋଧ ହୁଏ, ଗୋରା ଆର୍ଯ୍ୟମାନଙ୍କର ଦେବତା ହେଲେହେଁ, ବିଷ୍ଣୁଅବତାର ରାମ ଓ କୃଷ୍ଣ ଉଭୟେ ଏହି କାରଣରୁ କୃଷ୍ଣଚର୍ମା ।

ବେଦରେ ବରୁଣ ହେଉଛନ୍ତି 'ଋତ' ବା ସତ୍ୟ ଅର୍ଥାତ୍ ନ୍ୟାୟ ବା ଧର୍ମର ଦେବତା । ତେଣୁହିଁ 'ମିତ୍ରାବରୁଣ' ଏହି ଯୁଗ୍ମଦେବତାଙ୍କର ପରବର୍ତ୍ତୀ ରୂପାନ୍ତର ସୂର୍ଯ୍ୟ ବା ବିଷ୍ଣୁ ଭାରତୀୟ ଜନ-ଚେତନାରେ 'ଧର୍ମ'ର ଦେବତା ହୋଇ ରହିଯାଇଛନ୍ତି ।

ଏପର୍ଯ୍ୟନ୍ତ (ବିଶେଷ କରି ତୃତୀୟ ଅଧ୍ୟାୟରେ) ଗୀତା ଯେଉଁ କର୍ମଯୋଗ ବା ଯଜ୍ଞାପ୍ରିତ କର୍ମର ଆଦର୍ଶ ବ୍ୟାଖ୍ୟାନ କରିଚାଲିଛନ୍ତି, ପ୍ରାକୃତିକ ସୂର୍ଯ୍ୟହିଁ ତାହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ଏହି ସମଗ୍ର ସୃଷ୍ଟି ସୂର୍ଯ୍ୟଙ୍କ ଯୋଗୁଁ ହିଁ କେବଳ ସମ୍ଭବ ହୋଇ ନାହିଁ, ସୂର୍ଯ୍ୟଙ୍କଦ୍ୱାରାହିଁ ତାହା ଅହରହ ନିୟନ୍ତ୍ରିତ ଓ ପରିଚାଳିତ । ତୃତୀୟ ଅଧ୍ୟାୟରେ ଶ୍ରୀକୃଷ୍ଣ ଯାହା କହିଛନ୍ତି, "ମୁଁ ମୁହୂର୍ତ୍ତେ କାମ ନ କରି ବସିଗଲେ ଏ ସଂସାର ଧ୍ୱଂସ ହୋଇଯିବ"—ଏହା ପ୍ରାକୃତିକ ଜଗତରେ ସୂର୍ଯ୍ୟଙ୍କ ପ୍ରତିହିଁ ମୁଖ୍ୟଭାବରେ ପ୍ରଯୁଜ୍ୟ । କାରଣ ସୂର୍ଯ୍ୟ ଯଦି ଏକ ମୁହୂର୍ତ୍ତ ନିଜର ସଂଶକ୍ତି-ଚାଳନା ଆହରଣ କରିନିଅନ୍ତି, ତେବେ ପୃଥିବୀ ସହିତ ସମଗ୍ର ସୌରଜଗତ୍ ଯେ ସହସା ଧ୍ୱଂସ ହୋଇଯିବ, ଏଥିରେ ସନ୍ଦେହ କଣ ?

ଅନ୍ୟ ପକ୍ଷରେ, ଆମର ଏହି ପୃଥିବୀଗ୍ରହ ସମେତ ସମଗ୍ର ସୌରଜଗତ୍ କ୍ଷିପ୍ରଗତିରେ କାର୍ଯ୍ୟବ୍ୟସ୍ତ ଥିଲାବେଳେ, ଏହି ସମସ୍ତ ଶକ୍ତିମଣ୍ଡଳର ଏକମାତ୍ର ଉତ୍ସ କୁଳପତି ସୂର୍ଯ୍ୟ ନିଜେ ନିଶ୍ଚଳ ଓ ନିର୍ବିକାରଭାବରେ ଅବସ୍ଥିତ । ଅଥଚ, ଧରଣୀ ବା ସୌରଜଗତରେ ଯେ ଏହି ଜୀବନ-ଲୀଳା ଚାଲିଛି, ସେଥିରେ ସୂର୍ଯ୍ୟଙ୍କର ନିଜର ବା କି ଲାଭ ?

ତେଣୁ ଗୀତାର ଅନାସକ୍ତ ଓ ସ୍ଥିତପ୍ରଜ୍ଞ କର୍ମଯୋଗ ଓ ଜ୍ଞାନଯୋଗର ବିବସ୍ୱାନ୍ ବା ସୂର୍ଯ୍ୟ ହେଲେ ପରମ ପ୍ରତୀକ । ଭାରତର ପ୍ରାଚୀନ ଋଷିମାନେ ଏହି ଜୀବନାଦର୍ଶର ସଂକେତ ହୁଏତ ସୂର୍ଯ୍ୟଙ୍କଠାରୁହିଁ ପାଇଥିଲେ ; ଏବଂ ଯାହା ଜନ-ବିଶ୍ୱାସ ମାତ୍ର ଥିଲା, କଥାର କଥା ଥିଲା, ଶ୍ରୀକୃଷ୍ଣ ତାକୁହିଁ ଚରମ ଜୀବନ-ଦର୍ଶନ ଭାବରେ ଏହି ଗୀତାରେ ପରିବେଷିତ କରିଗଲେ । ଖୁବ୍ ସମ୍ଭବ, ସେହି କାରଣରୁହିଁ ଏହି ଅଧ୍ୟାୟର ପ୍ରଥମ ଶ୍ଳୋକରେ କୁହାଯାଇଛି, "ଏହା ଅବ୍ୟୟ ଅର୍ଥାତ୍ ଚିରକାଳୀନ କିଛି ନୂଆ କଥା ନୁହେଁ ; ଏବଂ ଏହାକୁ ମୁଁ ପ୍ରଥମେ ସୂର୍ଯ୍ୟଙ୍କୁ କହିଥିଲି ।" ଏହାର ତାତ୍ପର୍ଯ୍ୟ ବୋଧ ହୁଏ ଏହି ଯେ, ଏହି ଜୀବନାଦର୍ଶର ଚିନ୍ତାକଳ୍ପ ଭାରତର ଋଷିମାନେ ପ୍ରଥମେ ସୂର୍ଯ୍ୟଙ୍କଠାରୁ ପାଇଥିଲେ । ମନୁ ଓ ଇକ୍ଷ୍ୱାକୁ ପ୍ରଭୃତି ସେହି ଜ୍ଞାନ-ପରଂପରାର ପରବର୍ତ୍ତୀ ବାହକ ଭାବରେ ବର୍ଣ୍ଣିତ । ଅର୍ଥାତ୍, ଏ କେବଳ ମୁଁ ବର୍ତ୍ତମାନ କହୁ ନାହିଁ, ଏହା ମନୁ ଓ ଇକ୍ଷ୍ୱାକୁ ପ୍ରଭୃତି ପ୍ରସିଦ୍ଧ ପରଂପରା-ରକ୍ଷକ ବିଦ୍ୱଜ୍ଜନଙ୍କଦ୍ୱାରା ମଧ୍ୟ ସମର୍ଥିତ ।

୨

ଏବଂ ପରଂପରାପ୍ରାପ୍ତମିମଂ ରାଜର୍ଷୟୋ ବିଦୁଃ
ସ କାଳେନେହ ମହତା ଯୋଗୋ ନଷ୍ଟଃ ପରନ୍ତପ । ୨ ।

ଏବଂ ପରଂପରାପ୍ରାପ୍ତଂ (ଏହିପରି 'ପୁରୁଷାନୁକ୍ରମିକଭାବରେ ଚାଲିଆସୁଥିବା) ଇମଂ (ଏହି କର୍ମଯୋଗକୁ) ରାଜର୍ଷୟଃ (ରାଜର୍ଷିମାନେ ମଧ୍ୟ) ବିଦୁଃ (ଜାଣିଥିଲେ) । ହେ ପରନ୍ତପ (ଅର୍ଜୁନ), ଇହ (ଏହି ସଂସାରରେ) ସଃ ଯୋଗଃ (ସେହି ଯୋଗ) ମହତା କାଳେନ (କାଳର ଦୀର୍ଘତା ଯୋଗୁଁ) ନଷ୍ଟଃ (ନଷ୍ଟ ବା ଲୋପପ୍ରାପ୍ତ ହୋଇଯାଇଥିଲା) ।

## ଅନୁବାଦ

"ଏପରି ପୁରୁଷାନୁକ୍ରମିକ ଭାବରେ ଚାଲିଆସୁଥିବା ଏହି ଯୋଗକୁ ରାଜର୍ଷି-ମାନେ ମଧ୍ୟ ଜାଣିଥିଲେ । କିନ୍ତୁ ହେ ଅର୍ଜୁନ, କାଳର ଦୀର୍ଘ ଗତିଭିତରେ ସେହି ମହାନ୍ ଜ୍ଞାନ ନଷ୍ଟ ହୋଇଯାଇଥିଲା ।"

## ବିଶେଷ ଭାଷ୍ୟ

ଈଶୋପନିଷଦ୍ (ଦ୍ୱିତୀୟ ଶ୍ଳୋକ)ରେ 'ନ କର୍ମ ଲିପ୍ୟତେ ନରେ' (କାମ କରି ମଧ୍ୟ ମନୁଷ୍ୟ କର୍ମବନ୍ଧନ ପାଏ ନା) ଓ ସେହିପରି ଶ୍ୱେତାଶ୍ୱତର ଉପନିଷଦ୍ (୭।୪)ରେ 'କୃତକର୍ମନାଶଃ' (କଲା କାମ ନଷ୍ଟ ହୋଇଯାଏ, ଅର୍ଥାତ୍ ସେସବୁର ପ୍ରତିକ୍ରିୟା କଲା-ଲୋକକୁ ଲାଗେ ନାହିଁ) ଇତ୍ୟାଦିରେ ଗୀତୋକ୍ତ କର୍ମଯୋଗର ସୂଚନା ମିଳିଲେହେଁ ବୈଦିକ ଶାସ୍ତ୍ରରେ କୌଣସିଠାରେ ଏହି 'ଅନାସକ୍ତ କର୍ମଯୋଗ' ଗୀତାରେ ଯେପରି ଆଲୋଚିତ ହୋଇଛି, ସେପରି ବିସ୍ତୃତଭାବରେ ଆଲୋଚିତ ହୋଇଥିବାର ଜଣା ନାହିଁ । କିନ୍ତୁ ଯେତେବେଳେ ଧର୍ମାଭ୍ୟାସଟା ପୋଥି-ପାଠ ନ ହୋଇ କେବଳ ଗୁରୁଙ୍କଠାରୁ ଶିଷ୍ୟ କ୍ରମରେ ବ୍ୟକ୍ତିଗତଭାବରେ ପରଂପରା ଧରି ଚାଲିଥିଲା, ସେତେବେଳେ ଏହା 'ଲିପିବଦ୍ଧ' ନ ହୋଇଥିଲେ ମଧ୍ୟ ଏକାବେଳକେ 'ଜଣା ନ ଥିଲା' ବୋଲି କହିହେବନି । ଏ ଶ୍ଳୋକରେ କୁହାଯାଉଛି ଯେ, ଏହି ଯୋଗ "ରାଜର୍ଷି"ମାନେ ମଧ୍ୟ ଜାଣିଥିଲେ । ଅର୍ଥାତ୍, ଯେଉଁମାନେ ସବୁଠାରୁ ଅଧିକ ଜୀବନାସକ୍ତ ବା କର୍ମାସକ୍ତ ହେବାର ଆଶା କରାଯାଏ ସେହି ରାଜାମାନଙ୍କ ଭିତରେ ମଧ୍ୟ ଏହା ଅଭ୍ୟସିତ ହେଉଥିଲା । ରାଜାମାନଙ୍କଦ୍ୱାରା ଅଭ୍ୟସିତ ହେବା ଅର୍ଥ, ଜନସାଧାରଣରେ ମଧ୍ୟ ଏହା ପରିଚିତ ଓ ସମ୍ମାନିତ ଥିଲା । କିନ୍ତୁ ଗୀତା କହୁଛନ୍ତି ଯେ, ଦୀର୍ଘକାଳର ପରିସର-ଭିତରେ ଏ ଯୋଗ କେବେ କେଉଁଠି ପରଂପରାଲୁପ୍ତ ହୋଇଯାଇଛି । କେବେ ?

କପିଳବାସ୍ତୁର ରାଜପୁତ୍ର ଶାକ୍ୟ ଗୌତମ ରାଜାଭାବରେ ଅନାସକ୍ତ ଜୀବନ ଯାପନ କରିଥିଲେ ବ୍ରାହ୍ମଣ୍ୟ ପରଂପରାରେ ନିଶ୍ଚୟ ଏକ ପ୍ରସିଦ୍ଧ ରାଜର୍ଷିଭାବରେ ଗଣା ହୋଇଥାନ୍ତେ । କିନ୍ତୁ ଅର୍ଜୁନଙ୍କର 'ଯୁଦ୍ଧ କରିବିନି'କହିବା ଯେପରି ଆର୍ଯ୍ୟ ପରଂପରାର ବିନାଶ, ରାଜପୁତ୍ର ଗୌତମ ଉତ୍ତମ ନରପତି ବା ରାଜର୍ଷି ଭାବରେ କର୍ମ-ଯୋଗର ଆଦର୍ଶ ତ୍ୟାଗ କରି ଭିକ୍ଷୁବ୍ରତ ଗ୍ରହଣ କରିବା ସେହିପରି ଏକ ଆର୍ଯ୍ୟ-ପରଂପରାର ବା କର୍ମଯୋଗର ବ୍ୟତିକ୍ରମ ।

ତେଣୁ ମନେ ହୁଏ, ଗୀତା ଏ ଶ୍ଳୋକରେ କର୍ମଯୋଗର ପରଂପରା ନଷ୍ଟ ହୋଇଯାଇଛି ବୋଲି ଯାହା କହୁଛନ୍ତି, ଖୁବ ସମ୍ଭବତଃ ତାହା ବୌଦ୍ଧଧର୍ମକୁ ଲକ୍ଷ୍ୟ କରିହିଁ କୁହାଯାଇଛି । ତେଣୁ ବୈଦିକ ଧର୍ମସାଧନା ଯେ କେବଳ ଯାଗ-ଯଜ୍ଞାଦି ଆଗ୍ରହସର୍ବସ୍ୱ ହୋଇଉଠିଥିଲା ସେତିକି ନୁହେଁ, ତାହାଦେଇ ବୈଦିକ ଧର୍ମର ଆଧ୍ୟାତ୍ମିକ ପରଂପରାର ବିନାଶ ମଧ୍ୟ ଘଟିସାରିଥିଲା ବୋଲି କହିବାକୁ ହେବ ।

୩।

ସ ଏବାୟଂ ମୟା ତେଽଦ୍ୟ ଯୋଗଃ ପ୍ରୋକ୍ତଃ ପୁରାତନଃ
ଭକ୍ତୋଽସି ମେ ସଖା ଚେତି ରହସ୍ୟଂ ହ୍ୟେତଦୁତ୍ତମମ୍ । ୩ ।

[ତୁମେ] ମେ (ମୋର) ଭକ୍ତଃ ସଖା ଚ ଅସି (ଭକ୍ତ ଓ ବନ୍ଧୁ ମଧ୍ୟ) ; ଇତି (ଏହି ହେତୁରୁ) ଅୟଂ ସଃ ପୁରାତନଃ ଯୋଗଃ (ଏହି ସେ ପୁରାତନ ଯୋଗ) ଅଦ୍ୟ (ଆଜି) ମୟା (ମୋଦ୍ୱାରା) ତେ ଏବ (ତୁମକୁହିଁ ବିଶେଷ କରି) ପ୍ରୋକ୍ତଃ (କଥିତ ହେଲା), ହି (ଯେହେତୁ) ଏତତ୍ (ଏହା) ଉତ୍ତମଂ ରହସ୍ୟଂ (ଉତ୍ତମ ଗୁହ୍ୟ ତତ୍ତ୍ୱ) ।

## ଅନୁବାଦ

"ହେ ଅର୍ଜୁନ, ସେହି ପୁରାତନ ଅଥଚ ଉତ୍ତମ ରହସ୍ୟପୂର୍ଣ୍ଣ ଯୋଗକୁ ଆଜି ମୁଁ ତୁମ ଆଗରେ କହିଲି, ଯେହେତୁ ତୁମେ ମୋର ଭକ୍ତ ଓ ସଖା ।"

## ବିଶେଷ ଭାଷ୍ୟ

ପୁରାଣ ଅନୁସାରେ ଶ୍ରୀକୃଷ୍ଣ ଓ ପାଣ୍ଡବମାନେ ପିଉସୀପୁଅ ଭାଇ । ସେହି କାରଣ ଯୋଗୁଁ ଏବଂ ବୋଧହୁଏ ବୟସର ଓ ବୁଦ୍ଧିବିଚକ୍ଷଣତାର ସାମ୍ୟ ଯୋଗୁଁ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ପ୍ରଗାଢ଼ ସଖ୍ୟଭାବ ବଢ଼ିଉଠିଥିଲା । ମହାଭାରତ କାଳରେ ବୋଧ ହୁଏ ଶ୍ରୀକୃଷ୍ଣ ଏକପ୍ରକାର 'ଭକ୍ତର ଭଗବାନ୍' ହୋଇ ନ ଥିଲେ । ବରଂ ଶ୍ରୀକୃଷ୍ଣ ନିଜେ ଶିବ ଓ ଦୁର୍ଗାଙ୍କୁ ଇଷ୍ଟସିଦ୍ଧି ପାଇଁ ପୂଜା କରିବାର

ମହାଭାରତରେ ଉଲ୍ଲେଖ ଅଛି । କିନ୍ତୁ ବୋଧ ହୁଏ ଗୀତା ଗ୍ରନ୍ଥର ରଚନାବେଳକୁ ଶ୍ରୀକୃଷ୍ଣ 'ଭଗବାନ୍' ହୋଇସାରିଲେଣି, ଯେପରି ସିଦ୍ଧାର୍ଥ ଗୌତମ ହୋଇ-ସାରିଥିଲେ 'ବୁଦ୍ଧ' । ତେଣୁହିଁ ଅର୍ଜୁନ 'ସଖା' ହେବା ସାଥେ ସାଥେ 'ଭକ୍ତ' ବୋଲି ମଧ୍ୟ ବର୍ଣ୍ଣିତ । 'ଭକ୍ତ'ର ଯଥାର୍ଥ ଅର୍ଥରେ ମହାଭାରତରେ ଅର୍ଜୁନଙ୍କୁ ଆମେ କାହିଁ ହେଲେ ଦେଖୁନା ।

କିନ୍ତୁ ଆଧ୍ୟାତ୍ମିକ ସାଧନା ଦୃଷ୍ଟିରୁ 'ସଖା' ଓ 'ଭକ୍ତ' ଶବ୍ଦ ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ । ସତ୍ୟ ସନାତନ । ତାକୁ କେହି ନୂଆ ଗଢ଼େ ନାହିଁ । ତାହା ସାଧକମାନଙ୍କଦ୍ୱାରା ଆବିଷ୍କୃତ ହୁଏ ମାତ୍ର । ଆମର ଶାସ୍ତ୍ରରେ 'ଧର୍ମ'କୁ ସେଥିପାଇଁ ବରାବର 'ସନାତନ' ବିଶେଷଣ ଦିଆଯାଇଛି ଏବଂ ହିନ୍ଦୁଧର୍ମର ଅନ୍ୟ ନାମହିଁ ହେଲା ସନାତନ ଧର୍ମ । ଗୌତମ ବୁଦ୍ଧ ମଧ୍ୟ କେବେ କୌଣସି ମୌଳିକତା ଦାବି କରି ନାହାନ୍ତି । ସେ ବରଂ ପୂର୍ବ ପୂର୍ବ 'ବୁଦ୍ଧ'ମାନଙ୍କର ବାଣୀହିଁ ପୁନଃପ୍ରବର୍ତ୍ତିତ କରୁଛନ୍ତି ବୋଲି କହୁଥିଲେ ।

ଈଶ୍ୱର ସେହିପରି ସନାତନ ଓ ଚିରବର୍ତ୍ତମାନ । କିନ୍ତୁ ସେ କେବଳ ସେହି ହୃଦୟରେ ଅବତୀର୍ଣ୍ଣ ହୁଅନ୍ତି, ଯେଉଁଠି ସେ ଦେଖନ୍ତି ଶୁଦ୍ଧତା, ବିଶୁଦ୍ଧ ସଖ୍ୟ ଓ ବିଶୁଦ୍ଧ ଭକ୍ତି । କେହି ଧନ ଓ କ୍ଷମତାଦ୍ୱାରା ତାଙ୍କୁ ଡାକି ଆଣିପାରିବନି । ଈଶ୍ୱର ଆପେ ଆପେ ଆସନ୍ତି ପ୍ରକୃତ ସଖା ଓ ଭକ୍ତଙ୍କ ନିକଟକୁ, ସେ ଥାଆନ୍ତୁ ପଛେ ଦରିଦ୍ରତମ କୁଟୀରରେ । ଏଠାରେ ଶ୍ରୀକୃଷ୍ଣ 'ପୁରାତନ ଯୋଗ' କହିବାର ଅର୍ଥ ହେଲା—"ମୁଁ କିଛି ନୂଆ କଥା କହୁନି । ପ୍ରାଚୀନ ବା ସନାତନ, କିନ୍ତୁ ମଝିରେ ବିସ୍ମୃତ ସତ୍ୟହିଁ ତୁମ ଆଗରେ ପରିବେଷିତ କରୁଛି, ଏବଂ କରୁଛି ତୁମେ ମୋର ଜ୍ଞାତି ବୋଲି ନୁହେଁ ବା ବୀର ପୁରୁଷ ବୋଲି ନୁହେଁ, ମୁଁ କରୁଛି, ହେ ଅର୍ଜ୍ଜୁନ, ତୁମଠି ସଖାର ମଧୁରତା ଓ ଭକ୍ତର ବିନୟ ଦେଖିପାରୁଛି ବୋଲି ।"

କିନ୍ତୁ ପାଠକେ ମନେ ରଖିବେ ଯେ, ଗୀତା କେବଳ ଅର୍ଜ୍ଜୁନଙ୍କ ପାଇଁ ଲେଖାଯାଇ ନ ଥିଲା । ଏ ଗ୍ରନ୍ଥ ନିଶ୍ଚିତଭାବରେ ମହାଭାରତର ପର ରଚନା । ଏହା ଲେଖାଯାଇଥିଲା ତୁମ-ଆମପାଇଁ ଏବଂ ଏଥିରେ ଯେଉଁ ବାଣୀ ଅର୍ଜ୍ଜୁନଙ୍କ ପ୍ରତି ଆରୋପ୍ୟ, ତାହା ମଧ୍ୟ ତୁମ-ଆମପାଇଁ । ଉପଯୁକ୍ତ ସଖ୍ୟ ବା ଭକ୍ତି ଦେଖିଲେ ଭଗବାନ୍ ତୁମ-ଆମ ନିକଟରେ ମଧ୍ୟ ଆପେ ଆପେ ଆସି ବାଟ ବତାଇଦେବେ । ଯୀଶୁ ତାଙ୍କ ବିଶ୍ୱରକ ପାଇଲେଟଙ୍କୁ କହିଥିଲେ—"ସତ୍ୟାଶ୍ରୟୀ ପ୍ରତ୍ୟେକ ନରନାରୀ ମୋ ବାଣୀ ଶ୍ରବଣ କରିପାରିବେ ।"

ଅର୍ଜୁନ ଉବାଚ

୪

ଅପରଂ ଭବତୋଜନ୍ମ ପରଂ ଜନ୍ମ ବିବସ୍ୱତଃ
କଥମେତଦ୍‌ବିଜାନୀୟାଂ ତ୍ୱମାଦୌ ପ୍ରୋକ୍ତବାନିତି । ୪ ।

ଅର୍ଜୁନଃ ଉବାଚ (ଅର୍ଜୁନ କହିଲେ) । ଭବତଃ ଜନ୍ମ ଅପରଂ (ଆପଣଙ୍କର ଜନ୍ମ ପରବର୍ତ୍ତୀ) ବିବସ୍ୱତଃ ଜନ୍ମ ପରଂ (ସୂର୍ଯ୍ୟଙ୍କ ଜନ୍ମ ପୂର୍ବବର୍ତ୍ତୀ) । ତ୍ୱଂ (ଆପଣ) ଆଦୌ ପ୍ରୋକ୍ତବାନ୍ [ତାଙ୍କୁ] (ଆଗରୁ କହିଥିଲେ) ଏତତ୍ (ଏହା) କଥଂ ବିଜାନୀୟାଂ (କିପରି ଜାଣିବି) । ?

**ଅନୁବାଦ**

ଅର୍ଜୁନ କହିଲେ, "ନିଶ୍ଚିତଭାବରେ ସୂର୍ଯ୍ୟଙ୍କ ପରେ ତ ଆପଣଙ୍କର ଜନ୍ମ । ଆପଣ ତାଙ୍କୁ ଏହା କହିଥିଲେ ବୋଲି କିପରି ଧରିନେବି ?"

**ବିଶେଷ ଭାଷ୍ୟ**

'ସୂର୍ଯ୍ୟଙ୍କ ଜନ୍ମ' କହିଲେ ନିଶ୍ଚୟ ଏଠାରେ ପ୍ରାକୃତିକ ସୂର୍ଯ୍ୟଙ୍କୁ ବୁଝାଯାଉନି । ବୈଦିକ ସୂର୍ଯ୍ୟ-ଦେବତାହିଁ ଏଠାରେ ଉଦ୍ଦିଷ୍ଟ । ବେଦ ଓ ଉପନିଷଦରେ ନାନାଭାବରେ ସୃଷ୍ଟିରହସ୍ୟ ବର୍ଣ୍ଣିତ । ସେସବୁରେ, ମୋଟ ଉପରେ, ଏ ସୃଷ୍ଟି ସାଧାରଣତଃ ଅ-ସତ୍‌ରୁ ସତ୍‌ର ଉତ୍ପତ୍ତି ଦେଇ ଆସିଛି ବୋଲି କୁହାଯାଇଛି ଏବଂ ଆଧୁନିକ ବୈଜ୍ଞାନିକ ବିବର୍ତ୍ତନବାଦ ସହିତ ସମ୍ବନ୍ଧ ରଖିହିଁ ଏ ସୃଷ୍ଟି ଆସ୍ତେ ଆସ୍ତେ ଓ ପରେ ପରେ ଘଟିଥିବାର ବର୍ଣ୍ଣନା ଅଛି । ଜଳ, ସ୍ଥଳ, ଆକାଶ ପରି ସୂର୍ଯ୍ୟ, ତାରା, ଚନ୍ଦ୍ର ମଧ୍ୟ ଆସ୍ତେ ଆସ୍ତେ ପ୍ରକଟିତ ହୋଇଛନ୍ତି କୋଟି କୋଟି ବର୍ଷ ଧରି । କିନ୍ତୁ ଶ୍ରୀକୃଷ୍ଣ କଥିତମାନ କାଳର ମନୁଷ୍ୟ ମାତ୍ର । ତାଙ୍କର ଓ ସୂର୍ଯ୍ୟଙ୍କର ଜନ୍ମର ତୁଳନା ହୋଇ ନ.ପାରେ । କିନ୍ତୁ ମନେ ହେଉଛି ଯେ, ଏଠାରେ ପ୍ରଶ୍ନୋତ୍ତରକୁ ସେପରି ବାଗେଇଦିଆଯାଇଛି, ଯେପରିକି ପରବର୍ତ୍ତୀ ଶ୍ଳୋକଠାରୁ ଜନ୍ମାନ୍ତରବାଦ, ଶାଶ୍ୱତବାଦ ଓ ଅବତାରବାଦ ଆଦି ବ୍ରାହ୍ମଣ୍ୟ ଘରାଣୀୟ ଚିନ୍ତାଧାରାସବୁ ପ୍ରସଙ୍ଗକୁ ଆସିଯାଇ ସ୍ୱାଭାବିକଭାବରେ ଆଲୋଚିତ ହୋଇପାରିବ । କାରଣ ଆମକୁ ମନେ ରଖିବାକୁ ହେବ ଯେ, ବୌଦ୍ଧଧର୍ମରେ ସୃଷ୍ଟିରେ କୌଣସିପ୍ରକାର 'ଶାଶ୍ୱତ' ଜିନିଷକୁ ସ୍ୱୀକାର କରାଯାଇ ନ ଥିଲା—ନାହିଁ ଆତ୍ମା, ନାହିଁ ପରମାତ୍ମା । ଗୀତା କିନ୍ତୁ, ମନେ ହୁଏ, ଏହି ବୌଦ୍ଧ ନାସ୍ତିକତା ଓ ଉଚ୍ଛେଦବାଦର ଶକ୍ତିଶାଳୀ ପ୍ରତିବାଦ-ଗ୍ରନ୍ଥ । ଗୀତା ଆତ୍ମା ଓ ପରମାତ୍ମାର ଗ୍ରନ୍ଥ—

ଅନିତ୍ୟ ସୃଷ୍ଟି ତଳେ ଯାହା ନିତ୍ୟ, ତାହାରହିଁ ସ୍ୱର । ସେହି 'ଗାନ' ଯୋଗୁଁହିଁ ଏହା 'ଗୀତା' । ପୁଣି ବୌଦ୍ଧ ମହାଯାନୀ ଶୂନ୍ୟତତ୍ତ୍ୱ ସ୍ଥାନରେ ପରମ ଐଶ୍ୱର୍ଯ୍ୟମୟ ଭଗବାନଙ୍କର ଏକ ଗାନ ହେଉଛିଁ ଏହା "ଶ୍ରୀମଦ୍‌ଭଗବଦ୍‌ଗୀତା" । ମନୁଷ୍ୟର କାଳ ଅଛି, ସେହିପରି ମଧ୍ୟ କାଳ ଅଛି ସୂର୍ଯ୍ୟଙ୍କର । କିନ୍ତୁ ଏ ସୃଷ୍ଟିରେ କାଳାତୀତ, ଶାଶ୍ୱତ ଜଣେ କେହି ଅଛନ୍ତି । ଗୀତା ତାଙ୍କର ଗାନ । ଶ୍ରୀକୃଷ୍ଣ ସେହି କାଳାତୀତ ପୁରୁଷଙ୍କ କଥା କହୁଛନ୍ତି, ଯେ କି ସୂର୍ଯ୍ୟଙ୍କୁ ମଧ୍ୟ ଉପଦେଶ ଦେଇଥିଲେ ।

ଶ୍ରୀ ଭଗବାନୁବାଚ



ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ
ତାନ୍ୟହଂ ବେଦ ସର୍ବାଣି ନ ତ୍ୱଂ ବେତ୍ଥ ପରନ୍ତପ । ୫ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ୍ ଶ୍ରୀକୃଷ୍ଣ କହିଲେ) । [ହେ] ଅର୍ଜୁନ, ମେ ତବ ଚ ବହୂନି ଜନ୍ମାନି (ମୋର ଓ ତୁମର ଅନେକ ଜନ୍ମ) ବ୍ୟତୀତାନି (ଅତୀତ ହୋଇଯାଇଛି) । ଅହଂ ତାନି ସର୍ବାଣି ବେଦ ( ମୁଁ ସେସବୁ ଜନ୍ମର କଥା ଜାଣିଛି) । [କିନ୍ତୁ] ପରନ୍ତପ (ହେ ଶତ୍ରୁବିନାଶକ ଅର୍ଜୁନ), ତ୍ୱଂ (ତୁମେ) ନ ବେତ୍ଥ (ଜାଣ ନାହିଁ) ।

**ଅନୁବାଦ**

ଶ୍ରୀ ଭଗବାନ୍ କହିଲେ, "ହେ ଅର୍ଜୁନ, ତୁମେ ଜାଣିନ ବୋଧ ହୁଏ ଯେ, ତୁମର ଓ ମୋର ଏଇ ଜନ୍ମପରି ବହୁ ଜନ୍ମ ଘଟିଯାଇଛି । ତୁମେ ଏ ଜନ୍ମରେ ଶତ୍ରୁବିନାଶକର ଗୌରବ ପାଇଥିଲେହେଁ ନିଜ ପୂର୍ବଜନ୍ମ କଥା ତୁମକୁ ଜଣା ନାହିଁ । ମତେ କିନ୍ତୁ ମୋର ସକଳ ପୂର୍ବଜନ୍ମଯାକ ଜଣା ।"

**ବିଶେଷ ଭାଷ୍ୟ**

ଗୀତାର ଏହି ଶ୍ଳୋକରେ ପ୍ରଥମ କରି 'ଜନ୍ମାନ୍ତରବାଦ' ଅର୍ଥାତ୍ 'ଆତ୍ମା କର୍ମାନୁସାରେ ବାରଂବାର ଅନ୍ୟ ଶରୀର ଓ ଅନ୍ୟ ରୂପ ନେଇ ଯେ ପୁନର୍ଜନ୍ମ ପାଇଥାଏ' ଏହି ମତ ପ୍ରଖ୍ୟାପିତ କରାଗଲା । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯେ କହିଲେ 'ତୁମକୁ ଏସବୁ ଜଣା ନାହିଁ' ତାହା ସୂଚନା କରୁଛି ଯେ, ଗୀତା ଲିଖିତ ହେବା କାଳରେ ମଧ୍ୟ ଭାରତର ଅନେକ ବୁଦ୍ଧିଜୀବୀ ଏହାକୁ ଗ୍ରହଣ ବା ବିଶ୍ୱାସ କରୁ ନ ଥିଲେ । ପାଠକେ ଶୁଣି ହୁଏତ ବିସ୍ମିତ ହେବେ ଯେ, ଅସାଧାରଣ

ପ୍ରତିଭାଧର ଓ ଭାରତୀୟ ସଂସ୍କୃତିର ଶ୍ରେଷ୍ଠ ଆଧୁନିକ ପ୍ରତୀକ ରବୀନ୍ଦ୍ରନାଥ ଠାକୁର, ଏହି ଜନ୍ମାନ୍ତରବାଦରେ ବିଶ୍ୱାସ କରୁ ନ ଥିଲେ ଏବଂ ତାଙ୍କ ଲେଖାରେ ଏହାକୁ ବର୍ଣ୍ଣନା କରୁଥିଲେ ଏକ 'ରୂପକଥା' ମାତ୍ର ବୋଲି ।

ଏଇଚ୍. ଜି. ୱେଲସ୍ ପ୍ରଭୃତି ପାଶ୍ଚାତ୍ୟ ଚିନ୍ତାନାୟକ, ଯେଉଁମାନେ କି ବୁଦ୍ଧଙ୍କ ପ୍ରମୁକ୍ତ-ବୁଦ୍ଧିର ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି, ସେମାନେ ମଧ୍ୟ ଏହା ଦେଖି ବିସ୍ମିତ ଯେ, ଯେଉଁ ମନୁଷ୍ୟ ଜୀବନର କୌଣସି ହେଲେ ସମସ୍ୟାକୁ ବିନା ପ୍ରଶ୍ନ, ବିନା ତର୍କରେ ଗ୍ରହଣ କଲେନି, ସେ ଏହି ଜନ୍ମାନ୍ତରବାଦକୁ ବିନା ପ୍ରଶ୍ନରେ ଗ୍ରହଣ କରିନେଲେ କିପରି !

ଏବେ ମଧ୍ୟ, କେବଳ ଏସିଆ ମହାଦେଶର କେତେକ ଦେଶ, ଯେଉଁ-ଗୁଡ଼ିକ ହିନ୍ଦୁ ଓ ବୌଦ୍ଧଧର୍ମ-ପ୍ରଭାବିତ, ସେଗୁଡ଼ିକ ଛଡ଼ା ପୃଥିବୀର ଅନ୍ୟତ୍ର ଆତ୍ମାର ଜନ୍ମାନ୍ତରବାଦ ସାଧାରଣ-ବିଶ୍ୱାସ୍ୟ ନୁହେଁ । ଅବଶ୍ୟ ଏହା ଉପରେ ପାଶ୍ଚାତ୍ୟ ଦେଶମାନଙ୍କରେ ବର୍ତ୍ତମାନ ଜୋରସୋରରେ ଗବେଷଣା ମଧ୍ୟ ଚାଲିଛି । ଇସ୍‌ଲାମ ଓ ଖ୍ରୀଷ୍ଟାନ ଧର୍ମମାନଙ୍କରେ ଏହାର ଆଭାସ ମଧ୍ୟ କାହିଁ କାହିଁ ମିଳୁଛି । ଯୀଶୁଙ୍କର ବାଣୀ—"ମୁଁ ଆବ୍ରାହାମଙ୍କ ପୂର୍ବରେ ମଧ୍ୟ ଥିଲି" (ଜନ୍, ୮,୫୮) ଜନ୍ମାନ୍ତରବାଦକୁ ସ୍ପଷ୍ଟ ସୂଚିତ କରୁଛି ।

୬

ଅଜୋଽପି ସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପି ସନ୍
ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା । ୬ ।

[ମୁଁ] ଅଜଃ ସନ୍ ଅପି (ଜନ୍ମରହିତ ହୋଇ ମଧ୍ୟ) ଅବ୍ୟୟାତ୍ମା (ଅବିନଶ୍ୱରସ୍ୱଭାବ ହୋଇ ମଧ୍ୟ) ଭୂତାନାଂ ଈଶ୍ୱରଃ ସନ୍ ଅପି (ସକଳ ପ୍ରାଣୀଙ୍କ ଅଧୀଶ୍ୱର ହୋଇ ମଧ୍ୟ) ସ୍ୱାଂ ପ୍ରକୃତିଂ ଅଧିଷ୍ଠାୟ (ନିଜ ପ୍ରକୃତିକୁହିଁ ଅବଲମ୍ବନ କରି, ଅର୍ଥାତ୍ ଅନ୍ୟ କେଉଁ ଶକ୍ତିଦ୍ୱାରା ନିୟନ୍ତ୍ରିତ ନ ହୋଇ ସ୍ୱେଚ୍ଛାରେହିଁ) ଆତ୍ମମାୟୟା (ନିଜ ମାୟାଦ୍ୱାରା) ସମ୍ଭବାମି (ବାରଂବାର ଜନ୍ମ ନେଇଥାଏଁ ) ।

**ଅନୁବାଦ**

ଶ୍ରୀ ଭଗବାନ୍ କହିଲେ, "ମୁଁ ତତ୍ତ୍ୱତଃ ଜନ୍ମଶୂନ୍ୟ ଓ ମୃତ୍ୟୁଶୂନ୍ୟ ଏବଂ ନିଖିଳ ଜୀବନର ଅଧୀଶ୍ୱର ହେଲେହେଁ ମୋ ନିଜର ପ୍ରକୃତିକୁ ଅବଲମ୍ବନ କରିହିଁ ନିଜର ମାୟାରେ ନିଜର ଜନ୍ମାନ୍ତର ଘଟାଇଥାଏଁ ।"

## ବିଶେଷ ଭାଷ୍ୟ

ଗୀତା ପୂର୍ବବର୍ତ୍ତୀ ସକଳ ଭାରତୀୟ ଭାବଧାରାର ଏକ ସମ୍ମାନନୀୟ ଆତ୍ମପ୍ରକାଶ । ମୃତ୍ୟୁର ତୁଚ୍ଛତା ପ୍ରମାଣ କରାଇବାପାଇଁ ଗୀତା ସାଂଖ୍ୟଦର୍ଶନ ଅନୁଯାୟୀ ପ୍ରକୃତି-ପୁରୁଷ ବା ଦେହ ଓ ଆତ୍ମାର ଭେଦ ବୁଝାଇସାରିଛନ୍ତି । କିନ୍ତୁ ସାଂଖ୍ୟ ଏକ ନିରୀଶ୍ୱର ଦର୍ଶନ । ସେଥିରେ ପ୍ରକୃତି ଓ ପୁରୁଷ ଉଭୟେ ସ୍ୱାଧୀନସତ୍ତାଶାଳୀ ତଥା ସମଭାବରେ ଅନାଦି ଥିବା ଦୁଇଟି ପରସ୍ପର-ପ୍ରତିକ୍ରିୟାଶୀଳ ଚିରନ୍ତନ ସୃଷ୍ଟିତତ୍ତ୍ୱ ଭାବରେ ବର୍ଣ୍ଣିତ । ଏହି ଦୁଇ ଶକ୍ତିର କ୍ରିୟା-ପ୍ରତିକ୍ରିୟା ଫଳରେ ଏ ଜଗତ ସୃଷ୍ଟ ଓ ଚଳମାନ ବୋଲି ସାଂଖ୍ୟର ମତ । କୌଣସି ଗୁଣବାନ୍ ବିଭୂତିମନ୍ତ ଈଶ୍ୱରର ଏ ଦର୍ଶନରେ ସ୍ଥାନ ନାହିଁ ।

କିନ୍ତୁ ଗୀତା ଈଶ୍ୱର-କୈନ୍ଦ୍ରିକ ଗ୍ରନ୍ଥ । ସାଂଖ୍ୟ-ବୌଦ୍ଧ ନିରୀଶ୍ୱରତାର ଏହା ପ୍ରତିବାଦ ଓ ପ୍ରତିରୋଧମୂଳକ ଗ୍ରନ୍ଥ । ଚତୁର୍ଥ ଅଧ୍ୟାୟର ଏହି ଶ୍ଳୋକଠାରୁ ଗୀତା ସାଂଖ୍ୟ-ବୌଦ୍ଧ-ବାଦର ବିପରୀତରେ ବେଦାନ୍ତ ଦର୍ଶନାନୁଯାୟୀ ଏକ ସନାତନ, ମନୁଷ୍ୟ-ଗୁଣମୟ ଓ ବିଭୂତିମନ୍ତ ଈଶ୍ୱରର ମହିମାହିଁ ଜୋର୍‌ରେ ପ୍ରଖ୍ୟାପିତ କରିଚାଲିବେ । ଗୀତାରେ ଏଣିକି ସାଂଖ୍ୟର ଦ୍ୱୈତଭାବ ସ୍ଥାନରେ କ୍ରମେ ବିଶ୍ୱରେ 'ଏକ' ଈଶ୍ୱରର 'ଅ-ଦ୍ୱୈତ' ତତ୍ତ୍ୱହିଁ ସାବ୍ୟସ୍ତ ହୋଇ ଚାଲିବ ।

ଅର୍ଜୁନ ଓ ଶ୍ରୀକୃଷ୍ଣ ଉଭୟେ ବହୁ ଜନ୍ମାନ୍ତର ଭୋଗ କରିଛନ୍ତି ବୋଲି କୁହାଗଲା । ପ୍ରଭେଦ ଏତିକି ଯେ, ଅର୍ଜୁନ ଜଣେ ସାମାନ୍ୟ ମନୁଷ୍ୟ । ସେ ସ୍ୱୀୟ କର୍ମଫଳ ଅନୁଯାୟୀ ବାରଂବାର ଜନ୍ମ ନେବାକୁ ବାଧ୍ୟ ହୋଇଛନ୍ତି । କିନ୍ତୁ ଯେହେତୁ ଶ୍ରୀକୃଷ୍ଣ ସ୍ୱୟଂ ସୃଷ୍ଟିକର୍ତ୍ତା ଭଗବାନ୍, ଈଶ୍ୱର, ତାଙ୍କର ଜନ୍ମ ହେବାରେ କୌଣସି ବାଧ୍ୟବାଧକତା ନାହିଁ । ସେ ଆମପ୍ରତି ବା ନିଖିଳ ସୃଷ୍ଟିପ୍ରତି ପ୍ରଯୁଜ୍ୟ ନିୟମର ବାହାରେ । ତାଙ୍କର ସ୍ୱୀୟ ଜନ୍ମ-ନିୟମର ବାହାରେ (ଅଜ) ହେଲେହେଁ, ସେ ସ୍ୱୟଂ ଅବିନାଶୀ (ଅବ୍ୟୟ) ହେଲେହେଁ, ଏବଂ ଜନ୍ମମୃତ୍ୟୁଭୋଗୀ ନିଖିଳ ପ୍ରାଣିଜଗତର ସେ ନିଜେ ଈଶ୍ୱର ବା ପ୍ରଭୁ ହେଲେହେଁ, ନିଜର ସ୍ୱାଭାବିକ ଅଭିପ୍ରାୟରେ (ପ୍ରକୃତିଂ ସ୍ୱାମଧିଷ୍ଠାୟ) ଜଗତର କଲ୍ୟାଣ ବା ଲୋକ-ସଂଗ୍ରହପାଇଁହିଁ ନିଜର ମାୟାଶକ୍ତିବଳରେହିଁ ବେଳେ ବେଳେ ଜନ୍ମ ନେଇଥାନ୍ତି । କାହିଁକି ଭଗବାନ୍ ଦୁଃଖମୟ ମନୁଷ୍ୟଜନ୍ମ ନେଇ ଥାନ୍ତି, ତାହା ପରବର୍ତ୍ତୀ ବିଖ୍ୟାତ ଶ୍ଳୋକରେ ବିଶେଷଭାବରେ ବର୍ଣ୍ଣିତ ।

୭-୮

ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।୭।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।୮।

[ହେ] ଭାରତ (ଅର୍ଜୁନ), ଯଦା ଯଦା ହି (ଯେଉଁ ଯେଉଁ ସମୟରେ) ଧର୍ମସ୍ୟ ଗ୍ଲାନିଃ ଭବତି (ଧର୍ମର ହାନି ଘଟେ) [ଏବଂ] ଅଧର୍ମସ୍ୟ ଅଭ୍ୟୁତ୍ଥାନଂ ଭବତି (ଅଧର୍ମର ପ୍ରାଦୁର୍ଭାବ ଘଟେ), ତଦା (ସେହି ସମୟରେ) ଅହଂ (ମୁଁ) ଆତ୍ମାନଂ (ନିଜକୁ) ସୃଜାମି (ଜନ୍ମ ଦିଏଁ) । ସାଧୂନାଂ (ସଜ୍ଜନମାନଙ୍କର) ପରିତ୍ରାଣାୟ (ରକ୍ଷାପାଇଁ) ଦୁଷ୍କୃତାଂ ଚ ବିନାଶାୟ [ଓ] (ଦୁଷ୍ଟମାନଙ୍କର ବିନାଶପାଇଁ) [ଏବଂ ଏହିପରିଭାବରେ] ଧର୍ମସଂସ୍ଥାପନାର୍ଥାୟ (ଧର୍ମର ପ୍ରତିଷ୍ଠାପାଇଁ) ଯୁଗେ ଯୁଗେ ସମ୍ଭବାମି (ମୁଁ ଯୁଗେ ଯୁଗେ ଜନ୍ମ ନେଇଥାଏଁ) ।

## ଅନୁବାଦ

"ହେ ଅର୍ଜୁନ, ଯେଉଁ ଯେଉଁ କାଳରେ ଧର୍ମର ଗ୍ଲାନି ଓ ଅଧର୍ମର ପ୍ରସାର ଘଟେ, ସେହି ସେହି ସମୟରେହିଁ ମୁଁ ସାଧୁସଜ୍ଜନମାନଙ୍କର ରକ୍ଷା ଓ ଦୁଷ୍ଟମାନଙ୍କର ବିନାଶଦ୍ୱାରା ଧର୍ମର ପୁନଃ-ସଂସ୍ଥାପନାପାଇଁ ପୃଥିବୀରେ ନିଜକୁ ଜନ୍ମ ଦେଇଥାଏଁ ।"

## ବିଶେଷ ଭାଷ୍ୟ

ଅସହାୟ ଅତ୍ୟାଚାରିତ ମନୁଷ୍ୟପ୍ରତି ଏହା ଏକ ପରମ ଓ ଶାଶ୍ୱତ ଆଶ୍ୱାସନାର ବାଣୀ । ଅନ୍ୟାନ୍ୟ ଧର୍ମ ଜଣେ ଜଣେ ବିଶେଷ ବିଶେଷ ପ୍ରଚାରକଙ୍କଠାରୁ ଆରମ୍ଭ ; ଅଥଚ ସେହି ସେହି ଧର୍ମ ଏହା ମଧ୍ୟ ପ୍ରଚାର କରିଥାନ୍ତି ଯେ, ସତ୍ୟ କେବଳ ସେହି ସେହି ଧର୍ମରେ । ଅନ୍ୟ ଧର୍ମର ଲୋକେ ତେଣୁ ଅଜ୍ଞ, କାଫେର୍ ବା ହିଦେନ୍ । ସେହି ପରିପ୍ରେକ୍ଷୀରେ ଗୀତାର ଏହି ଅବତାରବାଦ ଅତି ଉଦାର ଓ ସାର୍ବଜନୀନ । ଗୀତା କହୁ ନାହାନ୍ତି ଯେ, ଈଶ୍ୱର ହିନ୍ଦୁ ଧର୍ମ ବା ବୈଦିକ ଧର୍ମର ରକ୍ଷାପାଇଁ ବାରଂବାର ଅବତୀର୍ଣ୍ଣ ହେଉଛନ୍ତି । ଗୀତା ସମଗ୍ର ମାନବିକ ଇତିହାସ ଓ ସମଗ୍ର ପୃଥିବୀକୁ ବିଚାରକୁ ନେଇ ଏହି ନିଖିଳ ପୃଥିବୀରେ ଦେଶ-ଧର୍ମ-ଜାତି-ନିର୍ବିଶେଷରେ ଯେଉଁଠି ଯେତେବେଳେ ଅନ୍ୟାୟ ଓ ଅଧର୍ମ ଚରମ ସୀମାକୁ ଉଠେ, ସେତେବେଳେ ସଦାଚାରୀ ନିରୀହମାନଙ୍କୁ ରକ୍ଷା କରିବାପାଇଁ ଓ ଉଗ୍ର, ଦାମ୍ଭିକ, ନିଷ୍ଠୁର, ଅସଦାଚାରୀମାନଙ୍କୁ ବିନାଶ କରିବା ପାଇଁ ଏବଂ ମୋଟ ଉପରେ ଧର୍ମ ଓ

ନ୍ୟାୟର ସମ୍ମାନ ପ୍ରତିଷ୍ଠା କରିବାପାଇଁ ଥରେ ନୁହେଁ ବାରମ୍ବାର ଅବତୀର୍ଣ୍ଣ ହୁଅନ୍ତି ବୋଲି ଦୃଢ଼ ସ୍ୱରରେ ଘୋଷଣା କରୁଛନ୍ତି ।

ପ୍ରତ୍ୟେକ ପରିବାର, ଗ୍ରାମ, ନଗର, ଗୋଷ୍ଠୀ ଓ ଦେଶରେ ପ୍ରତି ମୁହୂର୍ତ୍ତରେ ନ୍ୟାୟ ଓ ଅନ୍ୟାୟର ସଂଗ୍ରାମ ଚାଲିଛି । ପ୍ରତ୍ୟେକ କୃଷିକ୍ଷେତ୍ରରେ ଶସ୍ୟ ଓ ଶସ୍ୟ-ଶତ୍ରୁ କୀଟ-ପତଙ୍ଗ ମଧ୍ୟରେ, ପୁଣି ଗଛଲତାଭିତରେ ଏହି ସଂଗ୍ରାମ । ଚଷାର ବିଦ୍ଧତା ନ ହେଲେ ଆମେ ଚାଉଳ ପାଆନ୍ତୁ ନାହିଁ । ଫଳରେ ପୃଥିବୀର ସବୁ ଦେଶ ଓ ଗୋଷ୍ଠୀଭିତରେ, ସାଧାରଣ ଜନଚିତ୍ତରେ ପାପ ଓ ଅତ୍ୟାଚାର ସହିତ ଧର୍ମ ଓ ନ୍ୟାୟର ସଂଘର୍ଷ ଏବଂ ପରିଣାମରେ ଧର୍ମର ଜୟ ଓ ପାପର ପରାଜୟ—ଏହି ଦୃଢ଼ ବିଶ୍ୱାସ ଦେଖାଯାଇଥାଏ । ସୃଷ୍ଟି ଓ ଜୀବନରେ ଏହି ଦୁଇ ପରସ୍ପର-ବିରୋଧାତ୍ମକ ଶକ୍ତି ଚିର-ବର୍ତ୍ତମାନ ଦେଖି, ବିଦ୍ଧ ଧର୍ମରେ ଉତ୍ତମ ଶକ୍ତିଟି ସ୍ୱୟଂ ଈଶ୍ୱରଙ୍କଠାରୁ ଏବଂ ଅକଲ୍ୟାଣଜନକ ଶକ୍ତିଟି ଈଶ୍ୱରବିରୋଧୀ ସଇତାନ୍‌ଠାରୁ ଆସିଛି ବୋଲି କଳ୍ପନା କରାଯାଇଛି । ଭାରତୀୟ ଶାସ୍ତ୍ରରେ ଏହି ଦୁଇ ଶକ୍ତିକୁ 'ଦୈବ' ଓ 'ଆସୁର' ଭାବରେ ବର୍ଣ୍ଣନା କରାଯାଇଛି । ପରେ ଗୀତା ମଧ୍ୟ ଷୋଡ଼ଶ ଅଧ୍ୟାୟରେ ଏପ୍ରକାର ବର୍ଣ୍ଣନାର ଆଶ୍ରୟ ନେବାର ଆମେ ଦେଖିବା । ଆମ ପ୍ରତ୍ୟେକର ଜୀବନରେ ମଧ୍ୟ ଯେ ଏହି ଦୈବାସୁର ସଂଗ୍ରାମ ଅହରହ ଚାଲିଛି, ଏହା ମଧ୍ୟ ଆମେ ଅସ୍ୱୀକାର କରିପାରିବା ନାହିଁ । ସେହିପରି ବ୍ୟକ୍ତି-ବ୍ୟକ୍ତିର ସଂଘର୍ଷରେ ମଧ୍ୟ ଏହା ପରିସ୍ଫୁଟ । କିନ୍ତୁ ବିଶେଷ ବିଶେଷ କାଳରେ ଆସୁର ଶକ୍ତି ଏପରି ପ୍ରବଳ ହୋଇଉଠେ ଯେ ତାକୁ ଉତ୍ପାଟିତ କରିବାପାଇଁ ବିଶେଷ ଦୈବୀଶକ୍ତିର ପ୍ରୟୋଜନ ହୁଏ । ତାହାହିଁ ଅବତାର । ଏହା ଯେକୌଣସି ଦେଶ ବା କାଳରେ ଘଟିପାରେ ଓ ଘଟିଛି ଓ ଘଟୁଛି ଏବଂ ଭବିଷ୍ୟତରେ ଘଟିବ ମଧ୍ୟ । ଭାରତବର୍ଷ ବା ବ୍ରାହ୍ମଣ୍ୟ ଧର୍ମ ଏଥିପାଇଁ ବିଶେଷ ଦାବି କରି ନାହିଁ । ଏଠାରେ ପ୍ରକାଶିତ ଗୀତାଙ୍କର ପରମ ଉଦାରତାହିଁ ଏହାର ପ୍ରକୃଷ୍ଟ ପ୍ରମାଣ ଏବଂ ପ୍ରକୃତରେ ଅତ୍ୟନ୍ତ ଉପଭୋଗ୍ୟ । ରୋମାଁ୍ୟାରୋଲାଁ ତାଙ୍କ ପ୍ରସିଦ୍ଧ ଉପନ୍ୟାସ 'ଜନ୍ କ୍ରିଷ୍ଟୋଫର୍'ରେ ଏହି ଶ୍ଳୋକଟିକୁ ସେଥିପାଇଁ ଗର୍ବର ସହିତ ଉଦ୍ଧାର କରିଛନ୍ତି । ଆହୁରି ଅନେକ ପାଶ୍ଚାତ୍ୟ ମନୀଷୀଙ୍କ ରଚନାରେ ବି ଏହା ଉଦ୍ଧୃତ ହେବାର ଦେଖାଯାଏ । ହିନ୍ଦୁ ଓ ବୌଦ୍ଧ ଉଭୟ ଧର୍ମରେ ଧର୍ମ-ସଂସ୍ଥାପନାପାଇଁ ଭଗବାନ୍ ଭବିଷ୍ୟତରେ ପୁଣି ଅବତାର ଗ୍ରହଣ କରିବାର ଭରସା ପ୍ରକାଶ ପାଇଛି । ଖ୍ରୀଷ୍ଟଧର୍ମ ମଧ୍ୟ ଯୀଶୁ ପୁଣି ପୃଥିବୀକୁ ଆସି ଏଠି ସ୍ୱର୍ଗରାଜ୍ୟ ସ୍ଥାପନ କରିବାର ବିଶ୍ୱାସ କରେ । ତେଣୁ ଅବତାରବାଦ ପୃଥିବୀରେ ସାର୍ବଜନୀନ ବିଶ୍ୱାସ, କହିବାକୁ ହେବ ।

**୯**

**ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋବେତ୍ତି ତତ୍ତ୍ୱତଃ**
ତ୍ୟକ୍ତ୍ୱା ଦେହଂ ପୁନର୍ଜନ୍ମ ନୈତି ମାମେତି ସୋଽର୍ଜୁନ । ୯ ।

[ହେ] ଅର୍ଜୁନ, ଯଃ (ଯେ) ମେ (ମୋର) ଏବଂ (ଏହିପ୍ରକାର) ଦିବ୍ୟଂ ଜନ୍ମ କର୍ମ ଚ (ଦୈବୀ ଜନ୍ମ ଓ କର୍ମ) ତତ୍ତ୍ୱତଃ (ସ୍ୱରୂପତଃ) ବେତ୍ତି (ଜାଣନ୍ତି), ସଃ (ସେ) ଦେହଂ ତ୍ୟକ୍ତ୍ୱା (ଶରୀର ତ୍ୟାଗ କରି) ପୁନଃ ଜନ୍ମ (ପୁନର୍ବାର ଜନ୍ମ) ନ ଏତି (ପ୍ରାପ୍ତ ହୁଅନ୍ତି ନାହିଁ) ; [କିନ୍ତୁ ସେ ବରଂ] ମାଂ (ମୋ ଠାକୁହିଁ) ଏତି (ଫେରି-ଆସନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ମୋର ଏହିପ୍ରକାର ଦୈବୀ ଜନ୍ମ ଓ କର୍ମ ଯେଉଁମାନେ ଉତ୍ତମରୂପେ ହୃଦ୍‌ବୋଧ କରନ୍ତି, ସେମାନେ ଦେହ-ତ୍ୟାଗପରେ ଆଉ ଦେହ ଧାରଣ କରନ୍ତି ନାହିଁ । ସେମାନେ ମୋ ଠାକୁହିଁ ଫେରିଆସନ୍ତି ।"

**ବିଶେଷ ଭାଷ୍ୟ**

ଏହି ପୃଥିବୀକୁ 'ପୁନର୍ଜନ୍ମ' ନେଇ ଫେରି-ନ-ଆସିବାଟା ବେଦ-ପରବର୍ତ୍ତୀ ଭାରତୀୟ ଜୀବନାଦର୍ଶ । ବେଦରେ ବରଂ ପୁଣି ଜନ୍ମି ଜୀବନୋପଭୋଗ କରିବାକୁ ପ୍ରାର୍ଥନା ଅଛି । ବେଦ ଓ ଉପନିଷଦ୍‌ଭିତରେ ଅନ୍ତତଃ ହଜାରେ ବର୍ଷର ତଫାତ୍ । ସେତେବେଳକୁ ଉତ୍ତର-ଦେଶାଗତ ଜୀବନ-ଭୋଗୀ ଇଣ୍ଡୋ-ଏରିୟାନ୍‌ମାନଙ୍କପ୍ରତି ଭାରତର ସମତଳଭୂମିର ଉଷ୍ଣ ଓ ଜଳମୟ ଆବହାଉଆରେ ରହି ବଞ୍ଚିବାଟା କ୍ରମେ ଦୁଃଖଦାୟକ ବୋଲି ମନେ ହେଲାଣି । ହଜାରେ ବର୍ଷଭିତରେ ଯେକୌଣସି ସଭ୍ୟତା ବାର୍ଦ୍ଧକ୍ୟ ଅନୁଭବ କରି ଜୀବନ-ବିତୃଷ୍ଣ ହେବାଟା ଅସ୍ୱାଭାବିକ ନୁହେଁ । ତେଣୁ ଉପନିଷଦ୍ ଓ ବୌଦ୍ଧଧର୍ମ, ଉଭୟରେ ଜୀବନର 'ଦୁଃଖ'-ଉପରେହିଁ ଏ ଦେଶର ଚିନ୍ତାନାୟକମାନଙ୍କର ବିଶେଷ ଦୃଷ୍ଟି ପଡ଼ିଥିବାର ଆମେ ଦେଖୁଁ ଏବଂ ଏ 'ଦୁଃଖ'ରୁ ତ୍ରାଣ ପାଇବାର ଏକମାତ୍ର ଉପାୟ ବୋଲି ଧରାହୋଇଛି "ଜନ୍ମ ନ ହେବା" ବା "ମୃତ୍ୟୁକୁ ଅତିକ୍ରମ କରିବା", କାରଣ ଜନ୍ମ ମାନେ ମୃତ୍ୟୁ। ତେଣୁ ଉପନିଷଦର ବହୁ-ଉଚ୍ଚାରିତ 'ଅ-ମୃତ' ଶବ୍ଦର ତାତ୍ପର୍ଯ୍ୟ ମଧ୍ୟ ସେହି— "ଆଉ ଜନ୍ମ ନ ହେବା" । ବୁଦ୍ଧଙ୍କ 'ନିର୍ବାଣ' ମଧ୍ୟ ସେୟା । ଦ୍ୱିତୀୟ ଅଧ୍ୟାୟରେ ଗୀତା ସେହି ବୌଦ୍ଧଭାବ ସହିତ ଆପୋସ କରି 'ବ୍ରହ୍ମ-ନିର୍ବାଣ' କଥା କହି-ସାରିଛନ୍ତି । କିନ୍ତୁ ଆମେ ଦେଖୁଛୁଁ ଯେ, ଏହି ଚତୁର୍ଥ ଅଧ୍ୟାୟ ବେଳକୁ ନିର୍ଗୁଣ ନିରାକାର 'ବ୍ରହ୍ମ' ସ୍ଥାନରେ ଏକ ଶରୀରଧାରୀ ସଗୁଣ ଈଶ୍ୱର ଆସି ଠିଆ ହେଲେଣି ଏବଂ ସେ ପୁଣି ହେଲେ ସ୍ୱୟଂ ଅର୍ଜୁନଙ୍କ ପିଉସୀ-ପୁଅ ଭାଇ ଓ

ରଥ-ଚାଳକ ତଥା ଗୀତାର ବ୍ୟାଖ୍ୟାକର୍ତ୍ତା ଶ୍ରୀକୃଷ୍ଣ । ଖୁବ୍ ସମ୍ଭବତଃ, 'ପୁନର୍ଜନ୍ମ ନ ହେବା'ଟା କାଳେ ଅନିର୍ଦ୍ଦିଷ୍ଟ ବୌଦ୍ଧ 'ନିର୍ବାଣ'କୁହିଁ ବୁଝେଇବ ଏବଂ ପାର୍ଥିବ ଜୀବନପ୍ରତି ସ୍ୱାଭାବିକ ବିତୃଷ୍ଣା ସୃଷ୍ଟି କରିବ, ଏଇଥିପାଇଁ ବୋଧହୁଏ ଗୀତା ଏଠାରେ ଅବତାରବାଦ ପରିବେଷଣ କରିଛନ୍ତି । ଏଠାରେ ଗୀତା ଏହି ସୂତ୍ରରେ ହୁଏତ କହିରଖୁଛନ୍ତି ଯେ, "ଇହଜୀବନପ୍ରତି ବିତୃଷ୍ଣ ହୁଅ ନାହିଁ । ମନେ କର ନାହିଁ ଯେ ସତ୍ୟ, ସାଧୁତା ଓ ଧର୍ମ ଏ ପୃଥିବୀରେ ଅର୍ଥହୀନ । ତୁମେ ବୋଧହୁଏ ଜାଣନି ଅର୍ଜୁନ, ସାଧୁ-ସଜ୍ଜନଙ୍କ ରକ୍ଷାପାଇଁ, ଧର୍ମ ଓ ନ୍ୟାୟର ସମ୍ମାନପାଇଁହିଁ ମୁଁ ବାରମ୍ବାର ପୃଥିବୀରେ ମନୁଷ୍ୟରୂପରେ ଜନ୍ମ ନେଇଥାଏଁ । ତମକୁ ମଧ୍ୟ ଜୀବନର, ସତ୍ୟର, ନ୍ୟାୟର ମହିମା ପ୍ରତିଷ୍ଠାପାଇଁ କର୍ମ କରିବାକୁ ହେବ । ଏ ତତ୍ତ୍ୱ ଭଲ-ଭାବରେ ହୃଦୟଙ୍ଗମ କରିବା ହେତୁ ଯିଏ ଅଧର୍ମ-ପଥ ତ୍ୟାଗ କରି ସତ୍ୟ-ନ୍ୟାୟ-ଧର୍ମ-ପଥରେହିଁ ଚାଲନ୍ତି ଓ ସେଗୁଡ଼ିକର ପ୍ରତିଷ୍ଠାପାଇଁ ଲଢ଼ନ୍ତି, ସେମାନଙ୍କର ପୁନର୍ଜନ୍ମ ତ ହେବ ନାହିଁ, ବରଂ ସେମାନେ ମୋ ପାଖକୁ ଆସିବେ, ମୋର ଐଶ୍ୱର୍ଯ୍ୟ ସହିତ ଏକୀଭୂତ ହୋଇଯିବେ ।"

ଏହା ଖ୍ରୀଷ୍ଟଧର୍ମର ଆଦର୍ଶ ସହିତ ବହୁଭାବରେ ସମାନ ।

## ୧୦

ବୀତରାଗଭୟକ୍ରୋଧା ମନ୍ମୟା ମାମୁପାଶ୍ରିତାଃ
ବହବୋ ଜ୍ଞାନତପସା ପୂତା ମଦ୍‌ଭାବମାଗତାଃ । ୧୦ ।

ବୀତରାଗଭୟକ୍ରୋଧାଃ (ଯେଉଁମାନଙ୍କର ପାର୍ଥିବ ବିଷୟାଦି ସଂପର୍କରେ ଅନୁରକ୍ତି, ଭୟ ଓ କ୍ରୋଧ ଦୂର ହୋଇଛି) ମନ୍ମୟାଃ (ଯେଉଁମାନେ ମୋଠାରେ ଅର୍ଥାତ୍ ଈଶ୍ୱରଙ୍କଠାରେ ସମର୍ପିତଭାବନା) [ଏପରି] ବହବଃ (ବହୁ ସାଧକ) ମାଂ ଉପାଶ୍ରିତାଃ (ମତେ ଆଶ୍ରୟ କରି) ଜ୍ଞାନତପସା ପୂତାଃ (ଜ୍ଞାନ-ତପସ୍ୟାଦ୍ୱାରା ପବିତ୍ରୀକୃତ ହୋଇ) ମଦ୍‌ଭାବଂ ଆଗତାଃ (ମୋର ସତ୍ତା ସହିତ ମିଳିତ ହୋଇ-ଯାଇଥାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, କାମ-କ୍ରୋଧ-ଭୟଶୂନ୍ୟ ଅଥଚ ମତ୍‌ମୟ ଅର୍ଥାତ୍ ଈଶ୍ୱର-ମୟ ଏହି ସାଧକମାନେ ନିଜର ସେହି ଜ୍ଞାନ-ତପଦ୍ୱାରା ପବିତ୍ରୀକୃତ ହୋଇ ସହଜରେ ମୋ (ଈଶ୍ୱର) ସତ୍ତା ସହିତ ମିଳିତ ହୋଇଯାଇଥାନ୍ତି ।"

**ବିଶେଷ ଭାଷ୍ୟ**

ଯେଉଁମାନେ ପୁନର୍ଜନ୍ମ ନ ପାଇ ଈଶ୍ୱରଙ୍କ ସହିତ ମିଳିତ ହେବାର ଆଶା କରନ୍ତି, ସେମାନଙ୍କର ଐହିକ ଲକ୍ଷଣହିଁ ଏ ଶ୍ଳୋକରେ ଅଧିକଭାବରେ ବର୍ଣ୍ଣିତ ହେଲା । ପୂର୍ବେ କୁହାଯାଇଥିବା ଗୀତାଦର୍ଶର ଦୁଇଟି ପ୍ରଧାନ ଦିଗକୁ ପାଠକେ ବରାବର ସ୍ମରଣ ରଖିଥିବେ । ଗୀତାର ଆଦର୍ଶ—ମନୁଷ୍ୟ ବା ସାଧକ ତାଙ୍କର ଦୈନନ୍ଦିନ ଜୀବନରେ ଦୁଇଟି ମୁଖ୍ୟ ପ୍ରବଣତା ଅଭ୍ୟାସ କରିଚାଲିବେ । ସେ ଏକପକ୍ଷରେ ପାର୍ଥିବ ବିଷୟାଦିପ୍ରତି 'ସକ୍ତ' ବା ଆସକ୍ତିଯୁକ୍ତ ହେବେ ନାହିଁ, ଅନ୍ୟ ପକ୍ଷରେ ତାଙ୍କର ସମସ୍ତ ଆସକ୍ତିକୁ ନେଇ ସେ ଈଶ୍ୱରଙ୍କଠାରେ 'ଯୁକ୍ତ' ରଖିବେ । ଏ ଶ୍ଳୋକରେ ତାହାହିଁ ସୂଚିତ । ସାଧକ ଏକାଧାରରେ ହେବେ 'ବୀତରାଗଭୟକ୍ରୋଧ' ଏବଂ 'ମନ୍ମୟାଃ' ଓ 'ମାମୁପାଶ୍ରିତାଃ' । ଏହା ହେଲେ ତାଙ୍କର ଆଭ୍ୟନ୍ତରୀଣ ଜ୍ଞାନ ବା ବୋଧି ରୂପକ ତପସ୍ୟାବଳରେହିଁ ସେ ଆପେ ଆପେ ପବିତ୍ରୀକୃତ ହୋଇ ଈଶ୍ୱର-ମିଳନପାଇଁ ଉପଯୁକ୍ତ ହୋଇ ଉଠିବେ (ଜ୍ଞାନତପସା ପୂତାଃ) ।

ପାଠକେ ମନେ ରଖିବେ ଯେ, କ୍ରୋଧ ପରି ଭୟ ମଧ୍ୟ କାମରୁ ଉତ୍ପନ୍ନ । ଯାହାର କୌଣସି କାମନା ନାହିଁ, ତାର ଭୟ କଣ ? ଆମ ଜୀବନର ମୌଳିକ ବିକାର ତେଣୁ ହେଲା କାମ—ବିବିଧ ପାର୍ଥିବ ଲାଳସା । ଏହି ପାର୍ଥିବ-ଅଭିଳାଷ-ପ୍ରବଣତାକୁ ଈଶ୍ୱର-ମୟ କରିବାହିଁ ଏକମାତ୍ର ଧର୍ମ-ସାଧନା ।

୧୧

ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ । ୧୧ ।

ପାର୍ଥ (ହେ ଅର୍ଜୁନ), ଯେ (ଯେଉଁମାନେ) ଯଥା (ଯେପରିଭାବରେ) ମାଂ ପ୍ରପଦ୍ୟନ୍ତେ (ମତେ ଅର୍ଥାତ୍ ଈଶ୍ୱରଙ୍କୁ ଉପାସନା କରନ୍ତି), ଅହଂ (ମୁଁ ଅର୍ଥାତ୍ ଈଶ୍ୱର) ତାନ୍ (ସେମାନଙ୍କୁ) ତଥା ଏବ (ଠିକ୍ ସେହିଭାବରେହିଁ) ଭଜାମି (ଅନୁଗ୍ରହ କରିଥାଏଁ) । ମନୁଷ୍ୟାଃ (ଲୋକେ) ସର୍ବଶଃ (ସବୁପ୍ରକାରେ ଅର୍ଥାତ୍ ଯିଏ ଯେପରିଭାବରେ ପୂଜା କରୁଥାନ୍ତୁ) ମମ ବର୍ତ୍ମ (ମୋର ଅର୍ଥାତ୍ ଈଶ୍ୱରଙ୍କର ପଥକୁ) ଅନୁବର୍ତ୍ତନ୍ତେ (ଅନୁସରଣ କରିଥାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ମତେ ପାଇବାର ଏକାଧିକ ପଥ ଅଛି ଏବଂ ମତେ ଯିଏ ଯେପରିଭାବରେ ଉପାସନା କରିଥାନ୍ତି, ମୁଁ ସେମାନଙ୍କୁ ସେହିପରିଭାବରେ ଅନୁଗ୍ରହ

କରିଥାଏଁ । ମନୁଷ୍ୟମାନେ ଯେଉଁ ବାଟରେ ଗଲେ ଗଲନ୍ତୁ, ଶେଷରେ ମୋ ପାଖରେହିଁ ଆସି ପହଞ୍ଚନ୍ତି ।"

## ବିଶେଷ ଭାଷ୍ୟ

ପୂର୍ବ ଶ୍ଳୋକରେ 'ମଦ୍ଭକ୍ତାଃ' 'ମାମୁପାଶ୍ରିତାଃ' କଥା କୁହାଗଲାପରେ ସ୍ୱାଭାବିକ ପ୍ରଶ୍ନ ହେବ ଯେ "କେଉଁଭାବରେ ଲୋକ 'ତୁମ-ମଦ୍ଭକ୍ତ' ବା 'ତୁମ-ଆଶ୍ରିତ' ହେଲେ ବୋଲି କୁହାଯିବ ?" ଏହିପରି ପ୍ରଶ୍ନ ଉଠିବ ବୋଲି ଜାଣିପାରି ଶ୍ରୀକୃଷ୍ଣ ନିଜେ ନିଜେ କହିରଖୁଛନ୍ତି ଯେ "ଈଶ୍ୱର-ଉପାସନାର ଉତ୍ତମ ପଥ ବା ଅଧମ ପଥ ବୋଲି କିଛି ନାହିଁ । ମୁଖ୍ୟ ଆବଶ୍ୟକତା ହେଲା ଆନ୍ତରିକତା । ଆନ୍ତରିକତା ସହିତ ଯିଏ ଯେଉଁ ବାଟରେ ମତେ ଭଜିଲା, ସେ ହିନ୍ଦୁ, ଖ୍ରୀଷ୍ଟାନ, ମୁସଲମାନ, ପୌତ୍ତଳିକ, ଅପୌତ୍ତଳିକ ଯାହା ହେଉ, ମୁଁ ତାକୁ ତାର ଅନ୍ତରର ଶ୍ରଦ୍ଧା, ବିଶ୍ୱାସ ଓ ଭରସା ଅନୁସାରେ ଭେଟିଥାଏଁ । ଯେଉଁ ବାଟରେ ସେ ଆସୁ ତାକୁ କିନ୍ତୁ 'ମଦ୍ଭକ୍ତାଃ' (ମୁଁ-ମଦ୍ଭକ୍ତ) ଓ 'ମାମୁପାଶ୍ରିତାଃ' ( ମୁଁହିଁ ଏକମାତ୍ର ଆଶ୍ରୟ) ଭାବ ଧରି ଆସିବାକୁ ହେବ ।"

ଏହି ଶ୍ଳୋକଟି ମଧ୍ୟ ଗୀତାର ଏକ ପରମ ଉଦାର ବାଣୀ । ଏପ୍ରକାର ଉଦାରତା ଅନ୍ୟ ଧର୍ମମାନଙ୍କରେ ଥିଲେ ପୃଥିବୀର ଇତିହାସ କୋଟି କୋଟି ନିର୍ଦ୍ଦୋଷ ନରନାରୀର ରକ୍ତରେ ରଞ୍ଜିତ ନ ହୋଇ ହୁଏତ ସଂପୂର୍ଣ୍ଣ ଭିନ୍ନ ଆକାର ଧାରଣ କରିଥାନ୍ତା । ଅନ୍ତତଃ ଆମ ପବିତ୍ର ଜନ୍ମଭୂମି ଭାରତମାତା ତିନି ଭାଗ ହୋଇ ନ ଥାନ୍ତା । ବିଶ୍ୱରେ ଚିରନ୍ତନ ଶାନ୍ତି କେହି ଯଦି ଆଶା କରେ ତେବେ ତାକୁ ଗୀତାର ଏହି ବାଣୀକୁହିଁ 'ମଟୋ'(Motto)ରୂପେ ଗ୍ରହଣ କରିବାକୁ ହେବ ।

ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ତାଙ୍କ ଗୀତାରେ ଗୀତାର ଏହି ଶ୍ଳୋକଟିର ବ୍ୟାଖ୍ୟା କରିବାଉଚିତରେ ଭାରତୀୟ ଧର୍ମୀୟ ଉଦାରତାର ପ୍ରତୀକସ୍ୱରୂପ ଉଦୟନାଚାର୍ଯ୍ୟଙ୍କର ନିମ୍ନଲିଖିତ ଶ୍ଳୋକଟିକୁ କେବଳ ଯେ ଉଦ୍ଧାର କରିଛନ୍ତି ତା ନୁହେଁ, ବରଂ ଆଚାର୍ଯ୍ୟ ଆଧୁନିକ କାଳରେ ଜନ୍ମ ହୋଇଥିଲେ 'ଶ୍ଳୋକଟିକୁ କିପରି ବଦଳେଇଥାନ୍ତେ, ତାର ଏକ କୌତୁକାବହ ଉଦାହରଣ ମଧ୍ୟ ଦେଇଛନ୍ତି । ତାହାହିଁ ଏଠାରେ ଉଦ୍ଧାର କରିଦିଆଯାଉଛି—

ଯଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତି ବେଦାନ୍ତିନଃ
ବୌଦ୍ଧାଃ ବୁଦ୍ଧ ଇତି ପ୍ରମାଣପଟବଃ କର୍ତ୍ତେତି ନୈୟାୟିକାଃ ।

ଅର୍ହନ୍ନିତ୍ୟଥ ଜୈନଶାସନରତାଃ କର୍ମେତି ମୀମାଂସକାଃ
(ଖ୍ରୈଷ୍ଟ୍ୟାଃ ଖ୍ରିଷ୍ଟଶ୍ଚେତି କ୍ରିୟାପରରତାଃ ଅଲ୍ଲେତି ମାହମ୍ମଦାଃ)
ସୋଽୟଂ ବଃ ବଦଧାତୁ ବାଞ୍ଛିତଫଳଂ ତ୍ରୈଲୋକ୍ୟନାଥୋ ହରିଃ ।

ଉଦାର ମୁସଲମାନ ସମ୍ରାଟ୍ ଆକବରଙ୍କ କଳ୍ପିତ ବିଶ୍ୱଧର୍ମ ଦୀନ୍-ଇଲାହିରେ ଥିବା ନିମ୍ନୋକ୍ତ ସାର୍ବଜନୀନ ପ୍ରାର୍ଥନା ଆବୁଲ୍‌ଫଜଲ୍‌ଙ୍କଦ୍ୱାରା ବର୍ଣ୍ଣିତ—

"ହେ ପରମେଶ୍ୱର, ତୁମକୁ ଖୋଜୁଥିବା ଲୋକଙ୍କୁ ମୁଁ ପ୍ରତି ଧର୍ମ-ମନ୍ଦିରରେ ଦେଖେଁ । ପ୍ରତ୍ୟେକ ମନୁଷ୍ୟଭାଷାରେ ତୁମେ ସ୍ତୁତ ଓ ବନ୍ଦିତ ହୋଇ-ଅଛ । ବହୁଦେବକ ଅନ୍ୟ ଧର୍ମ ଏବଂ ଏକ-ଦେବକ ଇସଲାମ୍ ସମସ୍ତେହିଁ ଏକ ତୁମକୁହିଁ ଖୋଜୁଛନ୍ତି । ପ୍ରତ୍ୟେକ ଧର୍ମ ମଧ୍ୟ କହେ ଯେ 'ତୁମେ ଏକ ଏବଂ ଅଦ୍ୱିତୀୟ' । ମସଜିଦରେ ତୁମର ପ୍ରାର୍ଥନା ଗୁଣୁ ଗୁଣୁ ସ୍ୱରରେ ହେଲେ, ଖ୍ରୀଷ୍ଟୀୟ ଗୀର୍ଜାରେ ତୁମକୁ ପ୍ରେମ କରୁଥିବା ଲୋକେହିଁ ଘଣ୍ଟାଧ୍ୱନି ଦେଇ ପ୍ରାର୍ଥନା ଆରମ୍ଭ କରିଥାନ୍ତି । ମୁଁ ଯେପରି ମସଜିଦକୁ ଯାଏ, ସେହିପରି ମଧ୍ୟ ଖ୍ରୀଷ୍ଟାନ ଯାଏ ଚର୍ଚ୍ଚକୁ । ମନ୍ଦିର, ମସଜିଦ ବା ଗୀର୍ଜା ଯେଉଁଠିକି ଯାଏଁ, ହେ ପରମେଶ୍ୱର, ମୁଁ ସେଠି କେବଳ ତୁମକୁହିଁ ଖୋଜିଥାଏ ।"

—ଆଇନ୍-ଇ-ଆକ୍‌ବରି (ବ୍ଲକମାନ୍) ପୃ : ୩୦

୧୨

କାଙ୍କ୍ଷନ୍ତଃ କର୍ମଣାଂ ସିଦ୍ଧିଂ ଯଜନ୍ତ ଇହ ଦେବତାଃ
କ୍ଷିପ୍ରଂ ହି ମାନୁଷେ ଲୋକେ ସିଦ୍ଧିର୍ଭବତି କର୍ମଜା । ୧୨ ।

ଇହ (ଏହି ସଂସାରରେ) କର୍ମଣାଂ ସିଦ୍ଧିଂ (ଲୋକେ ଯେଉଁ ଯେଉଁ କାମ କରିଥାନ୍ତି, ସେଥିରେ ସିଦ୍ଧି) କାଙ୍କ୍ଷନ୍ତଃ (ତାର ଆକାଙ୍କ୍ଷା କରି) ଦେବତାଃ ଯଜନ୍ତେ (ଭିନ୍ନ ଭିନ୍ନ ଦେବତାଙ୍କୁ ପୂଜା କରିଥାନ୍ତି), ହି (ଯେହେତୁ) ମାନୁଷେ ଲୋକେ (ମନୁଷ୍ୟସମାଜରେ) କର୍ମଜା ସିଦ୍ଧିଃ (କର୍ମଜନିତ ସିଦ୍ଧି) କ୍ଷିପ୍ରଂ ଭବତି (ଶୀଘ୍ର ହୁଏ) ।

**ଅନୁବାଦ**

"ଏ ସଂସାରରେ, ହେ ଅର୍ଜୁନ, କର୍ମର ଫଳାକାଙ୍କ୍ଷା କରି ଲୋକେ ବହୁ ଦେବତାଙ୍କୁ ପୂଜା କରିଥାନ୍ତି, ଯେହେତୁ ଏ ସଂସାରରେ ଶ୍ରେଷ୍ଠ ଶ୍ରେଷ୍ଠ କର୍ମଜ ସିଦ୍ଧି ଶୀଘ୍ରହିଁ ଘଟିଯାଇଥାଏ ।"

## ବିଶେଷ ଭାଷ୍ୟ

ଗୀତା ଏପର୍ଯ୍ୟନ୍ତ 'ଅନାସକ୍ତ' କର୍ମ, 'ଅଫଳାକାଂକ୍ଷୀ' କର୍ମ ଉପରେ ଜୋର ଦେଇ ଆସିଛନ୍ତି । ଖୁବ୍ ଜୋର୍‌ରେ ମଧ୍ୟ କହିସାରିଛନ୍ତି ଯେ "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ"—କର୍ମ କରିବାକୁ ତୁମର ଦାୟିତ୍ୱ, ଫଳ-ଚିନ୍ତା ନୁହେଁ । ଏ ପରିପ୍ରେକ୍ଷୀରେ ଏଠାରେ 'କର୍ମଜ ସିଦ୍ଧି' ଅର୍ଥାତ୍ ଫଳ-ପ୍ରାପ୍ତି ଭିନ୍ନ ଭିନ୍ନ ଦେବୋପାସନାରେ ସହଜରେ ମିଳିଯାଏ ବୋଲି କହିବା ନିଶ୍ଚୟ ପରସ୍ପର-ବିରୋଧାତ୍ମକ ବାକ୍ୟ ବୋଲି ବୋଧ ହେବ । କିନ୍ତୁ ଗୀତାର ଆଦର୍ଶ ଫଳ-ପ୍ରାପ୍ତି ବା ଫଳ-ଅପ୍ରାପ୍ତିର ଆଲୋଚନାରେ ପର୍ଯ୍ୟବସିତ ନୁହେଁ । ଗୀତା ଆଧ୍ୟାତ୍ମିକ ସିଦ୍ଧିର ଗ୍ରନ୍ଥ । ଆଧ୍ୟାତ୍ମିକ ସିଦ୍ଧି ଏକାନ୍ତରେ ନିଜାୟତ୍ତ ଓ କଠିନ ସାଧନା-ସାପେକ୍ଷ । ସାମାନ୍ୟ ପ୍ରମୋସନ, କଣ୍ଟ୍ରାକ୍ଟର, କିଛି ସଦ୍ୟ ଲାଭ ପ୍ରଭୃତି ଶ୍ରେଷ୍ଠ ଶ୍ରେଷ୍ଠ କର୍ମଜ ସିଦ୍ଧି ଦେବଦେବୀ, ସନ୍ଥ-ପୀର ଦେଇପାରନ୍ତି ବୋଲି ସାଧାରଣ ନରନାରୀ ବିଶ୍ୱାସ କରିଥାନ୍ତି ଏବଂ ସେହି ହେଉଛି ସେମାନଙ୍କର ଧର୍ମ ସାଧନା । ଗୀତା କିନ୍ତୁ ମୂଳରୁ ଅର୍ଜ୍ଜୁନଙ୍କୁ ଫଳାକାଙ୍କ୍ଷା-ଧରି କରାଯାଉଥିବା ବୈଦିକ କର୍ମକାଣ୍ଡରେ ଭୁଲି ନ ଯାଇ 'ନିସ୍ତ୍ରୈଗୁଣ୍ୟ' ହେବାକୁ ଅର୍ଥାତ୍ ଜୟ-ପରାଜୟ, ମାନ-ଅପମାନ, ସୁଖ ଦୁଃଖ ଇତ୍ୟାଦି ପାର୍ଥିବ ଦ୍ୱନ୍ଦ୍ୱ-ପାଶରୁ ନିଜକୁ ସମ୍ପୂର୍ଣ୍ଣ ମୁକ୍ତ ରଖି ଗୁଣାତୀତ ବ୍ରହ୍ମ-ନିର୍ବାଣ ଅବସ୍ଥା ପାଇବାକୁ ଉପଦେଶ ଦେଇ-ଆସୁଛନ୍ତି । ଦ୍ୱିତୀୟ ଅଧ୍ୟାୟର ୪୨, ୪୩, ୪୪ ଶ୍ଳୋକାବଳୀରେ ଯାଗଯଜ୍ଞାଦି "ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି" ବୋଲି ବର୍ଣ୍ଣିତ ଅଛି । ସେସବୁ ତେଣୁ ମୋଟରେ 'ଜନ୍ମକର୍ମଫଳପ୍ରଦାଂ' ମାତ୍ର, ଅର୍ଥାତ୍ ଜନ୍ମ-ମୃତ୍ୟୁ-ବନ୍ଧନ ରୂପକ ଦୁଃଖରୁ ମନୁଷ୍ୟକୁ ମୁକ୍ତ ନ ଦେଇ ତାକୁ ବରଂ ସେସବୁ ବାରଂବାର ସେହି ଦୁଃଖରେ ପକାଇଥାନ୍ତି ।

ଏ ଶ୍ଳୋକରେ ସେହି ଦ୍ୱିତୀୟ ଅଧ୍ୟାୟର ଭାବଗୁଡ଼ିକ ପ୍ରତିଧ୍ୱନିତ ହୋଇଛି ମାତ୍ର । ପ୍ରଭେଦ ଏହି ଯେ, ବୈଦିକ କର୍ମ-କାଣ୍ଡ ପରିବର୍ତ୍ତେ ଏଠି ଭିନ୍ନଭିନ୍ନ ଧର୍ମର ଭିନ୍ନଭିନ୍ନ ଗୌଣ ଦେବଦେବୀଙ୍କର ଉପାସନା ସୂଚିତ ହୋଇଛି । ଏ ଉପାସନା ଫଳରେ ଶ୍ରେଷ୍ଠ ଶ୍ରେଷ୍ଠ 'କର୍ମଜ ସିଦ୍ଧି' 'କ୍ଷିପ୍ର' ହୋଇପାରେ, କିନ୍ତୁ ତାହା କର୍ମ-ବନ୍ଧନରୁ ମୁକ୍ତ ନ ଦେଇ ସେହି ବନ୍ଧନକୁ ଗାଢ଼ତର କରିବାର ଆଶଙ୍କା ।

ଗୀତାଙ୍କ ମତରେ, ଯେହେତୁ ଫଳାସକ୍ତ କର୍ମ ମନୁଷ୍ୟକୁ ଆଧ୍ୟାତ୍ମିକ ଉନ୍ନତି ଦେଇ ନ ପାରେ, ତେଣୁ ସେସବୁ ନିମ୍ନ ଶ୍ରେଣୀର କର୍ମ ଓ ନିମ୍ନ ଶ୍ରେଣୀର ଧର୍ମ-ସାଧନା ମାତ୍ର ।

ପର ଶ୍ଳୋକରେ ବର୍ଣ୍ଣିତ ଚାତୁର୍ବର୍ଣ୍ଣ୍ୟ କର୍ମ ମଧ୍ୟ ଏହି ଶ୍ରେଣୀର ।

୧୩

ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ
ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟମ୍ । ୧୩ ।

ମୟା (ମୋଦ୍ୱାରା ବା ଈଶ୍ୱରଙ୍କଦ୍ୱାରାହିଁ) ଗୁଣକର୍ମବିଭାଗଶଃ (ଗୁଣ ଓ କର୍ମର ବିଭାଗଉପରେ ପ୍ରତିଷ୍ଠିତ କରି) ଚାତୁର୍ବର୍ଣ୍ଣ୍ୟଂ ସୃଷ୍ଟଂ (ସାମାଜିକ ଚାରି ବର୍ଣ୍ଣ ବା ଶ୍ରେଣୀ ସୃଷ୍ଟ) । ତସ୍ୟ କର୍ତ୍ତାରମ୍ ଅପି (ତାର ସ୍ରଷ୍ଟା ହେଲେ ମଧ୍ୟ) ମାଂ (ମତେ ବା ଈଶ୍ୱରଙ୍କୁ) ଅବ୍ୟୟଂ (ଅବିକାରୀ) [ଏବଂ] ଅକର୍ତ୍ତାରଂ (ଅନାସକ୍ତ ଅକର୍ତ୍ତା ବୋଲିହିଁ ) ବିଦ୍ଧି (ଜାଣ) ।

## ଅନୁବାଦ

"ହେ ଅର୍ଜୁନ, ଗୁଣ-କର୍ମ-ପ୍ରତିଷ୍ଠ ସାମାଜିକ ଚାରି ବର୍ଣ୍ଣର ବ୍ୟବସ୍ଥା ମୁଁହିଁ (ଈଶ୍ୱରହିଁ) କରିଛି, ଯଦିବା ମୁଁ କୌଣସିଟିର କର୍ତ୍ତା ନୁହେଁ ଏବଂ ମୁଁ କ୍ଷୟହୀନ ।"

## ବିଶେଷ ଭାଷ୍ୟ

ଅଧିକାଂଶ ରକ୍ଷଣଶୀଳ ହିନ୍ଦୁ ଏହି ଶ୍ଳୋକଟିକୁ ଉଚ୍ଚନୀଚ-ସ୍ପୃଶ୍ୟାସ୍ପୃଶ୍ୟ ଭାବରେ ସଜ୍ଜିତ ହିନ୍ଦୁ ସମାଜ ବ୍ୟବସ୍ଥାର ସମର୍ଥକ ଓ ଶ୍ରେଷ୍ଠ ପ୍ରମାଣ ଭାବରେ ଉଦ୍ଧାର କରିଥାନ୍ତି ।

କିନ୍ତୁ ଆମକୁ ଏହି ଶ୍ଳୋକଟିକୁ ଯାହାର ପୂର୍ବ ଓ ପର ଶ୍ଳୋକ ସହିତ ସମ୍ବନ୍ଧ ରକ୍ଷା କରି ବୁଝିବାକୁ ହେବ । ଏହାହିଁ ହେବ ଏହାର ପ୍ରକୃତ ତାତ୍ପର୍ଯ୍ୟ । ପୂର୍ବ ଶ୍ଳୋକରେ କୁହାଯାଇଛି ଯେ, 'କର୍ମଜ ସିଦ୍ଧି'ପାଇଁ ଏ ପୃଥିବୀରେ ଲୋକେ ସାଧାରଣତଃ ନାନା ଦେବତାଙ୍କର ଉପାସନା କରିଥାନ୍ତି ଏବଂ ସେହି ଉପାସନା ଫଳବତୀ ମଧ୍ୟ ହୋଇଥାଏ ।

ପରବର୍ତ୍ତୀ ଶ୍ଳୋକରେ କୁହାଯିବ ଯେ "ମୁଁ ଏସବୁ କାମ କଲେ ମଧ୍ୟ ମତେ କର୍ମ-ବନ୍ଧନ ଲାଗେ ନା" । ପୂର୍ବ ଶ୍ଳୋକରେ ଯେ କୁହାଗଲା ଲୋକେ କର୍ମଜ ସିଦ୍ଧିପାଇଁ ନାନା ଦେବତାଙ୍କର ଉପାସନା କରିଥାନ୍ତି, ସେମାନେ କିଏ ?

ଗୀତା ଏହି ଶ୍ଳୋକରେ କହିବସିଲେ ଯେ, ସେ ଲୋକେ ସମାଜର ସବୁ ସ୍ତରରେ ଦେଖାଯାନ୍ତି । କେହି କହିପାରିବନି ଯେ, ଏହି ନିମ୍ନଶ୍ରେଣୀୟ ଦେବତାଙ୍କ ଉପାସନା କେବଳ ସମାଜର ନିମ୍ନ ଶ୍ରେଣୀରେ ଦେଖାଯାଇଥାଏ । ଗୁଣ-କର୍ମ-ଭେଦ-ପ୍ରତିଷ୍ଠିତ ଚାରୋଟିଯାକ ସାମାଜିକ ବିଭାଗର ନରନାରୀମାନଙ୍କଠାରେହିଁ ଏହା ଦେଖାଯାଇଥାଏ ।

ସତ୍ତ୍ୱ-ରଜଃ-ତମଃ ଆଦି ଗୁଣର ତାରତମ୍ୟ ଅନୁସାରେ ପୃଥିବୀର ସବୁ ଦେଶରେ ସମାଜ ସ୍ୱାଭାବିକଭାବରେ ଚାରୋଟି ବିଭାଗରେ ବିଭକ୍ତ ହୋଇଯାଇଥାଏ। ସବାଉପରେ ଥାଆନ୍ତି ଜ୍ଞାନଧର୍ମୀ ବୁଦ୍ଧିଜୀବିଗଣ—ଅର୍ଥାତ୍ କବି, ଅଧ୍ୟାପକ, ଲେଖକ, ଶିକ୍ଷକ ଓ ବୈଜ୍ଞାନିକ ଆଦି । ତା ତଳକୁ ଶାସକ-ସଂପ୍ରଦାୟ—ଅର୍ଥାତ୍ ଏବର ପଲିଟିସିଆନ୍‌ମାନେ ଓ ଶାସନ-ସଂସ୍ଥାର ଲୋକେ । ପୂର୍ବେ ଏହି ସ୍ତରରେ ଥିଲେ ରାଜା, ରାଜବଂଶୀୟ ଅର୍ଥାତ୍ କ୍ଷତ୍ରିୟମାନେ । ତା ତଳକୁ ବ୍ୟବସାୟୀ ଗୋଷ୍ଠୀ। ତା ତଳକୁ ସମାଜର ଏବର ଭିନ୍ନ ଭିନ୍ନ 'ସର୍ଭିସେସ୍' ଚଳାଉଥିବା ନାନା ଶ୍ରେଣୀର ସେବକ-ସଂପ୍ରଦାୟ ।

ଦେଶ ଭେଦରେ ଏଗୁଡ଼ିକର ସାମାଜିକ ସଂଜ୍ଞା ବିଭିନ୍ନ ହୋଇପାରେ ଓ ହୋଇଥାଏ । କିନ୍ତୁ ପ୍ରତି ସମାଜରେ ଏହି ଚାରି ପ୍ରାକୃତିକ ବିଭାଗ ଆମେ ନିଶ୍ଚୟ ଦେଖିବାକୁ ପାଇବା, ଏପରିକି ତଥାକଥିତ ଉଗ୍ର-ସାମ୍ୟ ପ୍ରଚାରକ କମ୍ୟୁନିଷ୍ଟ-ଶାସିତ ଦେଶମାନଙ୍କରେ ମଧ୍ୟ ।

କିନ୍ତୁ ଭାରତବର୍ଷରେ 'କାଷ୍ଟ' (Caste) ବା 'ଜାତି' ଆସିଲା କେବଳ ଜନ୍ମଗତ ଅପରିବର୍ତ୍ତନୀୟତାରୁ—ବ୍ୟକ୍ତିର 'ଗୁଣ'କୁ ଭ୍ରୂକ୍ଷେପ ନ କରି । ଅର୍ଥାତ୍ ଘୋର ମୂର୍ଖ ଓ ଆଚାରହୀନ ହେଲେହେଁ ବ୍ରାହ୍ମଣର ପୁଅ ସମ୍ମାନିତ ବ୍ରାହ୍ମଣହିଁ ରହିବ ଏବଂ ଯେତେ ପ୍ରତିଭାବାନ୍ ହୋଇଥିଲେ ମଧ୍ୟ ଏକ ଶୂଦ୍ର ଘୃଣ୍ୟ ଶୂଦ୍ରହିଁ ରହିବ। ଆମ ଆଖି ଆଗରେ ମେହେନ୍ତରପୁଅ ଆମ୍ବେଦକର ବ୍ରାହ୍ମଣୋଚିତ ସକଳ ଗୁଣଭୂଷିତ ହେବାର, ବୈଶ୍ୟ ଗାନ୍ଧୀ ବିଶ୍ୱ-ନମସ୍ୟ ମହାତ୍ମା ହେବାର, ପୁଣି କବି ଧୀମ ଭୋଇ ଓ ତନ୍ତୀ ମେହେର ଉଚ୍ଚ ଶ୍ରେଣୀର କବି ଓ ସାଧକ ହେବାର ଦେଖି ଜନ୍ମଗତ 'ଚତୁର୍ବର୍ଣ୍ଣ'କୁ ଆମେ ସ୍ୱୀକାର କରିବା, ଏହାହିଁ କଣ ଈଶ୍ୱରକୃତ ?

ସର୍ବପଲ୍ଲୀ ରାଧାକିଷ୍ଣନ୍ ନିଜ ଗୀତା-ଭାଷ୍ୟରେ ଏ ସଂପର୍କରେ ମହାଭାରତରୁ ନିମ୍ନ ଉଦାହରଣସବୁ ଉଦ୍ଧାର କରିଛନ୍ତି—

ଏକ ବର୍ଣ୍ଣଂ ଇଦଂ ପୂର୍ବଂ ବିଶ୍ୱଂ ଆସୀତ୍ ଯୁଧିଷ୍ଠିର
କର୍ମକ୍ରିୟାବିଶେଷେଣ ଚାତୁର୍ବର୍ଣ୍ଣ୍ୟଂ ପ୍ରତିଷ୍ଠିତଂ ।

(ହେ ଯୁଧିଷ୍ଠିର, ପୂର୍ବେ ସମଗ୍ର ବିଶ୍ୱରେ ଗୋଟିଏମାତ୍ର ବର୍ଣ୍ଣ ବା ଜାତି ଥିଲା । କିନ୍ତୁ କ୍ରମେ କର୍ମ-କ୍ରିୟାର ବିଶେଷତ୍ୱ ଦେଇହିଁ ଚାରିବର୍ଣ୍ଣ ପ୍ରତିଷ୍ଠିତ ହେଲା ।) କିନ୍ତୁ

ସଙ୍କରାତ୍ ସର୍ବବର୍ଣ୍ଣାନାଂ ଦୁଷ୍ପରୀକ୍ଷ୍ୟେତି ମେ ମତିଃ
ସର୍ବେ ସର୍ବାସ୍ୱପତ୍ୟାନି ଜନୟନ୍ତି ସଦା ନରାଃ
ତସ୍ମାତ୍ ଶୀଳଂ ପ୍ରଧାନେଷ୍ଟଂ ବିଦୁଃ ଯେ ତତ୍ତ୍ୱଦର୍ଶିନଃ ।

(ଏଥିମଧ୍ୟରେ ଘଟିଥିବା ପରିବ୍ୟାପ୍ତ ସାଂକର୍ଯ୍ୟ ହେତୁ କୌଣସି ହେଲେ ବର୍ଣ୍ଣର ବିଶୁଦ୍ଧତା ବର୍ତ୍ତମାନ ଜାଣିବା କଷ୍ଟକର । ପୁରୁଷମାନେ ଯେକୌଣସି ସ୍ତ୍ରୀଠାରେ ସନ୍ତାନ ଉତ୍ପାଦନ କରିଚାଲିଛନ୍ତି । ତେଣୁ ତତ୍ତ୍ୱଜ୍ଞ ପଣ୍ଡିତ ଲୋକେ ଲୋକର ଶୀଳ ବା ଆଚରଣକୁହିଁ ତାର ବର୍ଣ୍ଣର ଏକମାତ୍ର ପ୍ରମାଣ ବୋଲି ଧରିଥାନ୍ତି । )

ଗୀତା ଏ ଶ୍ଳୋକରେ ବା ଅନ୍ୟ କୌଣସିଠାରେ ହେଲେ ଅ-ଯୌକ୍ତିକ ଜନ୍ମ-ପ୍ରତିଷ୍ଠ କୌଳିକ ଜାତିପ୍ରଥାକୁ ସମର୍ଥନ ଜଣାଇ ନାହାନ୍ତି ।

ବରଂ ପୂର୍ବ ଦୁଇ ଶ୍ଳୋକର ଭାବକୁ ଅନୁସରଣ କଲେ ଆମେ ଏହି ଶ୍ଳୋକର ଏହି ତାତ୍ପର୍ଯ୍ୟରେହିଁ ପହଞ୍ଚିବା—"ମତେ ଲୋକେ ନାନାଭାବରେ ଉପାସନା କରିଥାନ୍ତି । ଯେ ଯେପରି ଉପାସନା କରେ, ମୁଁ ତାକୁ ସେହିପରି ଫଳ ଦିଏ । ସାଧାରଣ ଲୋକ ତାତ୍କାଳିକ ବୈଷୟିକ ଫଳପ୍ରାପ୍ତି ପାଇଁ ଗୌଣ-ଦେବତାମାନଙ୍କୁ ପୂଜା କରିଥାନ୍ତି ଏବଂ କିଛି ଫଳ ମଧ୍ୟ ପାଇଥାନ୍ତି । ଗୁଣ ଓ ବ୍ୟବସାୟ ଭେଦରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହିପରି ଚାରିପ୍ରକାର ମନୁଷ୍ୟ ଦେଖାଯାନ୍ତି । ଏହି ପ୍ରତ୍ୟେକ ବିଭାଗରେ ଆମେ ଲୋକମାନଙ୍କଠାରେ ଗୌଣ ଲକ୍ଷ୍ୟ ଓ ଗୌଣ ଉପାସନା ପଦ୍ଧତି ଦେଖିବା । ପରସ୍ପର-ସହଯୋଗରେ ବଞ୍ଚିବାପାଇଁ ଗୁଣ ଓ କର୍ମର ଭିନ୍ନତା ଆବଶ୍ୟକ । ଈଶ୍ୱର ସେଥିପାଇଁ ଅନାସକ୍ତ ଭାବରେ 'ଗୁଣ' ଓ 'କର୍ମ' ବିଭାଗ ସୃଷ୍ଟି କରିଛନ୍ତି । କିନ୍ତୁ ଗୁଣ ଓ କର୍ମକୁ କିଏ କିପରି କାମରେ ଲଗେଇଲା, ତାହା ଏକାନ୍ତରେ ବ୍ୟକ୍ତିଗତ ଦାୟିତ୍ୱ । ଈଶ୍ୱର ସେଠାରେ ଅକର୍ତ୍ତା । ଚତୁର୍ଦ୍ଧା-ବିଭକ୍ତ ସମାଜ ସାଧାରଣତଃ ଗୌଣ କର୍ମଜସିଦ୍ଧି ସକାଶେହିଁ ବ୍ୟାକୁଳ । ତେଣୁ କୌଣସି ବିଭାଗ କେବଳ ଜନ୍ମ-ପ୍ରତିଷ୍ଠଭାବରେ ସମ୍ମାନିତ ହେବା ଉଚିତ ନୁହେଁ । ଏହାଙ୍କୁ ମୁଁ ଗୁଣ-କର୍ମ-ପ୍ରତିଷ୍ଠ କରି ଗଢ଼ିଥିଲି । ନିମ୍ନ ଶ୍ରେଣୀର ଗୁଣ-କର୍ମ ଯେପରି ଜନ୍ମ-ନିର୍ବିଶେଷରେ ସମସ୍ତଙ୍କୁ ପାର୍ଥିବ କରି ରଖିଛି ଓ ରଖିବ, ଉଚ୍ଚ ସ୍ତରର ଗୁଣ-କର୍ମ ସେହିପରି ସେମାନଙ୍କୁ, ସେମାନେ ଯେକୌଣସି ସ୍ତରରେ ଅବସ୍ଥିତ ହୋଇଥାନ୍ତୁ ନା କାହିଁକି, ଆଧ୍ୟାତ୍ମିକ ଉନ୍ନତି ଆଣିଦେବ । ଗୁଣ-କର୍ମାନୁଯାୟୀ ଏମାନଙ୍କର ବର୍ତ୍ତମାନ ଅବସ୍ଥିତି, ଭବିଷ୍ୟତ୍ ଉତ୍ଥାନ, ଏପ୍ରକାର ବୈଜ୍ଞାନିକ ଭିତ୍ତିରେ ରଖିଦେଇଥିବା ଯୋଗୁଁ ଏ ସଂପର୍କରେ ମତେ କୌଣସି କର୍ମଜନିତ ଗ୍ଳାନି ଭୋଗ କରିବାକୁ ପଡ଼ୁନି । ମୁଁ କରି ମଧ୍ୟ ଅ-କର୍ତ୍ତା ଏବଂ ଏମାନଙ୍କ ଭିତରେ ଜନ୍ମ ନେଇ ମଧ୍ୟ ମୁଁ ଚିର-ଅବ୍ୟୟ ।"

ଆମେ ଦେଖିବା ଯେ, ଗୀତା ପର ଶ୍ଳୋକରେ ଏହି ଭାବକୁହିଁ ଆହୁରି ସ୍ପଷ୍ଟୀକୃତ କରିଦେଇଛନ୍ତି ।

୧୪

ନ ମାଂ କର୍ମାଣି ଲିମ୍ପନ୍ତି ନ ମେ କର୍ମଫଳେ ସ୍ପୃହା
ଇତି ମାଂ ଯୋଽଭିଜାନାତି କର୍ମଭିର୍ନ ସ ବଧ୍ୟତେ । ୧୪ ।

କର୍ମାଣି (କାମସବୁ) ମାଂ ନ ଲିମ୍ପନ୍ତି [ସେମାନଙ୍କର ଫଳ-ପ୍ରତିକ୍ରିୟାଦ୍ୱାରା] (ମତେ ଅର୍ଥାତ୍ ଈଶ୍ୱରଙ୍କୁ ଲିପ୍ତ କରିପାରନ୍ତି ନାହିଁ) । [କାରଣ] କର୍ମଫଳେ (କର୍ମର ଫଳରେ) ମେ ସ୍ପୃହା ନ ଚ (ମୋର ଅର୍ଥାତ୍ ଈଶ୍ୱରଙ୍କର କୌଣସି-ପ୍ରକାର ହେଲେ ସ୍ପୃହା ନ ଥାଏ ) । ଇତି (ଏହିପରି ଭାବରେ) ଯଃ ମାଂ ଅଭିଜାନାତି (ଯେ ମତେ ଅର୍ଥାତ୍ ଈଶ୍ୱରଙ୍କୁ ଜାଣିପାରିଛନ୍ତି) ସଃ (ସେ ନିଜେ) କର୍ମଭିଃ (କାମଦ୍ୱାରା) ନ ବଧ୍ୟତେ (ବାନ୍ଧିହୋଇ ନ ପାରନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, କର୍ମଫଳରେ ସ୍ପୃହାହୀନ ଥିବାରୁ ମତେ କର୍ମଜନିତ ବନ୍ଧନ ଭୋଗିବାକୁ ହୁଏ ନାହିଁ ଏବଂ ଯେ ମତେ ଏହିଭାବରେ ଜାଣିପାରିଛନ୍ତି, ସେ ମଧ୍ୟ କର୍ମ-ବନ୍ଧନରୁ ମୁକ୍ତ ରହିବେ ।"

**ବିଶେଷ ଭାଷ୍ୟ**

ତୃତୀୟ ଅଧ୍ୟାୟର ଯଜ୍ଞଚକ୍ର ବର୍ଣ୍ଣନାନୁଯାୟୀ ପାଠକେ ସ୍ମରଣ ରଖିବେ ଯେ, ସ୍ୱୟଂ ଈଶ୍ୱର ଅହରହ କର୍ମରତ । ଅର୍ଥାତ୍ ଏଇ ଦୃଷ୍ଟିରେ ସେଇହିଁ ଶ୍ରେଷ୍ଠ କର୍ମୀ । ସେ କେବଳ ସୂର୍ଯ୍ୟ-ଚନ୍ଦ୍ର-ଗ୍ରହ-ତାରକାଦି ଖଚିତ ବିରାଟ ବ୍ରହ୍ମ ସୃଷ୍ଟି କରି ନାହାନ୍ତି ; ଗୁଣକର୍ମବିଭେଦ-ପ୍ରତିଷ୍ଠ ବିରାଟ ମାନବସମାଜ ମଧ୍ୟ ତାଙ୍କର ସୃଷ୍ଟି । କିନ୍ତୁ ଆମେ କର୍ମ କଲେ କର୍ମର ପ୍ରତିକ୍ରିୟାରୂପେ ଜନ୍ମ-ମୃତ୍ୟୁ-ବ୍ୟାଧି ଆଦି ଭୋଗିବା ସ୍ଥଳେ, ଶ୍ରେଷ୍ଠ କର୍ମକାରୀ ଈଶ୍ୱର ଯେଉଁ ଅବ୍ୟୟକୁ ସେହି ଅବ୍ୟୟ । ତାଙ୍କୁ କର୍ମଫଳଜନିତ ପ୍ରତିକ୍ରିୟା ଲାଗୁନି । ଏହା କିପରି ?

ପ୍ରଭେଦ ଏତିକି ଯେ, ଆମେ ଫଳାକାଂକ୍ଷାରେହିଁ କର୍ମ କରିଚାଲିଥାଉଁ ; ତେଣୁ ଫଳର ପ୍ରତିକ୍ରିୟା ମଧ୍ୟ ଗ୍ରହଣ କରିବାକୁ ବାଧ୍ୟ । ଈଶ୍ୱର ଏହି ନିଖିଳ ବିଶ୍ୱର ସ୍ରଷ୍ଟା । କିନ୍ତୁ ତାଙ୍କର ନିଜର ସ୍ୱାର୍ଥ-କେନ୍ଦ୍ରିକ ଅଭିଳାଷ ଏଥିରେ କିଛି ନାହିଁ । ସେ ଆମର ସୁଖଦୁଃଖ-ପାପପୁଣ୍ୟର ବାହାରେ ଓ ଊର୍ଦ୍ଧ୍ୱରେ , ଏବଂ ସେଇଥିପାଇଁହିଁ ସେ ଚିର ସତ୍-ଚିତ୍-ଆନନ୍ଦ ।

ଈଶ୍ୱର ନିଖିଳ ସୃଷ୍ଟି ସହିତ ମନୁଷ୍ୟ-ସମାଜକୁ ମଧ୍ୟ ଗୁଣକର୍ମବିଭେଦ-ଉପରେ ପ୍ରତିଷ୍ଠିତ କରିଛନ୍ତି ଏବଂ କରିଛନ୍ତି ମଧ୍ୟ ପ୍ରତ୍ୟେକ ବ୍ୟକ୍ତିକୁ । କିନ୍ତୁ ପାର୍ଥିବ

ସୁଖ-ସୁବିଧା-ବ୍ୟବସ୍ଥାରେ, କେତେକ ଲୋକ ଯାହା ଗୁଣ-ପ୍ରତିଷ୍ଠ ହେଲେ ଯାଇ ପାଇବାର କଥା, ତାକୁ ଜନ୍ମ-ପ୍ରତିଷ୍ଠ ରଖିବାକୁ ଚାହାନ୍ତି ଏବଂ ସଦ୍ୟ-ତାତ୍କାଳିକ ପାର୍ଥିବ ସୁବିଧାସବୁ ପାଇବାପାଇଁ ଲୋକେ ନିଖିଳ ବିଶ୍ୱର ସ୍ରଷ୍ଟାଙ୍କୁ ଛାଡ଼ି ନିମ୍ନ ଶ୍ରେଣୀର ଇତର ଦେବଦେବୀ ମଧ୍ୟ ପୂଜା କରିବସନ୍ତି । ଏଥିପାଇଁ ତ ଆଉ ଆମେ ଈଶ୍ୱରଙ୍କୁ ଦାୟୀ କରିବାନି ? ଈଶ୍ୱର ଓ ଈଶ୍ୱରଙ୍କ ନିୟମାବଳୀ ଏକ ଓ ଅଭିନ୍ନ । ଯିଏ ସୃଷ୍ଟି ପଛରେ ଥିବା ଈଶ୍ୱରଙ୍କର ନିୟମାବଳୀ ଓ ସେଗୁଡ଼ିକର କ୍ରିୟା ଉତ୍ତମରୂପେ ଜାଣେ, ସେଇହିଁ ପ୍ରକୃତରେ ଈଶ୍ୱରଙ୍କୁ ଜାଣେ । ଗୌଣ ଲାଭ-ପାଇଁ ଯେ ନିମ୍ନ ଶ୍ରେଣୀର ଦେବଦେବୀଙ୍କ ଆଶ୍ରୟ ନିଏ, ସେ ଈଶ୍ୱରଙ୍କୁ ଜାଣିବାର ବା ଈଶ୍ୱରମୟ ଥିବାର କୁହାଯାଇ ନ ପାରେ । ବୁଦ୍ଧ ଈଶ୍ୱରଙ୍କ ନାମୋଚ୍ଚାରଣ ନ କରି ବା କେବେ ହେଲେ ପ୍ରାର୍ଥନା ନ କରି, ସକଳ ଈଶ୍ୱର-ଗୁଣ-ଯୁକ୍ତ ହୋଇ-ପାରିଥିଲେ ; କାରଣ ସେ ନିଜକୁ କରିପାରିଥିଲେ ସଂପୂର୍ଣ୍ଣ ସତ୍ତ୍ୱଗୁଣସଂପନ୍ନ । ଆମେ ତମଃ ସ୍ତରରେ ପଡ଼ିରହିବାକୁ ଚାହୁଁ ; ତେଣୁ ସେହି ସ୍ତରରେ ପଡ଼ି ଦୁଃଖ ଭୋଗ କରୁଛୁଁ । କିନ୍ତୁ ସାଧନା କଲେ ଆମେ ପ୍ରତ୍ୟେକେ ବୁଦ୍ଧ ବା ଗାନ୍ଧି ହୋଇ-ପାରିବା । ଆମେ ଯେ ବୁଦ୍ଧ ବା ଗାନ୍ଧି ନ ହୋଇପାରିଛୁଁ ବା ସମୃଦ୍ଧିଶାଳୀ ନ ହୋଇଛୁଁ, ଦୁଃଖ ଦୁର୍ଦ୍ଦଶା ଭୋଗ କରୁଛୁ, ଏହା ଏକାନ୍ତରେ ଆମେ କିପ୍ରକାର ଗୁଣ ଓ କିପ୍ରକାର କର୍ମର ଆଶ୍ରୟ ନେଇଛୁଁ, ତାରି ଉପରେ ନିର୍ଭର କରେ । ଈଶ୍ୱର ଏଠି ସଂପୂର୍ଣ୍ଣ ଅକର୍ତ୍ତା । ସେ କେବଳ ଗୁଣ-କର୍ମ ବିଭାଗର ସ୍ରଷ୍ଟା । ତାକୁ ବ୍ୟବହାର କରିବାର ଦାୟିତ୍ୱ ଏକାନ୍ତରେ ଆମରି ।

ସୃଷ୍ଟି ଯେ ତ୍ୟାଗମୂଳକ, ଯୁକ୍ତିମୂଳକ, ପ୍ରେମମୂଳକ, ପରସ୍ପରାପେକ୍ଷୀ ଏବଂ ସ୍ୱାର୍ଥକୈନ୍ଦ୍ରିକତା ବା ଭୋଗୈଶ୍ୱର୍ଯ୍ୟମତ୍ତତା ଯେ ଜୀବନର ଉତ୍କୃଷ୍ଟ ଆଦର୍ଶ ନୋହିପାରେ, ଗୀତା ଏହା ବାରଂବାର ସୂଚିତ କରିଚାଲିଛନ୍ତି । ସେହି ଅନୁ-ସାରେ ପ୍ରତ୍ୟେକ ଲୋକର ଆଦର୍ଶ ହେବା ଉଚିତ, ନିରହଂକାର ଅନାସକ୍ତ ଲୋକ-ସଂଗ୍ରହ, ଯାହାଫଳରେ କି ସେ କର୍ମ-ପ୍ରତିକ୍ରିୟାର ପ୍ରଭାବରୁ ମୁକ୍ତ ରହିବ, ଠିକ୍ ଯେପରି ସୃଷ୍ଟିର ପରମ ଓ ଅକ୍ଲାନ୍ତ କର୍ମୀ ସ୍ୱୟଂ ଈଶ୍ୱର ଅହରହ କର୍ମ କରି ମଧ୍ୟ କର୍ମଫଳମୁକ୍ତ ରହନ୍ତି ।

ଗୀତା ଏ ଶ୍ଳୋକରେ ତେଣୁ କହୁଛନ୍ତି ଯେ, ସୃଷ୍ଟି ଓ ସ୍ରଷ୍ଟାଙ୍କ ପଛରେ ଥିବା ଏହି ନିୟମଟିକୁ ଜୀବନରେ ଯେ ଅଭ୍ୟାସ କରି ଚାଲିବ, ଯେତେ କର୍ମ କଲେ ମଧ୍ୟ ସେ ବି ଈଶ୍ୱରଙ୍କ ପରି କର୍ମବନ୍ଧନରୁ ମୁକ୍ତ ରହିବ ।

ପରବର୍ତ୍ତୀ ଶ୍ଳୋକରେ ଗୀତା ଏହାହିଁ ଅଧିକଭାବରେ କହିରଖୁଛନ୍ତି ।

୧୫

ଏବଂ ଜ୍ଞାତ୍ୱା କୃତଂ କର୍ମ ପୂର୍ବୈରପି ମୁମୁକ୍ଷୁଭିଃ
କୁରୁ କର୍ମୈବ ତସ୍ମାତ୍ତ୍ୱଂ ପୂର୍ବୈଃ ପୂର୍ବତରଂ କୃତମ୍ । ୧୫ ।

ଏବଂ (ଏହିପରି) ଜ୍ଞାତ୍ୱା (ଜାଣି) ପୂର୍ବୈଃ ମୁମୁକ୍ଷୁଭିଃ ଅପି (ପୂର୍ବକାଳରୁ ମୁକ୍ତି-କାମୀ ଲୋକମାନଙ୍କଦ୍ୱାରା ମଧ୍ୟ) କର୍ମ କୃତଂ (କର୍ମ ଅନୁଷ୍ଠିତ ହୋଇଛି)। ତସ୍ମାତ୍ (ସେହି ହେତୁରୁ) ତ୍ୱଂ (ତୁମେ) ପୂର୍ବୈଃ ପୂର୍ବତରଂ (ପ୍ରାଚୀନମାନଙ୍କଦ୍ୱାରା ପୂର୍ବକାଳରେ) କୃତଂ କର୍ମ ଏବ କୁରୁ (ଅନୁଷ୍ଠିତ ହୋଇଥିବା କର୍ମ ଅନୁସାରେ କର୍ମ କର)।

## ଅନୁବାଦ

"ହେ ଅର୍ଜୁନ, ସୃଷ୍ଟିତଳେ ଥିବା ଗୁଣ ଓ କର୍ମର ଏହି ତତ୍ତ୍ୱକୁ ହୃଦ୍‌ବୋଧ କରି ମୁକ୍ତିକାମୀ ସଜ୍ଜନମାନେ ବହୁ ପୂର୍ବକାଳରୁ ଏହିପରିଭାବରେ କର୍ମ କରି-ଆସିଛନ୍ତି । ତେଣୁ ପୂର୍ବକାଳର ସେହି ପୂର୍ବଗାମୀମାନଙ୍କୁ ଅନୁସରଣ କରି ଅନାସକ୍ତ ଓ ନିରହଂକାରଭାବରେ କର୍ତ୍ତବ୍ୟ କରିଯାଅ ।"

## ବିଶେଷ ଭାଷ୍ୟ

ଗୀତା କହୁଛନ୍ତି, ସୃଷ୍ଟିର ଅନ୍ତରାଳରେ ରହିଥିବା ସ୍ୱୟଂ ଈଶ୍ୱରଙ୍କର ଫଳାଭିଳାଷରହିତ ତ୍ୟାଗମୟ ଯଜ୍ଞାର୍ପିତ କର୍ମର ନିୟମକୁ ଜାଣିପାରି ବହୁ ପ୍ରାଚୀନ କାଳରୁ ମୁକ୍ତିକାମୀ ସଜ୍ଜନବର୍ଗ ଅନାସକ୍ତ କର୍ମର ଅଭ୍ୟାସ କରିଆସିଛନ୍ତି । ତୁମେ ଅନ୍ତତଃ ସେହିମାନଙ୍କ ଆଦର୍ଶ ଅନୁକରଣ କରି ସେହିମାନଙ୍କ ପରି କର୍ମ କର (ଯଦି ମୋ କଥାରେ ତୁମର ବିଶ୍ୱାସ ଜାତ ନ ହେଉଛି) । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏଥିପୂର୍ବରୁ ଜନକାଦି ରାଜର୍ଷିଙ୍କର ଉଦାହରଣ ଦେଇସାରିଛନ୍ତି । ଏଠାରେ ଅନାମିତ ଅନ୍ୟମାନଙ୍କର ଉଦାହରଣ ଦେଲେ । ବାରଂବାର ଏପରି କହିବାର କାରଣ ଏହି ଯେ, ଫଳାକାଙ୍କ୍ଷା ନ ରଖି ସମ୍ପୂର୍ଣ୍ଣ ଅନାସକ୍ତ ରହି କର୍ମ କରିବା ସୁକଠିନ ହେଲେହେଁ ଜୀବନର ପ୍ରକୃଷ୍ଟ ଆଦର୍ଶ । ଏହା ସମ୍ଭବ ହୋଇ-ପାରେ ବୋଲି ସହଜରେ ଲୋକ ବିଶ୍ୱାସ କରିବେନି; ସେହିପରି ମଧ୍ୟ ସୁକଠିନ— ନିଜର କର୍ତ୍ତବ୍ୟ କଣ ବା ଅକର୍ତ୍ତବ୍ୟ କଣ ବାଛିନେବା ।

ପରବର୍ତ୍ତୀ ଶ୍ଳୋକ ଏହି କଠିନ ସମସ୍ୟାପ୍ରତି ଆମର ଦୃଷ୍ଟି ଆକର୍ଷଣ କରୁଛନ୍ତି ।

୧୬

କିଂ କର୍ମ କିମକର୍ମେତି କବୟୋଽପ୍ୟତ୍ର ମୋହିତାଃ
ତତ୍ତେ କର୍ମ ପ୍ରବକ୍ଷ୍ୟାମି ଯଜ୍‌ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ । ୧୬ ।

କର୍ମ କିଂ (କର୍ତ୍ତବ୍ୟ କଣ), ଅକର୍ମ କିଂ (କଣ କର୍ମ ନୁହେଁ ବା କର୍ମଶୂନ୍ୟତା କାହାକୁ କହିବା) ଇତି ଅତ୍ର (ଏ ବିଷୟରେ) କବୟଃ ଅପି (ବିଜ୍ଞ ବ୍ୟକ୍ତିମାନେ ମଧ୍ୟ) ମୋହିତାଃ (ଯାବଗ୍ର ହୋଇଯାଇଥାନ୍ତି) । ତତ୍ (ସେହି ହେତୁରୁ) ତେ (ତୁମକୁ) କର୍ମ ପ୍ରବକ୍ଷ୍ୟାମି (କର୍ମ କଅଣ ଏହା କହିବି) ଯତ୍ (ଯାହା) ଜ୍ଞାତ୍ୱା (ଜାଣି) ଅଶୁଭାତ୍ (ଅଶୁଭରୁ, ବିଶେଷକରି ସଂସାର-ବନ୍ଧନ-ରୂପକ ଅଶୁଭରୁ) ମୋକ୍ଷ୍ୟସେ (ମୁକ୍ତ ହେବ) ।

**ଅନୁବାଦ**

"ହେ ଅର୍ଜୁନ, କଣ କର୍ମ, କଣ ଅକର୍ମ, ଏହାର ସମାଧାନ ଜ୍ଞାନୀ ଲୋକଙ୍କ ପକ୍ଷରେ ମଧ୍ୟ ସହଜ ନୁହେଁ । ତେଣୁ ମୁଁ କର୍ମର ବ୍ୟାଖ୍ୟାନ କରିବି, ଯାହା ଜାଣି ତୁମେ ଅଶୁଭରୁ ରକ୍ଷା ପାଇବ ।"

୧୭

କର୍ମଣୋହ୍ୟପି ବୋଦ୍ଧବ୍ୟଂ ବୋଦ୍ଧବ୍ୟଂ ଚ ବିକର୍ମଣଃ
ଅକର୍ମଣଶ୍ଚ ବୋଦ୍ଧବ୍ୟଂ ଗହନା କର୍ମଣୋଗତିଃ । ୧୭ ।

କର୍ମଣଃ ଅପି (କର୍ତ୍ତବ୍ୟ କର୍ମର ତତ୍ତ୍ୱ ମଧ୍ୟ) ବୋଦ୍ଧବ୍ୟଂ (ଭଲକରି ବୁଝି-ରଖିବା ଉଚିତ), ବିକର୍ମଣଃ ଚ ବୋଦ୍ଧବ୍ୟଂ (ନିଷିଦ୍ଧ କର୍ମର ତତ୍ତ୍ୱ ମଧ୍ୟ ଭଲକରି ବୁଝିବା ଉଚିତ), ଅକର୍ମଣଃ ଚ (କର୍ମଶୂନ୍ୟତାର ତତ୍ତ୍ୱ ମଧ୍ୟ) ବୋଦ୍ଧବ୍ୟଂ (ଭଲ-କରି ବୁଝିନେବା ଉଚିତ), ହି (ଯେହେତୁ) କର୍ମଣଃ ଗତିଃ (କର୍ମର ତତ୍ତ୍ୱ) ଗହନା (ଦୁର୍ଜ୍ଞେୟ) ।

**ଅନୁବାଦ**

"ହେ ଅର୍ଜୁନ, କର୍ମ କଣ, ବିକର୍ମ କଣ ଏବଂ ଅକର୍ମ କଣ, ଏସବୁ ଉତ୍ତମରୂପେ ବୁଝିନେବା ଉଚିତ । କର୍ମାକର୍ମ ଜ୍ଞାନ ଅତି ଜଟିଳ ବୋଲି ଜାଣିବ ।"

**ବିଶେଷ ଦ୍ରଷ୍ଟବ୍ୟ**

ପାଠକେ ସ୍ମରଣ ରଖିବେ ଯେ, ପ୍ରତ୍ୟେକ ନର ଓ ନାରୀର ଜୀବନରେ ପ୍ରକୃତ ସଂକଟ ସେହି, ଯେଉଁଠି ଆମର ଚରିତ୍ର ପରୀକ୍ଷାର ସମ୍ମୁଖୀନ ହୁଏ ।

ଆମେ ସାଧାରଣତଃ ଜୀବନରେ ଆର୍ଥିକ ସଂକଟକୁହିଁ ସଙ୍କଟ ବୋଲି ଧରୁଁ । କିନ୍ତୁ ପ୍ରକୃତ ସଂକଟ ହେଉଛି ନୈତିକ ବା ଆତ୍ମିକ ସଂକଟ, ଯେଉଁଠି ଧନ ଓ ଦାରିଦ୍ର୍ୟ ଅପେକ୍ଷା ଆମକୁ ବାଛିବାକୁ ହୁଏ ନ୍ୟାଯ୍ୟ ବା ଅନ୍ୟାଯ୍ୟ, ସତ୍ୟ ବା ମିଥ୍ୟା, ଲୋକ-ସଂଗ୍ରହ ବା ଲୋକ-ହାନି । ଏହା କଠୋପନିଷଦର ସେହି ଶ୍ରେୟଃ ଓ ପ୍ରେୟଃର ନିର୍ବାଚନର ପ୍ରଶ୍ନ । କୌଣସି ପ୍ରଲୋଭନକୁ 'ନା' କରିଦେଲେ ହୁଏତ ଦୀର୍ଘକାଳ ନିନ୍ଦା, କ୍ଷୁଧା, ଦାରିଦ୍ର୍ୟ ବା କାରାବାସର ଦୁଃଖ ଏକମାତ୍ର ଲାଭ ହେବ । କିନ୍ତୁ ଏବେ ହିଟ୍‌ଲର-ଶାସିତ ଫାସିଷ୍ଟ ଜର୍ମାନୀର କାହାଣୀ ଯାହାସବୁ ବାହାରୁଛି, ସେଥିରୁ ଜଣା ପଡ଼ୁଛି ଯେ, ଯଦିବା ସାମାନ୍ୟ ସୁଖ-ସୁବିଧାପାଇଁ ସେଠି ଅନେକ ଲୋକ ଅକୁଣ୍ଠିତଭାବରେ ହିଟ୍‌ଲରୀ ବର୍ବରତାକୁ ବରଣ କରିନେଇ-ଥିଲେ, ଅନେକେ ସବୁ ଦୁଃଖକଷ୍ଟ ସହି ତାର ପ୍ରତିରୋଧ ବି କରିଥିଲେ । ଯୁଦ୍ଧ-ପରେ ସେହି ପ୍ରତିରୋଧୀମାନେ ବିଶ୍ୱସମ୍ମାନ ଲାଭ କଲେ । ସ୍ୱାଧୀନତୋତ୍ତର ଭାରତରେ ମଧ୍ୟ ଏ ଦୃଶ୍ୟ ଦେଖିବାକୁ ମିଳିଲା । ଶାସକ-ଗୋଷ୍ଠୀର କଳୁଷ-ଚକ୍ରର ଗତିରେ ଯେଉଁମାନେ ସହାୟତା କଲେ, ସେମାନଙ୍କର ବିଭବ-ପ୍ରତିପତ୍ତି ଦେଖେ କିଏ ! କିନ୍ତୁ ବେଶୀ କାଳ ଲାଗିଲାନି ପଟପରିବର୍ତ୍ତନପାଇଁ । ତେଣୁ ପ୍ରତ୍ୟେକର ଜୀବନରେ ନିଶ୍ଚୟ ଦେଖା ଦେଉଥିବା ଏହି ଯେ ନୈତିକ ସଂକଟ, ତାହାକୁହିଁ ଗୀତା କର୍ମ, ଅକର୍ମ ଓ ବିକର୍ମ ନାମରେ ବିଶ୍ଳେଷିତ କରି ଆମକୁ ସେଗୁଡ଼ିକର ମୌଳିକ ତତ୍ତ୍ୱ ଭଲ କରି ଜାଣିରଖିବାକୁ ଏଠାରେ କହିରଖିଛନ୍ତି । ଗୀତାଙ୍କ ମତରେ, ଆମେ କର୍ମ ଅର୍ଥାତ୍ କର୍ତ୍ତବ୍ୟ କର୍ମ କରିଚାଲିବା; କିନ୍ତୁ ଦୂରେଇଚାଲିବା ବିକର୍ମ ଅର୍ଥାତ୍ ମନ୍ଦ କର୍ମକୁ ଏବଂ ଅ-କର୍ମ ଅର୍ଥାତ୍ କର୍ମହୀନତାକୁ ବା ଆଳସ୍ୟକୁ ।

୧୮

କର୍ମଣ୍ୟକର୍ମ ଯଃ ପଶ୍ୟେଦକର୍ମଣି ଚ କର୍ମ ଯଃ
ସ ବୁଦ୍ଧିମାନ୍ ମନୁଷ୍ୟେଷୁ ସ ଯୁକ୍ତଃ କୃତ୍ସ୍ନକର୍ମକୃତ୍ । ୧୮ ।

ଯଃ (ଯେଉଁ ଲୋକ) କର୍ମଣି (ସାଧାରଣତଃ ସମସ୍ତେ କରୁଥିବା କର୍ମରେ) ଅ-କର୍ମ (କର୍ମଶୂନ୍ୟତା ବା ନିଃସାରତା ବା ଅଯୌକ୍ତିକତା), ଅକର୍ମଣି ଚ (କେହି ନ କରୁଥିବା କର୍ମରେ ମଧ୍ୟ) ଯଃ କର୍ମ ପଶ୍ୟେତ୍ (ଯିଏ କର୍ତ୍ତବ୍ୟ ଦେଖିପାରେ), ସଃ ମନୁଷ୍ୟେଷୁ ବୁଦ୍ଧିମାନ୍ (ସେ ହିଁ ମନୁଷ୍ୟମାନଙ୍କ ମଧ୍ୟରେ ବୁଦ୍ଧିମାନ୍ ଅର୍ଥାତ୍ ବିଚକ୍ଷଣ), ସଃ ଯୁକ୍ତଃ (ସେ ଯୋଗଯୁକ୍ତ ବା

ଈଶ୍ୱରଙ୍କ ସହିତ ଯୁକ୍ତ), [ଏବଂ] କୃତ୍ସ୍ନକର୍ମକୃତ୍ (ସର୍ବ କର୍ମ ବା ଯେକୌଣସି କର୍ମର ଅଧିକାରୀ ।)

**ଅନୁବାଦ**

"ଯେଉଁ ଲୋକ ସାଧାରଣ ସମସ୍ତେ କରୁଥିବା କର୍ମରେ ଅ-କର୍ମ ବା କେହି ନ କରୁଥିବା କର୍ମରେ ନିଜର କର୍ତ୍ତବ୍ୟ ଦେଖିପାରେ, ତାକୁହିଁ ମନୁଷ୍ୟମାନଙ୍କ ଭିତରେ ବୁଦ୍ଧିମାନ୍ ବୋଲି ଜାଣିବ ; ସେହି ବ୍ୟକ୍ତିହିଁ ଈଶ୍ୱର-ଯୁକ୍ତ ଓ ପରିପୂର୍ଣ୍ଣ କର୍ମୀ ।"

**ବିଶେଷ ଭାଷ୍ୟ**

ପାଠକେ ଦ୍ୱିତୀୟ ଅଧ୍ୟାୟର '୬୯' ଶ୍ଳୋକଟିକୁ ଏଠାରେ ସ୍ମରଣ କରନ୍ତୁ ।

ଯା ନିଶା ସର୍ବଭୂତାନାଂ
ତସ୍ୟାଂ ଜାଗର୍ତ୍ତି ସଂଯମୀ
ଯସ୍ୟାଂ ଜାଗ୍ରତି ଭୂତାନି
ସା ନିଶା ପଶ୍ୟତୋ ମୁନେଃ ।

(ଯାହା ଅନ୍ୟମାନଙ୍କର ରାତ୍ରି ଅର୍ଥାତ୍ ଯେତେବେଳେ ଅନ୍ୟମାନେ ମୋହନିଦ୍ରାଗତ, ସେତେବେଳେ ସଂଯମୀ ପୁରୁଷ ଜାଗ୍ରତ । ଯେଉଁ କ୍ଷେତ୍ରରେ ସଂଯମୀ ପୁରୁଷ ନିଦ୍ରିତ, ସେଠି ସାଧାରଣ ଲୋକ ଜାଗ୍ରତ୍ ।)

ଏହି ଶ୍ଳୋକଟିର ମଧ୍ୟ ସେହି ଭାବ—କେବଳ ଅନ୍ୟ ଭାବରେ ପ୍ରକାଶିତ । ଆମେ ମହାପୁରୁଷମାନଙ୍କ ଜୀବନୀ ଆଲୋଚନା କଲେ ଦେଖିବା ଯେ, ସେମାନେ ସାଧାରଣ କର୍ମଭିତରେ ଅକର୍ମ (ଅର୍ଥାତ୍ ତାର ଅଯୌକ୍ତିକତା ବା ଅସାରତା) ଓ ସାଧାରଣ ଅକର୍ମଭିତରେ କରଣୀୟ କର୍ମକୁ ଦେଖିପାରିଥିଲେ ଏବଂ ବିକର୍ମ(ମନ୍ଦକର୍ମ)କୁ ଉତ୍ତମରୂପେ ଚହ୍ନିପାରିଥିଲେ । ଆମେ ଏକେ ଭଲ-ମନ୍ଦ ସହଜରେ ଜାଣୁନା, ଜାଣିଲେ ମଧ୍ୟ ମାନସିକ ଦୁର୍ବଳତାବଶତଃ ଭଲ ଛାଡ଼ି ମନ୍ଦ କରିଚାଲିଥାଉଁ । କାରଣ, ଦେଖୁଁ ଯେ ଅନ୍ୟମାନେ ମଧ୍ୟ ତାହାହିଁ କରିଚାଲିଛନ୍ତି । ୨୭ ବର୍ଷ ବୟସରେ ଲୋକେ ବିବାହ କରନ୍ତି । କିନ୍ତୁ ୨୭ ବର୍ଷ ବୟସରେ, ଜନସେବା କରିବା ଲକ୍ଷ୍ୟରେ ଗାନ୍ଧିଜୀ ସକଳ ଯୌନାଭିଳାଷ ବନ୍ଦ କରିଦେଇଥିଲେ । ଦେଶସାରା ଯେତେବେଳେ ଅଛୁଆଁ ଲୋକଙ୍କୁ କେହି ଛୁଉଁ ନ ଥିଲେ, ଗାନ୍ଧିଜୀ ସେତେବେଳେ ଅଛୁଆଁ ଝିଅଟିଏକୁ ଝିଅ କରି ପରିବାରଭୁକ୍ତ କରି ରଖିଥିଲେ । ଏହି ହେଲା କର୍ମରେ ଅକର୍ମ ଓ ଅକର୍ମରେ କର୍ମ ଦେଖିବା ; ଏବଂ

ଯେଉଁ ଲୋକ କହୁଥିଲା ଯେ 'ଭାରତ ପଛେ ପରାଧୀନ ରହୁ କିନ୍ତୁ ହିଂସା-ମାର୍ଗରେ ସ୍ୱାଧୀନତା ନ ପାଉ', ସେ ଲୋକର ଚିତ୍ତରେ ବିକର୍ମ ବା ନିଷିଦ୍ଧ କର୍ମ କି ଗଭୀର ରେଖାପାତ କରିଥିବ, ଅନୁମେୟ । ଏହିପରି କର୍ମ, ଅକର୍ମ ଓ ବିକର୍ମର ସାଧନା ଯେ ଅତି କଠିନ ବ୍ୟାପାର, ଏଥିରେ ସନ୍ଦେହ ନାହିଁ । ଗୀତା ଏ ଶ୍ଲୋକରେ ତେଣୁ ଖାଣ୍ଟି କଥାହିଁ କହିଛନ୍ତି—ତଳେ ହେଲେ ଅତିରଞ୍ଜନ କରି ନାହାନ୍ତି । ଏହିପରି କର୍ମ ଅକର୍ମ-ବିକର୍ମ-ତତ୍ତ୍ୱ ଜାଣିଥିବା ଲୋକହିଁ କୃତ୍ସ୍ନ-କର୍ମକୃତ୍ ହୋଇଥାନ୍ତି ; ଅର୍ଥାତ୍ ସେମାନେ ଯେଉଁ କାମ ହାତକୁ ନିଅନ୍ତି, ତାକୁ କୃତିତ୍ୱର ସହିତ ସମଗ୍ରଭାବରେ ସଂପନ୍ନ କରନ୍ତି । ପୁଣି ତାଙ୍କ ପକ୍ଷରେ କେଉଁ କାମ ନ ହେବ, ଏପରି ନ ଥାଏ । କାରଣ, ସେମାନେ ଅକର୍ମ ଓ ବିକର୍ମକୁ ଦୂରରେ ରଖି ଯାହା କରଣୀୟ କର୍ମ, ସେଇଥିରେ ମନପ୍ରାଣ ଦେଇ ଲାଗିଥାନ୍ତି । ପର ଶ୍ଲୋକରେ ଗୀତା କରଣୀୟ କର୍ମ କଣ, ତାହା କହିବେ ।

## ୧୯

ଯସ୍ୟ ସର୍ବେ ସମାରମ୍ଭାଃ କାମସଂକଳ୍ପବର୍ଜିତାଃ
ଜ୍ଞାନାଗ୍ନିଦଗ୍ଧକର୍ମାଣଂ ତମାହୁଃ ପଣ୍ଡିତଂ ବୁଧାଃ । ୧୯ ।

ଯସ୍ୟ (ଯାହାର) ସର୍ବେ (ସମସ୍ତ) ସମାରମ୍ଭାଃ (ଉଦ୍‌ଯୋଗ) କାମସଂକଳ୍ପ-ବର୍ଜିତାଃ (ଅଭିଳାଷ ଓ କଳ୍ପନାବର୍ଜିତ, ଅର୍ଥାତ୍ ଏପ୍ରି କଲେ ମତେ ଏପ୍ରି ଏପ୍ରି ପ୍ରାପ୍ତ ହେବ ଏପରି ଭାବନାଶୂନ୍ୟ) ବୁଧାଃ (ଜ୍ଞାନୀ ଲୋକମାନେ) ଜ୍ଞାନାଗ୍ନିଦଗ୍ଧ-କର୍ମାଣଂ ତଂ (ଜ୍ଞାନର ନିଆଁଦ୍ୱାରା ଯାହାଙ୍କର କର୍ମ ବିଶୁଦ୍ଧୀକୃତ ହୋଇଯାଇଛି, ସେହିପରି ଲୋକଙ୍କୁ) ପଣ୍ଡିତଂ ଆହୁଃ (ପଣ୍ଡିତ ବୋଲି କହିଥାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ଯାହାର ସବୁ କାମ କାମ ଓ ସଂକଳ୍ପବର୍ଜିତ, ଏବଂ ଜ୍ଞାନାଗ୍ନିଦ୍ୱାରା ବିଶୁଦ୍ଧୀଭୂତ (ନିରହଂକାର ଓ ନିଃସ୍ୱାର୍ଥ) ହୋଇଯାଇଛି, ପଣ୍ଡିତ ଲୋକେ ସେହି ଲୋକକୁହିଁ ଜ୍ଞାନୀ କହିଥାନ୍ତି ।"

**ବିଶେଷ ଭାଷ୍ୟ**

ଏହି ଶ୍ଲୋକରେ ଗୀତା କରଣୀୟ କର୍ମର ସୂଚନା ଦେଲେ । ସାମାନ୍ୟ ପରେ ଏହା ବିସ୍ତାରିତ ହେବ ।

'କୃତ୍ସ୍ନ-କର୍ମକୃତ୍' କେଉଁପରି ଲୋକ ହୁଅନ୍ତି ? ଯେଉଁମାନଙ୍କର କର୍ମ-ଫଳାଭିଳାଷ, ସ୍ୱାର୍ଥକୈନ୍ଦ୍ରିକତା ଓ ଅହଂକାର ଇତ୍ୟାଦି ଜ୍ଞାନାଗ୍ନିଦ୍ୱାରା ପୋଡ଼ି

ସଂପୂର୍ଣ୍ଣ ବିଶୁଦ୍ଧ ହୋଇଯାଇଛି ; ସିଏ ସବୁ କାମ କରନ୍ତି, କିନ୍ତୁ ଯାହାଙ୍କର କୌଣସି କାମ ତଳେ ତଳେ କାମନା ବା ସଂକଳ୍ପ ନ ଥାଏ । ଜ୍ଞାନାଗ୍ନି କଣ ? ବିଶେଷଭାବରେ ଏହା କର୍ତ୍ତୃତ୍ୱାଭିମାନଶୂନ୍ୟତା । ପାଠକେ ତୃତୀୟ ଅଧ୍ୟାୟର ୨୭ ଶ୍ଳୋକ "ଅହଂକାରବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ" ସ୍ମରଣ କରନ୍ତୁ । ପ୍ରକୃତିର ଗୁଣ ଯେମିତି ଆମେ କାମ କରିଥାଉଁ ; ଅର୍ଥାତ୍ ପ୍ରକୃତି ଆମକୁ କାମ କରାଇନେଇଥାଏ । ଅଥଚ, ମିଥ୍ୟାମୋହରେ ଆମେ ମନେ କରୁଁ "ମୁଁ କଲି" ବୋଲି । ଯେଉଁ ସାଧକ ଏହି ମିଥ୍ୟାମୋହଜାତ କର୍ତ୍ତୃତ୍ୱାଭିମାନକୁ ସଂପୂର୍ଣ୍ଣ ଉତ୍ପାଟିତ କରିଦେଇଥାନ୍ତି, ସେହିଁ ଜ୍ଞାନାଗ୍ନିଦଗ୍ଧକର୍ମା, ଏବଂ ସେହିପରି-ଭାବରେ ସ୍ୱାର୍ଥଶୂନ୍ୟ ଓ ଅହଂକାରଶୂନ୍ୟ କର୍ମହିଁ ପ୍ରକୃତ କର୍ମ ।

୨୦

ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ
କର୍ମଣ୍ୟଭିପ୍ରବୃତ୍ତୋଽପି ନୈବ କିଂଚିତ୍ କରୋତି ସଃ । ୨୦ ।

ସଃ (ସେହି ସାଧକ) କର୍ମଫଳାସଙ୍ଗଂ ତ୍ୟକ୍ତ୍ୱା (କର୍ମଫଳପ୍ରତି ଆସକ୍ତି ତ୍ୟାଗ କରି) ନିତ୍ୟତୃପ୍ତଃ (ସର୍ବଦା ତୁଷ୍ଟ) ନିରାଶ୍ରୟଃ (ନିରବଲମ୍ବ, କାହାଉପରେ ଭାର ହୋଇ ନ ରହି) କର୍ମଣି (କାମରେ) ଅଭିପ୍ରବୃତ୍ତଃ ଅପି (ଘନିଷ୍ଠଭାବରେ ପ୍ରବୃତ୍ତ ଥିଲେ ମଧ୍ୟ) [ସେ] କିଂଚିତ୍ ଏବ ନ କରୋତି (କିଛିହିଁ କରେ ନାହିଁ ବୋଲି କହିବାକୁ ହେବ) ।

**ଅନୁବାଦ**

"ହେ ଅର୍ଜୁନ, କର୍ମଫଳପ୍ରତି ଆସକ୍ତିଶୂନ୍ୟ, ଆତ୍ମତୃପ୍ତ ଓ ଆତ୍ମାଶ୍ରୟୀ ଯେଉଁ ଲୋକ ବହୁ କର୍ମରେ ନିଯୁକ୍ତ ଥିଲେ ମଧ୍ୟ କୌଣସି କର୍ମ ତା ଉପରେ ଛାପ ରଖିପାରେ ନାହିଁ ।"

**ବିଶେଷ ଭାଷ୍ୟ**

ଗୀତା ଦ୍ୱିତୀୟ ଅଧ୍ୟାୟ(୬ ଶ୍ଳୋକ)ରେ 'ମିଥ୍ୟାଚାର' ବୋଲି ଯାହା ବର୍ଣ୍ଣନା କରିଛନ୍ତି, ଏ ଶ୍ଳୋକର ଚିତ୍ର ତାର ଠିକ୍ ବିପରୀତ । ସେଠି କୁହାଯାଇଛି ଯେ, କେତେ ଲୋକ ତାଙ୍କର ବାହ୍ୟ ଇନ୍ଦ୍ରିୟମାନଙ୍କୁ (ହୁଏତ ସୁଯୋଗ-ଅଭାବରୁ) ସଂଯତ କରିସାରିଛନ୍ତି ବୋଲି ଦେଖାଇହେଲେହେଁ ମନଭିତରେ ଇନ୍ଦ୍ରିୟ-ସୁଖ-ମାନଙ୍କର ଆସ୍ୱାଦ ସ୍ମରିହେଉଥାନ୍ତି । ତାହାହିଁ ମିଥ୍ୟାଚାର । କିନ୍ତୁ ଏ ଶ୍ଳୋକର ଚିତ୍ର ହେଲା ଏହି ଯେ, କୌଣସି ଲୋକ ଯାହା ହାତକୁ ନେଉଛି, ତାହା ମନପ୍ରାଣ

ଦେଇ କରୁଛୁ ; ଅଥଚ ଫଳାଶା ନ ଥିବାରୁ କେବଳ କର୍ତ୍ତବ୍ୟ ବୋଲି କରୁଥିବାରୁ କୌଣସି ହେଲେ କର୍ମପ୍ରତି ସେ ଆଦୌ ଆସକ୍ତ ନୁହନ୍ତି । ତେଣୁ ସେ ଏକାନ୍ତ ବନ୍ଧନହୀନ, ଅଥଚ ସମସ୍ତଙ୍କର ବନ୍ଧୁ । ଉଦାହରଣସ୍ୱରୂପ, ଗାନ୍ଧିଜୀଙ୍କ ରଚନା-ବୈଦଗ୍ଧ ଅତି ଉଚ୍ଚ କୋଟିର ଥିଲା ; କିନ୍ତୁ ଲେଖକର ସମ୍ମାନ ସେ କେବେ ଚାହିଁ ନ ଥିଲେ । ଅଥଚ ସେ ଅଯାଚିତଲବ୍ଧ ଏହି ଲିଖନ ବୈଦଗ୍ଧ ସହିତ ସମାନ ନିଷ୍ଠା ଓ କୌଶଳରେ ସୂତା କାଟିବା, ରୋଗିସେବା କରିବା, ପାଇଖାନା ସଫା କରିବା ଇତ୍ୟାଦି ସବୁ କାମ ଶ୍ରଦ୍ଧାର ସହିତ କରୁଥିଲେ । ଏ ଶ୍ଳୋକଟି ସେହିପରି ଲୋକରହିଁ କର୍ମ-କୌଶଳର ଏକ ମନୋରମ ଚିତ୍ର ।

୨୧

ନିରାଶୀର୍ଯତଚିତ୍ତାତ୍ମା ତ୍ୟକ୍ତସର୍ବପରିଗ୍ରହଃ
ଶାରୀରଂ କେବଳଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷଂ । ୨୧ ।

ନିରାଶୀଃ (ନିଷ୍କାମ) ଯତଚିତ୍ତାତ୍ମା (ସଂଯତଚିତ୍ତ) ତ୍ୟକ୍ତସର୍ବପରିଗ୍ରହଃ (କୌଣସିପ୍ରକାର ଦାନ ଯିଏ କାହାଠୁ ନିଏ ନା ), [ଏପରି ଲୋକ] କେବଳଂ ଶାରୀରଂ କର୍ମ କୁର୍ବନ୍ (କେବଳ ଶରୀରଦ୍ୱାରହିଁ ତାର କର୍ମ ସଂପାଦନ କରି ଅର୍ଥାତ୍ କୌଣସି ମାନସିକ ଆସକ୍ତି ନ ରଖି କାମ କରିବା ହେତୁ) କିଲ୍ବିଷଂ (ପାପ ବା ବନ୍ଧନ ) ନ ଆପ୍ନୋତି (ପାଇ ନ ଥାଏ) ।

**ଅନୁବାଦ**

"ହେ ଅର୍ଜୁନ, ନିଷ୍କାମ, ସଂଯତଚିତ୍ତ, ଅନ୍ୟଠାରୁ-ପ୍ରାପ୍ତ-ଦ୍ରବ୍ୟଗ୍ରହଣହୀନ ସେହି ଲୋକର କେବଳ ଶରୀରଟାହିଁ କାମ କରିଚାଲିଥାଏ ଏବଂ ସେହି କାରଣରୁ ସେତେ କାମ କଲେହେଁ ପ୍ରତିକ୍ରିୟାରୂପେ ତାକୁ କୌଣସି ଦୁଃଖ ଭୋଗ କରିବାକୁ ହୁଏ ନାହିଁ ।"

**ବିଶେଷ ଦ୍ରଷ୍ଟବ୍ୟ**

ପାଠକେ ପୂର୍ବବର୍ତ୍ତୀ ଶ୍ଳୋକରେ 'ନିରାଶ୍ରୟଃ' ଓ ଏ ଶ୍ଳୋକରେ 'ତ୍ୟକ୍ତ-ସର୍ବପରିଗ୍ରହଃ' ଶବ୍ଦଦୁଇଟିକୁ ଲକ୍ଷ୍ୟ କରନ୍ତୁ । ଏହା ବିଶେଷ କରି ଆମ ଭାରତୀୟପୁ-ମାନଙ୍କପ୍ରତି ପ୍ରଯୁଜ୍ୟ । ଆମେ ଆଜି ଏକ ମେରୁଦଣ୍ଡହୀନ ଜାତି ହୋଇପଡ଼ିଛୁ । ସମଗ୍ର ଦେଶରେ ପ୍ରକୃତରେ ନିଜ ଗୋଡ଼ରେ ମାଟି ଖୋଳି ଠିଆ ହୋଇଥିବା ଲୋକ କୋଟିକରେ ଗୋଟିଏ ମିଳିବେ ନି ; ଅଥଚ ୟୁରୋପୀୟ ସମାଜରେ ଆତ୍ମନିର୍ଭରତା, ଆତ୍ମସମ୍ମାନ, ଆତ୍ମମର୍ଯ୍ୟାଦା ଧର୍ମ ଗରିବ ପ୍ରତ୍ୟେକ ପରିବାରରେ ପ୍ରତି ପିଲାକୁ

ଅତି ଶୈଶବରୁହିଁ ଶିଖାଯାଏ । ପିଲାଏ (ପୁଅ ଓ ଝିଅ) ମଧ୍ୟ ପିତାମାତାଙ୍କର ଗଳଗ୍ରହ ହୋଇ ବଞ୍ଚିବା ଗୃହାନ୍ତି ନାହିଁ । ଧନୀ ଘର ପିଲେ ମଧ୍ୟ ପାଠ ପଢ଼ୁ ପଢ଼ୁ ରୋଜଗାର କରିବସନ୍ତି ଏବଂ ସେଥିପାଇଁ କୌଣସିପ୍ରକାର ହେଲେ ଶାରୀରିକ କର୍ମକୁ ଅଶ୍ରଦ୍ଧା ଦେଖାନ୍ତିନ ।

ଭାରତବର୍ଷରେ ଚିତ୍ର କିନ୍ତୁ ଅଲଗା । ଏଠି ପିଲେ ପିତାମାତାଙ୍କର ରକ୍ତ ଶୋଷଣ କରନ୍ତି, ଜନ୍ମଗତ ଦାବି ଭାବରେ । 'ନିଜ ଅର୍ଜନରେ ପଢ଼ିବି'—ଏ ସଂକଳ୍ପ ଏ ଦେଶର ତରୁଣ-ସଂପ୍ରଦାୟରେ ନାହିଁ କହିଲେ ଚଳେ । ଯୋଗ୍ୟତା ନ ଥିଲେ ମଧ୍ୟ, ଘରେ ଗୋଳମାଳ ସୃଷ୍ଟି କରି, ଜମି ବିକେଇ ବି. ଏ., ଏମ୍. ଏ. ପଢ଼ିବାର ଓ 'ବିଲାତ' ଯିବାର ମଧ୍ୟ ଦୃଷ୍ଟାନ୍ତ ଏ ଦେଶରେ ବହୁତ । ତେଣେ ପୁଣି ବିନା ପାଠରେ ପ୍ରଚେଷ୍ଟା ଏବଂ ପାସ୍‌ପରେ ଗୃକିରିପାଇଁ ଧରାଧରି, ସ୍ତ୍ରୀ ଉପରେ ନିର୍ଭରି, ତା ପାଖକୁ ଦଉଡ଼, ସ୍ତ୍ରୀଠୁ ତା ଦାବି କରି, ତାଠୁ ସ୍ତ୍ରୀ ଦାବି କରି ଇତ୍ୟାଦି ସ୍ୱଭାବ ଏହି ସମଗ୍ର ଜାତିକି ଆଜି ସଂପୂର୍ଣ୍ଣଭାବରେ ମେରୁଦଣ୍ଡହୀନ ଓ ଚରିତ୍ରହୀନ କରିପକାଇଛି ।

କିନ୍ତୁ ସୁଖର କଥା ଯେ, ଏ ଦେଶର ଶ୍ରେଷ୍ଠ ଜୀବନ-ବେଦ ଗୀତାର କର୍ମୀ ପୁରୁଷର ଆଦର୍ଶ ଆଜିର ଏ ଲଜ୍ଜାଜନକ ଚିତ୍ରଠାରୁ ଭିନ୍ନ । ଗୀତାର ଆଦର୍ଶ ପୁରୁଷ 'ନିରାଶ୍ରୟ'—ସେ କାହାର ଆଶ୍ରୟ ଲୋଡ଼ି ଯିବେନି, ସେ ପୁଣି 'ତ୍ୟକ୍ତସର୍ବପରିଗ୍ରହ'—ସେ କାହାରିଠାରୁ ପରିଗ୍ରହ (ଦାନ) ଗ୍ରହଣ କରିବେ ନାହିଁ । ସେ ସ୍ୱୟଂପ୍ରତିଷ୍ଠ ହେବାକୁ ଅଟଳ ପ୍ରତିଜ୍ଞାରେ ଦଣ୍ଡାୟମାନ ରହିବେ ଏବଂ ସେପରିଭାବରେ ଯେତିକି ମିଳିବ ସେତିକରେ 'ନିତ୍ୟତୃପ୍ତ' ରହିବେ !

କି ମହନୀୟ ଆଦର୍ଶର ପରିକଳ୍ପନା ! ଆଶା କରେଁ, ସ୍ୱାଧୀନ ଭାରତର ତରୁଣ-ତରୁଣୀ ନିଜ ଜାତିର ଏହି ଶ୍ରେଷ୍ଠ ଗ୍ରନ୍ଥର ଏହି ବାଣୀ ଆଜି ହେଲେ ଗ୍ରହଣ କରିବେ ।

୨୨

ଯଦୃଚ୍ଛାଲାଭସନ୍ତୁଷ୍ଟୋ ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ
ସମଃ ସିଦ୍ଧାବସିଦ୍ଧୌ ଚ କୃତ୍ୱାପି ନ ନିବଧ୍ୟତେ । ୨୨ ।

ଯଦୃଚ୍ଛାଲାଭସନ୍ତୁଷ୍ଟଃ (ଅପ୍ରାର୍ଥିତଭାବରେ ଯାହା ମିଳିବ ସେଇଥିରେହିଁ ସନ୍ତୁଷ୍ଟ) ଦ୍ୱନ୍ଦ୍ୱାତୀତଃ (ସୁଖ-ଦୁଃଖ, ଲାଭାଲାଭ ଇତ୍ୟାଦି ଯୁଗ୍ମଚିନ୍ତାକୁ ଯେ ଅତିକ୍ରମ କରିଛନ୍ତି) ବିମତ୍ସରଃ (ଯେ ପରର ସୁଖରେ ଈର୍ଷାନ୍ୱିତ ହୁଅନ୍ତି

ନାହିଁ) ସିଦ୍ଧୌ ଅସିଦ୍ଧୌ ଚ ସମଃ (ଯେ କାର୍ଯ୍ୟରେ ସିଦ୍ଧି ଓ ବିଫଳତା ଉଭୟପ୍ରତି ସମାନ) [ଏପରି ଲୋକ] କୃତ୍ୱାପି (କାମ କଲେ ମଧ୍ୟ) ନ ନିବଧ୍ୟତେ (କର୍ମଜନିତ ବନ୍ଧନ ପ୍ରାପ୍ତ ହୁଅନ୍ତି ନାହିଁ) ।

## ଅନୁବାଦ

"ହେ ଅର୍ଜ୍ଜୁନ, ଅଯାଚିତଭାବରେ ଯାହା ମିଳିଲା ସେଇଥିରେ ସନ୍ତୁଷ୍ଟ, ସୁଖଦୁଃଖ-ଲାଭାଲାଭାଦି ଦ୍ୱନ୍ଦ୍ୱମୁକ୍ତ, କାହାପ୍ରତି ଈର୍ଷା ନ ଥିବା, ସିଦ୍ଧି ଓ ବିଫଳତାରେ ସମଭାବ—ଏପରି ଲୋକର କୌଣସି କାମ ତାକୁ ବନ୍ଧନରେ ପକାଇ ନ ପାରେ ।"

## ବିଶେଷ ଦ୍ରଷ୍ଟବ୍ୟ

ପାଠକେ ସର୍ବଦା ସ୍ମରଣ ରଖିଥିବେ ଯେ, ଚରମ ବା ଶେଷ ଅବସ୍ଥାରେ ସତ୍ତ୍ୱ ଓ ତମଃ ଉଭୟେ ସମାନ ଜଣାପଡ଼ିଥାନ୍ତି । ଏହା ମଧ୍ୟ ଏକ ପ୍ରାକୃତିକ ନିୟମ । ଗୋଟିଏ ଚକ ଯଦି ପ୍ରଚଣ୍ଡ ବେଗରେ ଘୂରେ, ମନେ ହେବ ତାହା ଆଦୌ ଘୂରୁନି । ଉପରେ ଗୀତା ଯେଉଁ ଜୀବନାଦର୍ଶର ଚିତ୍ର ଦେଇଛନ୍ତି, ତାହା ଜଣେ ଆଳସ୍ୟପରାୟଣ ବ୍ୟକ୍ତିପ୍ରତି ମଧ୍ୟ ବେଶ୍ ପ୍ରଯୁଜ୍ୟ ହୋଇପାରିବ । କାରଣ, ସେ ମଧ୍ୟ ଯଦୃଚ୍ଛାଲାଭସନ୍ତୁଷ୍ଟ ଏବଂ ତାର ସିଦ୍ଧି ନାହିଁ କି ଅସିଦ୍ଧି ନାହିଁ । ଭାରତବର୍ଷ ଯୋଗୀ ଋଷିଙ୍କର ଦେଶ ହୋଇଆସିଥିଲେହେଁ ଦେଶମୟ ଆଜି ତମୋଗୁଣ ଏପରି ପରିବ୍ୟାପ୍ତ ହୋଇଯାଇଛି ଯେ, ହୁଏତ ଗୀତାର ଏହି 'ଯଦୃଚ୍ଛାଲାଭ-ସନ୍ତୁଷ୍ଟଃ', 'ସମସିଦ୍ଧାବସିଦ୍ଧୌ ଚ' ଇତ୍ୟାଦି ଆଦର୍ଶ ଆମଭିତରେ ସୁପ୍ରତିଦ୍ୱନ୍ଦ୍ୱିତା ଜାଗ୍ରତ ନ କରି ମାରାତ୍ମକ ଆତ୍ମସନ୍ତୋଷ ଜାଗ୍ରତ କରିବାରହିଁ ଆଶଙ୍କା । ସ୍ୱାମୀ ବିବେକାନନ୍ଦ ସାଂପ୍ରତିକ ଭାରତର ଏହି ମାରାତ୍ମକ ତାମସିକତା ବିରୁଦ୍ଧରେ ବାରମ୍ବାର ଆକ୍ରମଣ କରିଥିଲେ । ପାଠକେ ମନେ ରଖିବେ ଯେ, ତାମସିକ ସ୍ଥିରତା ଓ ସାତ୍ତ୍ୱିକ ସ୍ଥିରତାଭିତରେ ଏହି ପ୍ରଭେଦ ଯେ,—ତାମସିକ ସ୍ଥିରତା ଜଡ଼, ଚେତନାହୀନ, ଆଦର୍ଶହୀନ ଓ କର୍ମହୀନ ଥିଲାବେଳେ ସାତ୍ତ୍ୱିକ ସ୍ଥିରତା ବାହ୍ୟ ଅଚଞ୍ଚଳତା ସତ୍ତ୍ୱେ କ୍ଷିପ୍ରଘୂର୍ଣ୍ଣିତ ଚକ୍ରପରି ଭିତରେ ଭିତରେ ପରମ କର୍ମଶୀଳ ; ସୂର୍ଯ୍ୟପରି ସ୍ଥିର ରହିଲେହେଁ ଚତୁଷ୍ପାର୍ଶ୍ୱକୁ ତାହା ପ୍ରବଳଭାବରେ ପ୍ରଭାବିତ ଓ ନିୟନ୍ତ୍ରିତ କରିଚାଲିଥାଏ । ଗଙ୍ଗାତଟସ୍ଥ ଏକ ଅଜ୍ଞାତ ମନ୍ଦିରର ଏକ ନିରକ୍ଷର ଅଜ୍ଞାତ ପଣ୍ଡା ଏହି ହେତୁରୁହିଁ ତାର ଘୋଟ କକ୍ଷଟିର ଖଟ ଗୁଡ଼ିପଟକୁ ବିଗତ ଶତାବ୍ଦୀର ଶ୍ରେଷ୍ଠ ଭାରତୀୟ ବୁଦ୍ଧିଜୀବୀମାନଙ୍କୁ ଟାଣିଆଣିଥିଲା । ଦକ୍ଷିଣେଶ୍ୱର କାଳୀ-ମନ୍ଦିରର ସେହି ପଣ୍ଡା-ପୂଜାରୀ ଗଦାଧର ଭଟ୍ଟାଚାର୍ଯ୍ୟ ଆଜି ଓ୍ୱାର୍ଲଡ଼-ପ୍ରଫେଟ୍

ଶ୍ରୀ ରାମକୃଷ୍ଣ ପରମହଂସ ନାମରେ ବିଶ୍ୱପୂଜ୍ୟ । ଏ ଲୋକ ଥିଲେ "ଯଦୃଚ୍ଛାଲାଭ-ସନ୍ତୁଷ୍ଟଃ" ଏବଂ ଖାଲି ବସିରହି ଗପ କରୁଥିଲେ । ଅଥଚ କି ପ୍ରବଳ ଆତ୍ମିକ ଶକ୍ତି ସେ ଗୃହପଟେ ବିଶ୍ୱ କି ଗଲେ ! ତାହାଙ୍କି ଗୀତାର 'ଅକର୍ମରେ କର୍ମ'ର ମହାପ୍ରାଣ୍ ଆଦର୍ଶ ।

୨୩

ଗତସଙ୍ଗସ୍ୟ ମୁକ୍ତସ୍ୟ ଜ୍ଞାନାବସ୍ଥିତଚେତସଃ

ଯଜ୍ଞାୟାଚରତଃ କର୍ମ ସମଗ୍ରଂ ପ୍ରବିଲୀୟତେ । ୨୩ ।

ଗତସଙ୍ଗସ୍ୟ (ଆସକ୍ତିବର୍ଜିତ) ମୁକ୍ତସ୍ୟ (ରାଗଦ୍ୱେଷାଦିରୁ ମୁକ୍ତ) ଜ୍ଞାନାବସ୍ଥିତଚେତସଃ (ଜ୍ଞାନରେ ଚିତ୍ତ ଦୃଢ଼ଭାବରେ ଅବସ୍ଥିତ) ଯଜ୍ଞାୟ କର୍ମ ଆଚରତଃ (ନିଜ ସ୍ୱାର୍ଥପାଇଁ ନୁହେଁ, କେବଳ ଯଜ୍ଞ ବା ତ୍ୟାଗ ଲକ୍ଷ୍ୟରେ କର୍ମ କରୁଥିବା) [ଲୋକର କର୍ମ] ସମଗ୍ରଂ ପ୍ରବିଲୀୟତେ (ସଂପୂର୍ଣ୍ଣରୂପେ ବିନଷ୍ଟ ହୋଇଯାଏ, ଅର୍ଥାତ୍ ତାର କୌଣସିପ୍ରକାର ପ୍ରତିକ୍ରିୟା ସେହି ଲୋକକୁ ଭୋଗିବାକୁ ପଡ଼େ ନାହିଁ ) ।

## ଅନୁବାଦ

"ହେ ଅର୍ଜୁନ, ଆସକ୍ତିବର୍ଜିତ, ମୁକ୍ତ, ପରମ ବୋଧରେ ସର୍ବଦା-ସ୍ଥିତ-ଚିତ୍ତ ଯଜ୍ଞାର୍ପିତକର୍ମା ଲୋକର ସକଳ କର୍ମ ତାପ୍ରତି ସମ୍ପୂର୍ଣ୍ଣ ପ୍ରତିକ୍ରିୟାଶୂନ୍ୟ ହୋଇଉଠେ ।"

## ବିଶେଷ ଭାଷ୍ୟ

ଗୀତା ଅସ୍ତେ ଆସ୍ତେ ପ୍ରତ୍ୟେକ ନୂତନ ନୂତନ ଶ୍ଳୋକରେ ଆଦର୍ଶ-ଜୀବନର ଗୋଟିଏ ଗୋଟିଏ ନୂତନ ଦିଗ ଦେଖାଇଚାଲିଛନ୍ତି । ପୂର୍ବ ଶ୍ଳୋକରେ ଏକ ନୂଆ କଥା ଜଣାଯାଇଛି ଯେ, ସାଧକ 'ବିମତ୍ସର' ହେବେ, ଅର୍ଥାତ୍ ସେ ସମସ୍ତଙ୍କ ସୁଖକାମନାହିଁ କରୁଥିବେ । ଏ ଶ୍ଳୋକରେ ଜଣାଯାଉଛି ଯେ, ସେ 'ଯଦୃଚ୍ଛାଲାଭସନ୍ତୁଷ୍ଟ' ହେବେ । କିନ୍ତୁ ଏହାର ଅର୍ଥ ନୁହେଁ ଯେ, ସେ ଅଳସୁଆ ହୋଇ ବସିରହିବେ । ସତ୍ୟରେ, ସେ ସର୍ବଦା କର୍ମତତ୍ପର ରହିବେ ଏବଂ ତାଙ୍କର ପ୍ରତ୍ୟେକ କାମ ହେବ 'ଯଜ୍ଞାୟ' (ଯଜ୍ଞନିମିତ୍ତ) ବା ତ୍ୟାଗଧର୍ମୀ । ସେ ପୁଣି ରହିବେ 'ଜ୍ଞାନାବସ୍ଥିତଚେତା'—କୌଣସି ହେଲେ ମୁହୂର୍ତ୍ତରେ ସେ ନିଜଠାରେ କର୍ତ୍ତୃତ୍ୱଭାବମାନ ଆଣି ଲଦିବେ ନାହିଁ; କାରଣ ମୋକ୍ଷକାମୀ ପକ୍ଷରେ ପ୍ରଥମ ଓ ଶେଷ ଜ୍ଞାନ ହେଲା ନିଜଠାରୁ କର୍ତ୍ତୃତ୍ୱର ଅହମିକା ଦୂର କରି ସବୁ

ଈଶ୍ୱରଙ୍କଠାରେ ସମର୍ପଣ କରିବା । ଆମେ ବେଳେ ବେଳେ ଏ ଭାବର ଯୌକ୍ତିକତା ବୁଝିଥାଉଁ, କିନ୍ତୁ ଠିକ୍ ପର ମୁହୂର୍ତ୍ତରେ 'ମୁଁ ଭାବ' ଆସି ଆମକୁ ମାଡ଼ିବସେ । ସେଥିପାଇଁ ଗୀତା ଆଦର୍ଶ-ମନୁଷ୍ୟଙ୍କୁ 'ଜ୍ଞାନାବସ୍ଥିତଚେତା' ଅର୍ଥାତ୍ ଯାହାଙ୍କର ଚିତ୍ତ ସର୍ବଦା ଜ୍ଞାନରେ (ଅର୍ଥାତ୍ ଅକର୍ତ୍ତୃତ୍ୱ, ନିରହଂକାର, 'ଈଶ୍ୱରହିଁ-ସବୁ' ଓ ଏହିଭଳି ଭାବରେ) ସର୍ବଦା ସ୍ଥିରପ୍ରତିଷ୍ଠ ଥିବ, ଏହିପରି ବର୍ଣ୍ଣନା କରିଛନ୍ତି ।

ଏପ୍ରକାର ଆଦର୍ଶ-ମନୁଷ୍ୟର ସମ୍ପୂର୍ଣ୍ଣ ଅହଂଶୂନ୍ୟତା କେଉଁଠୁ ଆସେ, ତାହା ପରବର୍ତ୍ତୀ ଶ୍ଳୋକରେ ମନୋଜ୍ଞଭାବରେ ବର୍ଣ୍ଣିତ ହୋଇଛି ।

୨୪

ବ୍ରହ୍ମାର୍ପଣଂ ବ୍ରହ୍ମହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣାହୁତଂ
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମସମାଧିନା । ୨୪ ।

ଅର୍ପଣଂ (ଆହୁତି) ବ୍ରହ୍ମ, ହବିଃ (ଘିଅ) ବ୍ରହ୍ମ, [ତାହା] ବ୍ରହ୍ମାଗ୍ନୌ (ବ୍ରହ୍ମରୂପକ ଅଗ୍ନିରେ) ବ୍ରହ୍ମଣା (ବ୍ରହ୍ମ ରୂପକ ହୋତାଙ୍କଦ୍ୱାରା) ହୁତଂ (ହୋମାର୍ପିତ ହେଉଛି) । [ଏହିପରି ଦେଖୁଥିବା] ତେନ ବ୍ରହ୍ମକର୍ମସମାଧିନା (ବ୍ରହ୍ମକର୍ମ ବା ଯଜ୍ଞରେ ସମାଧିବନ୍ତ ବା ଏକାଗ୍ରବୁଦ୍ଧିସଂପନ୍ନ ସେହି ଲୋକ) ବ୍ରହ୍ମ ଏବ ଗନ୍ତବ୍ୟଂ (ବ୍ରହ୍ମକୁହିଁ ଯାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ଏ ଲୋକର ସମଗ୍ର ଜୀବନଟି ବ୍ରହ୍ମମୟ ହୋଇଉଠେ । ଏଭଳି ଲୋକଠାରେ ଆହୁତି ବ୍ରହ୍ମ, ହବି ବ୍ରହ୍ମ, ଅଗ୍ନି ବ୍ରହ୍ମ । ତାର କର୍ମ ବ୍ରହ୍ମ ଏବଂ ଲକ୍ଷ୍ୟହିଁ ବ୍ରହ୍ମ ।"

**ବିଶେଷ ଭାଷ୍ୟ**

ଏହି ଚିତ୍ରଟି ବୈଦିକ ଯଜ୍ଞରୁ ଉଦ୍ଭୂତ ହେଲେହେଁ ଏହାର ତାତ୍ପର୍ଯ୍ୟ ଆମ ପ୍ରତ୍ୟେକଙ୍କର ଦୈନନ୍ଦିନ ଜୀବନପ୍ରତି ପ୍ରଯୁଜ୍ୟ । ତାତ୍ପର୍ଯ୍ୟଟି ହେଲା— ଗୀତାର ଆଦର୍ଶ-ମନୁଷ୍ୟର ସବୁହିଁ ବ୍ରହ୍ମ । ଅହଂଭାବ ବା କର୍ତ୍ତୃତ୍ୱାଭିମାନ ଆମର ଏକ ଉଦ୍ଭଟ କଳ୍ପନା ମାତ୍ର । ବୈଦିକ ଯଜ୍ଞରେ ଘୃତ ଦରକାର, ଘୃତ ଛିଞ୍ଚିବାର ଉପକରଣ ଦରକାର, ସମିଧ ଦରକାର, ଶସ୍ୟାଦି ବା ଜୀବାଦି ଯଜ୍ଞୀୟ ବସ୍ତୁ ଦରକାର, ହୋତା ଦରକାର, ଯଜମାନ ଦରକାର । ଏତେ କଥା-ଭିତରେ ଯଜମାନର ଅହଂଭାବ ଅର୍ଥାତ୍ 'ମୁଁ କଲି' 'ମୁଁ ଦେଲି' ଭାବ କୌଣସି ନା କୌଣସିଠାରେ ନିଶ୍ଚେ ପ୍ରକାଶିତ ହେବ । କିନ୍ତୁ ଗୀତା କହୁଛନ୍ତି

ଯେ, ଆଦର୍ଶ-ମନୁଷ୍ୟ, ଆଦର୍ଶ-କର୍ମଯୋଗୀ, ଆଦର୍ଶ-ଜ୍ଞାନୀ ଏ ସମସ୍ତଙ୍କୁ ଏବଂ ନିଜକୁ ମଧ୍ୟ କେବଳ 'ବ୍ରହ୍ମ'ର ଭିନ୍ନ ଭିନ୍ନ ପ୍ରକାଶ ବୋଲିହିଁ ମନେ କରିବେ । ବ୍ରହ୍ମହିଁ ନିଆଁ, ବ୍ରହ୍ମହିଁ ଘିଅ, ବ୍ରହ୍ମହିଁ ଋକ୍-ଉଚ୍ଚାରଣକାରୀ ହୋତା ଏବଂ ନିଜେ ଯଜମାନ । ଏପରି ଯେ ମନେ କରିପାରନ୍ତି, ସେ ଯେ ବ୍ରହ୍ମରେହିଁ ଯାଇ ମିଶିବେ, ଏଥିରେ ସନ୍ଦେହ କଣ ?

ଭାରତର ଲକ୍ଷ ଲକ୍ଷ ସନ୍ନ୍ୟାସୀ ଦୈନନ୍ଦିନ ଭୋଜନପୂର୍ବରୁ ଏହି ଶ୍ଳୋକଟି ଉଚ୍ଚାରଣ କରିଥାନ୍ତି । ସେମାନଙ୍କ ନିକଟରେ ଭୋଜନ ଆତ୍ମସୁଖ ନୁହେଁ । ସେମାନଙ୍କର ପ୍ରତି ଭୋଜନ-କ୍ରିୟା ମଧ୍ୟ ଅନ୍ତରର ବ୍ରହ୍ମକୁ ବଞ୍ଚାଇରଖିବାପାଇଁହିଁ ଏକ ଯଜ୍ଞ । ଖାଦ୍ୟହିଁ ସେହି ବ୍ରହ୍ମ । ଖାଦ୍ୟ ଓ ଖାଦକ ଉଭୟେ ସେହି ଏକ ବ୍ରହ୍ମରେହିଁ ଲୀନ ହେବେ ।

ଏହାପରେ ଗୀତା ଏହି ଶ୍ଳୋକ-ବର୍ଣ୍ଣିତ ଦୈନନ୍ଦିନ କର୍ମଯଜ୍ଞ ବ୍ୟତୀତ ଆଉ କେତେପ୍ରକାର ଯଜ୍ଞ, ଯାହା କି ଗୀତା-ଲେଖା-କାଳରେ ପ୍ରଚଳିତ ଥିଲି ଓ ଏବେ ବି ସୀମାବଦ୍ଧଭାବରେ ଭାରତରେ ପ୍ରଚଳିତ ଅଛି, ତାର ବର୍ଣ୍ଣନା କରିଚାଲିବେ । ଯେହେତୁ ଏହା ବିଶେଷ ଜ୍ଞାନ (ଯେଉଁଥିରେ କି ଆମର କୌଣସି ଅବଗାହିତ୍ତ ନାହିଁ), ତେଣୁ ସେସବୁଉପରେ ଟୀକା-ଟିପ୍ପଣୀ ଦେବା ଆମର ଅଧିକାରର ବାହାରେ । କେବଳ ପଦାର୍ଥ ମାତ୍ର ଦେଇ ଯିବୁଁ ।

୨୫

ଦୈବମେବାପରେ ଯଜ୍ଞଂ ଯୋଗିନଃ ପର୍ଯ୍ୟୁପାସତେ
ବ୍ରହ୍ମାଗ୍ନାବପରେ ଯଜ୍ଞଂ ଯଜ୍ଞେନୈବୋପଜୁହ୍ୱତି । ୨୫ ।

ଅପରେ ଯୋଗିନଃ (ଅନ୍ୟ କେହି କେହି ଯୋଗୀ) ଦୈବଂ ଏବ ଯଜ୍ଞ (ଦୈବଯଜ୍ଞ) ପର୍ଯ୍ୟୁପାସତେ (ଅନୁଷ୍ଠାନ କରିଥାନ୍ତି) । ଅପରେ (ଅନ୍ୟ କେହି କେହି) ବ୍ରହ୍ମାଗ୍ନୌ (ବ୍ରହ୍ମ ରୂପକ ଅଗ୍ନିରେ) ଯଜ୍ଞେନ ଏବ ଯଜ୍ଞଂ ଉପଜୁହ୍ୱତି (ଯଜ୍ଞଦ୍ୱାରାହିଁ ଯଜ୍ଞର ଯଜନ କରନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ଆଉ କେହି କେହି ନିମ୍ନଶ୍ରେଣୀର ଦେବଦେବୀଙ୍କୁ ଆଶ୍ରୟ କରି ଦୈବଯଜ୍ଞ ମଧ୍ୟ କରିଥାନ୍ତି । ଅନ୍ୟେ ବାହ୍ୟ ଦେବଦେବୀଙ୍କ ପାଖକୁ ନ ଯାଇ ନିଜକୁ ଅନ୍ତରସ୍ଥ ବ୍ରହ୍ମାଗ୍ନିରେହିଁ ଯଜ୍ଞରୂପେ ଅର୍ପଣ କରିଥାନ୍ତି ।"

୨୬

ଶ୍ରୋତ୍ରାଦୀନୀନ୍ଦ୍ରିୟାଣ୍ୟନ୍ୟେ ସଂଯମାଗ୍ନିଷୁ ଜୁହ୍ୱତି
ଶବ୍ଦାଦୀନ୍ ବିଷୟାନନ୍ୟ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି । ୨୬ ।

ଅନ୍ୟେ (ଅନ୍ୟ ସାଧକମାନେ) ଶ୍ରୋତ୍ରାଦିନ ଇନ୍ଦ୍ରିୟାଣି (କର୍ଣ୍ଣାଦି ଇନ୍ଦ୍ରିୟମାନଙ୍କୁ) ସଂଯମାଗ୍ନିଷୁ (ସଂଯମରୂପକ ଅଗ୍ନିରେ) ଜୁହ୍ୱତି (ଆହୁତି ଦେଇଥାନ୍ତି) । ଅନ୍ୟ (ଆଉ କେତେକେ) ଇନ୍ଦ୍ରିୟାଗ୍ନିଷୁ (ଇନ୍ଦ୍ରିୟରୂପ ଅଗ୍ନିରେ) ଶବ୍ଦାଦୀନ୍ ବିଷୟାନ୍ (ଶବ୍ଦ, ରୂପ, ଗନ୍ଧ, ସ୍ପର୍ଶ ଆଦି ଇନ୍ଦ୍ରିୟଭୋଗ୍ୟ ବିଷୟ) ଜୁହ୍ୱତି (ଆହୁତି ଦେଇଥାନ୍ତି) ।

**ଅନୁବାଦ**

"ହେ ଅର୍ଜ୍ଜୁନ, ଅନ୍ୟ କେହି କେହି କର୍ଣ୍ଣାଦି ଇନ୍ଦ୍ରିୟକୁ ସଂଯମ ରୂପକ ଅଗ୍ନିରେ ଆହୁତି ଦେଇଥାନ୍ତି । ଆଉ କେତେକେ ଇନ୍ଦ୍ରିୟରୂପକ ଅଗ୍ନିରେ ଶବ୍ଦ, ରୂପ, ଗନ୍ଧ, ସ୍ପର୍ଶ ପ୍ରଭୃତି ଇନ୍ଦ୍ରିୟଭୋଗ୍ୟ ବିଷୟକୁ ଆହୁତି ଦେଇଥାନ୍ତି ।"

**ବିଶେଷ ଭାଷ୍ୟ**

ଏହି ଶ୍ଳୋକର ପ୍ରଥମ ପାଦ ବୋଧ ହୁଏ 'ବ୍ରହ୍ମଚର୍ଯ୍ୟ'କୁ ବୁଝାଉଛି—ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ବିଷୟମାନଙ୍କରୁ ଟାଣିଆଣି ସଂଯମାଗ୍ନିରେ ଆହୁତି ଦେବା । ଶ୍ଳୋକର ଦ୍ୱିତୀୟ ପାଦ, ଯେଉଁଥିରେ ଠିକ୍ ବିପରୀତ କଥା କୁହାଯାଉଛି, ଅର୍ଥାତ୍ ରୂପ, ରସ ପ୍ରଭୃତି ବିଷୟକୁ ଆଣି ଇନ୍ଦ୍ରିୟ-ଯଜ୍ଞରେ ଆହୁତି ଦେବା, ତାର ତାତ୍ପର୍ଯ୍ୟ ବୋଧ ହୁଏ 'ଯଜ୍ଞାପୂତ' ଭୋଗ ଅର୍ଥାତ୍ ଅନାସକ୍ତ ବିଷୟଭୋଗ ବା ଚକ୍ଷୁ, କର୍ଣ୍ଣ, ରସନାଦି ଦେଇ ପରମ ଐଶ୍ୱର୍ଯ୍ୟମୟ ଭଗବାନଙ୍କର ଏହି ମହାସୃଷ୍ଟିକୁ ପରମ ପ୍ରସାଦ ଭାବରେହିଁ ପରମ କୃତଜ୍ଞତାରେ ଭୋଗ କରିଚାଲିବା । ପ୍ରଥମଟିରେ ଇନ୍ଦ୍ରିୟମାନଙ୍କର control ବା ନିୟନ୍ତ୍ରଣ, ଦ୍ୱିତୀୟଟିରେ ଇନ୍ଦ୍ରିୟମାନଙ୍କର sublimation ବା ଊର୍ଦ୍ଧ୍ୱଗମନ ସୂଚିତ ହେଉଛି ।

୨୭

ସର୍ବାଣୀନ୍ଦ୍ରିୟକର୍ମାଣି ପ୍ରାଣକର୍ମାଣି ଚାପରେ
ଆତ୍ମସଂଯମଯୋଗାଗ୍ନୌ ଜୁହ୍ୱତି ଜ୍ଞାନଦୀପିତେ । ୨୭ ।

ଅପରେ (ଅନ୍ୟାନ୍ୟ ସାଧକ ମଧ୍ୟ) ସର୍ବାଣି ଇନ୍ଦ୍ରିୟକର୍ମାଣି (ବାହାରର ଇନ୍ଦ୍ରିୟମାନଙ୍କ ସକଳ କର୍ମକାରିତାକୁ) [ଏବଂ] ପ୍ରାଣକର୍ମାଣି ଚ (ଭିତରର

ପ୍ରାଣାଦି ବାୟୁର କର୍ମସମୂହକୁ ମଧ୍ୟ) ଜ୍ଞାନଦୀପିତେ ଆତ୍ମସଂଯମଯୋଗାଗ୍ନୌ (ଜ୍ଞାନଦ୍ୱାରା ଉଦ୍ଦୀପିତ ଆତ୍ମସଂଯମରୂପକ ଅଗ୍ନିରେ) ଜୁହ୍ୱତି (ହୋମ କରିଥାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ଅନ୍ୟମାନେ ସେମାନଙ୍କର ବାହାରେ ଇନ୍ଦ୍ରିୟମାନଙ୍କର ସକଳ କାର୍ଯ୍ୟକାରିତା ଏବଂ ଭିତରେ ପ୍ରାଣାଦି ବାୟୁର କାର୍ଯ୍ୟକାରିତା, ଏ ଉଭୟକୁ ଜ୍ଞାନପ୍ରାପ୍ତ ଆତ୍ମସଂଯମାଗ୍ନିରେ ଆହୁତି ଦେଇଥାନ୍ତି ।"

**ବିଶେଷ ଭାଷ୍ୟ**

ଏହି ଶ୍ଳୋକଟି ବୋଧହୁଏ ସମାଧି ଅବସ୍ଥା ସୂଚିତ କରୁଛି, ଯେଉଁଠି ଆମର ସମଗ୍ର ସତ୍ତା ବାହ୍ୟ ସଂସାରରୁ ଉଚ୍ଛିନ୍ନ ହୋଇଯାଇ ବିଶ୍ୱଚେତନାରେ ମିଶିଯାଏ ବୋଲି କୁହାଯାଏ । ପୂର୍ବ ପୂର୍ବ ଶ୍ଳୋକରେ ଯେଉଁସବୁ ସଂଯମ ଓ ନିୟମର କଥା ବା ଅନାସକ୍ତ ଓ ଜ୍ଞାନପ୍ରାପ୍ତ କର୍ମର କଥା କୁହାଯାଉଥିଲା, ସେସବୁ ମଧ୍ୟ ପ୍ରତ୍ୟେକେ ଏକ ଏକ ପ୍ରକାର 'ଯଜ୍ଞ' ।

କିନ୍ତୁ ସମାଧିରୂପକ ଯଜ୍ଞରେ ସାଧକର ସମଗ୍ର ସତ୍ତାହିଁ ଯଜ୍ଞାର୍ପିତ ହୋଇ-ପଡ଼େ ।

ଆମ ସତ୍ତା ବା ବ୍ୟକ୍ତିତ୍ୱର ବାହ୍ୟ ଭାଗଟା ଅର୍ଥାତ୍ ଆମର ଦୈନନ୍ଦିନ ଜୀବନଟା ଇନ୍ଦ୍ରିୟମାନଙ୍କ କର୍ମକଳାପରେହିଁ ପର୍ଯ୍ୟବସିତ । ବାହାରେ ଆମର ପାଞ୍ଚଟି କର୍ମେନ୍ଦ୍ରିୟ ହେଲେ— ବାକ୍, ପାଣି, ପାଦ, ପାୟୁ, ଉପସ୍ଥ । ଯଥାକ୍ରମେ ଏମାନଙ୍କର କ୍ରିୟା ହେଲା—ବଚନ, ଦାନ ଓ ଗ୍ରହଣ, ଗମନ, ମଳ-ନିଷ୍କାସନ, ମୈଥୁନ । ଆମର ପାଞ୍ଚ ଜ୍ଞାନେନ୍ଦ୍ରିୟ ହେଲେ—ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା, ତ୍ୱକ୍ । ଯଥାକ୍ରମେ ଏମାନଙ୍କର କାମ ହେଲା—ଦର୍ଶନ, ଶ୍ରବଣ, ଘ୍ରାଣ, ଆସ୍ୱାଦନ, ସ୍ପର୍ଶ, ଯାହାଦେଇ ଏମାନେ ଆମପାଇଁ ବାହାର-ଜଗତରୁ ସୁଖ ସଂଗ୍ରହ କରିବାର କଥା ।

ତେଣେ ଆମ ବ୍ୟକ୍ତିତ୍ୱର ଅନ୍ତର୍ଭାଗ ଅର୍ଥାତ୍ ଶରୀରଭିତରଟା ବାୟୁ ପରିଚାଳିତ ବୋଲି ଭାରତୀୟ ବିଶ୍ୱାସ । ହିନ୍ଦୁମାନେ ମନୁଷ୍ୟଦେହଭିତରେ ପାଞ୍ଚପ୍ରକାର ବାୟୁର ଅହରହ ଗମନାଗମନ କଳ୍ପନା କରିଥିଲେ ଏବଂ ସେମାନଙ୍କୁ ଭିନ୍ନ ଭିନ୍ନ ନାମ ଦେଇଥିଲେ । 'ପ୍ରାଣ' ସେହି ବାୟୁ ଯାହା ନାସିକା ଦେଇ ବାହାରକୁ ଆସେ (ପ୍ରଶ୍ୱାସ), 'ଅପାନ' ଯାହା ସେହି ନାସିକା ଦେଇ ଆମ ଦେହଭିତରେ ପଶେ (ନିଶ୍ୱାସ), 'ବ୍ୟାନ' ଯାହା ଆମ ଶରୀରକୁ ଆକୁଞ୍ଚନ-

ପ୍ରସାରଣ-କ୍ଷମତା ଦିଏ, 'ସମାନ' ଯାହା ଖାଦ୍ୟ ଜୀର୍ଣ୍ଣ କରାଏ ଏବଂ 'ଉଦାନ' ଯାହା ଉର୍ଦ୍ଧ୍ୱଶ୍ୱାସ(ହିକ୍କା ଇତ୍ୟାଦି)ରୂପେ ଦେଖାଦିଏ ।

ଏ ଶ୍ଳୋକରେ ବର୍ଣ୍ଣିତ 'ଆତ୍ମସଂଯମଯୋଗାଗ୍ନି' ବା 'ଆତ୍ମ-ସଂଯମ-ଯଜ୍ଞ' ହେଲା ଆମର ଇନ୍ଦ୍ରିୟମାନଙ୍କ (କର୍ମ ଓ ଜ୍ଞାନ ଉଭୟ) ସହିତ ପ୍ରାଣାଦି ବାୟୁର କର୍ମକୁ ଏକସଙ୍ଗରେ ବାହାରୁ ଛଡ଼ାଇଆଣି 'ଆତ୍ମା'ରେହିଁ ନିବେଶିତ କରିବା । ତାହାହିଁ ସମାଧି । ତାହାହିଁ ଆତ୍ମିକ ଯଜ୍ଞ ।

୨୮

ଦ୍ରବ୍ୟଯଜ୍ଞାସ୍ତପୋଯଜ୍ଞା ଯୋଗଯଜ୍ଞାସ୍ତଥାପରେ
ସ୍ୱାଧ୍ୟାୟଜ୍ଞାନଯଜ୍ଞାଶ୍ଚ ଯତୟଃ ସଂଶିତବ୍ରତାଃ । ୨୮ ।

[କେହି କେହି] ଦ୍ରବ୍ୟଯଜ୍ଞାଃ (ଦ୍ରବ୍ୟଯଜ୍ଞପରାୟଣ) [କେହି କେହି] ତପୋଯଜ୍ଞାଃ (ତପୋରୂପକ ଯଜ୍ଞର ସାଧକ) [କେହି କେହି] ଯୋଗଯଜ୍ଞାଃ (ଯୋଗ-ଯଜ୍ଞପରାୟଣ) ତଥା ଅପରେ (ଆଉ କେହି କେହି) ସଂଶିତବ୍ରତାଃ ଯତୟଃ (ଦୃଢ଼ବ୍ରତ ଯୋଗୀମାନେ) ସ୍ୱାଧ୍ୟାୟଜ୍ଞାନଯଜ୍ଞାଃ ଚ(ଶାସ୍ତ୍ରାଧ୍ୟୟନରୂପକ ଜ୍ଞାନଯଜ୍ଞର ସାଧକ ହୋଇଥାନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ଏହିପରି ସାଧକମାନେ ଦ୍ରବ୍ୟଯଜ୍ଞ, ତପୋଯଜ୍ଞ, ଯୋଗଯଜ୍ଞ ଏବଂ କେହି କେହି ଦୃଢ଼ବ୍ରତ ହୋଇ ଶାସ୍ତ୍ରାଧ୍ୟୟନରୂପକ ଜ୍ଞାନଯଜ୍ଞ ମଧ୍ୟ କରିଥାନ୍ତି ।"

## ବିଶେଷ ଭାଷ୍ୟ

ଦ୍ରବ୍ୟଯଜ୍ଞ—ବିଭିନ୍ନ ଦାନ । ତପୋଯଜ୍ଞ—କୃଚ୍ଛ୍ର ସାଧନା, ଯାହାକୁ ବୁଦ୍ଧ ଓ ଶ୍ରୀକୃଷ୍ଣ ଉଭୟେ ନିନ୍ଦା କରିଛନ୍ତି । ସ୍ୱାଧ୍ୟାୟଜ୍ଞାନଯଜ୍ଞ—ପୁସ୍ତକାନୁଶୀଳନ ଦେଇ ଜ୍ଞାନଯଜ୍ଞ ।

୨୯

ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେଽପାନଂ ତଥାପରେ
ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣାୟାମପରାୟଣାଃ । ୨୯ ।

ତଥା (ପୁଣି) ଅପରେ (ଅନ୍ୟ ସାଧକମାନେ) ପ୍ରାଣାୟାମପରାୟଣାଃ (ପ୍ରାଣାୟାମ-ସାଧନାରେ ନିଯୁକ୍ତ ହୋଇ) ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣଂ ଅପାନେ

ଅପାନଂ ପ୍ରାଣେ (ପ୍ରାଣ ଓ ଅପାନ ଉଭୟ ବାୟୁର ଗତିକୁ ନିୟନ୍ତ୍ରିତ କରି, ଅପାନରେ ପ୍ରାଣକୁ, ପ୍ରାଣରେ ଅପାନକୁ ଆଣି) ଜୁହ୍ୱତି (ହୋମ କରନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ଆଉ ଅନେକ ସାଧକ ପ୍ରାଣାୟାମ-ସାଧନାରେ ପ୍ରାଣ ଓ ଅପାନ ବାୟୁକୁ ନିୟନ୍ତ୍ରିତ କରି, ଅପାନରେ ପ୍ରାଣ ଓ ପ୍ରାଣରେ ଅପାନକୁ ଆଣି ଆହୁତି ଦିଅନ୍ତି ।"

**ବିଶେଷ ଭାଷ୍ୟ**

ଏହା ପାତଞ୍ଜଳ ଯୋଗଶାସ୍ତ୍ର । ଅନୁଭବସଂପନ୍ନ ବିଶେଷଜ୍ଞମାନେହିଁ ଯାହାକୁ ବ୍ୟାଖ୍ୟା କରିପାରିବେ । ଏହା ଆମର ଅଭିଜ୍ଞତାର ବାହାରେ ଏବଂ ବୁଝାଯାଏ ଯେ, ଏହା କେବଳ ଗୁରୁ-ଶିଷ୍ୟ ପରଂପରାରେ ପ୍ରତ୍ୟକ୍ଷ ସ୍ତରରେ ଶିକ୍ଷଣୀୟ । ଅଭିଜ୍ଞ ଗୁରୁଙ୍କ ପ୍ରତ୍ୟକ୍ଷ ଶାସନ ବିନା ଏସବୁର ଅଭ୍ୟାସ ମଧ୍ୟ ବିପଜ୍ଜନକ ।

୩୦

ଅପରେ ନିୟତାହାରାଃ ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି
ସର୍ବେଽପ୍ୟେତେ ଯଜ୍ଞବିଦୋ ଯଜ୍ଞକ୍ଷୟିତକଳ୍ମଷାଃ । ୩୦ ।

ଅପରେ (ଅନ୍ୟ ସାଧକେ) ନିୟତାହାରାଃ (ପରିମିତ ଆହାର କରି) ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି (ପ୍ରାଣକୁ ପ୍ରାଣରେ ଆହୁତି ଦିଅନ୍ତି) । ଏତେ ସର୍ବେ ଅପି (ଏମାନେ ସମସ୍ତେ) ଯଜ୍ଞବିଦଃ (ଯଜ୍ଞତତ୍ତ୍ୱଜ୍ଞ) [ଏବଂ] ଯଜ୍ଞକ୍ଷୟିତକଳ୍ମଷାଃ (ଏହିସବୁ ଭିନ୍ନ ଭିନ୍ନ ଯଜ୍ଞ ଦେଇ ସେମାନଙ୍କର କଳ୍ମଷ ବା ପାପ ମଧ୍ୟ କ୍ଷୟିତ ହୋଇଯାଇଥାଏ) ।

**ଅନୁବାଦ**

"ହେ ଅର୍ଜୁନ, ପୁଣି ଅନ୍ୟପ୍ରକାର ସାଧକ ଅଛନ୍ତି, ଯେଉଁମାନେ ପରିମିତ ଆହାର କରି ପ୍ରାଣକୁ ପ୍ରାଣରେ ଆହୁତି ଦେଇଥାନ୍ତି । ଏ ସମସ୍ତେ ଯାଜ୍ଞିକ । ସେହି ସେହି ଯଜ୍ଞ ଦେଇ ସେମାନଙ୍କର ସଂଚିତ-ବାସନା ରୂପକ ପାପସମୂହ କ୍ଷୟପ୍ରାପ୍ତ ହୋଇଯାନ୍ତି ।"

୩୧

ଯଜ୍ଞଶିଷ୍ଟାମୃତଭୁଜୋ ଯାନ୍ତି ବ୍ରହ୍ମ ସନାତନମ୍
ନାୟଂ ଲୋକୋଽସ୍ତ୍ୟଯଜ୍ଞସ୍ୟ କୁତୋଽନ୍ୟଃ କୁରୁସତ୍ତମ । ୩୧ ।

ଯଜ୍ଞଶିଷ୍ଟାମୃତଭୁଜଃ (ଯେଉଁମାନେ ଯଜ୍ଞରୁ ବଳିଥିବା ଅମୃତରୂପକ ଅବଶେଷହିଁ ଭୋଜନ କରିଥାନ୍ତି ସେମାନେ) ସନାତନଂ ବ୍ରହ୍ମ ଯାନ୍ତି (ସନାତନ

ବ୍ରହ୍ମ ଲାଭ କରନ୍ତି) । ହେ କୁରୁସତ୍ତମ (କୁରୁଶ୍ରେଷ୍ଠ, ଅର୍ଜୁନ) ଅଯଜ୍ଞସ୍ୟ (ଯେଉଁ ଲୋକ ଯଜ୍ଞରେ ବିଶ୍ୱାସ କରେ ନାହିଁ, ବା ଜୀବନରେ ଉପର-ବର୍ଣ୍ଣିତ ବହୁବିଧ ଯଜ୍ଞରୁ କୌଣସିପ୍ରକାର ହେଲେ ଗୋଟିଏ ଯଜ୍ଞର ଅଭ୍ୟାସ କରେ ନାହିଁ ତାର) ଅୟଂ ଲୋକଃ ନ ଅସ୍ତି (ଏହି ଲୋକହିଁ ନାହିଁ, ଅର୍ଥାତ୍ ସେ ଇହଜୀବନ ବି ଭୋଗ କରିପାରିବ ନାହିଁ) ଅନ୍ୟଃ କୁତଃ (ତାର ଅନ୍ୟ ଲୋକ ବା ଉତ୍ତମ ହେବ କିପରି ?) ।

## ଅନୁବାଦ

"ହେ ଅର୍ଜୁନ, ଯେଉଁମାନେ କେବଳ ଯଜ୍ଞରୁ ବଳୁଥିବା ଅମୃତ ରୂପକ ଅବଶେଷହିଁ ଭୋଜନ କରି ବଞ୍ଚନ୍ତି, ସେମାନେ ସନାତନ ବ୍ରହ୍ମକୁ ଲାଭ କରିଥାନ୍ତି । ଏହା ଜାଣିରଖ ଯେ, କୌଣସିପ୍ରକାର ଯଜ୍ଞ କରୁ ନ ଥିବା ଲୋକର ଇହଜୀବନ ମଧ୍ୟ ଉତ୍ତମ ଭୋଗ ହୋଇ ନ ପାରେ ; ତାର ଅନ୍ୟ ଲୋକ ଉତ୍ତମ ହେବ କିପରି ?"

## ବିଶେଷ ଭାଷ୍ୟ

ନାନା ଯଜ୍ଞ ବର୍ଣ୍ଣନା କରିସାରିବାପରେ ଗୀତା ଏହି ଶ୍ଳୋକଟିରେ ପୁଣି 'ଯଜ୍ଞାପ୍ଳୁତ' ବା 'ତ୍ୟାଗଧର୍ମୀ' ଜୀବନକୁହିଁ ଫେରିଆସିଛନ୍ତି । ପ୍ରତ୍ୟେକ ଗୃହସ୍ଥ ନିଜର ଦୈନନ୍ଦିନ ଖାଦ୍ୟ ଆୟୋଜନ କଲାବେଳେ ମଧ୍ୟ ଅନ୍ୟର କଥା ଭାବିବାକୁ ଗୀତା (୩।୧୩) ପୂର୍ବରୁ କହିସାରିଛନ୍ତି । ଯଜ୍ଞଚକ୍ର-ଦର୍ଶନ କଥା ପାଠକେ ସ୍ମରଣ କରନ୍ତୁ । ସେଥିରେ ମଧ୍ୟ କୁହାଯାଇଥିଲା ଯେ—

ଯଜ୍ଞଶିଷ୍ଟାଶିନଃ ସନ୍ତୋ ମୁଚ୍ୟନ୍ତେ ସର୍ବକିଲ୍‌ବିଷୈଃ
ଭୁଞ୍ଜତେ ତେ ତ୍ୱଘଂ ପାପା ଯେ ପଚନ୍ତ୍ୟାତ୍ମକାରଣାତ୍ ।

(ଉତ୍ତମ ଲୋକେ ଯଜ୍ଞରୁ ଯାହା ବଳେ ତାହାକୁହିଁ ଖାଇ ସର୍ବପାପରୁ ମୁକ୍ତ ହୋଇଥାନ୍ତି । ଯେ କେବଳ ନିଜପାଇଁ ରାନ୍ଧନ୍ତି, ସେ କେବଳ ପାପହିଁ ଭୋଜନ କରିଥାନ୍ତି ।)

ଏ ଶ୍ଳୋକଟି ତୃତୀୟ ଅଧ୍ୟାୟର ସେହି ଶ୍ଳୋକର ପୁନରାବୃତ୍ତି ହେଲେହେଁ ଏଥିରେ ସେହି ଭାବକୁ ଆହୁରି ଜୋର୍ କରି ଯେପରି କୁହାଯାଇଛି । ଏ ଶ୍ଳୋକରେ ଗୀତାକାର ଯଜ୍ଞାବଶିଷ୍ଟକୁ 'ଅମୃତ' ବୋଲି ବର୍ଣ୍ଣନା କରିଛନ୍ତି, ଏବଂ ଏହା ମଧ୍ୟ କୁହାଯାଇଛି ଯେ, ଯାହାର ଜୀବନ ଯଜ୍ଞାପ୍ଳୁତ ନୁହେଁ, ତାହାର ଇହଜୀବନ ବା ପରଜୀବନ, କୌଣସିଠାରେ ସୁଖ ନାହିଁ । କୌଣସିଠାରେ ତାହାର ସତ୍ୟ କୃତକାର୍ଯ୍ୟତା ନ ଥିବ ।

## ୩୨

ଏବଂ ବହୁବିଧା ଯଜ୍ଞା ବିତତା ବ୍ରହ୍ମଣୋମୁଖେ
କର୍ମଜାନ୍ ବିଦ୍ଧି ତାନ୍ ସର୍ବାନ୍ ଏବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ । ୩୨ ।

ବ୍ରହ୍ମଣଃ ମୁଖେ (ବ୍ରହ୍ମାଙ୍କ ମୁହଁରେ ଅର୍ଥାତ୍ ବେଦରେ) ଏବଂ ବହୁବିଧାଃ ଯଜ୍ଞାଃ (ଏହିଭଳି ନାନାପ୍ରକାର ଯଜ୍ଞ) ବିତତାଃ (ବିସ୍ତାରିତ ହୋଇ ବହ୍ୱିତ ହୋଇ-ଅଛି) । ତାନ୍ ସର୍ବାନ୍ (ସେ ସମସ୍ତଙ୍କୁ) କର୍ମଜାନ୍ ବିଦ୍ଧି [କେବଳ] (କର୍ମଜ ବୋଲି ଜାଣ) । ଏବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ [ଯଜ୍ଞ ସଂପର୍କରେ] (ଏହି ସୂକ୍ଷ୍ମ ଭେଦ-ଜ୍ଞାନ ହେଲେ ଯାଇ ତୁମେ ମୁକ୍ତ ପାଇବ) ।

### ଅନୁବାଦ

"ହେ ଅର୍ଜୁନ, ଏହିପରି ବହୁପ୍ରକାର ଯଜ୍ଞ ବେଦରେ ବର୍ଣ୍ଣିତ ଅଛି । କିନ୍ତୁ ସେସମସ୍ତଙ୍କୁ କର୍ମଜ ବୋଲି ଜାଣିବ । ଯଜ୍ଞ ସଂପର୍କରେ ଏହି ସୂକ୍ଷ୍ମ ଭେଦ-ଜ୍ଞାନହିଁ ତୁମକୁ ମୋକ୍ଷ ଆଡ଼କୁ ନେବ ।"

### ବିଶେଷ ଭାଷ୍ୟ

ସମଗ୍ର ପ୍ରକୃତି କର୍ମମୟ । ସମଗ୍ର ପ୍ରକୃତି ଯଜ୍ଞମୟ ମଧ୍ୟ । ଏହାପୂର୍ବରୁ ଏହି ଅଧ୍ୟାୟର ୯ମ ଠାରୁ ୧୬ଶ ଶ୍ଳୋକଭିତରେ ପ୍ରକୃତିରେହିଁ ଯଜ୍ଞଚକ୍ରର ଅହରହ ଚଳନ ବର୍ଣ୍ଣିତ ଅଛି । ଗୀତା ସେହି ପ୍ରାକୃତିକ ବିଧିକୁ ଆମର ଦୈନନ୍ଦିନ ଜୀବନରେ ଆରୋପିତ କରିବାକୁ ଚାହାନ୍ତି । କେବଳ ସ୍ୱାର୍ଥ-କୈନ୍ଦ୍ରିକ କର୍ମ ପାପ ଅର୍ଥାତ୍ ଦୁଃଖ-ବନ୍ଧନର କାରଣ । ପରାର୍ଥ କର୍ମ ବା ଯଜ୍ଞାର୍ପିତ କର୍ମହିଁ ମୁକ୍ତିର ଆନନ୍ଦ ଆଣିଦିଏ । ରୁଦ୍ଧ ଆକୁଞ୍ଚିତ ପ୍ରାଣ ଆପେ ହିଁ ବିକଳ ଓ ବିନଷ୍ଟ ହୋଇଯାଏ । ପ୍ରସାରିତ ପ୍ରାଣ ଆଣିଦିଏ ଆପଣାକୁ ଉଦାର ଆନନ୍ଦ, ଏବଂ ଉଜ୍ଜୀବିତ ଓ ଉତ୍ସାହିତ କରେ ଅନ୍ୟ ବହୁ ପ୍ରାଣକୁ, ଭାରତବର୍ଷରେ ଯେପରି ଘଟିଥିଲା ବୁଦ୍ଧ ଓ ଗାନ୍ଧିଙ୍କର ଜୀବନ ଦେଇ । ୩୦ଶ ଶ୍ଳୋକରେ 'ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି'ର ତାତ୍ତ୍ୱିକ ତାତ୍ପର୍ଯ୍ୟ ଏହାହିଁ । ପିତା ବାବରଙ୍କର 'ପ୍ରାର୍ଥନାମୟ ପ୍ରାଣଦାନରେ' ମୁମୂର୍ଷୁ ସନ୍ତାନ ହୁମାୟୁନ ଜୀବନ ଫେରିପାଏ । ପ୍ରାଣର ଆହୁତିରେ ପ୍ରାଣର ବିନାଶ ହୁଏ ନାହିଁ, ହୁଏ ପ୍ରାଣର ଗୌରବ ଓ ଐଶ୍ୱର୍ଯ୍ୟମୟ ପୁନର୍ଜନ୍ମ । ରୁଦ୍ଧ ଆକୁଞ୍ଚିତ ସ୍ୱାର୍ଥ-କୈନ୍ଦ୍ରିକ ଜୀବନର ସେ ସୌଭାଗ୍ୟ ଓ ସମ୍ଭାବନା ନାହିଁ । କାରଣ ସମଗ୍ର ସୃଷ୍ଟି ଓ ପ୍ରକୃତିରେ ଯଜ୍ଞହିଁ କର୍ମ ଓ ଜୀବନ । ତାହାହିଁ ମୌଳିକ ବିଧି । ପରବର୍ତ୍ତୀ ଶ୍ଳୋକରେ ଏହି ତାତ୍ପର୍ଯ୍ୟହିଁ ଆହୁରି ସ୍ପଷ୍ଟତର ହୋଇଉଠିଛି ।

୩୩

ଶ୍ରେୟାନ୍ ଦ୍ରବ୍ୟମୟାଦ୍ ଯଜ୍ଞାଜ୍‌ଜ୍ଞାନଯଜ୍ଞଃ ପରନ୍ତପ
ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ । ୩୩ ।

ପରନ୍ତପ (ହେ ଶତ୍ରୁବିନାଶକାରୀ, ଅର୍ଜ୍ଜୁନ) ଦ୍ରବ୍ୟମୟାତ୍ ଯଜ୍ଞାତ୍ (ଦ୍ରବ୍ୟସାଧ୍ୟ ଯଜ୍ଞମାନଙ୍କଠାରୁ) ଜ୍ଞାନଯଜ୍ଞଃ ଶ୍ରେୟାନ୍ (ଜ୍ଞାନଯଜ୍ଞହିଁ ଶ୍ରେଷ୍ଠ) । ପାର୍ଥ (ହେ ଅର୍ଜ୍ଜୁନ) [ଜାଣିରଖ ଯେ] ସର୍ବଂ ଅଖିଳଂ କର୍ମ (ସକଳ ପ୍ରକାର କର୍ମ) ଜ୍ଞାନେ ପରିସମାପ୍ୟତେ (ପରିଶେଷରେ ଏହି ଜ୍ଞାନରେହିଁ ପର୍ଯ୍ୟବସିତ ହୋଇଥାନ୍ତି) ।

## ଅନୁବାଦ

"ହେ ଅର୍ଜ୍ଜୁନ, ମନେ ରଖ ଯେ, ସକଳ ପ୍ରକାର ଦ୍ରବ୍ୟସାଧ୍ୟ ଯଜ୍ଞଠାରୁ ଜ୍ଞାନଯଜ୍ଞହିଁ ଶ୍ରେଷ୍ଠ ଏବଂ ସକଳପ୍ରକାର କର୍ମର ସର୍ବଶେଷ ପରିଣତି ହେଲା ଏହି ଜ୍ଞାନ ।"

## ବିଶେଷ ଭାଷ୍ୟ

କର୍ମରୁ ମନୁଷ୍ୟର ଯେଉଁ ଅଭିଜ୍ଞତା ବା ଜ୍ଞାନ ଆସେ, ସେହି ଜ୍ଞାନହିଁ ପ୍ରକୃତ ଜ୍ଞାନ ଓ ତାହାହିଁ ମନୁଷ୍ୟଜୀବନର ପ୍ରକୃତ ଲାଭ । ଅନ୍ୟ ସବୁ କେବଳ ଶ୍ରୁତ ବା ଆହୃତ ଜ୍ଞାନ—ଅନ୍ୟମାନଙ୍କଠୁ ଧାରକରି-ଅଣା ଜ୍ଞାନ । ସେସବୁ ଜୀବନରେ ସେତେ ଗଭୀର ରେଖାପାତ କରିପାରନ୍ତି ନାହିଁ ।

ସେଥିପାଇଁ ଏବେ ପୃଥିବୀଯାକ ସ୍କୁଲ-କଲେଜ-ମାନଙ୍କରେ 'ଆକ୍ଟିଭିଟି' ବା 'କର୍ମଯୋଜନା' ଅର୍ଥାତ୍ ପିଲାମାନଙ୍କର ନିଜର ସ୍ୱକୀୟ କର୍ମାନୁଭୂତିଉପରେ ଏତେ ଜୋର୍ ଦିଆଯାଉଛି । ଆମେ ପ୍ରତ୍ୟେକେ ଆମର ଜୀବନକାଳଭିତରେ ନାନାପ୍ରକାର କର୍ମ କରିଚାଲୁ । କିନ୍ତୁ ସେ ସବୁର ନିର୍ଯ୍ୟାସ ହେଲା ସାମାନ୍ୟ କେତୋଟି ଅଭିଜ୍ଞତା । ଧରିଏଇ ଦୀର୍ଘ ପାଞ୍ଚ-ଦଶ ବର୍ଷ ଧରି ଲାଗି ଲାଗି ଆମେ ଘରଟିଏ କଲୁଁ । ଘରଟିଏ କରିବାର ଜଞ୍ଜାଳ ଯେ କେତେ, ଆମେ ଜାଣିଲୁଁ । କିନ୍ତୁ ଆମଭିତରେ ରହିଗଲା ଗୃହନିର୍ମାଣର ଏକ ଅଭିଜ୍ଞତା, ଯାହା କି ମୂଲ୍ୟବାନ୍ । ସେଥିପାଇଁ ସମାଜ ବା ରାଷ୍ଟ୍ରରେ 'ଅଭିଜ୍ଞ' ଲୋକଙ୍କୁହିଁ ମୂଲ୍ୟ ଦିଆଯାଏ । ବହିପାଠ ଘୋଷି ସାର୍ଟିଫିକେଟ ଆଣିଥିବା ଜଣେ ଇଞ୍ଜିନିୟରଠାରୁ ଜଣେ ଅଭିଜ୍ଞ ମିସ୍ତ୍ରି ଅଧିକ ମୂଲ୍ୟବାନ । ଗ୍ରାମ ବା ପରିବାରରେ ଏହିଯୋଗୁଁହିଁ ବୁଢ଼ା-ବୁଢ଼ୀ ଏତେ ମୂଲ୍ୟବାନ୍ ହୋଇଉଠନ୍ତି । 'ଯା ଘରେ ନାହିଁ ବୁଢ଼ୀ, ତା

ଘର ଯାଏ ଉଡ଼'—ଏହି ଓଡ଼ିଆ ପ୍ରବଚନ ବହୁ ଅଭିଜ୍ଞତାର ଫଳ ବୋଲି ମନେ ହୁଏ । ତେଣୁ ଗୀତା ଯେ କହିଛନ୍ତି 'ସର୍ବଂ କର୍ମାଖିଳଂ ପାର୍ଥ ଜ୍ଞାନେ ପରିସମାପ୍ୟତେ' —ଏହା ଏକାନ୍ତ ସତ୍ୟ । ସେହି ଯୁକ୍ତିଉପରେ ସେ କହୁଛନ୍ତି ଯେ, ଦ୍ରବ୍ୟମୟ ଅର୍ଥାତ୍ ଉପାଦାନ-ଉପକରଣ-ସର୍ବସ୍ୱ ବାହ୍ୟ ଯଜ୍ଞ (ବୈଦିକ) ଅପେକ୍ଷା ଜ୍ଞାନଯଜ୍ଞ ହିଁ (ଔପନିଷଦିକ) ଶ୍ରେଷ୍ଠ ।

ବର୍ତ୍ତମାନ ଗୀତା 'ଜ୍ଞାନଯଜ୍ଞ'ଟା କଣ, ତାହା ବୁଝାଇବେ ।

୩୪

ତଦ୍‌ବିଦ୍ଧି ପ୍ରଣିପାତେନ ପରିପ୍ରଶ୍ନେନ ସେବୟା
ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ । ୩୪ ।

ପ୍ରଣିପାତେନ (ଦଣ୍ଡବତ୍ ପ୍ରଣାମଦ୍ୱାରା ଅର୍ଥାତ୍ ପରିପୂର୍ଣ୍ଣ ବିନୟଦ୍ୱାରା) ପରିପ୍ରଶ୍ନେନ (ଅଥଚ ସକଳ ସନ୍ଦେହ ମୋଚନ ହେବା ଭଳି ନାନାବିଧ ପ୍ରଶ୍ନଦ୍ୱାରା) ସେବୟା (ଗୁରୁଙ୍କର ସେବା କରି) ତତ୍ ବିଦ୍ଧି (ସେହି ଜ୍ଞାନ କଣ ଜାଣିବାକୁ ଚେଷ୍ଟା କର) । [କେବଳ] ତତ୍ତ୍ୱଦର୍ଶିନଃ ଜ୍ଞାନିନଃ (ତତ୍ତ୍ୱଦର୍ଶୀ ଜ୍ଞାନୀମାନେ) ତେ (ତୁମକୁ) [ସେପ୍ରକାର] ଜ୍ଞାନଂ ଉପଦେକ୍ଷ୍ୟନ୍ତି (ଜ୍ଞାନକୁ ଉପଦେଶ-ଭାବରେ ଦେଇପାରନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ଜ୍ଞାନୀ ଲୋକର ପରିପୂର୍ଣ୍ଣ ବିନୟାତ୍ମକ ସେବା ଓ ବିବିଧ ଜିଜ୍ଞାସାଦ୍ୱାରା ଜ୍ଞାନ ଆହରଣ କରିବାକୁ ହୁଏ । ସାଧାରଣ ଲୋକ ନୁହେଁ, କେବଳ ତତ୍ତ୍ୱଦର୍ଶୀ ଜ୍ଞାନୀହିଁ ତୁମକୁ ଜ୍ଞାନ-ମାର୍ଗ ଦେଖାଇପାରନ୍ତି ।"

## ବିଶେଷ ଭାଷ୍ୟ

ଭାରତବର୍ଷରେ ମନୁଷ୍ୟ-ଜ୍ଞାନକୁ ଦୁଇ ମୁଖ୍ୟ ଭାଗରେ ବିଭାଗ କରାଯାଇଛି । ସାଧାରଣ ଜାଗତିକ ଜ୍ଞାନ, ଯାହାକୁ ଆମେ ଏବେ ସମୂହଭାବରେ କଳା ଓ ବିଜ୍ଞାନ ନାମ ଦେଇଛୁଁ । ସେସବୁ ଜ୍ଞାନକୁ ଭାରତୀୟ ଋଷିମାନେ ଯଥାର୍ଥତା ସହିତ ନାମ ଦେଇଥିଲେ 'ଅ-ପରା ବିଦ୍ୟା' ବା ଅ-ଶ୍ରେଷ୍ଠ ବିଦ୍ୟା ଅର୍ଥାତ୍ ନିମ୍ନଶ୍ରେଣୀର ଜ୍ଞାନ । ଅନ୍ୟଟି ହେଲା ଅଧ୍ୟାତ୍ମ ଜ୍ଞାନ, ଯାହା ମନୁଷ୍ୟକୁ ଈଶ୍ୱରଙ୍କ ଆଡ଼କୁ ନେଇ ଜ୍ଞାନର ସମଗ୍ରତା ଆଣିଦିଏ । ତାହାକୁ ସେମାନେ ନାମ ଦେଇଥିଲେ 'ପରା ବିଦ୍ୟା' ବା ଶ୍ରେଷ୍ଠ ଜ୍ଞାନ ।

କିନ୍ତୁ ଉଭୟ ଜ୍ଞାନ ଥିଲା ଗୁରୁକୈନ୍ଦ୍ରିକ । ଗୁରୁଙ୍କର ମହାମାୟ ବ୍ୟକ୍ତିତ୍ୱ ସହିତ ପ୍ରତ୍ୟକ୍ଷ ସଂପର୍କରେ ନ ଆସି କିପରି ଜ୍ଞାନଲାଭ କରାଯାଏ, ପ୍ରାଚୀନ ଭାରତବର୍ଷ ତାହା ଜାଣି ନ ଥିଲା । ଅଧଃପତିତ, ଆଦର୍ଶ-ସ୍ଖଳିତ ଭାରତବର୍ଷରେ ଆଜି 'ଜ୍ଞାନ' କେବଳ ଅପାର୍ଥବୋଧକ ଓ ବୈପଣିକ ଡିଗ୍ରୀ-ଡିପ୍ଲୋମାରେ ପର୍ଯ୍ୟବସିତ ହେଲେହେଁ ପାଠକେ ଜାଣି ରଖିବେ ଯେ ପାଶ୍ଚାତ୍ୟଜଗତର ଅକ୍ସ୍‌ଫୋର୍ଡ୍, କେମ୍ବ୍ରିଜ ଆଦି ଏବଂ ପ୍ରକୃତ ଜ୍ଞାନ-ସାଧନା-ପୀଠମାନଙ୍କରେ ସେହି ପ୍ରାଚୀନ ଭାରତୀୟ ପରଂପରାହିଁ ସୁପ୍ରତିଷ୍ଠିତ । ପୁଣି ଠିକ୍ ଆଧୁନିକ-ଶିକ୍ଷା-ବିଜ୍ଞାନ-ସମ୍ମତ 'ପରିପ୍ରଶ୍ନ' (ଛାତ୍ରର ପ୍ରଶ୍ନ ପଚାରିବା ଶକ୍ତି)କୁ ମଧ୍ୟ ଜ୍ଞାନଲାଭର ଏକମାତ୍ର ପନ୍ଥା ବୋଲି ଭାରତବର୍ଷ ଧରିନେଇଥିଲା । ଏବେ ସଭ୍ୟଦେଶମାନଙ୍କରେ ତାହାହିଁ କ୍ରମେ ସ୍ୱୀକୃତି ଲାଭ କରୁଛି । ଛାତ୍ର ବୁଝୁ ବା ନ ବୁଝୁ, ଶିକ୍ଷକ ବା ଅଧ୍ୟାପକ ଆସି ୪୫ ମିନିଟ, ଘୋଷି ଆସିଥିବା ଗୁଡ଼ାଏ ଇନ୍‌ଫର୍ମେଶନ୍ ବା ଖବର ମାତ୍ର (ନୁହେଁ ଜ୍ଞାନ) ଗାଳିପକେଇ, ଘଣ୍ଟା ବାଜିଲା ମାତ୍ରେ କ୍ଲାସ ଛାଡ଼ିଗଲେ ଓ ଛାତ୍ରମାନଙ୍କୁ ସଂପୂର୍ଣ୍ଣ ପାସୋରିଦେଲେ—ଏହା ଅଧ୍ୟୟନ ଓ ଅଧ୍ୟାପନାର ବା 'ଜ୍ଞାନ'ଲାଭର ଏକ ଆତ୍ମଘାତୀ ପ୍ରତାରଣା ମାତ୍ର । ଅଧ୍ୟାପନା ଏକାନ୍ତ ଭାବରେ ଶିଷ୍ୟର 'ଜିଜ୍ଞାସା' (ଜାଣିବାର ଇଚ୍ଛା) ଓ 'ପରିପ୍ରଶ୍ନ' (ବାରମ୍ବାର ପ୍ରଶ୍ନ) ଉପରେହିଁ ନିର୍ଭର କରିବା ଉଚିତ, ହେଉ ପଛେ ଲକ୍ଷ୍ୟ—ପରାବିଦ୍ୟା ବା ଅପରାବିଦ୍ୟା । ଏ ଧରଣର ବିଦ୍ୟାଦାନ ଓ ବିଦ୍ୟାଗ୍ରହଣରେ ଶିଷ୍ୟ ପକ୍ଷରେ ବିନୟ (ପ୍ରଣିପାତ) ଓ ସେବା (ଗୁରୁଙ୍କ ଆଦେଶପାଳନ ଓ ତାଙ୍କୁ ସନ୍ତୋଷଦାନ) ଯେ ଅପରିହାର୍ଯ୍ୟ ହେବ, ଏହା ସ୍ୱାଭାବିକ ଏବଂ ଏହା ଗୁରୁ ଓ ଶିଷ୍ୟଙ୍କର ସଂବନ୍ଧକୁ ଯେ ଘନିଷ୍ଠ-ମଧୁର କରି ରଖିବ, ଏଥିରେ ମଧ୍ୟ ସନ୍ଦେହ ନାହିଁ । ଶିଷ୍ୟର 'ପରିପ୍ରଶ୍ନ' ଉପରେହିଁ କେବଳ ଯଦି ଅଧ୍ୟାପନା ନିର୍ଭର କରନ୍ତା, ଯଦି କେବଳ ପାଠାଗ୍ରହୀ ପିଲେହିଁ ସ୍କୁଲ-କଲେଜକୁ ଆସନ୍ତେ, ତେବେ ଏବେପରି 'ଛାତ୍ର-ଆନ୍ଦୋଳନ' ନାମରେ ଯେଉଁ ବୀଭତ୍ସ ବର୍ବରତା ଦେଶରେ ଦେଖା ଦେଲାଣି, ତାହା ଏକା ରାତିକେ ଉଭେଇଯାନ୍ତା ।

ଜ୍ଞାନ ବା ବିଦ୍ୟା ଲାଭର ପ୍ରକୃଷ୍ଟ ଉପାୟରୂପେ ମହାଭାରତ (୨୧୬୫।୧) ମଧ୍ୟ କି ଗଭୀର ତତ୍ତ୍ୱପୂର୍ଣ୍ଣ କଥା କହିଯାଇଛନ୍ତି, ତାହା ମଧ୍ୟ ପାଠକେ ସ୍ମରଣ ରଖନ୍ତୁ—

ଯସ୍ୟ ନାସ୍ତି ନିଜା ପ୍ରଜ୍ଞା, କେବଳଂ ତୁ ବହୁଶ୍ରୁତାଃ
ନ ସ ଜାନାତି ଶାସ୍ତ୍ରାର୍ଥଂ ଦର୍ବୀ ସୂପରସଂ ଯଥା ।

(ଯେଉଁ ଲୋକର ନିଜର କୌଣସି ମୌଳିକ ଚିନ୍ତାଶକ୍ତି [ପ୍ରଜ୍ଞା] ନାହିଁ, ଯେ କେବଳ ଅନ୍ୟମାନଙ୍କଠାରୁ ଶୁଣିଛି ମାତ୍ର, ସେ, ଚାମଚ ଯେପରି ଅନ୍ନର ସ୍ୱାଦ ଜାଣିପାରେ ନାହିଁ, ସେହିପରି ଆଦୌ ଜାଣିପାରିବନି ଶାସ୍ତ୍ରମାନଙ୍କର ମର୍ମକଥା ।)

ବହୁ ସହସ୍ର ବର୍ଷ ପୂର୍ବେ ମହାଭାରତକାର ଯେଉଁ ଅବାଞ୍ଛନୀୟ ଆପାତ-ପଣ୍ଡିତ ବା ଜ୍ଞାନ-ପ୍ରଚାରକଙ୍କ ବର୍ଣ୍ଣନା କରି ସମାଜକୁ ସାବଧାନ କରାଇ-ଦେଇଥିଲେ, ଆଜ ଯେ ସେହି ଶ୍ରେଣୀର ଅପକାରୀ ଅବାଞ୍ଛିତମାନଙ୍କଦ୍ୱାରା ଏହି ପୁରାଣ ଉପମହାଦେଶର ବିଶ୍ୱବିଦ୍ୟାଳୟଠାରୁ ଆରମ୍ଭ କରି ପ୍ରାଇମେରି ସ୍କୁଲ ପର୍ଯ୍ୟନ୍ତ ସକଳ ତଥାକଥିତ ବିଦ୍ୟାନୁଷ୍ଠାନ ପୂରି ହୋଇଗଲାଣି ଏବଂ ସେହି-ମାନଙ୍କ ଅନୁଗ୍ରହରୁ ଏ ଜାତି ଓ ଦେଶ କ୍ରମେ ମୂର୍ଖତା ଓ ବର୍ବରତାରେ ଦ୍ରୁତ ତଳକୁ ତଳକୁହିଁ ଯାଉଛି, ଏହା ବିଜ୍ଞ ପାଠକ ଓ ପାଠିକା ଧୀରଭାବରେ ହୃଦୟଙ୍ଗମ କରିବେ ବୋଲି ଆଶା । ଜହରଲାଲ ନେହରୁ ଉଚ୍ଚାଶାରେ ଦେଶଯାକ ନାସନାଲ୍-ଲାବରେଟରିଜ୍ ବା ଜାତୀୟ ଗବେଷଣାଗାରସବୁ ସହସ୍ର କୋଟି ଖର୍ଚ୍ଚ କରି ବସେଇଦେଇଗଲେ । କିନ୍ତୁ ଏବେ ଦେଖାଯାଉଛି ଯେ, ସେସବୁରେ ସଭ୍ୟ-ଉନ୍ନତ ଦେଶମାନଙ୍କ ପରି ଜ୍ଞାନଯଜ୍ଞ ହେବା ପରିବର୍ତ୍ତରେ ପଲିଟିକ୍ସହିଁ ଚାଲିଛି ।

୩୫

ଯଜ୍‌ଜ୍ଞାତ୍ୱା ନ ପୁନର୍ମୋହମେବଂ ଯାସ୍ୟସି ପାଣ୍ଡବ
ଯେନ ଭୂତାନ୍ୟଶେଷେଣ ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋ ମୟି । ୩୫ ।

ପାଣ୍ଡବ (ହେ ଅର୍ଜ୍ଜୁନ) ଯତ୍ ଜ୍ଞାତ୍ୱା [ସେବା, ପ୍ରଣିପାତ ଓ ପରିପ୍ରଶ୍ନ ଦେଇ ସଦ୍‌ଗୁରୁଠାରୁ] (ଯାହା ଜାଣିବାକୁ ପାଇବ) [ତା ପ୍ରଭାବରେ ତୁମେ] ପୁନଃ (ଆଉ) ଏବଂ ମୋହଂ (ଏପରି ମୋହ) ନ ଯାସ୍ୟସି (ପ୍ରାପ୍ତ ହେବ ନାହିଁ) [ସେ ସେପରି ଜ୍ଞାନ] ଯେନ (ଯେଉଁ ଜ୍ଞାନଦ୍ୱାରା କି) ଭୂତାନି (ପ୍ରାଣୀମାନଙ୍କୁ) [ତୁମେ] ଅଶେଷେଣ (ନିର୍ବିଶେଷରେ) ଆତ୍ମନି ଅଥୋ ମୟି ଦ୍ରକ୍ଷ୍ୟସି (ତୁମ ନିଜଠାରେ ଅଥବା ମୋଠାରେ ଥିବାର ଦେଖିବ, ଅର୍ଥାତ୍ ପ୍ରତ୍ୟେକ ଜୀବକୁ ତୁମେ ନିଜେ ବୋଲି ବା ମୁଁ (ଈଶ୍ୱର) ବୋଲି ମନେ କରିବ, ଅର୍ଥାତ୍ ସମଗ୍ର ବିଶ୍ୱ ସହିତ ତୁମେ ଶେଷରେ ସକଳ ଭେଦ-ଜ୍ଞାନ ହରାଇ ଏକୀଭୂତ ହୋଇଉଠିବ) ।

**ଅନୁବାଦ**

"ହେ ଅର୍ଜ୍ଜୁନ, ଜ୍ଞାନୀ ଜନଠାରୁ ବିନୟାତ୍ମକ ସେବା ଓ ପରିପ୍ରଶ୍ନଦ୍ୱାରା ଯାହା ପାଇବ, ତାହା (ଅନ୍ୟ କିଛି ଦେଉ ବା ନ ଦେଉ) ତୁମକୁ ଆଉ

ମୋହଗ୍ରସ୍ତ କରିବ ନାହିଁ । ସେହି ଜ୍ଞାନଫଳରେ (ତୁମର ସ୍ୱାର୍ଥକୈନ୍ଦ୍ରିକତା ଓ ଅହଂକାର ଆଦି କଟିଯାଇ ) ତୁମେ ଶେଷରେ ଏ ଜଗତର ସକଳ ପ୍ରାଣୀଙ୍କୁ ମୋ(ଈଶ୍ୱରଙ୍କ)ଠାରେ ବା ତୁମ ନିଜଠାରେ ଦେଖିବାକୁ ପାଇବ, ଅର୍ଥାତ୍ ସମସ୍ତ ଭେଦ-ଜ୍ଞାନ ହରାଇ ତୁମେ ବିଶ୍ୱ ସହିତ ଏକୀଭୂତ ହୋଇଯିବ ।"

## ବିଶେଷ ଭାଷ୍ୟ

ଏହାହିଁ ଗୀତାର 'ଜ୍ଞାନ' ବା 'ଜ୍ଞାନ ଯୋଗ' । ଅର୍ଥାତ୍ ସୃଷ୍ଟିର ସୀମାହୀନ ଭିନ୍ନତାଭିତରେ ଏକ ଓତପ୍ରୋତ ଐକ୍ୟ ଅନୁଭବ କରିବା, ଯାହାଫଳରେ କି ସାଧକ, ସୃଷ୍ଟିର ପ୍ରତ୍ୟେକ ଜୀବ ସହିତ, ସୃଷ୍ଟି ସହିତ ଓ ବିଶ୍ୱବ୍ୟାପୀ ସ୍ରଷ୍ଟା ସହିତ, ନିଜର କ୍ଷୁଦ୍ରତା ହରାଇ, ଏକୀଭୂତ ହୋଇ ଭୂମାତ୍ତ୍ୱ ପ୍ରାପ୍ତ ହେବେ । ଏହାହିଁ ଭାରତର ପରମରମଣୀୟ ଓ ପରମଶିକ୍ଷଣୀୟ 'ପରା' ବିଦ୍ୟା ।

'ଅ-ପରା' ବିଦ୍ୟା ବା ବିଜ୍ଞାନ ଆମକୁ ପଦେ ପଦେ ଭିନ୍ନତା-ସଚେତନ କରାଇରଖେ । ଇତିହାସ ଜାତି ଜାତିକୁ ଏବଂ ଭୂଗୋଳ ଦେଶ ଦେଶକୁ ମିଶେଇବା ପରିବର୍ତ୍ତେ ଅଲଗା ଅଲଗା କରି ରଖିଛି । ସେହିପରି ରାଜନୀତି, ଅର୍ଥନୀତି, ଭାଷା ଓ ସାହିତ୍ୟ । ଫିଜିକ୍‌ସ୍ ଓ କେମିଷ୍ଟ୍ରି ମଧ୍ୟ ସମଗ୍ରକୁ ନେଇ ସେତେ ବ୍ୟସ୍ତ ନୁହେଁ, ଯେତେ ଭିନ୍ନ ଭିନ୍ନ ଅଂଶସବୁକୁ ନେଇ । କେବଳ ଈଶ୍ୱର-ସଚେତନତା ବା ବ୍ରହ୍ମବିଦ୍ୟା ବା ବ୍ରହ୍ମଜ୍ଞାନହିଁ ମନୁଷ୍ୟ ସହିତ ମନୁଷ୍ୟକୁ, ଜୀବ ସହିତ ମନୁଷ୍ୟକୁ ଏବଂ ଜୀବ-ମନୁଷ୍ୟ ସମେତ ନିଖିଳ ବିଶ୍ୱ ସହିତ ମନୁଷ୍ୟକୁ ଏକୀଭୂତ କରାଇଦେଇପାରେ ।

ଏହି ଏକତାନୁଭବହିଁ (ଏହି 'ସମତା'ହିଁ) ଗୀତାର 'ଜ୍ଞାନ ଯୋଗ' । ଏପରି ଜ୍ଞାନ ଆସିଗଲେ, ସତ୍ୟରେ 'ମୋହ'ର ଆଉ ଅବକାଶ କାହିଁ ? କାରଣ ସେତେବେଳେ ତ ସାଧକ ଓ ଈଶ୍ୱରଭିତରେ କୌଣସି ଭିନ୍ନତା ଆଉ ନାହିଁ ; ସେତେବେଳେ ତା ପକ୍ଷରେ ସବୁ ବ୍ରହ୍ମମୟ ବା ଈଶ୍ୱରମୟ । ଗାନ୍ଧିଜୀ କହିଲା ପରି "ସମଗ୍ର ଭାରତବର୍ଷହିଁ ମୋର ପରିବାର" ବା "ବସୁଧୈବ କୁଟୁମ୍ବକଂ" । ପ୍ରାଣ ଈଶ୍ୱରମୟ ବା ବିଶ୍ୱମୟ ହୋଇସାରିଲାପରେ ସାଧକଙ୍କର ଅହଂବୋଧହିଁ କିଛି ନ ରହିବାର କଥା ଏବଂ ସେ ଈଶ୍ୱର-ପ୍ରେରିତ ହୋଇହିଁ କାମ କରିଚାଲିବେ । ତେଣୁ ତାଙ୍କ ସଂପର୍କରେ 'ମୋହ'ର ପ୍ରଶ୍ନ ନାହିଁ । ସେ ଯାହା କରିବେ ତାହା ହେବ ଅର୍ଥପୂର୍ଣ୍ଣ ଓ ମୂଲ୍ୟବାନ୍ ।

୩୬

ଅପି ଚେଦସି ପାପେଭ୍ୟଃ ସର୍ବେଭ୍ୟଃ ପାପକୃତ୍ତମଃ
ସର୍ବଂ ଜ୍ଞାନପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସି । ୩୬ ।

ଚେତ୍ (ଯଦି) ସର୍ବେଭ୍ୟଃ ପାପେଭ୍ୟଃ (ସବୁ ପାପୀଏଙ୍କ ଭିତରେ) ପାପକୃତ୍ତମଃ (ଅତି ପାପିଷ୍ଠ) ଅସି (ତୁମେ ହୋଇଥାଅ) [ତଥାପି] ଜ୍ଞାନପ୍ଲବେନୈବ (ସେହି ଜ୍ଞାନ ରୂପକ ଭେଳାଦ୍ୱାରହିଁ) ସର୍ବଂ ବୃଜିନଂ ସନ୍ତରିଷ୍ୟସି (ସକଳ-ପ୍ରକାର ପାପ ବା ମନ୍ଦାଭ୍ୟାସକୁ ପାରି ହୋଇଯିବ) ।

## ଅନୁବାଦ

"ହେ ଅର୍ଜୁନ, ତୁମେ ଯଦି ସାଧାରଣ ପାପୀ ନ ହୋଇ ସବୁଠୁ ବଳି ପାପୀ ହୋଇଥାଅ, ତେବେ ବି ଜ୍ଞାନରୂପ ଭେଳାଦ୍ୱାରା ପାପ-ସମୁଦ୍ରକୁ ପାରି ହୋଇଯିବ ।"

## ବିଶେଷ ଦ୍ରଷ୍ଟବ୍ୟ

ପାଠକେ ସାଧୁ-ସନ୍ଥଙ୍କ ଜୀବନୀସବୁ ଆଲୋଚନା କଲେ ଦେଖିବେ ଯେ, ସେମାନଙ୍କ ଭିତରୁ ଅନେକେ ପ୍ରଥମ ଜୀବନରେ ସକଳପ୍ରକାର ଅସାମାଜିକ କର୍ମରେ ବୁଡ଼ିରହିଥିଲେ । କିନ୍ତୁ ଦିନେ କୌଣସି ଏକ ଘଟଣାରେ ହଠାତ୍ ତାଙ୍କ ଚିତ୍ତରେ ଏକ ରୂପାନ୍ତର ଘଟିଲା ଏବଂ ସେ ଏକ ସଂପୂର୍ଣ୍ଣ ନୂଆ ମନୁଷ୍ୟ ହୋଇଗଲେ । ତାହାହିଁ ଏହି ଶ୍ଳୋକରେ ସୂଚିତ ହୋଇଛି । ଘୋର ପାପାଚାରୀର ମଧ୍ୟ ଯେଉଁ ମୁହୂର୍ତ୍ତରେ 'ଜ୍ଞାନ' ବା 'ବୋଧ' ଆସିଯିବ, ସେହି ମୁହୂର୍ତ୍ତରେ ତାଙ୍କର ସମଗ୍ର ପାପମୟ ଜୀବନ ତାଙ୍କଠୁ ହଠାତ୍ ଘୁଞ୍ଚିଯିବ । ପୂର୍ବ ଶ୍ଳୋକରେ ଗୀତା ଯାହା କହିଲେ ଯେ 'ଶ୍ରେଷ୍ଠ ଜ୍ଞାନ' ହେଲା ବିଶ୍ୱବ୍ୟାପ୍ତି, 'ସମତା'-ଅନୁଭବର ଏକ ରିଆଲାଇଜେସନ (realisation) ମାତ୍ର, ତାହା ମଧ୍ୟ ବିଚାର୍ଯ୍ୟ । ଏହା ଗୁଡ଼ାଏ ଶାସ୍ତ୍ର ବା ଗ୍ରନ୍ଥ ଜ୍ଞାନ ଆଦୌ ନୁହେଁ । ଏ ଶ୍ଳୋକଟି ତାର ଏକ ଅନୁକ୍ରମଣିକା ମାତ୍ର । ପୁଣ୍ୟବାନ୍ ସାଧକର ଜୀବନରେ ଏପ୍ରକାର ଜ୍ଞାନ ଦିନେ ତ ନିଶ୍ଚେ ଆସିବ । କିନ୍ତୁ କୌଣସି କୌଣସି କ୍ଷେତ୍ରରେ ତଥାକଥିତ ପାପାଚାରୀର ମଧ୍ୟ ତାର ଦୈନନ୍ଦିନ ଅଭ୍ୟାସିତ ପାପକର୍ମଭିତରୁହିଁ ହଠାତ୍ ଏହି ଉଦାର ଅନୁଭବ ବାହାରିଆସିପାରେ ଏବଂ ଗତ ପାହିଲାବେଳକୁ ସେ ହୋଇଉଠିଥିବ ଏକ ପାପମୁକ୍ତ ପୁରୁଷ । ଶ୍ରୀରାମକୃଷ୍ଣଦେବ କହିଛନ୍ତି ଯେ, ଗୋଟାଏ ଘର ବହୁ ଯୁଗରୁ ଅନ୍ଧକାରମୟ ଥିଲେ ମଧ୍ୟ ଗୋଟାଏ ଦିଆସିଲିକାଠି ତାକୁ ଆଲୋକିତ କରିଦେବ । ସେହିପରି ମନୁଷ୍ୟର ଆତ୍ମଜ୍ଞାନ ବା ବିଶ୍ୱଜ୍ଞାନ ବା ବ୍ରହ୍ମଜ୍ଞାନ ବା ଗୀତାର ଏହି ଜ୍ଞାନଯୋଗ । ଏହାର ପ୍ରକ୍ରିୟା ପରବର୍ତ୍ତୀ ଶ୍ଳୋକରେ ବର୍ଣ୍ଣିତ ।

୩୭

ଯଥୈଧାଂସି ସମିଦ୍ଧୋଽଗ୍ନିର୍ଭସ୍ମସାତ୍ କୁରୁତେଽର୍ଜୁନ
ଜ୍ଞାନାଗ୍ନିଃ ସର୍ବକର୍ମାଣି ଭସ୍ମସାତ୍ କୁରୁତେ ତଥା । ୩୭ ।

ଅର୍ଜୁନ (ହେ ଅର୍ଜୁନ) ଯଥା (ଯେପରି) ସମିଦ୍ଧଃ ଅଗ୍ନିଃ (ପ୍ରଜ୍ୱଳିତ ନିଆଁ) ଏଧାଂସି ଭସ୍ମସାତ୍ କୁରୁତେ (କାଠଖଣ୍ଡମାନଙ୍କୁ ଶେଷରେ ପାଉଁଶ କରିପକାଏ ) ତଥା (ସେହିପରି) ଜ୍ଞାନାଗ୍ନିଃ ସର୍ବକର୍ମାଣି (ଜ୍ଞାନରୂପକ ନିଆଁ ସକଳପ୍ରକାର କର୍ମର ଫଳକୁ ) ଭସ୍ମସାତ୍ କୁରୁତେ (ଭସ୍ମସାତ୍ କରିଦିଏ ) ।

**ଅନୁବାଦ**

"ହେ ଅର୍ଜୁନ, ପ୍ରଜ୍ୱଳିତ ଅଗ୍ନି ଯେପରି ବଡ଼ ବଡ଼ କାଠଖଣ୍ଡକୁ ମଧ୍ୟ ଶେଷରେ ପାଉଁଶ କରିପକାଏ, ସେହିପରି ଆମର ସକଳ କର୍ମଜନିତ ବନ୍ଧନକୁ ଜ୍ଞାନାଗ୍ନି ଭସ୍ମସାତ୍ କରିଦେଇଥାଏ ।"

**ବିଶେଷ ଭାଷ୍ୟ**

ପାପାଗ୍ରସ୍ତ ଲୋକ ହଠାତ୍ ସାଧୁଜନ ହୋଇଉଠିବାର ଦୃଷ୍ଟାନ୍ତ ପାଠକେ ସ୍ମରଣ କରନ୍ତୁ । ଗୀତା କହନ୍ତି ଯେ, କେବଳ 'ଜ୍ଞାନୋଦୟ' ହେଲେହିଁ ଲୋକର ଏପ୍ରକାର ଜନ୍ମାନ୍ତର ଘଟିଥାଏ । ଯେତେ କାଟିଲେ ମଧ୍ୟ କାଠଗଦା ଧ୍ୱଂସ ହୋଇଯିବନି । କିନ୍ତୁ କ୍ଷଣକେ ନିଆଁ ତାକୁ ନିଃଶେଷ କରିଦେବ । 'ବୈଦିକ ଯଜ୍ଞ'ର ରୂପକରୁ, ପୂର୍ବ ପାପକର୍ମସବୁ ଜ୍ଞାନ ନିଆଁରେ ପୋଡ଼ିହୋଇ କିପରି ଭସ୍ମସାତ୍ ହୋଇଯାନ୍ତି ଅର୍ଥାତ୍ କିପରି ନିଷ୍ଫଳ ହୋଇଯାନ୍ତି, ଗୀତା ତାହାହିଁ ବର୍ଣ୍ଣନା କରିଛନ୍ତି । ଏହି ମୁକ୍ତି ବା ରୂପାନ୍ତରୀକରଣ କେବଳ ଚେତନାର ପରିବର୍ତ୍ତନ ମାତ୍ର । ପ୍ରସିଦ୍ଧ ଖ୍ରୀଷ୍ଟୀୟ ସନ୍ଥ ସେଣ୍ଟ ଫ୍ରାନ୍‌ସିସ୍ ଅବ୍ ଆସିସିଙ୍କ ଜୀବନରେ ଏହିପରି ଘଟିଥିଲା । ପରବର୍ତ୍ତୀ ଶ୍ଳୋକ ଏହା କିପରି ଆସେ ତା'ର ନିର୍ଦ୍ଦେଶ ଦେଉଛନ୍ତି ।

୩୮

ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ
ତତ୍ ସ୍ୱୟଂ ଯୋଗ ସଂସିଦ୍ଧଃ କାଳେନାତ୍ମନି ବିନ୍ଦତି । ୩୮ ।

ଇହ (ସଂସାରରେ) ଜ୍ଞାନେନ ସଦୃଶଂ (ଜ୍ଞାନପରି) ପବିତ୍ରଂ ନ ହି ବିଦ୍ୟତେ (ପବିତ୍ର ଜିନିଷ ଆଉ କିଛି ହେଲେ ନାହିଁ) । ତତ୍ (ସେହି ଜ୍ଞାନ) ଯୋଗସଂସିଦ୍ଧଃ (ସିଦ୍ଧିମାନ୍ ଯୋଗୀ) କାଳେନ (କାଳକ୍ରମେ) ଆତ୍ମନି ସ୍ୱୟଂ ବିନ୍ଦତି (ନିଜ ଅନ୍ତଃକରଣରେହିଁ ପାଇଥାନ୍ତି) [ଅର୍ଥାତ୍ ସେହି ଜ୍ଞାନ ବାହାରୁ ଆସେ ନା, ତାହା ସାଧକର ଭିତରୁ ଫୁଟିଉଠେ] ।

## ଅନୁବାଦ

"ହେ ଅର୍ଜୁନ, ତେଣୁ ଏ ସଂସାରରେ ଜ୍ଞାନଠାରୁ ଅଧିକ ପାବନକାରୀ କିଛି ନାହିଁ ବୋଲି ଜାଣିରଖ । ପୁଣି ଜାଣିରଖ ଯେ, କର୍ମଯୋଗରେ (ନିରହଂକାର, ଅନାସକ୍ତ ଓ ଅଫଳାଭିଳାଷୀ କର୍ମ)ରେ ସିଦ୍ଧିମାନ୍ ହେଲେ ଏ ଜ୍ଞାନ ନିଜ ଅନ୍ତରରୁହିଁ ଆପେ ଆସିଯାଏ ।"

## ବିଶେଷ ଭାଷ୍ୟ

ପାପାତ୍ମାମାନେ ମଧ୍ୟ ଯେ ହଠାତ୍ ଜ୍ଞାନ ଲାଭ କରିଥାନ୍ତି ଏବଂ ସହସା ସାଧୁ ପାଲଟିଯାନ୍ତି, ଗୀତା ଏହା କହିବାପରେ ପ୍ରଶ୍ନ ହୋଇପାରେ ଯେ, ତେବେ ଆମେ ସମସ୍ତେ ସେହି ବାଟ ଧରିବାନି କାହିଁକି ? ତାହାର ଉତ୍ତରରେ ଗୀତା କହୁଛନ୍ତି ଯେ, ସେପରି ଘଟିବା ଏକାନ୍ତ ଆକସ୍ମିକ ଓ ଅନିଶ୍ଚିତ । କିନ୍ତୁ ଏହା ନିଶ୍ଚିତ ସତ୍ୟ ଯେ କର୍ମଯୋଗୀ ବା ଅଫଳାସକ୍ତ କର୍ମୀ ବା ମନନଶୀଳ ଜ୍ଞାନୀର ଅନ୍ତରରେ ଏହିପ୍ରକାର ଜ୍ଞାନର ବିଦ୍ୟୁତ୍‌ରେଖା ଦିନେ ନା ଦିନେ ଆପେ ଆପେ ଉଦ୍‌ଭାସିତ ହୋଇ ଉଠିବ ଏବଂ ମନୁଷ୍ୟପ୍ରତି ସେହି ଜ୍ଞାନ-ବିଦ୍ୟୁତ୍ ପରି ପାବନକାରିଣୀ ଦିତୀୟା ଶକ୍ତି ଇହସଂସାରରେ ଆଉ ନାହିଁ ବୋଲି ଗୀତା ଦୃଢ଼ ସ୍ୱରରେ କହନ୍ତି । କାରଣ, ସେ ଜ୍ଞାନ ଆଉ କିଛି ନୁହେଁ—ତାହା ଚେତନାର ପରିପୂର୍ଣ୍ଣତା । ଶ୍ରୀରାମକୃଷ୍ଣଦେବ ସାଧକ-ଜୀବନରେ କିପରି ଟଙ୍କା ଓ ମାଟିପିଣ୍ଡୁଳାକୁ ଧରି, ଉଭୟର ଶେଷ ପରିଣତିକୁ ତୁଳନା କରି, ଉଭୟକୁ ଗଙ୍ଗା-ଜଳରେ ଫୋପାଡ଼ିଦେଇଥିଲେ, ପାଠକେ ତାହା ସ୍ମରଣ କରନ୍ତୁ । ଧର୍ମ-ସାଧନାର ଏକ ମୁଖ୍ୟ ପନ୍ଥାରୂପେ ଗୀତା ବରାବର ତେଣୁ ଏପ୍ରକାର ଗଭୀର ମନନପାଇଁ ଉପଦେଶ ଦେଇଛନ୍ତି । ଗଭୀର ମନନରୁ ଜ୍ଞାନ ବା ବୋଧି ହଠାତ୍ ଉଦ୍‌ଭାସିତ ହୋଇ ସମଗ୍ର ଅତୀତକୁ ସହସା ରୂପାନ୍ତରିତ କରି-ଦେବ । ବୁଦ୍ଧଙ୍କ ଜୀବନରେ ତାହାହିଁ ଘଟିଥିଲା ।

### ୩୯

ଶ୍ରଦ୍ଧାବାନ୍ ଲଭତେ ଜ୍ଞାନଂ ତତ୍ପରଃ ସଂଯତେନ୍ଦ୍ରିୟଃ
ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତିମଚିରେଣାଧିଗଚ୍ଛତି । ୩୯ ।

ଶ୍ରଦ୍ଧାବାନ୍ (ଶ୍ରଦ୍ଧାଯୁକ୍ତ) ତତ୍ପରଃ (ଏକନିଷ୍ଠ) ସଂଯତେନ୍ଦ୍ରିୟଃ (ସଂଯମୀ) [ଲୋକହିଁ] ଜ୍ଞାନଂ ଲଭତେ [ସେପ୍ରକାର] (ଜ୍ଞାନ ଲାଭ କରିଥାନ୍ତି) । ଜ୍ଞାନଂ ଲବ୍ଧ୍ୱା [ସେପରି] (ଜ୍ଞାନ ଲାଭ କଲେ) [ସାଧକ] ଅଚିରେଣ (ଅତି ଶୀଘ୍ର) ପରାଂ ଶାନ୍ତିଂ (ପରମ ଶାନ୍ତି) ଅଧିଗଚ୍ଛତି (ପ୍ରାପ୍ତ ହୋଇଥାନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ଏହି ଯେ ରୂପାନ୍ତରକାରୀ ଜ୍ଞାନ, ତାହା କେବଳ ଯେଉଁମାନେ ସେଥିପ୍ରତି ଶ୍ରଦ୍ଧାବାନ୍, ଏକନିଷ୍ଠ ଓ ସେହି ଉଦ୍ଦେଶ୍ୟରେ ସଂଯତେନ୍ଦ୍ରିୟ, ସେହିମାନଙ୍କୁ ପ୍ରାପ୍ତ ହୋଇଥାଏ । ସେପ୍ରକାର ଜ୍ଞାନ-ଲାଭର ପ୍ରଥମ ଲକ୍ଷଣ ହେଲା ସାଧକଙ୍କ ଚିତ୍ତରେ ପରମ ଶାନ୍ତି ।"

## ବିଶେଷ ଭାଷ୍ୟ

ଜ୍ଞାନଲାଭପାଇଁ (ପରା ବା ଅପରା ଯାହା ହେଉ ) ଯେଉଁ ମାନସିକ ବୃତ୍ତିସବୁ ଏକାନ୍ତ ଆବଶ୍ୟକ, ଗୀତା ତାହା ଅଳ୍ପ କଥାରେ ମନୋଜ୍ଞଭାବରେ ଏଠାରେ ଉପସ୍ଥାପିତ କରିଦେଲେ ଏବଂ ଏହା ନିଗୂଢ଼ ସତ୍ୟକଥା । ଏହି ଶ୍ଳୋକଟି ଭାରତବର୍ଷର ପ୍ରତି ସ୍କୁଲ ଓ କଲେଜର ଫାଟକଉପରେ ଖୋଦିତ ହେବା ଉଚିତ । କାରଣ ଆଜି ଭାରତର ବିଦ୍ୟାର୍ଥୀମାନଙ୍କଠାରୁ 'ଶ୍ରଦ୍ଧା', 'ତତ୍-ପର-ତା' ବା ଜ୍ଞାନ-ତନ୍ମୟ-ଭାବ ସଂଯମ ଓ ଯେଉଁ ଗୁଣ ଜ୍ଞାନଲାଭ ପାଇଁ ଏକାନ୍ତ ଆବଶ୍ୟକ, ସେସବୁ ସଂପୂର୍ଣ୍ଣ ଉଭେଇଯାଇ ସେମାନଙ୍କ ସ୍ଥାନରେ ଦେଖାଦେଇଛି ଗୁଣ୍ଡାମି, ଅଶ୍ରଦ୍ଧା, ଅଶିଷ୍ଟତା ଓ ବିଦ୍ରୋହ କଦାଚାର । ଏପ୍ରକାର ପରିସ୍ଥିତିରେ ଏ ଦେଶରେ ବିଦ୍ୟାର ମାନଦଣ୍ଡ ଯେ କ୍ଷିପ୍ରଗତିରେ ତଳକୁ ଖସିଲାଣି ଓ ବିଦ୍ୟାପୀଠସବୁ କଳୁଷପୀଠରେ ପରିଣତ ହେଲାଣି, ଏଥିରେ ବିସ୍ମିତ ହେବାର କଣ ଅଛି ?

କିନ୍ତୁ, ଯେକୌଣସି ଜ୍ଞାନ(ପରା ବା ଅପରା)ଲାଭପାଇଁ ଗୀତାର ଏହି ଶ୍ଳୋକୋକ୍ତ ପନ୍ଥାହିଁ ଏକମାତ୍ର ପନ୍ଥା । ଦ୍ୱିତୀୟ ପନ୍ଥା ଆଉ ନାହିଁ । ଅନ୍ୟଥାରେ ଯେକୌଣସି ପନ୍ଥା କେବଳ ଆତ୍ମପ୍ରତାରଣା ଓ ଆତ୍ମହତ୍ୟା ମାତ୍ର ।

କେବଳ ଜ୍ଞାନହିଁ ଯେ ମନୁଷ୍ୟକୁ ଶାନ୍ତି ବା ଚୈତ୍ତିକ ସୁଖ ଦେଇପାରେ, ଧନ, କ୍ଷମତାଦି ଆଉ କିଛି ହେଲେ ଦେଇ ନ ପାରନ୍ତି, ଏହା ମଧ୍ୟ ନିଃସନ୍ଦେହ ବ୍ୟାପାର । ଗୀତା ତାହାହିଁ ଏଠାରେ ସ୍ପଷ୍ଟ ବାଣୀରେ ଶୁଣାଇଦେଇଛନ୍ତି— ମନୁଷ୍ୟ 'ପରାଂ ଶାନ୍ତିଂ' ପାଇପାରେ କେବଳ ଜ୍ଞାନ ଦେଇ, ଉଦାର ଓ ମହତ୍ ଏକ ଅବବୋଧ ଦେଇ, ଯାହା ଆମର କ୍ଷୁଦ୍ରତାକୁ ଏକୀଭୂତ କରିଦେବ ବିଶ୍ୱ ଓ ଈଶ୍ୱର ସହିତ ।

**୪୦**

ଅଜ୍ଞଶ୍ଚାଶ୍ରଦ୍ଦଧାନଶ୍ଚ ସଂଶୟାତ୍ମା ବିନଶ୍ୟତି
ନାୟଂ ଲୋକୋଽସ୍ତି ନ ପରୋ ନ ସୁଖଂ ସଂଶୟାତ୍ମନଃ । ୪୦ ।

ଅଜ୍ଞଃ (ମୂର୍ଖ) ଅଶ୍ରଦ୍ଦଧାନଃ (ଶ୍ରଦ୍ଧାହୀନ) ସଂଶୟାତ୍ମା (ସନ୍ଦେହୀ ଲୋକ) ବିନଶ୍ୟତି (ବିନାଶପ୍ରାପ୍ତ ହୁଏ, ଅର୍ଥାତ୍ କୌଣସି କ୍ଷେତ୍ରରେ ଅଗ୍ରଗତି କରି

ପାରେ ନା )। ସଂଶୟାତ୍ମନଃ (ସନ୍ଦେହୀ ଲୋକର) ଅୟଂ ଲୋକଃ ନ ଅସ୍ତି (ଇହଲୋକ ନାହିଁ) ନ ପରଃ (କି, ପରଲୋକ ମଧ୍ୟ ନାହିଁ) ନ ସୁଖଂ [ଅଧିକନ୍ତୁ] (ସୁଖ ମଧ୍ୟ ନାହିଁ)।

## ଅନୁବାଦ

"ଏକେ ଅଜ୍ଞ, ପୁଣି ଜ୍ଞାନଲାଭରେ ଶ୍ରଦ୍ଧାହୀନ, ପୁଣି (ଏ ଜ୍ଞାନ ମୋର କଣ ହେବ, ବରଂ) ସବୁବେଳେ ସଂଶୟାତ୍ମା—ହେ ଅର୍ଜୁନ, ଏପରି ଲୋକ ସର୍ବସ୍ୱ ବିନାଶର ସମ୍ମୁଖୀନ ହୁଏ। ସର୍ବଦା ସନ୍ଦେହୀ (ଦୋଦୋପାଞ୍ଚ, ଅ-ସ୍ଥିର-ନିଶ୍ଚୟ) ଲୋକର ଇହଲୋକରେ ବା ପରଲୋକରେ ସିଦ୍ଧି ତ ନାହିଁ, କୌଣସି ସୁଖ ମଧ୍ୟ ନାହିଁ।"

## ବିଶେଷ ଭାଷ୍ୟ

ଗୀତା ଯେ ଏ ଶ୍ଳୋକଟି କେବଳ ଆଧ୍ୟାତ୍ମିକ ସାଧନା ସଂପର୍କରେ କହୁଛନ୍ତି ତାହା ନୁହେଁ, 'ଅଜ୍ଞ' (ଏପରି ଏକ ଲୋକ ଯେ କି ଯେଉଁ ବିଷୟଟି ହାତକୁ ନେଲା, ସେ ବିଷୟଟି ପୁଙ୍ଖାନୁପୁଙ୍ଖରୂପେ ଜାଣିନି), ପୁଣି ସେଥିରେ ଯାର ଶ୍ରଦ୍ଧା ମଧ୍ୟ ନାହିଁ (ଅଶ୍ରଦ୍ଦଧାନଃ), ପୁଣି କାଳେ ଏଥିରେ ଆଶା-କରୁଥିବା ଟି ପଇସା ଆସିବ କି ନାହିଁ ଏଇକଥା କେବଳ ଭାବି ଭାବି, ସବୁବେଳେ ଭାବୁ-ଥିବ—ଏଥିକୁ ଛାଡ଼ି ଆଉ କଣ ଧଇଲେ ଭଲ ହୁଅନ୍ତା ପରା ! (ସଂଶୟାତ୍ମା),— ଏପରି ଲୋକ ଜଗତର ଯେକୌଣସି କ୍ଷେତ୍ରରେ ଯେ ତଳେ ପଡ଼ି ରହିବେ, ଏଥିରେ ତିଳେ ସନ୍ଦେହ ନାହିଁ। ଗୀତା ଏଥିପାଇଁ କହିଛନ୍ତି—ସନ୍ଦେହାତ୍ମା ବିନଶ୍ୟତି। ଏହାର ଅର୍ଥ ନୁହେଁ ଯେ, ସାଧକ ବା କର୍ମୀ କାମ କରୁ କରୁ ଯେଉଁ ବିଷୟଗତ ସନ୍ଦେହର ସମ୍ମୁଖୀନ ହେବେ ତାହା ସାହସର ସହିତ ପ୍ରକାଶ କରିବେନି।

ଗୀତା କିଂଚିତ୍ ପୂର୍ବରୁ (୪।୩୪) 'ପରିପ୍ରଶ୍ନକୁ' (ବାରମ୍ବାର ଜିଜ୍ଞାସାକୁ) ଜ୍ଞାନଲାଭର କପରି ଏକ ମୁଖ୍ୟ ପନ୍ଥା ବୋଲି ନିର୍ଦ୍ଦେଶ କରିଛନ୍ତି, ତାହା ପାଠକେ ସ୍ମରଣ କରିବେ। ପୃଥିବୀର ଇତିହାସରେ ବା ଭିନ୍ନ ଭିନ୍ନ ଜାତିପୂ ଜୀବନରେ ଯେଉଁ ମହାନ୍ ବ୍ୟକ୍ତିମାନେ ରେଖାପାତ କରିଯାଇଛନ୍ତି, ସେମାନେ କେବେ ହେଲେ 'ଅଜ୍ଞ' ବା 'ଅଶ୍ରଦ୍ଦଧାନ' ବା 'ସଂଶୟାତ୍ମା' ନ ଥିଲେ। ସହସ୍ର ବାଧା ଓ ବିରୋଧଭିତରେ ସେମାନେ ଶ୍ରଦ୍ଧା, ଜ୍ଞାନ ଓ ବିଶ୍ୱାସର ଦୀପକୁ ଅନ୍ତରରେ ଚିରବିର ଜାଳିରଖିଥିଲେ ଏବଂ ସେମାନଙ୍କ ଅଭିଯାନର ଶେଷ ବିଜୟରେ

ସେମାନଙ୍କର ତଳେ ହେଲେ ସଂଶୟ ନ ଥିଲା । ପାଠକେ ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦଙ୍କ ସହିତ ଲିନ୍‌କନ୍ ଓ ଗାନ୍ଧି ପ୍ରଭୃତିଙ୍କ ବରେଣ୍ୟ ଜୀବନୀ ଆଲୋଚନା କଲେ ଗୀତୋକ୍ତ ଏହି ପରମ ଓ ଶୁଭଙ୍କର ସତ୍ୟକୁ ସହଜରେ ହୃଦୟଙ୍ଗମ କରିପାରିବେ ।

୪୧

ଯୋଗସଂନ୍ୟସ୍ତକର୍ମାଣଂ ଜ୍ଞାନସଂଛିନ୍ନସଂଶୟମ୍
ଆତ୍ମବନ୍ତଂ ନ କର୍ମାଣି ନିବଧ୍ନନ୍ତି ଧନଞ୍ଜୟ । ୪୧ ।

ଧନଞ୍ଜୟ (ହେ ଅର୍ଜୁନ) ଯୋଗସଂନ୍ୟସ୍ତକର୍ମାଣଂ (ଯେ କର୍ମକୁ କର୍ମଯୋଗରେ ପରିଣତ କରିପାରିଛନ୍ତି, ଜ୍ଞାନସଂଛିନ୍ନସଂଶୟଂ (ଆଧ୍ୟାତ୍ମିକ ଜ୍ଞାନ ଯାହାଙ୍କର ସନ୍ଦେହ ଛିନ୍ନ କରିଦେଇଛି ) ଆତ୍ମବନ୍ତଂ (ଆତ୍ମଜ୍ଞାନସଂପନ୍ନ ସେହି ବ୍ୟକ୍ତିଙ୍କୁ) କର୍ମାଣି (କର୍ମସକଳ) [ଆଉ] ନ ନିବଧ୍ନନ୍ତି (ଆବଦ୍ଧ କରିପାରେ ନାହିଁ) ।

**ଅନୁବାଦ**

"ତେଣୁ ହେ ଅର୍ଜୁନ, ଜାଣିରଖ ଯେ, କର୍ମକୁ ଯେ କର୍ମଯୋଗରେ ପରିଣତ କରିପାରିଛନ୍ତି ଏବଂ ସେହି ସୂତ୍ରରେ ପ୍ରାପ୍ତ ଜ୍ଞାନଦ୍ୱାରା ଜୀବନର ଲକ୍ଷ୍ୟ ପ୍ରଭୃତି ନେଇ ତାଙ୍କର କୌଣସି ସନ୍ଦେହ ନାହିଁ, ସେପରି ଆତ୍ମବାନ୍ ଲୋକ ଯେତେ ଓ ଯେତେପ୍ରକାର କାମ କରିଚାଲିଲେ ମଧ୍ୟ ତାଙ୍କୁ କୌଣସିଟି କର୍ମର ପ୍ରତିକ୍ରିୟା ଲାଗେ ନାହିଁ ।"

୪୨

ତସ୍ମାଦଜ୍ଞାନସଂଭୂତଂ ହୃତ୍‌ସ୍ଥଂ ଜ୍ଞାନାସିନାତ୍ମନଃ
ଛିତ୍ତ୍ୱୈନଂ ସଂଶୟଂ ଯୋଗମାତିଷ୍ଠୋତ୍ତିଷ୍ଠ ଭାରତ । ୪୨ ।

ତସ୍ମାତ୍ (ତେଣୁ, ସେହି ହେତୁରୁ) ଭାରତ (ହେ ଅର୍ଜୁନ) ଅଜ୍ଞାନ-ସଂଭୂତଂ (ଅଜ୍ଞାନରୁ ଜାତ) ଆତ୍ମନଃ ହୃତ୍‌ସ୍ଥଂ (ତୁମର ହୃଦୟସ୍ଥିତ) ଏନଂ (ଏହି) ସଂଶୟଂ (ସନ୍ଦେହକୁ) ଜ୍ଞାନାସିନା (ପରା ଓ ଅପରା ଜ୍ଞାନର ଖଡ୍‌ଗଦ୍ୱାରା) ଛିତ୍ତ୍ୱା (ଛେଦନ କରି) ଯୋଗଂ ଆତିଷ୍ଠ (କର୍ମଯୋଗକୁ ଅଭ୍ୟାସ କର) [ଏବଂ] ଉତ୍ତିଷ୍ଠ (ଯୁଦ୍ଧ ନିମିତ୍ତ ସାହସର ସହିତ ଦଣ୍ଡାୟମାନ ହୁଅ ) ।

**ଅନୁବାଦ**

"ତେଣୁ ହେ ଅର୍ଜୁନ, ତୁମର ହୃଦୟରେ ଥିବା ଅ-ଜ୍ଞାନ-ଜାତ ସକଳ ସଂଶୟକୁ ଉଭୟ ପରା ଓ ଅପରା ଜ୍ଞାନର ଖଣ୍ଡାଦ୍ୱାରା କାଟିପକାଇ କର୍ମଯୋଗ

(ନିରହଙ୍କାର, ଅନାସକ୍ତ, ଅଫଳାଭିଳାଷୀ କର୍ମ) ଅଭ୍ୟାସ କର ଏବଂ ବର୍ତ୍ତମାନ କ୍ଷେତ୍ରରେ, ତେଣୁ ଉଠ, ଯୁଦ୍ଧପାଇଁ ଉତ୍ସାହର ସହିତ ବାହାରିପଡ଼ ।"

**ବିଶେଷ ଭାଷ୍ୟ**

ଏ ଅଧ୍ୟାୟର ଏହି ଶେଷ ଶ୍ଳୋକରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଛନ୍ତି, "ତୁମକୁ ଏତେ ବୁଝେଇସାରିଲା ପରେ ମଧ୍ୟ ଯଦି ତୁମର କିଛି ସନ୍ଦେହ ଥାଏ, ସେଥିରେ ମଧ୍ୟ ବିଚଳିତ ହେବାର କିଛି ନାହିଁ । କେବଳ ଜ୍ଞାନରୂପକ ଖଡ୍ଗ-ଦ୍ୱାରହିଁ ତୁମର ସେହି ଅନ୍ତରସ୍ଥ ସଂଶୟକୁ (ସନ୍ଦେହକୁ) ହାଣି ହେବ । ମୁଁ ତୁମକୁ ବଳାତ୍କାରରେ କିଛି କରିପକେଇବାକୁ କହୁ ନାହିଁ । ତୁମେ ଯାହା କରିବ, ତାହା ନିଜେ ବୁଦ୍ଧିଯୁକ୍ତ ଓ ଜ୍ଞାନାଲୋକିତ ହୋଇ ଯେ କରିବ, ଏହାହିଁ ମୁଁ ଚାହେଁ । ସେହିପ୍ରକାର ଅନ୍ତର୍ବେତ୍ତ୍ୱିତ ଜ୍ଞାନାଲୋକରେହିଁ ତୁମର ଚିତ୍ତ ଆଲୋକିତ ହେଉ । ଏହି କର୍ମମୟ ଜଗତରେ କିଏ ପ୍ରକୃତରେ କର୍ମ କରେ, କର୍ମର ପ୍ରକୃତ କର୍ତ୍ତା କିଏ, କର୍ମ, ଅକର୍ମ ଓ ବିକର୍ମ କଣ, କର୍ମ କଣ, ଜ୍ଞାନ କଣ, କର୍ମ ଓ ଜ୍ଞାନର ସଂବନ୍ଧ କଣ, ଦେହ କଣ, ଆତ୍ମା କଣ, କିଏ ମରେ ପ୍ରକୃତରେ—ଦେହ ନା ଆତ୍ମା, ଧର୍ମ କଣ, ଯଜ୍ଞ କଣ, ସୃଷ୍ଟି ସହିତ ତୁମର ଦୈନନ୍ଦିନ ଜୀବନର ସଂବନ୍ଧ କଣ ହେବା ଉଚିତ—ଇତ୍ୟାଦି ଇତ୍ୟାଦି, ମୁଁ ତୁମକୁ ବୁଝାଇସାରିଥିବା କଥା-ଗୁଡ଼ିକୁ ତୁମେ ଗଭୀର ଆଲୋଚନା କରି ସେସବୁ ସଂପର୍କରେ ସମ୍ପୂର୍ଣ୍ଣ ନିଃସନ୍ଦେହ ହେଲାପରେହିଁ, ନିଜର ବିଚାରରେ ସଂପୂର୍ଣ୍ଣଭାବରେ ବିମୁକ୍ତସନ୍ଦେହ ହୋଇ, ଅର୍ଥାତ୍ ଏହାହିଁ ମନୁଷ୍ୟର ଶ୍ରେଷ୍ଠ ଜୀବନାଦର୍ଶ ହେବା ଉଚିତ, ଏହା ତୁମେ ନିଜେ ଗଭୀରଭାବରେ ହୃଦ୍‌ବୋଧ କଲାପରେ ଯାଇ କର୍ମଯୋଗ ଭାବରେ ଯୁଦ୍ଧପାଇଁ ତିଆର ହୁଅ ।"

ଆମ ଜୀବନର ପ୍ରତ୍ୟେକ ସଂକଟରେ ଓ ସାରା ଜୀବନରେ ମଧ୍ୟ, ଗୀତାଙ୍କର ଏହି ପରମ ପ୍ରଜ୍ଞାମୂଳକ ଉପଦେଶ ଯେ ପ୍ରଯୁଜ୍ୟ ଓ ସର୍ବଥା ଗ୍ରହଣୀୟ ଓ ଅଭ୍ୟାସମୟ, ଆଶା କରୁଁ, ଏ କଥା ପ୍ରତ୍ୟେକ ପାଠକ-ପାଠିକା ମଧ୍ୟ ନିଜେ ନିଜେ ଅନୁଭବ କରିବେ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି
ଶ୍ରୀମଦ୍‌ଭଗବଦ୍‌ଗୀତା ସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ
ଶ୍ରୀକୃଷ୍ଣାର୍ଜ୍ଜୁନ ସଂବାଦେ ଜ୍ଞାନଯୋଗୋ ନାମ ଚତୁର୍ଥୋଽଧ୍ୟାୟଃ

———

# ପଞ୍ଚମ ଅଧ୍ୟାୟ

## ସନ୍ନ୍ୟାସ ଯୋଗ

### ଅଧ୍ୟାୟ-ଦୀପିକା

ପ୍ରଥମ ଥର ଅଧ୍ୟାୟପରେ ପାଠକେ ହୁଏତ ମନେ କରିବେ—ଏଣିକି ଗୀତାରେ କେବଳ ସେଇ କଥା ସେଇ କଥା ଅଧ୍ୟାୟ ଅଧ୍ୟାୟ ଧରି ବାରମ୍ବାର କୁହାଯାଉଛି । ସେହିପରି ଧାରଣା ହେଲେହେଁ ପ୍ରତ୍ୟେକ ଅଧ୍ୟାୟ ଓ ପ୍ରତ୍ୟେକ ପୁନରାବୃତ୍ତ ଶ୍ଳୋକରେ ଆମେ ଏକ ନୂତନ ସଜୀବତା ଯେ ଉପଲବ୍ଧ କରିବା, ଏଥିରେ ସନ୍ଦେହ ନାହିଁ । ଏ ଅଧ୍ୟାୟଟିହିଁ ତାହାର ପ୍ରମାଣ ।

ଏହି ଅଧ୍ୟାୟଟି 'ସନ୍ନ୍ୟାସ ଯୋଗ' ବୋଲି କଥିତ ହେଲେହେଁ ପାଠକେ ଶେଷରେ ଦେଖିବେ ଯେ, ଏହା ପ୍ରକୃତରେ ପୂର୍ବ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ଗୀତାର ମୂଳ କଥା,—'କର୍ମଯୋଗ'ର ସଂପ୍ରସାରଣ ମାତ୍ର । ପୁଣି ଏଥିରେ 'ଜ୍ଞାନଯୋଗ'ର ମଧ୍ୟ ଚର୍ଚ୍ଚା ହୋଇଛି ଏବଂ ଶେଷରେ 'ଭକ୍ତିଯୋଗ'ର ସୂଚନା ଦିଆଯାଇଛି ।

ଏହାର ୧ରୁ ୬ ଶ୍ଳୋକମଧ୍ୟରେ କର୍ମଯୋଗ ଓ ସନ୍ନ୍ୟାସର ତୁଳନା, ୭ରୁ ୧୨ଭିତରେ କର୍ମଯୋଗର ଫଳ, ୧୩ରୁ ୧୭ଭିତରେ ଜ୍ଞାନଯୋଗର ପ୍ରଶଂସା, ୧୮ରୁ ୨୦ରେ ସମତାର ବର୍ଣ୍ଣନା, ୨୧ରୁ ୨୬ରେ ବାହ୍ୟ ଓ ଆନ୍ତର ସୁଖ, ଏବଂ ୨୭ରୁ ୨୯ରେ ନିର୍ବାଣର ଉପାୟ ବର୍ଣ୍ଣିତ ହୋଇଛି ।

ଅର୍ଜୁନ ଉବାଚ

( ୧ )

ସନ୍ନ୍ୟାସଂ କର୍ମଣାଂ କୃଷ୍ଣ ପୁନର୍ଯୋଗଂ ଚ ଶଂସସି
ଯଚ୍ଛ୍ରେୟ ଏତୟୋରେକଂ ତନ୍ମେ ବ୍ରୂହି ସୁନିଶ୍ଚିତମ୍ । ୧ ।

ଅର୍ଜୁନ ଉବାଚ (ଅର୍ଜୁନ କହିଲେ), କୃଷ୍ଣ (ହେ କୃଷ୍ଣ) କର୍ମଣାଂ ସନ୍ନ୍ୟାସଂ (କର୍ମତ୍ୟାଗ) ପୁନଃ ଯୋଗଂ ଚ ଶଂସସି (ପୁନଶ୍ଚ କର୍ମଯୋଗର କଥା ବି କହୁଛ)

ଏତୟୋଃ (ଏ ଦୁଇଟିଭିତରେ) ଯତ୍ ମେ ଶ୍ରେୟଃ (ଯାହା ମୋ ପକ୍ଷରେ ମଙ୍ଗଳକର) ତତ୍ ଏକଂ (ସେହି ଗୋଟିକର କଥା) ସୁନିଶ୍ଚିତଂ ବ୍ରୂହି (ନିଶ୍ଚିତ କରି କହ)।

**ଅନୁବାଦ**

ଅର୍ଜୁନ କହିଲେ, "ହେ କୃଷ୍ଣ, ତୁମେ 'କର୍ମତ୍ୟାଗ'ର କଥା କହୁଛ, ପୁଣି 'କର୍ମଯୋଗ'ର ପ୍ରଶଂସା ମଧ୍ୟ କରୁଛ। ଏ ଉଭୟଙ୍କ ଭିତରୁ ଯେଉଁ ଗୋଟିକ ମୋପାଇଁ ଶୁଭଂକର, ତାହାକୁହିଁ ନିଶ୍ଚିତଭାବରେ କହ।"

**ବିଶେଷ ଭାଷ୍ୟ**

ପାଠକେ ପଛକୁ ଫେରି ଦେଖିବାଅନ୍ତୁ ଯେ, ପୂର୍ବବର୍ତ୍ତୀ ସମଗ୍ର ଚତୁର୍ଥ ଅଧ୍ୟାୟରେ ଶ୍ରୀକୃଷ୍ଣ 'ସନ୍ନ୍ୟାସ' ଏହି ଶବ୍ଦଟିର କାହିଁ ହେଲେ ଉଚ୍ଚାରଣ କରି ନାହାନ୍ତି। ତା ପୂର୍ବବର୍ତ୍ତୀ ତୃତୀୟ ଅଧ୍ୟାୟର ୪ର୍ଥ ଶ୍ଲୋକରେ 'ସନ୍ନ୍ୟାସ'ର ନିନ୍ଦା କରାଯାଇଛି, ଏବଂ ସେହି ଅଧ୍ୟାୟର ୩୦ଶ ଶ୍ଲୋକରେ ଥିବା 'ମୟି ସର୍ବାଣି କର୍ମାଣି ସଂନ୍ୟସ୍ୟ'ର ତାତ୍ପର୍ଯ୍ୟ ମଧ୍ୟ ନୁହେଁ 'ସନ୍ନ୍ୟାସ' ବା କର୍ମତ୍ୟାଗ ବା ନିଷ୍କ୍ରିୟତା। ତାର ତାତ୍‌ପର୍ଯ୍ୟ ହେଉଛି 'ମୋ'ଠାରେ (ଈଶ୍ୱରଙ୍କଠାରେ) କର୍ମର ଫଳାଫଳ ସମର୍ପିତ କରିଦେଇ'—ଇତ୍ୟାଦି। ତେଣୁ ଅର୍ଜୁନଙ୍କର ଏ ପ୍ରଶ୍ନ ଟିକିଏ ଅବାନ୍ତର ବୋଧ ହେଉଛି।

ଚତୁର୍ଥ ଅଧ୍ୟାୟର ଶେଷ ଶ୍ଲୋକର ଠିକ୍ ପୂର୍ବ ଶ୍ଲୋକରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ "ଯୋଗସଂନ୍ୟସ୍ତକର୍ମା" ଅର୍ଥାତ୍ ଆମେ କିପରି 'କର୍ମଯୋଗ' ଦେଇ ଈଶ୍ୱର-ସମର୍ପିତ-କର୍ମା ହେବା, ସେହି କଥା ବୁଝାଇଛନ୍ତି। ଶେଷ ଶ୍ଲୋକରେ 'ଜ୍ଞାନ'-ଖଡ୍‌ଗଦ୍ୱାରା ହୃଦୟସ୍ଥ ସଂଶୟକୁ ମଧ୍ୟ ହତ୍ୟା କରିବାକୁ କୁହାଯାଇଛି ଅର୍ଥାତ୍ କର୍ମଯୋଗ ଓ ଜ୍ଞାନଯୋଗର କଥାହିଁ କୁହାଯାଇଛି। କିନ୍ତୁ ଧର୍ମ-ସାଧନା ଭାବରେ 'କର୍ମଶୂନ୍ୟତା' ଅର୍ଥରେ ସନ୍ନ୍ୟାସ ଶବ୍ଦଟି ଏପର୍ଯ୍ୟନ୍ତ ଗୀତାରେ କୌଣସିଠାରେ ବ୍ୟାଖ୍ୟାତ ହୋଇ ନାହିଁ। ବରଂ ଏପର୍ଯ୍ୟନ୍ତ 'କର୍ମଯୋଗ' ଉପରେହିଁ ଜୋର୍ ଦେଇ ଦେଇ କୁହାଯାଇଛି ଏବଂ ତାହା ମଧ୍ୟ ଯଥେଷ୍ଟ କୁହାଗଲାଣି। ବୋଧହୁଏ କର୍ମଯୋଗ ଓ ଜ୍ଞାନଯୋଗଉପରେ ଆହୁରି ଅଧିକ କହିବାପାଇଁହିଁ ଏ ଅଧ୍ୟାୟରେ ସନ୍ନ୍ୟାସ ଓ କର୍ମଯୋଗର ତୁଳନାତ୍ମକ ଆଲୋଚନା ମନକୁ ଉଠାଯାଇଛି ଏବଂ ପ୍ରମାଣିତ କରାଯାଇଛି ଯେ, ନିଃସ୍ୱାର୍ଥ ନିରହଂକାର କର୍ମଶୀଳ ଗୃହସ୍ଥ ମଧ୍ୟ ଅନ୍ତରାଳେକମୟ ନିତ୍ୟସନ୍ନ୍ୟାସୀ ହୋଇପାରନ୍ତି। ଏଥିପାଇଁ ସମାଜ-ସଂସାର ଛାଡ଼ି, ସାମାଜିକ ଦାୟିତ୍ୱ ପରିତ୍ୟାଗ କରି ପଳେଇଯିବାର କୌଣସି ଆବଶ୍ୟକତା ନାହିଁ।

## ଶ୍ରୀ ଭଗବାନ ଉବାଚ

୨

ସନ୍ନ୍ୟାସଃ କର୍ମଯୋଗଶ୍ଚ ନିଃଶ୍ରେୟସକରାବୁଭୌ
ତୟୋସ୍ତୁ କର୍ମସନ୍ନ୍ୟାସାତ୍ କର୍ମଯୋଗେ ବିଶିଷ୍ୟତେ । ୨ ।

ଶ୍ରୀ ଭଗବାନ୍ ଉବାଚ (ଭଗବାନ ଶ୍ରୀକୃଷ୍ଣ କହିଲେ), ସନ୍ନ୍ୟାସଃ କର୍ମଯୋଗଃ ଚ ଉଭୌ ନିଃଶ୍ରେୟସକରୌ (ସନ୍ନ୍ୟାସ ଓ କର୍ମଯୋଗ ଉଭୟେ ମୁକ୍ତିଦାୟୀ) । ତୁ (କିନ୍ତୁ) ତୟୋଃ (ଏ ଦୁହିଁଙ୍କ ଭିତରେ) କର୍ମସନ୍ନ୍ୟାସାତ୍ (କର୍ମ-ତ୍ୟାଗଠାରୁ) କର୍ମଯୋଗଃ (କର୍ମଯୋଗ) ବିଶିଷ୍ୟତେ (ବିଶିଷ୍ଟ ବା ଶ୍ରେଷ୍ଠ) ।

### ଅନୁବାଦ

ଶ୍ରୀ ଭଗବାନ୍ କହିଲେ, ହେ "ଅର୍ଜୁନ, 'ସନ୍ନ୍ୟାସ' (କର୍ମତ୍ୟାଗ) ଓ 'କର୍ମ-ଯୋଗ' ଉଭୟେ ଏକାପରି ମୁକ୍ତିଦାୟୀ । କିନ୍ତୁ ଏ ଦୁହିଁଙ୍କ ଭିତରେ 'କର୍ମତ୍ୟାଗ'-ଠାରୁ 'କର୍ମଯୋଗ' ଅର୍ଥାତ୍ ନିଃସ୍ୱାର୍ଥ ନିରହଂକାର କର୍ମହିଁ ଉତ୍କୃଷ୍ଟ ।"

୩

ଜ୍ଞେୟଃ ସ ନିତ୍ୟସନ୍ନ୍ୟାସୀ ଯୋ ନ ଦ୍ୱେଷ୍ଟି ନ କାଙ୍କ୍ଷତି
ନିର୍ଦ୍ୱନ୍ଦ୍ୱୋହି ମହାବାହୋ ସୁଖଂ ବନ୍ଧାତ୍ ପ୍ରମୁଚ୍ୟତେ । ୩ ।

ମହାବାହୋ (ହେ ମହାବାହୁ ଅର୍ଜୁନ) ଯଃ ନ ଦ୍ୱେଷ୍ଟି (ଯେ କାହାକୁ ଦ୍ୱେଷ କରନ୍ତି ନାହିଁ) [ବା] ନ କାଙ୍କ୍ଷତି (କୌଣସି ଆକାଙ୍କ୍ଷା ମଧ୍ୟ କରନ୍ତି ନାହିଁ) ସଃ (ସେହି) [ସଂସାରରେ କାମ କରୁଥିଲେହେଁ] ନିତ୍ୟସନ୍ନ୍ୟାସୀ ଜ୍ଞେୟଃ (ନିତ୍ୟସନ୍ନ୍ୟାସୀ ବୋଲି ଜାଣିବ) । ନିର୍ଦ୍ୱନ୍ଦ୍ୱଃ ହି (ସେହି ରାଗ-ଦ୍ୱେଷାଦି ଦ୍ୱନ୍ଦ୍ୱରୁ ମୁକ୍ତ ପୁରୁଷହିଁ) ସୁଖଂ (ଅନାୟାସରେ) [କାମ କରୁଥିଲେହେଁ] ବନ୍ଧାତ୍ (କର୍ମ-ବନ୍ଧନରୁ) ପ୍ରମୁଚ୍ୟତେ (ମୁକ୍ତି ଲାଭ କରିଥାନ୍ତି) ।

### ଅନୁବାଦ

"ହେ ଅର୍ଜୁନ, ଯେ କାହାପ୍ରତି ଦ୍ୱେଷସଂପନ୍ନ ନୁହନ୍ତି, ଯେ କୌଣସି ହେଲେ ଆକାଙ୍କ୍ଷାଦ୍ୱାରା ଅଭିଭୂତ ନୁହନ୍ତି, ସେ ସଂସାରରେ ରହି ଯେତେ କାମ କଲେ ମଧ୍ୟ ତାଙ୍କୁ ଜାଣିରଖ ଯେ, ସେ ଏକ ନିତ୍ୟ-ସନ୍ନ୍ୟାସୀ । ପ୍ରକୃତରେ ରାଗ-ଦ୍ୱେଷାଦି ଦ୍ୱନ୍ଦ୍ୱରୁ ମୁକ୍ତ ପୁରୁଷହିଁ କର୍ମବନ୍ଧନ ବା କର୍ମଫଳରୁ ମୁକ୍ତ ହୋଇଥାନ୍ତି—କେବଳ କାମ ନ କରିବା ଲୋକ ନୁହେଁ ।"

## ବିଶେଷ ଭାଷ୍ୟ

ଗୃହସ୍ଥର ଜୀବନ ବା ମନୁଷ୍ୟର ସାମାଜିକ ଜୀବନହିଁ ସବୁଠାରୁ ସ୍ୱାଭାବିକ ଜୀବନ। କିନ୍ତୁ ପ୍ରଗାଢ଼ ଐକାନ୍ତିକତା ଧନ୍ଵିତ ଧର୍ମୀୟ ସାଧନାପାଇଁ ସବୁ ଧର୍ମରେ ଘର-ସମାଜ ଛାଡ଼ି 'ସନ୍ନ୍ୟାସ' ନେବାର ବ୍ୟବସ୍ଥା ଅଛି । ଏ ଶ୍ଳୋକରେ କୁହା-ଯାଉଛି ଯେ, ଯେଉଁ ଲୋକ ଘରେ ଓ ସମାଜରେ ଥାଇ ମଧ୍ୟ କାହାପ୍ରତି ବା କୌଣସି ବିଷୟପ୍ରତି ଆସକ୍ତ ନୁହନ୍ତି, କି କାହାପ୍ରତି ବିଦ୍ୱେଷଭାବ ପୋଷନ୍ତି ନାହିଁ, କି ତାଙ୍କର କୌଣସି ବିଶେଷ ଅଭିଳାଷ ମଧ୍ୟ ନ ଥାଏ, ମୋଟଉପରେ ସୁଖ-ଦୁଃଖ, ମାନ-ଅପମାନ, ଲାଭାଲାଭ ଇତ୍ୟାଦି ସାଂସାରିକ ଦ୍ୱନ୍ଦ୍ୱସବୁ ଯାହାଙ୍କୁ ବିଚଳିତ କରିପାରନ୍ତି ନାହିଁ, ଗୀତାଙ୍କ ମତରେ, ଘରେ ଓ ସଂସାରରେ ଥାଇ ସହସ୍ର କର୍ମ କରୁଥିଲେ ମଧ୍ୟ ସେଭଳି ଲୋକ ସତ୍ୟରେ ଏକ ନିତ୍ୟସନ୍ନ୍ୟାସୀ। ସେଭଳି ଲୋକ ସକଳ କର୍ମ କରିପାରେ, ଅଥଚ କୌଣସି ହେଲେ କର୍ମର ପରିଣାମ-ବନ୍ଧନ ତାଙ୍କୁ ଲାଗେ ନାହିଁ ; କାରଣ ତାଙ୍କର ସକଳ କର୍ମ ଆସକ୍ତିହୀନ ଓ ଅଭିଳାଷଶୂନ୍ୟ । ପାଠକେ ସ୍ମରଣ ରଖିବେ ଯେ, ଶ୍ରୀରାମକୃଷ୍ଣ ପରମହଂସ ବିବାହିତ ଗୃହସ୍ଥ ଥିଲେ, ଘର ଛାଡ଼ି ଚାଲିଯାଇ ନ ଥିଲେ, ସମାଜର ସବୁ ସ୍ତରର ଲୋକଙ୍କ ସହିତ ମିଶୁ-ଥିଲେ ଏବଂ ଭାରତୀୟ ସନ୍ନ୍ୟାସର ପରିଚିତ ପ୍ରତୀକ ଗେରୁଆ ବସ୍ତ୍ର ଆଦୌ ନ ପିନ୍ଧି ଲାଲ ଧଡ଼ି ଥିବା ମିଲ୍‌ଧୋତି ଓ କୋଟ ପିନ୍ଧୁଥିଲେ । ଗୀତା ତେଣୁ କୌଣସି ଅବାସ୍ତବ ଆଦର୍ଶ ପ୍ରଚାର କରିନାହାନ୍ତି । ଗୀତା ଆମ ପ୍ରତ୍ୟେକର ଜୀବନରେ ଏହିପ୍ରକାର କର୍ମ ଓ ସନ୍ନ୍ୟାସର ସଂମିଶ୍ରଣହିଁ ଚାହାନ୍ତି ; ଅର୍ଥାତ୍ ଆମର କାମ ବା ନିଷ୍କର୍ମତା ପଛରେ ଆମ ମନର କି ଅବସ୍ଥା, ସେଇଟାହିଁ ମୁଖ୍ୟ କଥା । କୌଣସି ଲୋକ ଶ୍ରମ ବା ସଂସାରଜଞ୍ଜାଳକୁ ଡରି ସନ୍ନ୍ୟାସ ଗ୍ରହଣ କରିପାରେ ଏବଂ ଜଣେ ପ୍ରକୃତ ଈଶ୍ୱର-ପାଗଳ ବା ସତ୍ୟ-ପାଗଳ ସାଧକ ମଧ୍ୟ ସନ୍ନ୍ୟାସ ଗ୍ରହଣ କରିପାରେ । ପୁଣି କୌଣସି ପ୍ରକୃତ ସାଧକ ସନ୍ନ୍ୟାସକୁ ନ ଯାଇ ମଧ୍ୟ ଗୃହସ୍ଥର ସକଳ ଜଞ୍ଜାଳଭିତରେହିଁ ମୁକ୍ତ ରହିପାରେ । ଗୀତା ଏହିଠାରୁ ଏଣିକି କର୍ମତତ୍ତ୍ୱ ସହିତ ମନସ୍ତତ୍ତ୍ୱର ଏହି ସୂକ୍ଷ୍ମ ସମ୍ବନ୍ଧ ବିଶଦ କରିବାକୁ ଯାଉଛନ୍ତି ।

୪

ସାଂଖ୍ୟଯୋଗୌ ପୃଥଗ୍ ବାଳାଃ ପ୍ରବଦନ୍ତି ନ ପଣ୍ଡିତାଃ
ଏକମପ୍ୟାସ୍ଥିତଃ ସମ୍ୟଗୁଭୟୋର୍ବିନ୍ଦତେ ଫଳମ୍ । ୪ ।

ବାଳାଃ (ମୂର୍ଖ ଲୋକେ) ସାଂଖ୍ୟଯୋଗୌ (ସାଂଖ୍ୟ ଅର୍ଥାତ୍ ଜ୍ଞାନଯୋଗ ଓ କର୍ମଯୋଗକୁ) ପୃଥକ୍ ପ୍ରବଦନ୍ତି (ଭିନ୍ନ ଭିନ୍ନ ବୋଲି କହନ୍ତି) , ପଣ୍ଡିତାଃ ନ

(କିନ୍ତୁ ବିଜ୍ଞ ଲୋକମାନେ ସେପରି କହନ୍ତି ନାହିଁ) । ଏକଂ ଅପି ସମ୍ୟକ୍ ଆସ୍ଥିତଃ (ଏଥିମଧ୍ୟରୁ ଗୋଟିକର ମଧ୍ୟ ସମ୍ୟକ୍ ଅନୁଶୀଳନ କଲେ) ଉଭୟୋଃ ଫଳଂ ବିନ୍ଦତେ (ଉଭୟର ଫଳଲାଭ ହୁଏ, ଅର୍ଥାତ୍ ଦୁଇଟିଯାକ ପନ୍ଥାରେହିଁ ମୋକ୍ଷଲାଭ ହେବ) ।

## ଅନୁବାଦ

"ହେ ଅର୍ଜୁନ, ଅଜ୍ଞ ଲୋକମାନେହିଁ କର୍ମଯୋଗ ଓ ଜ୍ଞାନଯୋଗକୁ ମଧ୍ୟ ପରସ୍ପରଠାରୁ ଭିନ୍ନ ଭିନ୍ନ ବୋଲି ପ୍ରଚାର କରିଥାନ୍ତି ; କିନ୍ତୁ ଯେ ପ୍ରକୃତ ଜ୍ଞାନୀ, ସେ ଏ ଦୃଷ୍ଟିରୁ ଦେଖନ୍ତି ନାହିଁ । ବିଜ୍ଞ ଜନମାନେ ମନେ କରନ୍ତି ଯେ, ଜ୍ଞାନଯୋଗ ବା କର୍ମଯୋଗ ଏ ଦୁହିଙ୍କ ଭିତରୁ ଯେକୌଣସି ଗୋଟିକ ପନ୍ଥାରେ ନିଷ୍ଠାର ସହିତ ପ୍ରତିଷ୍ଠିତ ରହିଲେ ଏକା ଫଳ ମିଳିବ ଅର୍ଥାତ୍ ମୋକ୍ଷପ୍ରାପ୍ତି ଘଟିବ ।"

## ବିଶେଷ ଭାଷ୍ୟ

ସବୁ ଧର୍ମରେ ସାଧନପନ୍ଥା ଦ୍ୱୈତ ଅର୍ଥାତ୍ କର୍ମପନ୍ଥା ଓ ଜ୍ଞାନପନ୍ଥା । ଋଗ୍‌ବେଦ ସମୟରେ ମଧ୍ୟ ଏହି ଦୁଇ ମାର୍ଗ ସୁନିର୍ଦ୍ଦିଷ୍ଟ ଥିଲା । ମନ୍ତ୍ରସ୍ରଷ୍ଟା ଓ ମନ୍ତ୍ର ଦ୍ରଷ୍ଟା ଋଷିମାନେ ଥିଲେ ଜ୍ଞାନମାର୍ଗୀ । ଯଜ୍ଞ-ବିଶେଷଜ୍ଞ ବା ସେଥିରେ ବିଶେଷଭାବରେ ବିଶ୍ୱାସ କରୁଥିବା ଲୋକେ ଥିଲେ କର୍ମମାର୍ଗୀ । ପରେ ଭାରତୀୟ ଆର୍ଯ୍ୟମାନେ ଜୀବନର ଅନ୍ତର୍ନିହିତ ରହସ୍ୟସବୁ ଉପରେ ଗଭୀର ଚିନ୍ତା କରି କରି ଆବିଷ୍କାର କଲେ ଯେ, ଆମ ଜୀବନରେ ଦୁଃଖର କାରଣ ବାହାରେ ଅବସ୍ଥିତ କ୍ଷିତ୍ୟପ୍‌ତେଜଃ-ମରୁଦ୍‌ବ୍ୟୋମର ଦେବତାମାନେ ନୁହନ୍ତି । ଆମ ଦୁଃଖର କାରଣ ହେଉଛି ଆମର ନିଜ କର୍ମ । ପ୍ରଥମେ ଧରିନିଆଯାଇଥିଲା ଯେ, ସୁକର୍ମ ଅର୍ଥାତ୍ ଯଜ୍ଞାଦି ଦେବତା-ସନ୍ତୋଷକାରୀ କର୍ମସବୁର ଫଳ ସୁଖ । କିନ୍ତୁ ପରେ ସେମାନେ ଆବିଷ୍କାର କଲେ ଯେ, ଯଜ୍ଞକର୍ମାଦିଲବ୍‌ଧ ପାର୍ଥିବ ସୁଖ ମଧ୍ୟ କ୍ଷଣସ୍ଥାୟୀ, ଏବଂ ଏକମାତ୍ର ନିତ୍ୟ ଓ ପରମ ସୁଖ ହେଉଛି 'ମୋକ୍ଷ' ବା ଜୀବନ-ମୃତ୍ୟୁରୁ ମୁକ୍ତି । ଏହି ଦୃଷ୍ଟିକୋଣରୁ 'କର୍ମ' ମାତ୍ରେହିଁ ଅର୍ଥାତ୍ ସୁକର୍ମ ମଧ୍ୟ ଜଞ୍ଜାଳର କାରଣ ବୋଲି ଧରାଗଲା । ଏହି ସମୟରେ ସାଂଖ୍ୟଦର୍ଶନର ଆବିର୍ଭାବ ହେଲା । ସାଂଖ୍ୟ କହିଲା, ଦୁଃଖର କାରଣ 'କର୍ମ' ସେତେ ନୁହେଁ, ଯେତେ ଅ-ବିଦ୍ୟା ବା ଅ-ଜ୍ଞାନ । ତେବେ ସୁ-ବିଦ୍ୟା ବା 'ସୁ-ଜ୍ଞାନ' କ'ଣ ? ସାଂଖ୍ୟ ମତରେ ଶ୍ରେଷ୍ଠ ଜ୍ଞାନ ହେଉଛି, ଆତ୍ମା ବା ପୁରୁଷକୁ ଦେହ ବା ପ୍ରକୃତିରୁ ସଂପୂର୍ଣ୍ଣ ଭିନ୍ନ ବୋଲି ଅନୁଭବ କରିବା । ଆମେ ଆମର ମନ, ବୁଦ୍ଧି, ଇନ୍ଦ୍ରିୟସବୁରେ ନିଜକୁ ମିଶାଇଦେଇ, ସେହିମାନଙ୍କ ସୁଖ ଖୋଜିବୁଲୁଁ ଏବଂ ସେହିସବୁ ସୁଖକୁ ଆମର ସୁଖ ବୋଲି

କହୁଁ । କିନ୍ତୁ ପ୍ରକୃତ 'ମୁଁ' 'ପ୍ରକୃତି' ବା ଆମର ଦେହଠାରୁ ଭିନ୍ନ । 'ପ୍ରକୃତି' ଦେହ ଭାବରେ ପ୍ରକୃତ 'ମୁଁ' ବା ପୁରୁଷକୁ ନିଜର ଭୋଗାନ୍ୱେଷଣପାଇଁ ବନ୍ଦୀ କରି ରଖିଛି । ବନ୍ଦୀ ପୁରୁଷ ନିଜର ସତ୍ତା ଭୁଲିଯାଇ, ପ୍ରକୃତି ସହିତ ଏକୀଭୂତ ହୋଇଯାଇ, ପ୍ରକୃତିଜନିତ 'ସୁଖ' ଖୋଜି ଖୋଜି, ଦୁଃଖହିଁ ପାଉଛି । ଯେଉଁ ମୁହୂର୍ତ୍ତରେ ପୁରୁଷ ବା ଆତ୍ମା ନିଜକୁ ଜାଣିବ ଏବଂ ଜାଣିବ ଯେ ସେ ପ୍ରକୃତିରୁ ଭିନ୍ନ, ପୁଣି ମଧ୍ୟ ଜାଣିବ ଯେ ପ୍ରକୃତି ତାର ବନ୍ଧୁ ନୁହେଁ, ବରଂ ପ୍ରକୃତ ଶତ୍ରୁ, ସେହି ଜ୍ଞାନହିଁ ହେବ ତାର ମୋକ୍ଷର କାରଣ ।

ଗୀତା ଲେଖା ହେଲାବେଳକୁ ସାଂଖ୍ୟ ଓ ବୌଦ୍ଧ ଦର୍ଶନର ପ୍ରଭାବରେ ଗୁଡ଼ାଏ ଲୋକ ପ୍ରକୃତି-ପ୍ରେରିତ 'କର୍ମ ପ୍ରଭାବରୁ ନିଜକୁ ମୁକ୍ତ କରିବାପାଇଁ ଘର ଓ ସମାଜ ଛାଡ଼ି ପଳାଉଥିଲେ ଏବଂ ଗଭୀର ମନନ ସହିତ ଇନ୍ଦ୍ରିୟମାନଙ୍କୁ ଅନ୍ତର୍ମୁଖୀ କରାଇ, ମନକୁ ସଂପୂର୍ଣ୍ଣ ଆୟତ୍ତରେ ଆଣି, ପ୍ରକୃତି-ପୁରୁଷ-ଭେଦ-ଜନିତ 'ଜ୍ଞାନ'ର ଉଦ୍‌ବୋଧନ କରି, କର୍ମ-ପ୍ରତିକ୍ରିୟାର ସଂପୂର୍ଣ୍ଣ 'ନିର୍ବାଣ' ପାଇଁ ଚେଷ୍ଟା କରୁଥିଲେ । ଗୀତା ଜ୍ଞାନାନ୍ୱେଷୀ ସାଂଖ୍ୟମାର୍ଗୀମାନଙ୍କର ଏହି ପ୍ରଚେଷ୍ଟାକୁ ଲକ୍ଷ୍ୟ କରିହିଁ, ସମଗ୍ର ଜ୍ଞାନମାର୍ଗପାଇଁ କେବଳ ପ୍ରତୀକ ଭାବରେହିଁ ଏଠାରେ 'ସାଂଖ୍ୟ' ଶବ୍ଦଟି ବ୍ୟବହାର କରିଛନ୍ତି । ଚେଣେ ସାଂଖ୍ୟ-ଜ୍ଞାନ-ସାଧନାର ବିପରୀତରେ, ଭାରତୀୟ ସମାଜର ବହୁ ଲୋକେ ବୈଦିକ କଳ୍ପ-ସୂତ୍ର ଅନୁଯାୟୀ ଉଭୟ ଶ୍ରୌତ ଓ ଗୃହ୍ୟ କର୍ମ ବା ହୋମ-ଯଜ୍ଞାଦି ଦେଇ ମଧ୍ୟ ଦୈନନ୍ଦିନ ଜୀବନର କର୍ମମାନଙ୍କର ପ୍ରତିକ୍ରିୟା ପ୍ରଭାବରୁ ରକ୍ଷା ପାଇବେ ବୋଲି ବିଶ୍ୱାସ କରିଚାଲିଥିଲେ ।

ଭାରତୀୟ ଚିନ୍ତା-ଜଗତରେ ଏହି ସାଂଖ୍ୟ 'ଜ୍ଞାନ' ଓ ବୈଦିକ 'କର୍ମ'ର ସଂଗ୍ରାମ ସେତେବେଳେ ପ୍ରବଳ ଆକାରରେ ଚାଲିଥିଲା । ଆଜି ସେ ସଂଗ୍ରାମର ପ୍ରାବଲ୍ୟ ଆମମାନଙ୍କ ନିକଟରେ ନାହିଁ, କାରଣ ଆମେ ଉଭୟକୁ ଗ୍ରହଣ କରିନେଇଛୁ । ସାଧାରଣ ହିନ୍ଦୁ ବା ଯେକୌଣସି ଧର୍ମର ସାଧାରଣ ଗୃହସ୍ଥ ଧର୍ମ ନାମରେ ଦାନାଦି କିଛି 'କର୍ମ' ନିଷ୍ଠିୟ କରିଥାନ୍ତି, ପୁଣି କିଛି ଧ୍ୟାନ-ମନନ ମଧ୍ୟ କରିଥାନ୍ତି; ଅର୍ଥାତ୍ ପ୍ରକୃତ ଧର୍ମ-ପ୍ରୟାସୀ ଜନ ସ୍ୱାଭାବିକଭାବରେ କର୍ମପନ୍ଥା ଓ ଜ୍ଞାନପନ୍ଥା ଉଭୟ ଅବଲମ୍ବନ କରିଥାଏ ।

ବୌଦ୍ଧଧର୍ମ ପ୍ରଭାବରେ ବୈଦିକ ଯାଗଯଜ୍ଞାଦି କର୍ମକାଣ୍ଡ ଭାରତରେ ପ୍ରତିପତ୍ତି ହରାଇଲେ ମଧ୍ୟ ସେସବୁ ଆମ ଭିତରେ ଏବେ ବି ଅଳ୍ପବହୁତେ ବଞ୍ଚିରହିଛନ୍ତି ।

ଗୀତା ଏହି ଦୁଇ ମତର ଏକ କୌଶଳପୂର୍ଣ୍ଣ ସମାଧାନ ଆମ ଆଗରେ ଥୋଇଯାଇଛନ୍ତି । ଗୀତା କହନ୍ତି ଯେ, କର୍ମର ମୂଲ୍ୟ ଅଛି ଓ ଜ୍ଞାନର ମୂଲ୍ୟ ଅଛି । ମୋକ୍ଷପାଇଁ ଘର ଛାଡ଼ି ପଳେଇଯିବାର କୌଣସି ଅପରିହାର୍ଯ୍ୟ ଆବଶ୍ୟକତା ନାହିଁ । ସମାଜରେ ରହି ନିଜର କର୍ତ୍ତବ୍ୟ କରିଯାଅ, କିନ୍ତୁ ଫଳପ୍ରତି ଆସକ୍ତ ହୁଅ ନାହିଁ ବା କର୍ତ୍ତୃତ୍ୱାଭିମାନ ରଖ ନାହିଁ ; ନିଃସ୍ୱାର୍ଥଭାବରେ କର୍ମ କର । ତାହେଲେ କର୍ମର କୌଣସି ପ୍ରତିକ୍ରିୟା ତୁମକୁ ଲାଗିବ ନାହିଁ । ଏ ହେଲା କର୍ମଯୋଗ । ସଂସାରରେ ରହ, କିନ୍ତୁ ଆତ୍ମାକୁ ଦେହରୁ ଭିନ୍ନ ରଖି ସୁଖଦୁଃଖ-ଲାଭାଲାଭ ଇତ୍ୟାଦି ଦ୍ୱନ୍ଦ୍ୱରୁ ନିଜକୁ ଦୂରେଇରଖ । ଏଥିରେ ତୁମ କର୍ତ୍ତୃତ୍ୱାଭିମାନ ନଷ୍ଟ ହେବ ଏବଂ ଦେହାତ୍ମାଭେଦର ଅନୁଭବ କ୍ରମେ ତୁମକୁ ମୁକ୍ତ କରିବ । ଏଇ ହେଲା ସାଂଖ୍ୟ ବା ଜ୍ଞାନ ଯୋଗ । ଏ ଦୁଇ ମାର୍ଗରୁ କୌଣସି ମାର୍ଗରେ ହେଲେ ତୁମକୁ ଘର ଛାଡ଼ି ବା କାମ ଛାଡ଼ି ଯିବାକୁ ହେବ ନାହିଁ । ମୂର୍ଖମାନେ (ବାଲାଃ) ଏ ଦୁଇ ମାର୍ଗକୁ ପରସ୍ପରବିରୋଧୀ ବୋଲି ବର୍ଣ୍ଣନା କରିଥାନ୍ତି ; କିନ୍ତୁ ଏଥିରୁ ଯେକୌଣସି ମାର୍ଗରେ ମୋକ୍ଷପ୍ରାପ୍ତି ସୁନିଶ୍ଚିତ ।

ପର ଶ୍ଳୋକରେ ଗୀତା ଏହାହିଁ ଅଧିକ ଜୋର୍‌ରେ କହିଛନ୍ତି ।



ଯତ୍ ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ ତଦ୍‌ଯୋଗୈରପି ଗମ୍ୟତେ
ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି ସ ପଶ୍ୟତି । ୫ ।

ସାଂଖ୍ୟୈଃ (ଜ୍ଞାନମାର୍ଗୀ ସନ୍ନ୍ୟାସୀମାନଙ୍କଦ୍ୱାରା) ଯତ୍ ସ୍ଥାନଂ ପ୍ରାପ୍ୟତେ (ଯେଉଁ ସ୍ଥାନ ଲାଭ ହୁଏ) ଯୋଗୈଃ ଅପି ( କର୍ମଯୋଗଦ୍ୱାରା ମଧ୍ୟ ) ତତ୍ (ସେହି ସ୍ଥାନକୁ) ଗମ୍ୟତେ (ଯାଇ ହେବ) । ଯଃ (ଯେ) ସାଂଖ୍ୟଂ ଚ ଯୋଗଂ ଚ (ଜ୍ଞାନ ଓ କର୍ମକୁ) ଏକଂ (ଏକ ବୋଲିହିଁ) ପଶ୍ୟତି (ଦେଖନ୍ତି) ସଃ ପଶ୍ୟତି (ସେହିଁ ଯଥାର୍ଥ ଦର୍ଶନ କରନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, ସାଂଖ୍ୟମାର୍ଗୀ ବା ଜ୍ଞାନମାର୍ଗୀମାନେ ଶେଷରେ ଯେଉଁଠି ଯାଇ ପହଞ୍ଚିବେ, କର୍ମଯୋଗପନ୍ଥୀ ମଧ୍ୟ ସେଇଠି ପହଞ୍ଚିବେ । କର୍ମଯୋଗ ଓ ଜ୍ଞାନଯୋଗ (ସାଂଖ୍ୟ)—ଏହି ଉଭୟ ପନ୍ଥାକୁ ଯେଉଁମାନେ ଅଭିନ୍ନ ଦେଖିଥାନ୍ତି, ସେଇମାନେହିଁ ପ୍ରକୃତ ଦ୍ରଷ୍ଟା ।"

୬

ସନ୍ନ୍ୟାସସ୍ତୁ ମହାବାହୋ ଦୁଃଖମାପ୍ତୁମଯୋଗତଃ
ଯୋଗଯୁକ୍ତୋ ମୁନିର୍ବ୍ରହ୍ମ ନ ଚିରେଣାଧିଗଚ୍ଛତି । ୬ ।

ମହାବାହୋ (ହେ ଅର୍ଜୁନ) ଅଯୋଗତଃ (କର୍ମଯୋଗ ବ୍ୟତୀତ) ସନ୍ନ୍ୟାସଃ ତୁ (ଖାଲି ସନ୍ନ୍ୟାସ ବା କର୍ମତ୍ୟାଗ ବା ଘର-ସମାଜ ଛାଡ଼ି ପଳେଇବା) ଦୁଃଖଂ ଆପ୍ତୁଂ (ଦୁଃଖ ପାଇବାର କାରଣ ହୁଏ) । ଯୋଗଯୁକ୍ତଃ ମୁନିଃ (ପ୍ରକୃତ କର୍ମ-ଯୋଗୀ) ନ ଚିରେଣ (ଶୀଘ୍ର) [ଘର ଓ କାମ ନ ଛାଡ଼ି ମଧ୍ୟ] ବ୍ରହ୍ମ ଅଧିଗଚ୍ଛତି (ବ୍ରହ୍ମ ଲାଭ କରନ୍ତି) ।

## ଅନୁବାଦ

"କିନ୍ତୁ ହେ ଅର୍ଜୁନ, ମନେ ରଖିଥିବ ଯେ, କର୍ମଯୋଗର ମାନସିକତା ଅଭ୍ୟାସ ନ କରି ଖାଲି ସଂସାରତ୍ୟାଗ (ସନ୍ନ୍ୟାସ) ବା କର୍ମହୀନତା ଦୁଃଖର କାରଣ ହୋଇଥାଏ । ଅନ୍ତରରେ ଧ୍ୟାନପରାୟଣ ସାଧକ (ମୁନି) ବାହାରେ କର୍ମଯୋଗାଭ୍ୟାସୀ ରହିଲେ ଅବିଳମ୍ବେ ବ୍ରହ୍ମ ଲାଭ କରିଥାନ୍ତି ।"

## ବିଶେଷ ଭାଷ୍ୟ

ପରବର୍ତ୍ତୀ ପାଞ୍ଚଟି ଶ୍ଳୋକରେ ଏହି ଶ୍ଳୋକର ଭାବ ବିଶଦୀକୃତ ହେବ । ତେଣୁ ଏକାଦଶ ଶ୍ଳୋକ ପରେ 'ବିଶେଷ ଭାଷ୍ୟ' ଦେଖନ୍ତୁ ।

୭

ଯୋଗଯୁକ୍ତୋ ବିଶୁଦ୍ଧାତ୍ମା ବିଜିତାତ୍ମା ଜିତେନ୍ଦ୍ରିୟଃ
ସର୍ବଭୂତାତ୍ମଭୂତାତ୍ମା କୁର୍ବନ୍ନପି ନ ଲିପ୍ୟତେ । ୭ ।

ବିଶୁଦ୍ଧାତ୍ମା (ଶୁଦ୍ଧଚିତ୍ତ) ବିଜିତାତ୍ମା ଜିତେନ୍ଦ୍ରିୟଃ (ଯେ ନିଜ ଶରୀର ଓ ଇନ୍ଦ୍ରିୟମାନଙ୍କୁ ନିୟନ୍ତ୍ରିତ କରିପାରିଛନ୍ତି), ସର୍ବଭୂତାତ୍ମଭୂତାତ୍ମା (ସର୍ବଭୂତ ଅର୍ଥାତ୍ ସର୍ବ ପ୍ରାଣୀର ଆତ୍ମାରେ ନିଜ ଆତ୍ମାକୁ ଦେଖିପାରନ୍ତି) [ଏପରି] ଯୋଗଯୁକ୍ତଃ (ଫଳରେ ଅନାସକ୍ତ କର୍ମଯୋଗୀ) କୁର୍ବନ୍ ଅପି (କର୍ମ କରି ମଧ୍ୟ) ନ ଲିପ୍ୟତେ (କର୍ମର ପ୍ରତିକ୍ରିୟାରେ ଲିପ୍ତ ହୁଅନ୍ତି ନାହିଁ) ।

## ଅନୁବାଦ

"କର୍ମଯୋଗ ଦ୍ୱାରା ବିଶୁଦ୍ଧୀଭୂତାତ୍ମା ଓ ଜିତେନ୍ଦ୍ରିୟ ସେହି ସାଧକ ଶେଷରେ ନିଜର ଆତ୍ମା (ନିଜକୁ) ଓ ଅନ୍ୟ ସକଳ ଆତ୍ମା (ସମଗ୍ର ଜଗତକୁ) ଏକ ବୋଲି ଅନୁଭବ କରେ ଏବଂ ସେହି ଭାବରେ ନିଃସ୍ୱାର୍ଥ ଓ ଅନାସକ୍ତ କାମ କରିଚାଲିବାରୁ କୌଣସି କର୍ମର ପ୍ରତିକ୍ରିୟା ଭୋଗ କରେ ନାହିଁ।"

### ୮-୯

ନୈବ କିଂଚିତ୍ କରୋମୀତି ଯୁକ୍ତୋମନ୍ୟେତ ତତ୍ତ୍ୱବିତ୍
ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ୍ ଜିଘ୍ରନ୍ନଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍ । ୮ ।
ପ୍ରଲପନ୍ ବିସୃଜନ୍ ଗୃହ୍ଣନ୍ନୁନ୍ମିଷନ୍ନିମିଷନ୍ନପି
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତ ଇତି ଧାରୟନ୍ । ୯ ।

ତତ୍ତ୍ୱବିତ୍ (ତତ୍ତ୍ୱଜ୍ଞ) ଯୁକ୍ତଃ (କର୍ମଯୋଗୀ) ପଶ୍ୟନ୍ (ଦେଖି ମଧ୍ୟ) ଶୃଣ୍ୱନ୍ (ଶୁଣି ମଧ୍ୟ) ସ୍ପୃଶନ୍ (ସ୍ପର୍ଶ କରି ମଧ୍ୟ) ଜିଘ୍ରନ୍ (ଆଘ୍ରାଣ କରି ମଧ୍ୟ) ଅଶ୍ନନ୍ (ଭୋଜନ କରି ମଧ୍ୟ) ଗଚ୍ଛନ୍ (ଚାଲୁଥିଲେ ମଧ୍ୟ) ସ୍ୱପନ୍ (ଶୟନ କରି ମଧ୍ୟ) ଶ୍ୱସନ୍ (ନିଃଶ୍ୱାସ ନେଉଥିଲେ ମଧ୍ୟ) ପ୍ରଲପନ୍ (କଥା କହୁଥିଲେ ମଧ୍ୟ) ବିସୃଜନ୍ (ଦାନ କରୁଥିଲେ ମଧ୍ୟ) ଗୃହ୍ଣନ୍ (ଅନ୍ୟଠାରୁ ଦ୍ରବ୍ୟାଦି ଗ୍ରହଣ କଲେ ମଧ୍ୟ) ଉନ୍ମିଷନ୍ ନିମିଷନ୍ ଅପି (ଆଖି ଖୋଲୁଥିଲେ ଓ ବନ୍ଦ କରୁଥିଲେ ମଧ୍ୟ) [ମୁଁ ନୁହେଁ, କେବଳ ମୋର] ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତେ (ଭିନ୍ନ ଭିନ୍ନ ଇନ୍ଦ୍ରିୟମାନେହିଁ ସେମାନଙ୍କର ଭିନ୍ନ ଭିନ୍ନ ବିଷୟ ସଂପର୍କରେ କାମ କରିଚାଲିଛନ୍ତି) ଇତି ଧାରୟନ୍ (ଏହାହିଁ ଧାରଣା କରି) କିଂଚିତ୍ ନ କରୋମି ଇତି ମନ୍ୟେତ (ମୁଁ ନିଜେ କିଛି କରୁ ନାହିଁ ବୋଲି ମନେ କରିଥାନ୍ତି)।

## ଅନୁବାଦ

"ତତ୍ତ୍ୱଜ୍ଞ କର୍ମଯୋଗୀ ଦେଖିବା, ଶୁଣିବା, ସ୍ପର୍ଶ କରିବା, ଆଘ୍ରାଣ କରିବା, ଖାଇବା, ଚାଲିବା, ଶୋଇବା, ଦାନ କରିବା, ଗ୍ରହଣ କରିବା, ଆଖି ମେଲିଇବା ବା ବନ୍ଦ କରିବା ଇତ୍ୟାଦି କାମ କରି ମଧ୍ୟ 'ମୁଁ ନୁହେଁ, ମୋର ଇନ୍ଦ୍ରିୟମାନେ ନିଜ ନିଜର ବିଷୟସଂପୃକ୍ତ କର୍ମହିଁ କରିଚାଲିଛନ୍ତି' ଏହି ଧାରଣା କରି 'ମୁଁ କିଛିହିଁ କରୁ ନାହିଁ' ବୋଲି ସର୍ବଦା ସଚେତନ ରହିବା ଉଚିତ।"

୧୦

ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ
ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସା । ୧୦ ।

ଯଃ (ଯେଉଁ ଲୋକ) ବ୍ରହ୍ମଣି (ବ୍ରହ୍ମଙ୍କଠାରେ) ଆଧାୟ (ସମର୍ପିତ କରିଦେଇ) [ଏବଂ] ସଙ୍ଗଂ (ଫଳାସକ୍ତି ଓ କର୍ତ୍ତୃତ୍ୱାଭିମାନ) ତ୍ୟକ୍ତ୍ୱା (ତ୍ୟାଗ କରି) କର୍ମାଣି କରୋତି (କର୍ମ କରିଥାନ୍ତି) ସଃ (ସେହି ସାଧକ) ଅମ୍ଭସା ପଦ୍ମପତ୍ରଂ ଇବ (ଜଳଦ୍ୱାରା ପଦ୍ମପତ୍ର ପରି) ପାପେନ ନ ଲିପ୍ୟତେ (ପାପଦ୍ୱାରା ଲିପ୍ତ ହୁଅନ୍ତି ନାହିଁ) ।

**ଅନୁବାଦ**

"ହେ ଅର୍ଜୁନ, ଏହିପରି ଯେଉଁ ସାଧକସକଳ ଫଳାସକ୍ତି ପରିତ୍ୟାଗ କରି-ଦିଅନ୍ତି ଏବଂ ସକଳ କର୍ମ ବ୍ରହ୍ମଙ୍କଠାରେହିଁ ସମର୍ପଣ କରିଦେଇପାରନ୍ତି, ସ୍ଥିରପଟେ ଘେରିଥିବା ଜଳ ଯେପରି ପଦ୍ମପତ୍ରକୁ ଓଦା କରିପାରେ ନାହିଁ, ତାଙ୍କୁ ମଧ୍ୟ କୌଣସି ପାପ ସେହିପରି ସ୍ପର୍ଶ କରିପାରେ ନାହିଁ ।"

୧୧

କାୟେନ ମନସା ବୁଦ୍ଧ୍ୟା କେବଳୈରିନ୍ଦ୍ରିୟୈରପି
ଯୋଗିନଃ କର୍ମ କୁର୍ବନ୍ତି ସଙ୍ଗଂ ତ୍ୟକ୍ତ୍ୱାତ୍ମଶୁଦ୍ଧୟେ । ୧୧ ।

ଯୋଗିନଃ (କର୍ମଯୋଗୀମାନେ) ସଙ୍ଗଂ ତ୍ୟକ୍ତ୍ୱା (ଫଳାସକ୍ତି ଓ କର୍ତ୍ତୃତ୍ୱା-ଭିମାନ ସଂପୂର୍ଣ୍ଣ ତ୍ୟାଗ କରି) [ସଂପୂର୍ଣ୍ଣ ଅନାସକ୍ତଭାବରେ] କାୟେନ [କେବଳ] (ଶରୀର) ମନସା (ବା ମନ) ବୁଦ୍ଧ୍ୟା (ବା ବିଚାରଶକ୍ତି ପ୍ରୟୋଗ କରି) [ବା ଏପରିକି] କେବଳୈଃ ଇନ୍ଦ୍ରିୟୈଃ ଅପି (କେବଳ ହସ୍ତ-ପଦାଦି ଇନ୍ଦ୍ରିୟମାନଙ୍କ-ଦ୍ୱାରାହିଁ) ଆତ୍ମଶୁଦ୍ଧୟେ (ଆତ୍ମାର ଶୁଦ୍ଧତା ରକ୍ଷା କରିବା ଲକ୍ଷ୍ୟରେ) କର୍ମ କୁର୍ବନ୍ତି (କାମସବୁ କରିଥାନ୍ତି) ।

**ଅନୁବାଦ**

"ଏହି କର୍ମଯୋଗୀ ଫଳାସକ୍ତି ଓ କର୍ତ୍ତୃତ୍ୱାଭିମାନ ପରିତ୍ୟାଗ କରି ସଂପୂର୍ଣ୍ଣ ଅନାସକ୍ତଭାବରେ, ଯେପରିକି କେବଳ ଶରୀରଦ୍ୱାରା, ମନଦ୍ୱାରା, ବୁଦ୍ଧିଦ୍ୱାରା ଅଥବା କେବଳ ହସ୍ତପଦାଦି ଇନ୍ଦ୍ରିୟମାନଙ୍କଦ୍ୱାରାହିଁ କାମସବୁ ଘଟିଚାଲିଛନ୍ତି, ଏହା ମନେ କରି, କେବଳ ଆତ୍ମାର ବିଶୁଦ୍ଧତା ଫେରିପାଇବା ଲକ୍ଷ୍ୟରେହିଁ କାମ କରିଥାନ୍ତି ।"

**ବିଶେଷ ଦ୍ରଷ୍ଟବ୍ୟ**

ଏ ଶ୍ଳୋକରେ 'କାୟେନ', 'ମନସା', 'ବୁଦ୍ଧ୍ୟା', 'ଇନ୍ଦ୍ରିୟୈଃ' ଇତ୍ୟାଦି ସୁସଜ୍ଜିତ ଓ ସମନ୍ୱିତ ଶବ୍ଦଗୁଡ଼ିକ ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ । ଆମେ (ଅର୍ଥାତ୍ ଜୀବ ବା ମନୁଷ୍ୟ) ଯେତେଭାବରେ ପ୍ରତ୍ୟହ କାମ କରିଚାଲିଥାଉଁ, ତାହାକୁ ଗୀତା ଅତି ସଂକ୍ଷେପରେ ଓ ସୁନ୍ଦରଭାବରେ ଏଠାରେ ବର୍ଣ୍ଣନା କରି ରଖିଛନ୍ତି । ଆମର ଅନେକ କାମ ଅଜ୍ଞାତସାରରେ ହୋଇଚାଲିଥାଏ, ଯଥା—ଆମର ନିଶ୍ୱାସ-ପ୍ରଶ୍ୱାସ, ଆମ ଶରୀରଭିତରେ ରକ୍ତସ୍ରୋତର ନିରବଚ୍ଛିନ୍ନ ଗତି, ଆମର ଜୀର୍ଣ୍ଣ-ପ୍ରକ୍ରିୟା ଇତ୍ୟାଦି । ଆମେ ଜ୍ଞାତସାରରେ ମଧ୍ୟ ଯେଉଁସବୁ କାମ କରୁ, ସେଥିରୁ କେତେ-ଗୁଡ଼ିଏ ସଂପୃକ୍ତ ଇନ୍ଦ୍ରିୟ ଆପେ ଆପେ କରିଚାଲିଥାନ୍ତି, ଯଥା—ଦର୍ଶନ ଓ ଶ୍ରବଣ । କେତେକ କର୍ମ ଆମର ସମଗ୍ର ଶରୀର ମଧ୍ୟ ଆପେ କରିଚାଲେ, ଯଥା—ଗମନ, ଶୟନ, ମଳନିଷ୍କାସନ । କେତେକ ପୁଣି ଆମେ 'ମନେ ମନେ' କରିଚାଲୁ, ଯଥା—ଭବିଷ୍ୟତ୍ ଯୋଜନା, ସୁଖ-ସ୍ୱାଚ୍ଛନ୍ଦ୍ୟର କଳ୍ପନା । କେତେକ ପୁଣି କେବଳ ବୁଦ୍ଧି-ଦ୍ୱାରହିଁ ହେବାର କଥା, ଯଥା—କୌଣସି ସାଂସାରିକ ବା ନୈତିକ ସମସ୍ୟା, ଯାହା ଗଭୀର ବିଶ୍ଳେଷଣ ଓ ସ୍ଥିର ନିଷ୍ପତ୍ତି ଦରକାର କରେ ।

ଗୀତା ମନୁଷ୍ୟର ଏହି ସ୍ୱାଭାବିକ ପ୍ରକ୍ରିୟାଗୁଡ଼ିକରୁ କୌଣସି ଗୋଟିକୁ ହେଲେ ନିନ୍ଦା କରି ନାହାନ୍ତି । ଏସବୁ ପ୍ରକ୍ରିୟା ମନୁଷ୍ୟ ପକ୍ଷରେ ଏକାନ୍ତ ସ୍ୱାଭାବିକ । କିନ୍ତୁ ଗୀତା ଏତିକି କହିରଖିଛନ୍ତି ଯେ, ମନୁଷ୍ୟର କୌଣସି କର୍ମ ସହିତ ଫଳାସକ୍ତି ବା କର୍ତ୍ତୃତ୍ୱାଭିମାନ ରହିବା ଉଚିତ ନୁହେଁ । "ଇନ୍ଦ୍ରିୟମାନେହିଁ ସେମା-ନଙ୍କ ନିଜ ନିଜ କାମ କରିଚାଲିଛନ୍ତି" ଏହିପରି ଭାବ ରଖିବାକୁ ହେବ । ଯେକୌଣସି କାମକୁ 'ମୁଁ କରୁଛି' ଭାବିଲେ ତାର ପ୍ରତିକ୍ରିୟା ନିଜକୁ ଭୋଗ କରିବାକୁ ହେବ । ଏପ୍ରକାର କର୍ତ୍ତୃତ୍ୱାଭିମାନଶୂନ୍ୟତାର ଅଭ୍ୟାସଦ୍ୱାରା କୌଣସି ଭଗବାନଙ୍କୁ ପ୍ରୀତ କରିବାପାଇଁ ମଧ୍ୟ ଗୀତା ଆମକୁ ଉପଦେଶ ଦେଇନାହାନ୍ତି । ଗୀତା କହୁଛନ୍ତି ଯେ, ଏ ପଦ୍ଧତି କେବଳ 'ଆତ୍ମଶୁଦ୍ଧୟେ'—ଆମର ନିଜର ଆତ୍ମିକ ନିର୍ମଳତା ରକ୍ଷା କରିବାପାଇଁ । ବିବିଧ କର୍ମପ୍ରତି ଆସକ୍ତି ଆମର ଆତ୍ମାକୁ ଆମର ଦେହ ସହିତ ଏକାଠି କରିଦେଇ ଆତ୍ମାର ବିଶୁଦ୍ଧତା ନଷ୍ଟ କରେ । ପୁଣି ସେହି ଆସକ୍ତି ଆମର ବିଚାରଶକ୍ତି ମଧ୍ୟ ନଷ୍ଟ କରାଏ, ସତ୍ୟ ଧାରଣାରୁ ଆମକୁ ଦୂରକୁ ନେଇ-ଯାଏ, ମୋହଗ୍ରସ୍ତ କରାଏ, ଏବଂ ଚିତ୍ତ ଓ ଶରୀର ଉଭୟକୁ ତମୋଗ୍ରସ୍ତ ଓ ଆବିଳତାଗ୍ରସ୍ତ କରାଇଥାଏ । ତେଣୁ ସତ୍ୟର ସମ୍ୟକ୍ ଧାରଣାପାଇଁ, ଉଚ୍ଚ ଜୀବନର ପ୍ରତ୍ୟକ୍ଷାନୁଭବ ପାଇଁ ପ୍ରଥମ ଆବଶ୍ୟକତା ହେଉଛି 'ଆତ୍ମଶୁଦ୍ଧି' ।

ପୂର୍ବ ଜନ୍ମର ପ୍ରବଣତାସବୁହିଁ ଏ ଜନ୍ମରେ ଆମର ମନ ଓ ଇନ୍ଦ୍ରିୟ-ମାନଙ୍କୁ ଅନିତ୍ୟ ଓ ଅସତ୍ୟ ସୁଖାଦି ପଛରେ ଦଉଡ଼ାନ୍ତି, ସେହିସବୁକୁ 'ନିତ୍ୟ' ଓ 'ସତ୍ୟ' ମନେ କରି । ସେହି ଦଉଡ଼ିବା ପୁଣି ଆହୁରି ଅଧିକ ନୂତନ ବାସନାସବୁ ଜମା କରିଚାଲେ, ଯାହାକୁ ନେଇ ଆମେ ଆଗାମୀ ଜୀବନ ଆରମ୍ଭ କରିଥାଉଁ । ବିଶୁଦ୍ଧ ଆତ୍ମାର ଶୁଭ୍ରପଟେ ବାସନାମାନଙ୍କର ପଙ୍କ ବୋଳିହୋଇଯାଇ-ଥିବାରୁହିଁ ଆମେ ଆମର ଆତ୍ମାକୁ ଜାଣିପାରୁ ନାହିଁ; ଆମେ ଯେ ସତ୍ୟରେ ଏକ ଏକ ଆତ୍ମା, କେବଳମାତ୍ର ଏକ ଏକ ଦେହ ନୋହୁଁ, ଆମେ ଏହା ଅନୁଭବ ମଧ୍ୟ କରିପାରୁ ନାହିଁ । ପୂର୍ବସଞ୍ଚିତ-ବାସନାରାଶିର ଘନୀଭୂତ ପଙ୍କକୁ ପୋଛିନେବା ଏବଂ ଆଉ ଅଧିକା ନୂଆ ପଙ୍କ ଜମା ନ କରିବା ହେଲା ସକଳ ଧର୍ମ-ସାଧନାର ମୌଳିକ ତତ୍ତ୍ୱ । କର୍ମଯୋଗ, ଜ୍ଞାନଯୋଗ, ଭକ୍ତିଯୋଗ—ଏହି ତିନି ମାର୍ଗ ଦେଇ ମନର ଏଇ ବାସନାରୂପକ ଆବର୍ଜନା ପୋଛିହୋଇଯାଇ ଆତ୍ମାର ବିଶୁଦ୍ଧତା ପୁନର୍ଲବ୍ଧ ହୁଏ । ତିନୋଟିଯାକ ମାର୍ଗର ମୂଳ ସାଧନା ହେଲା ଅହଂତ୍ୟାଗ ବା 'ମୁଁ କରୁଛି' ଭାବର ପ୍ରତ୍ୟାଖ୍ୟାନ, ଦ୍ୱିତୀୟରେ ଫଳାସକ୍ତି-ପ୍ରତ୍ୟାଖ୍ୟାନ, ତୃତୀୟରେ ନୂତନ-ଆକାଙ୍କ୍ଷାହୀନତାର ଅଭ୍ୟାସ । କାରଣ, ଆକାଙ୍କ୍ଷାର ଅର୍ଥ ଆସକ୍ତି ବା ବାସନାର ପ୍ରେରଣା । ସେଥିରୁ ଆପେ ଆସିଯିବ ଅହଂଭାବ ଓ କର୍ତ୍ତୃତ୍ୱାଭିମାନ ଏବଂ ଫଳାଶା ନେଇ ଚିତ୍ତବିକ୍ଷୋଭ । ବାଇବଲ୍ ଓ କୋରାନ୍ ଉଭୟରେ ନିର୍ଦ୍ଦେଶ ଅଛି 'ଦକ୍ଷିଣହସ୍ତ ଯାହା ଦେବ, ବାମହସ୍ତ ମଧ୍ୟ ତାହା ଯେପରି ନ ଜାଣେ' । ଏହାହିଁ ଗୀତାର ଅହଂଶୂନ୍ୟ, କର୍ତ୍ତୃତ୍ୱାଭିମାନଶୂନ୍ୟ, ଆସକ୍ତି-ଶୂନ୍ୟ, ଫଳାଭିମାନଶୂନ୍ୟ ପ୍ରକୃଷ୍ଟ 'କର୍ମଯୋଗ' । ଅନାସକ୍ତ ଓ ନିଃସ୍ୱାର୍ଥ କର୍ମହିଁ ମନୁଷ୍ୟକୁ କପରି ଆସ୍ତେ ଆସ୍ତେ ମାନସିକ ବିଶୁଦ୍ଧତା ଆଣିଦିଏ, ମୋହନ ଦାସ କରମଚାନ୍ଦ ଗାନ୍ଧୀଙ୍କର ମହିମାମୟ ଜୀବନହିଁ ତାର ଜ୍ୱଳନ୍ତ ପ୍ରମାଣ ଓ ସାକ୍ଷ୍ୟ । ଏପ୍ରକାର ପବିତ୍ର ଜୀବନରେ 'କର୍ମଯୋଗ', 'କର୍ମସନ୍ନ୍ୟାସ', 'ଜ୍ଞାନଯୋଗ' ବା 'ଭକ୍ତିଯୋଗ' ସମସ୍ତହିଁ ଏକାକାର; କାରଣ ଏ ଜୀବନ ଅହଂଶୂନ୍ୟ ଅଥଚ ସମ୍ପୂର୍ଣ୍ଣ-ଭାବରେ ଈଶ୍ୱରପୂର୍ଣ୍ଣ, ଆସକ୍ତିଶୂନ୍ୟ ଅଥଚ ଜଗତର ପ୍ରତି ପର-କଲ୍ୟାଣମୟ । ସବୁ ଧର୍ମରେହିଁ ଏହି ନିର୍ଦ୍ଦେଶ । ଏଥିପାଇଁହିଁ ନାନା କର୍ମ, ନାନା ଆଚାର, ନାନା ବ୍ୟବସ୍ଥା ଖଞ୍ଜାଯାଇଛି ସବୁ ଧର୍ମରେ । ଏସବୁଭିତରେ ଗୀତାଙ୍କ ନିର୍ଦ୍ଦେଶହିଁ ହେଉଛି ସବୁଠାରୁ ସରଳ ଓ ଯୁକ୍ତିଯୁକ୍ତ । ଗୀତା କହୁ ନାହାନ୍ତି ପୂଜାରୀଙ୍କୁ ଦାନ-ଦକ୍ଷିଣା ଦେବାପାଇଁ, ଗୀତା କହୁନାହାନ୍ତି ତୀର୍ଥଯାତ୍ରା କରିବାପାଇଁ, ଗୀତା କହୁନାହାନ୍ତି ହସ୍ପିଟାଲ୍ ବା ମନ୍ଦିର-ମସଜିଦ୍ ତିଆରି କରାଇବାପାଇଁ । ଏସବୁ କଲେ 'ଆତ୍ମଶୁଦ୍ଧି'

ଘଟିଯିବାର କୌଣସି ଯୁକ୍ତିଯୁକ୍ତତା ନାହିଁ, ବରଂ ଅହଂକାର ଅଧିକ ହେବ । ଗୀତା ତେଣୁ କହୁଛନ୍ତି—କାୟିକ (ଗୃହସ୍ଥର କର୍ମସବୁ), ମାନସିକ (ବୁଦ୍ଧିଜୀବୀମାନଙ୍କର କୃତସବୁ), ବୌଦ୍ଧିକ (ବୈଜ୍ଞାନିକମାନଙ୍କର କୃତସବୁ) ଯାହାସବୁ ମନୁଷ୍ୟର କର୍ମ ବା ସିଦ୍ଧି, ସେସବୁ କର ; କିନ୍ତୁ ସେଥିରେ କୌଣସିଠାରେ କର୍ତ୍ତୃତ୍ୱାଭିମାନ ବା ଆସକ୍ତି ରଖ ନାହିଁ । ତାହାହିଁ ଭୂମି ଭିତରେ ଜମା ହୋଇଥିବା ସକଳ ଆବିଳତାକୁ ଦୂରୀଭୂତ କରି ସମଗ୍ର ଅଭ୍ୟନ୍ତରକୁ ନିର୍ମଳ କରିଦେବ, ଯେଉଁଥିରେ ପରମାତ୍ମାଙ୍କ ପ୍ରତିବିମ୍ବ ଆପେ ଆପେ ଦେଖାଯିବ । ଅବଶ୍ୟ ଏହା ଆପାତ-ସରଳ ବୋଧ ହେଲେହେଁ ମନକୁ ଏପରି ଗଢ଼ିବା ଅତି କଠିନ ; କାରଣ 'ଅହଂଭାବ' ଆମର ଅସ୍ଥିମଜ୍ଜାଗତ । ଯେତେ ସାବଧାନ ହେଲେହେଁ କୌଣସି ନା କୌଣସି ବାଟରେ ତାହା ଗଜେଇଉଠିଥାଏ ।

୧୨

ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା ଶାନ୍ତିମାପ୍ନୋତି ନୈଷ୍ଠିକୀଂ
ଅଯୁକ୍ତଃ କାମକାରେଣ ଫଳେ ସକ୍ତୋ ନିବଧ୍ୟତେ । ୧୨ ।

ଯୁକ୍ତଃ (ଯୋଗୀ ବା ସାଧକ) କର୍ମଫଳଂ ତ୍ୟକ୍ତ୍ୱା (କର୍ମଫଳାସକ୍ତି ତ୍ୟାଗ କରି) ନୈଷ୍ଠିକୀଂ ଶାନ୍ତିଂ (ସ୍ଥିର ଶାନ୍ତି) ଆପ୍ନୋତି (ଲାଭ କରିଥାନ୍ତି) । ଅଯୁକ୍ତଃ (ଅ-ଯୋଗୀ ଅର୍ଥାତ୍ ବିଷୟାସକ୍ତ ଲୋକ) କାମକାରେଣ (କାମ ଅର୍ଥାତ୍ ଅଭିଳାଷାଦ୍ୱାରା ପ୍ରଣୋଦିତ ହୋଇ) [ଏବଂ] ଫଳେ ସକ୍ତଃ (କର୍ମଫଳପ୍ରତି ଗଭୀର ଭାବରେ ଆସକ୍ତ ରହି) ନିବଧ୍ୟତେ (ବାରଂବାର ସଂସାର-ଚକ୍ରରେ ବାନ୍ଧି ହୋଇଥାନ୍ତି ) ।

**ଅନୁବାଦ**

"ହେ ଅର୍ଜୁନ, ଏହିପ୍ରକାର ଯୋଗୀ ବା ସାଧକ କର୍ମଫଳାସକ୍ତି ପରିତ୍ୟାଗ କରି ଚିତ୍ତରେ ସ୍ଥିର ଶାନ୍ତି ଲାଭ କରିଥାନ୍ତି । ଅ-ଯୋଗୀ ଅର୍ଥାତ୍ ପାର୍ଥିବ-ବିଷୟାସକ୍ତ ଲୋକ ବାସନା-ପ୍ରଣୋଦିତ ହୋଇ କାମ କରିବାରୁ ଫଳରେ ଜଡ଼ିତ ହୋଇ ରହନ୍ତି ଏବଂ ସେହି ହେତୁରୁ ଜନ୍ମଜନ୍ମାନ୍ତର ଧରି ତାଙ୍କୁ ଫଳ-ସ୍ପୃହା ବାନ୍ଧିରଖେ ।"

**ବିଶେଷ ଭାଷ୍ୟ**

ଆଧ୍ୟାତ୍ମିକ ସାଧନାର ଶେଷ ଫଳ ଯେ ପରମ ଓ ଅବର୍ଣ୍ଣନୀୟ ମାନସିକ ଓ ଆତ୍ମିକ ଶାନ୍ତି ଏବଂ ଅକ୍ଷୟ ସୁଖାନୁଭବ, ଗୀତା ତାହା ପୂର୍ବରୁ ବହୁବାର

କହିସାରିଲେଣି, ଏଠି ମଧ୍ୟ କହୁଛନ୍ତି, ପରେ ମଧ୍ୟ ଆହୁରି ଦୃଢ଼ତାର ସହିତ କହିବେ । ବୌଦ୍ଧଧର୍ମର 'ନିର୍ବାଣ' ମଧ୍ୟ ଏହିପରି ଏକ ଅନିର୍ବଚନୀୟ ଶାନ୍ତି ଓ ସୁଖ ବୋଲି ବର୍ଣ୍ଣିତ । ବୈଷ୍ଣବମାନଙ୍କର 'କୈବଲ୍ୟ' ମଧ୍ୟ ଏକ ଅବର୍ଣ୍ଣନୀୟ ସୁଖ ଓ ଶାନ୍ତି । ସବୁ ଏକା କଥା । ଏସବୁ ମଧ୍ୟ ପ୍ରମାଣ କରୁଛନ୍ତି ଯେ, ଆମର ମନ ଯାହା, ଆମେ ସେୟା ; ଅର୍ଥାତ୍ ମନୁଷ୍ୟ ଗୋଟିଏ ଦେହ ଯେତେ ନୁହେଁ, ଯେତେ ଗୋଟିଏ ମନ । ଆମେ ଅଧମ ବା ଉତ୍ତମ, ଅଥବା ସୁଖୀ ବା ଦୁଃଖୀ, ତାହା ଆମର ମନର ସ୍ତର, ଗୁଣ ଓ ଅବସ୍ଥାଉପରେ ନିର୍ଭର କରେ । କେବଳ ମନର ପରିବର୍ତ୍ତନ ବା ରୂପାନ୍ତରୀକରଣଦ୍ୱାରାହିଁ ଆଜିର ଅଧମ କାଲିର ମହାତ୍ମା ହେବ ।

ତେଣୁ ଗୀତା ଯେ ଆମର ଆଭ୍ୟନ୍ତରୀଣ, ମାନସିକ, ନୈତିକ, ବୌଦ୍ଧିକ ପରିବର୍ତ୍ତନ ବା ରୂପାନ୍ତରୀକରଣଉପରେହିଁ ବରାବର ଜୋର ଦେଇ ଆସିଛନ୍ତି ଓ ଆସିବେ, ପାଠକଙ୍କର ତାହାହିଁ ଭଲଭାବରେ ସ୍ମରଣ ରଖିବାର କଥା । ମନୁଷ୍ୟ କେବଳ ଦେହ ଓ ଇନ୍ଦ୍ରିୟ ନୁହେଁ । ତାହା ଏକାନ୍ତରେ ମନ, ବୁଦ୍ଧି ଓ ଆତ୍ମା । ଆତ୍ମାର ପ୍ରାକ୍ତନ ନିର୍ମଳତା ଫେରାଇଆଣିବାପାଇଁ ଆମକୁ କାୟ ଓ ଇନ୍ଦ୍ରିୟ କେବଳ ନୁହେଁ, ମନ ଓ ବୁଦ୍ଧି ସ୍ତରରେ ମଧ୍ୟ ନିର୍ମଳତା ଆଣିବାକୁ ହେବ । ମନର ପରିବ୍ୟାପ୍ତ ମଳ ଆସୁଛି—ମନ ଅହମିକାଗ୍ରସ୍ତ ଓ ବାସନାଶ୍ରୟୀ ହେବା ହେତୁରୁ । ଗୀତା ସେଇଥିପାଇଁ ବାରଂବାର ଓ ସମଗ୍ରଭାବରେ 'ଅନାସକ୍ତି' ପ୍ରଚାର କରିଆସିଛନ୍ତି । ଅହମିକା ଓ ଆସକ୍ତିରୂପକ ମଳ ମନରୁ ପୋଛି-ହୋଇଗଲେହିଁ ଆମେ 'ନୈଷ୍ଠିକୀଂ ଶାନ୍ତିଂ' (ସ୍ଥିର ଶାନ୍ତି) ପାଇବା । ଗୀତା ବାରଂବାର ପରେ ମଧ୍ୟ ଏହି କଥା କହିଆସିବେ ।

୧୩

ସର୍ବକର୍ମାଣି ମନସା ସଂନ୍ୟସ୍ୟାସ୍ତେ ସୁଖଂ ବଶୀ
ନବଦ୍ୱାରେ ପୁରେ ଦେହୀ ନୈବ କୁର୍ବନ୍ ନ କାରୟନ୍ । ୧୩ ।

ବଶୀ ଦେହୀ (ସଂଯମୀ ପୁରୁଷ) ମନସା ସର୍ବକର୍ମାଣି ସଂନ୍ୟସ୍ୟ (ମନ-ସ୍ତରରେ ସର୍ବକର୍ମଫଳାସକ୍ତି ତ୍ୟାଗ କରି) [ନିଜର] ନବଦ୍ୱାରେ ପୁରେ (ନବଦ୍ୱାର-ଯୁକ୍ତ ଦେହରୂପୀ ନଗରରେ) ନ ଏବ କୁର୍ବନ୍ ନ ଏବ କାରୟନ୍ (କିଛି ନ କଲା ଭଳି ବା ଅନ୍ୟ କାହାଦ୍ୱାରା କିଛି ମଧ୍ୟ ନ କରାଇଲା ଭଳି) ସୁଖଂ ଆସ୍ତେ (ବେଶ୍ ସୁଖରେ ଅବସ୍ଥାନ କରିଥାଏ ) ।

**ଅନୁବାଦ**

ଦେହୀ ବା ଦେହାଭ୍ୟନ୍ତରସ୍ଥ ଆତ୍ମାପୁରୁଷ ଏହିପ୍ରକାରେ ଚିତ୍ତଦ୍ୱାରରେହିଁ ସକଳ କର୍ମପ୍ରତି ଆସକ୍ତି ପରିତ୍ୟାଗ କରି, ଦେହରୂପକ ନବଦ୍ୱାରଯୁକ୍ତ ଦୁର୍ଗରେ କିଛି କାମନା କରିବା ବା ନ କରାଇବା ପରି ହୋଇ ସୁଖରେ ଅଧିଷ୍ଠାନ କରିଥାଏ ।

**ବିଶେଷ ଭାଷ୍ୟ**

ଭାରତୀୟ ଅଧ୍ୟାତ୍ମ ସାହିତ୍ୟରେ ଆମର ଦେହକୁ ଏକ 'ପୁର' ବା ନଗର ବା ସୌଧରୂପେ ବର୍ଣ୍ଣନା କରିବାଟା ପ୍ରଚୁରଭାବରେ ପ୍ରଚଳିତ । ଏହି 'ପୁର'ରେ ବାସ କରୁଥିବାରୁହିଁ 'ଆତ୍ମା'ର ଅନ୍ୟ ନାମ 'ପୁରୁଷଃ'— ଅସ୍ୟାଂ ପୁରି ଶେତେ, ତସ୍ମାତ୍ ପୁରୁଷଃ । ଦୁଇ ଆଖି, ଦୁଇ କାନ, ଦୁଇ ନାସାରନ୍ଧ୍ର, ମୁଖ, ଗୁହ୍ୟଦ୍ୱାର ଓ ଜନନେନ୍ଦ୍ରିୟ—ଏ ହେଲ ଆତ୍ମା ବା ପୁରୁଷର ଶରୀରରୂପୀ ଦୁର୍ଗର ନବଦ୍ୱାର ।

ଗୀତାକାର ଗୀତାର ଅନେକ ଶ୍ଳୋକପରି ଏଠାରେ ମଧ୍ୟ ଭାରତୀୟ ଧର୍ମ-ସାହିତ୍ୟରେ ପରିଚିତ ଭାବ-କଳ୍ପକୁ ନିଜର କରି ଗଢ଼ିଛନ୍ତି । ଶ୍ୱେତାଶ୍ୱେତର ଉପନିଷଦ (୩।୧୮)ର ଏହି ଶ୍ଳୋକ ଏଠାରେ ସ୍ମରଣୀୟ—

ନବଦ୍ୱାରେ ପୁରେ ଦେହୀ
ହଂସୋ ଲେଲାୟତେ ବହିଃ
ବଶୀ ସର୍ବସ୍ୟ ଲୋକସ୍ୟ
ସ୍ଥାବରସ୍ୟ ଚରସ୍ୟ ଚ ।

ହିନ୍ଦୁ ଧର୍ମଶାସ୍ତ୍ରରେ 'କର୍ମ'କୁ ଚାରି ଭାଗରେ ବିଭକ୍ତ କରାଯାଇଛି—

(୧) ନିଷିଦ୍ଧ କର୍ମ—କେତେଗୁଡ଼ିଏ ଅନୈତିକ କର୍ମ ଯାହା ସାଧାରଣ ନାଗରିକ ବା ସାଧକ କାହାରି କରିବାର କଥା ନୁହେଁ ।

(୨) କାମ୍ୟ କର୍ମ – ବିଶେଷଫଳ କାମନା କରି ବିଶେଷ ଯାଗଯଜ୍ଞାଦି ଆଚାରର ଅନୁଷ୍ଠାନ ।

(୩) ନୈମିତ୍ତିକ କର୍ମ—ଗ୍ରହଣ, ପୂର୍ଣ୍ଣିମା, ଏକାଦଶୀ ପ୍ରଭୃତି ବିଶେଷ ବିଶେଷ ଦିବସମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ବିଶେଷ ବିଶେଷ ଆଚାରାନୁଷ୍ଠାନ ।

(୪) ନିତ୍ୟ କର୍ମ—ଖାଇବା, ପିଇବା, ଶୋଇବାଦି ସାଧାରଣ ଜୈବିକ ଏବଂ କୃଷି, ବ୍ୟବସାୟ, ଚାକିରି ଆଦି ଜୀବିକାର୍ଜନଜନିତ କର୍ମ ।

ସାଧକ, 'ନିଷିଦ୍ଧ କର୍ମ' ତ କରିବେନି, କାମ୍ୟ ଓ ନୈମିତ୍ତିକ କର୍ମ ମଧ୍ୟ ତାଙ୍କର କରିବା ଆବଶ୍ୟକ ନାହିଁ । ସେ ବଞ୍ଚିବାପାଇଁ କେବଳ 'ନିତ୍ୟ କର୍ମ'

କରିପାରିବେ, କିନ୍ତୁ କୌଣସିଟିପ୍ରତି ଆସକ୍ତ ନ ହେଲା ପରେ ସଂପୂର୍ଣ୍ଣ ନିଃସ୍ୱାର୍ଥ-ଭାବ ଓ ଅକର୍ତ୍ତୃତ୍ୱଭାବ ପୋଷଣ କରିବେ । ତେବେ ତାହାହିଁ ହେବ ପ୍ରକୃଷ୍ଟ ମୁକ୍ତି-ସାଧନା ।

୧୪

ନ କର୍ତ୍ତୃତ୍ୱଂ ନ କର୍ମାଣି ଲୋକସ୍ୟ ସୃଜତି ପ୍ରଭୁଃ
ନ କର୍ମଫଳସଂଯୋଗଂ ସ୍ୱଭାବସ୍ତୁ ପ୍ରବର୍ତ୍ତତେ । ୧୪ ।

ପ୍ରଭୁଃ (ଈଶ୍ୱର) ଲୋକସ୍ୟ (ଏହି ଲୋକପାଇଁ) କର୍ତ୍ତୃତ୍ୱଂ ନ ସୃଜତି (କର୍ତ୍ତୃତ୍ୱ ସୃଷ୍ଟି କରନ୍ତି ନାହିଁ) [ବା] କର୍ମାଣି ନ (କର୍ମଜାଲ ସୃଷ୍ଟି କରନ୍ତି ନାହିଁ) [ବା] କର୍ମଫଳସଂଯୋଗଂ ନ (ଅଥବା କର୍ମସହିତ ଫଳର ସଂଯୋଗ ଘଟାନ୍ତି ନାହିଁ) । ସ୍ୱଭାବଃ ତୁ ପ୍ରବର୍ତ୍ତତେ (ପ୍ରକୃତିହିଁ ଏସବୁ କରାଇଥାଏ) ।

**ଅନୁବାଦ**

"ହେ ଅର୍ଜୁନ, ବିଶ୍ୱ-ସ୍ରଷ୍ଟା ଈଶ୍ୱର ଏ ଧରାରେ ଜୀବ-ମନୁଷ୍ୟମାନଙ୍କ ଭିତରେ ଦେଖାଦେଉଥିବା କର୍ମ ବା କର୍ମ-କର୍ତ୍ତୃତ୍ୱ ଭାବ ଏ ଉଭୟରୁ କୌଣସିଟିର ହେଲେ ପ୍ରକୃତ ସ୍ରଷ୍ଟା ନୁହନ୍ତି । ସେ ମଧ୍ୟ ପ୍ରତ୍ୟେକଟି କର୍ମ ସହିତ ତାର ଫଳକୁ ଆଣି ଯୋଡ଼ି ନ ଥାନ୍ତି । ଏ ସମସ୍ତ ବ୍ୟାପାର ପ୍ରକୃତିର ।"

**ବିଶେଷ ଭାଷ୍ୟ**

ପୂର୍ବ ଶ୍ଳୋକରେ 'ପୁରୁଷ' ବା ଆତ୍ମାକୁ ଦେହୀ କୁହାଗଲା । କୁହାଗଲା ଯେ, ଦେହୀ (ପୁରୁଷ) ନବଦ୍ୱାର ପୁର ରୂପକ ଏହି ଶରୀରନଗରରେ କିଛି ନ କରିବା ବା ନ କରାଇବା ଭଳି ଅନାସକ୍ତ ଭାବରେ ଅବସ୍ଥାନ କରୁଥାଏ । ତେଣୁ ବର୍ତ୍ତମାନ ପ୍ରଶ୍ନ ହୋଇପାରେ—ତେବେ ପାପ, ପୁଣ୍ୟ ଆଦି କିଏ କରେ ? ସହଜ ଉତ୍ତର ହେବ, ସେହି ପୁରାଧୀଶ, ସେହି ପୁରୁଷ ବା ସେହି ଆତ୍ମା । କିନ୍ତୁ, ଗୀତା ଏଠାରେ ସାଂଖ୍ୟଦର୍ଶନ ଓ ସୃଷ୍ଟିର ଚିରନ୍ତନ ନୀତି ଅନୁଯାୟୀ ତାହା ଖଣ୍ଡନ କରୁଛନ୍ତି । ସେ କହୁଛନ୍ତି ଯେ, ଏସବୁ 'ପୁରୁଷ'ର କାମ ନୁହେଁ, 'ପ୍ରକୃତି'ର ।

ପୃଥିବୀର ସକଳ ଧର୍ମରେ ଈଶ୍ୱର ମାନବ-ଗୁଣୋପେତ ଏକ ଅତି-ମାନବ ମାତ୍ର । ଭାରତବର୍ଷ ମଧ୍ୟ ଈଶ୍ୱରର ଏ କଳ୍ପନା ସହିତ ଅତ୍ୟନ୍ତ ପରିଚିତ । କିନ୍ତୁ ଭାରତବର୍ଷ ହେଉଛି ଏକମାତ୍ର ଦେଶ, ଯେଉଁଠି ମଧ୍ୟ ଈଶ୍ୱରଙ୍କୁ ସଂପୂର୍ଣ୍ଣ ନୈର୍ବ୍ୟକ୍ତିକଭାବରେ କଳ୍ପନା କରି ପାରିଥିଲା; ଅର୍ଥାତ୍ ଯେଉଁଠି ଈଶ୍ୱର କୌଣସି ବ୍ୟକ୍ତି ନ ହୋଇ, କଳ୍ପିତ ହୋଇଥିଲେ କେତେକ ଶାଶ୍ୱତ ଓ ଅଲଙ୍ଘ୍ୟ ନିୟମ

ସ୍ୱଭାବରେ । ଏ ଦର୍ଶନରେ ଈଶ୍ୱର କରୁଣାମୟ ଭଗବାନ୍ ନୁହନ୍ତି, ସେ କେବଳ 'ବିଧାତା'—ସେ କେବଳ ସୃଷ୍ଟିର ତଳେ ଚିରପ୍ରବାହିତ ବିଧି-ନିୟମମାନଙ୍କର ସ୍ରଷ୍ଟା । ଯେ ବିଧିକୁ ଜାଣିନି, ସେ ବିଧାତାକୁ ଜାଣିନି । ବିଧିର ଅଜ୍ଞତାହିଁ ଅବିଦ୍ୟା ବା ଅଜ୍ଞାନ । ସେହି ଅଜ୍ଞତାହିଁ ଆମକୁ ଭ୍ରମ-ପ୍ରମାଦ ଓ ଦୁଃଖ-ଜଞ୍ଜାଳରେ ଘୂରେଇ-ଫୂରେଇ ମାରୁଛି । ଏବର ବୈଜ୍ଞାନିକମାନେ ସୃଷ୍ଟିର ଅନ୍ତର୍ନିହିତ ଶାଶ୍ୱତ ବିଧିସବୁର ପ୍ରଭୁ ହୋଇ ଈଶ୍ୱର୍ ପ୍ରଭୁପରି କାମ କରିପାରୁଛନ୍ତି । କିନ୍ତୁ ଆମେ ଭାରତୀୟମାନେ ଘୋର ଅଜ୍ଞତାରେ ଠାକୁରାଣୀପୂଜା କରି ହଜାର ହଜାର ବର୍ଷ ଧରି କଲେରା ବସନ୍ତରେ ହଜାର ହଜାର ସଂଖ୍ୟାରେ ମରୁଥିଲୁଁ । ଏବେ ଆମେ ଆମର କୃଷି, ଶିଳ୍ପ, ବ୍ୟବସାୟାଦିରେ ଯଦି କିଛି ଉନ୍ନତି କରିଛୁଁ, ତେବେ ପାଶ୍ଚାତ୍ୟମାନଙ୍କଦ୍ୱାରା ଆହରିତ 'ଜ୍ଞାନ' ଯୋଗୁଁ, କୌଣସି ବ୍ୟକ୍ତିତ୍ୱ-ସମ୍ପନ୍ନ ଈଶ୍ୱରର ପୂଜାରାଧନା ଯୋଗୁଁ ନୁହେଁ । ଏହାହିଁ ଗୀତାର ସତ୍ୟ ସୁପ୍ରମାଣିତ କରୁଛି । ବିଶ୍ୱସ୍ରଷ୍ଟାଙ୍କ ନିକଟରେ ପାପ ଓ ପୁଣ୍ୟ ବୋଲି କିଛି ନାହିଁ । ମନୁଷ୍ୟର ଗ୍ରହ-ନକ୍ଷତ୍ରାଦି ଅଭିଯାନ ପାପ ନୁହେଁ କି ପୁଣ୍ୟ ନୁହେଁ । ତାହା ପ୍ରକୃତି-ତାଡ଼ିତ ମନୁଷ୍ୟର କର୍ମ ମାତ୍ର । ମନୁଷ୍ୟ ତାର ପରିଣାମ ଭୋଗ କରିବ । ଈଶ୍ୱର ସେପ୍ରକାର କର୍ମ କରିବାକୁ କାହାକୁ ସପନେଇ ନାହାନ୍ତି କି କାହାକୁ ମନା କରି ନାହାନ୍ତି । ଗୀତା, ସାଂଖ୍ୟଦର୍ଶନ ଓ ବୌଦ୍ଧଦର୍ଶନ ଏ ତିନିରେ ତେଣୁ ବିଧିହିଁ ବିଧାତା । ବିଧିର ଜ୍ଞାନହିଁ ଜ୍ଞାନଯୋଗ ଏବଂ ତଦନୁଯାୟୀ କର୍ମହିଁ କର୍ମଯୋଗ । ତେଣୁ ଉଭୟ ସାଂଖ୍ୟଦର୍ଶନ ଓ ବୌଦ୍ଧମତ ସଂପୂର୍ଣ୍ଣ ନିରୀଶ୍ୱର ।

ତେବେ ପ୍ରଶ୍ନ ଉଠିପାରେ, ସୃଷ୍ଟିକୁ କିଏ କଲା ବା କିପରି ଏହା ଚାଲୁ ରହିଛି ? ଉଭୟ ବୌଦ୍ଧମତ ଓ ସାଂଖ୍ୟ କହେ ଯେ, ଅନାଦି କାଳରୁ, ଚିରକାଳ ଧରି, କେତେଗୁଡ଼ିଏ ସୃଷ୍ଟିପ୍ରକ୍ରିୟା ସ୍ୱତଃ-ପ୍ରବହମାନ ଓ ସ୍ୱତଃ-କ୍ରିୟାଶୀଳ । ସେହି-ଗୁଡ଼ିକର ସଂଯୋଗ-ବିଯୋଗରେହିଁ ସୃଷ୍ଟିଲୀଳା ବା ଜୀବନମୃତ୍ୟୁଲୀଳା ଚାଲିଛି ଏବଂ ଅନନ୍ତ କାଳ ଏହିପରି ଚାଲୁ ରହିବ—ଭଙ୍ଗା-ଗଢ଼ା, ଗଢ଼ା-ଭଙ୍ଗା ଦେଇ । ସାଂଖ୍ୟର ସୃଷ୍ଟିର ଅନ୍ତର୍ନିହିତ ପଚିଶଟି 'ତତ୍ତ୍ୱ' ବା ସୃଷ୍ଟିପ୍ରକ୍ରିୟା ଭିତରୁ ମୁଖ୍ୟ ଦୁଇଟି ହେଲା ପୁରୁଷ ଓ ପ୍ରକୃତି, ଅର୍ଥାତ୍ ଜଡ଼ ଓ ଚୈତନ୍ୟ—ମାଟର (matter) ଓ ସ୍ପିରିଟ୍ (spirit); ଆତ୍ମା ଓ ଶରୀର—ସୋଲ୍ (soul) ଓ ବଡି (body) । ଏ ଉଭୟେ ଉଭୟପାଇଁ ଆବଶ୍ୟକ । ସାଂଖ୍ୟମତରେ ଏ ଦୁହିଙ୍କ ଭିତରେ କ୍ରିୟାଶୀଳ ହେଉଛି ପ୍ରକୃତରେ 'ପ୍ରକୃତି' । ମୂଳ 'ଅବ୍ୟକ୍ତ'ରୁ 'ବ୍ୟକ୍ତ' ବା ଉତ୍ପନ୍ନ ଆମର ଏହି ବହୁ ବର୍ଣ୍ଣ-ଆକାର-ଗୁଣ-ସମ୍ପନ୍ନା ସୃଷ୍ଟିଟି ତିଆରି କରିଛି ସେହି 'ପ୍ରକୃତି', ଯେ କି ନାନା

ଭାବରେ 'ବହୁ'ର ଭୋଗ କରିବାକୁ ଚାହେଁ । ଏକ ଏକ ଦେହରେ ମଧ୍ୟ ବିବିଧ ଇନ୍ଦ୍ରିୟ ଦେଇ, ବହୁବିଧ ସୁଖଭୋଗ ପାଇଁ ସେହି ପ୍ରକୃତିହିଁ ମନୁଷ୍ୟର ଚେତନାକୁ ଅହରହ ବହିର୍ମୁଖୀ କରାଇରଖେ । ମନେରଖିବାକୁ ହେବ ଯେ ପ୍ରକୃତି-ତାଡ଼ିତ ଏହି ପ୍ରବୃତ୍ତି-ମାର୍ଗ ବା ଏହି କର୍ମଶୀଳତା ବା ବହିର୍ମୁଖିତା, ଆମ ଆତ୍ମାର ଅଭିଜ୍ଞତା ପାଇଁ ଏକାନ୍ତ ଆବଶ୍ୟକ । କାରଣ, ପୁରୁଷ ଓ ପ୍ରକୃତି ପରସ୍ପର ସହିତ ସଂଯୁକ୍ତ ହୋଇ ପରସ୍ପରର ଗୁଣପ୍ରାପ୍ତ ହୋଇଯାନ୍ତି । ଚୈତନ୍ୟ (ପୁରୁଷ) ଜଡ଼(ପ୍ରକୃତି)ପ୍ରତି କେବଳ ଆକୃଷ୍ଟ ହୁଏ ନାହିଁ, ଜଡ଼କୁହିଁ ମନେ କରେ ଚୈତନ୍ୟ । ଆମେ ଆମ ଦେହଟାକୁହିଁ ସେହି ହେତୁ ମନେ କରୁଁ 'ଆତ୍ମା' ବା 'ମୁଁ' ।

କିନ୍ତୁ ଜଡ଼ଜନିତ ସକଳ ସୁଖ କେବଳ କ୍ଷଣସ୍ଥାୟୀ ନୁହେଁ, ପ୍ରତିହିଂସାସବୁ ଦେଇ ପରିଣାମରେ ଘୋର ଦୁଃଖଦାୟୀ ମଧ୍ୟ । ଚୈତନ୍ୟ ବା ପୁରୁଷ ବା ଆତ୍ମା ଜଡ଼ ବା ପ୍ରକୃତି ବା ଦେହ ଦେଇ ବହୁ ଦୁଃଖାନ୍ତକ କ୍ଷଣସ୍ଥାୟୀ ସୁଖ ଭୋଗିସାରିଲା-ପରେ ମୁଖ ଫେରାଏ । ସେତେବେଳେ ଯାଇ 'ନିବୃତ୍ତି ମାର୍ଗ'ର ଯାତ୍ରା ଆରମ୍ଭ ହୁଏ । ତେଣିକି ପ୍ରକୃତି(ଦେହ)ର ଆହ୍ୱାନ-ପ୍ରଲୋଭନରେ ଭାସି ନ ଯାଇ ଆତ୍ମା ବା ପୁରୁଷ ସାବଧାନ ହୋଇ ଚାଲେ ।

ଗୀତା ଏହି ଶ୍ଲୋକରେ ମନୁଷ୍ୟର ଏହି ସ୍ତର ଓ ଅବସ୍ଥାକୁହିଁ ବର୍ଣ୍ଣନା କରିଛନ୍ତି । ଏହି ସ୍ତରରେ ଆମର ଏହି ଗଭୀର ଅବବୋଧ ହେବା ଆବଶ୍ୟକ ଯେ, କର୍ମ ବା କର୍ମଫଳ ବା କର୍ମଜନିତ ସୁଖଦୁଃଖାଦିପାଇଁ ଦେହପୁରାଧିପତି 'ଦେହୀ' ବା 'ପ୍ରଭୁ' ବା ଆତ୍ମା ବା ପୁରୁଷ ଦାୟୀ ନୁହନ୍ତି । ଦାୟୀ ଆମର ପ୍ରକୃତି (ସ୍ୱଭାବ) । 'ସ୍ୱଭାବସ୍ତୁ ପ୍ରବର୍ତ୍ତତେ'—ସ୍ୱଭାବ ବା ପ୍ରକୃତିହିଁ ତାର କାମ କରିଚାଲିଛି । ତୃତୀୟ ଅଧ୍ୟାୟ(୨୭ ଶ୍ଲୋକ)ରେ ଠିକ୍ ଏହି କଥାହିଁ କୁହାଯାଇଛି—

ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ
ଅହଂକାରବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ ।

ପ୍ରକୃତିର ଗୁଣସଂଯୋଗରେ ସବୁ କାମ ଆପେ ଆପେ ହୋଇଚାଲିଛି । କିନ୍ତୁ ମିଛଟାରେ ଆମେ ନିଜ ନିଜକୁ 'କର୍ତ୍ତା' ବୋଲି କହିବୁଲୁଥାଉଁ ।

ପରବର୍ତ୍ତୀ ଶ୍ଲୋକଟିରେ ଏହି ଭାବଟି ଆହୁରି ତୀବ୍ରଭାବରେ ଫୁଟିଉଠିଛି ।

୧୫

ନାଦତ୍ତେ କସ୍ୟଚିତ୍ ପାପଂ ନ ଚୈବ ସୁକୃତଂ ବିଭୁଃ
ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତବଃ । ୧୫ ।

ବିଭୁଃ (ସର୍ବବ୍ୟାପୀ ଈଶ୍ୱର) କସ୍ୟଚିତ୍ ସୁକୃତଂ ପାପଂ ଚ ଏବ ନ ଆଦତ୍ତେ (କାହାର ହେଲେ ପୁଣ୍ୟ ବା ପାପକୁ ଗ୍ରହଣ କରନ୍ତି ନାହିଁ ଅର୍ଥାତ୍ ଧରିବସନ୍ତି ନାହିଁ) [ମନୁଷ୍ୟମାନଙ୍କଠାରେ] ଜ୍ଞାନଂ (ଜ୍ଞାନ) ଅଜ୍ଞାନେନ (ଅଜ୍ଞାନଦ୍ୱାରା) ଆବୃତଂ (ଘୋଡ଼େଇହୋଇ ରହିଛି) । ତେନ (ସେହି କାରଣରୁ) ଜନ୍ତବଃ (ଜୀବ ବା ମନୁଷ୍ୟଗଣ) ମୁହ୍ୟନ୍ତି (ମୋହଗ୍ରସ୍ତ ଭଳି କର୍ମ କରିଥାନ୍ତି) ।

## ଅନୁବାଦ

"ହେ ଅର୍ଜ୍ଜୁନ, ସର୍ବବ୍ୟାପୀ ଈଶ୍ୱର କୌଣସି ଲୋକର ତଥାକଥିତ 'ପାପ' ବା 'ପୁଣ୍ୟ' ଧରିବସି ନ ଥାନ୍ତି । ମନୁଷ୍ୟମାନଙ୍କ ଜ୍ଞାନ ଅଜ୍ଞାନଦ୍ୱାରା ଆବୃତ ରହିଥିବାରୁ ସେମାନେ ମୋହଗ୍ରସ୍ତ ହୋଇ କାମ କରିଥାନ୍ତି ।"

## ବିଶେଷ ଭାଷ୍ୟ

ଗୀତାର ମୁଖ୍ୟ ଶ୍ଳୋକମାନଙ୍କ ମଧ୍ୟରୁ ଏହା ଏକତମ ବୋଲି ପାଠକେ ଜାଣିବେ । ଆମର ସାଧାରଣ କର୍ମବିଚାରର ସାଧାରଣତଃ 'ପାପ' ବା 'ପୁଣ୍ୟ' ଦେଇ ଘଟିଥାଏ । ପାପ-ପୁଣ୍ୟର ସଚେତନତା ମନୁଷ୍ୟର ସହଜାତ । ଜନ୍ମ ନେଲା-ପରେ ଆମେ ଯେଉଁ ଧର୍ମ ଓ ସମାଜରେ ଜନ୍ମ ନେଇଥାଉଁ, ତାର ଶିକ୍ଷାଫଳରେ ଏହି ଜ୍ଞାନ ପ୍ରବର୍ଦ୍ଧିତ ହୁଏ ଓ ଏକ ନିର୍ଦ୍ଦିଷ୍ଟ ଆକାର ଗ୍ରହଣ କରେ । ଏହା ଜଣା କଥା ଯେ, ବନ୍ୟ ଓ ହିଂସ୍ର ପଶୁମାନଙ୍କ ଭିତରେ ମଧ୍ୟ ସ୍ତ୍ରୀଜୀବ ଓ ପୁରୁଷଜୀବ-ମାନଙ୍କ ଭିତରେ ପାରସ୍ପରିକ ପ୍ରଗାଢ଼ ଓ ଏକକ ଆସକ୍ତି ଏବଂ ସେ ଉଭୟଙ୍କର ସ୍ୱସ୍ୱ ସନ୍ତାନପ୍ରତି ଗଭୀର ବାତ୍ସଲ୍ୟ ଦେଖା ଦେଇଥାଏ, ଯାହା ଫଳରେ କି ସେମାନଙ୍କ ମଧ୍ୟରେ ବି ବେଳ ପଡ଼ିଲେ ସନ୍ତାନମାନଙ୍କ ପାଇଁ ଅକାତର ଆତ୍ମୋତ୍ସର୍ଗ ଦେଖାଯାଇଥାଏ । ତାହାହିଁ ପ୍ରମାଣ କରେ ଯେ, କର୍ମ ଓ ବି-କର୍ମ (ବା ଆମ ସାଧାରଣ ଭାଷାରେ ପୁଣ୍ୟ ଓ ପାପ) ପ୍ରଭୃତି ଏକପ୍ରକାର ପ୍ରକୃତିଦତ୍ତ । ଏକ ପ୍ରଣୟୀ କ୍ରୌଞ୍ଚର ନିହତା ପ୍ରଣୟିନୀପାଇଁ କରୁଣ ବିଳାପହିଁ ସମଗ୍ର ରାମାୟଣର ଉତ୍ପତ୍ତି । ଏହିପ୍ରକାର ଆତ୍ମୋତ୍ସର୍ଗ କୌଣସି ମାନବୀଠାରେ ଦେଖାଗଲେ, ଆମେ ତାକୁ 'ପବିତ୍ର ବୈଧବ୍ୟ' ବା 'ପାତିବ୍ରତ୍ୟ' ଇତ୍ୟାଦି ମହତ୍ ପୁଣ୍ୟ ବା ମହମାମୟ କର୍ମ ଭାବରେ ବର୍ଣ୍ଣନା କରିଥାଉଁ ।

କିନ୍ତୁ ଜୀବମାନେ ଏପରି ମହତ୍ କର୍ମ କଲେ ମଧ୍ୟ ପାପ-ପୁଣ୍ୟ କଥା ଚିନ୍ତା କରନ୍ତି ନାହିଁ । ସେମାନେ ତାହା ପ୍ରକୃତି(ସ୍ୱଭାବ)ଶ୍ଚାଳିତ ହୋଇହିଁ କରିଥାନ୍ତି । ଚିନ୍ତା କରେ ମନୁଷ୍ୟ ; ଏବଂ ମନଷ୍ୟ ଅଯୌକ୍ତିକ ଚିନ୍ତାଯୋଗୁଁହିଁ ସାଧାରଣତଃ ଦୁଃଖ ଭୋଗ କରେ । ଦୁଃଖ-ବିପଦରେ ପଡ଼ିଥିଲାବେଳେ ଆମର ସାଧାରଣ

ପ୍ରବଣତା ହେଉଛି ଏକ କଳ୍ପିତ ଭଗବାନଙ୍କୁ (ବିଭୁଙ୍କୁ) ସେଥିପାଇଁ ଦୋଷ ଦେବା, ଯଦିବା ଆମର ସୌଭାଗ୍ୟପାଇଁ ଭଗବାନଙ୍କୁ ଭୁଲିଯାଇ, ନିଜ କର୍ତ୍ତୃତ୍ୱ ଜାହିର କରିବାକୁ ଆମେ ସଂକୋଚ ବୋଧ କରୁଁ ନାହିଁ । ତେଣୁ ଏହା ଏକ ଘୋର ଅଯୌକ୍ତିକ ମାନସିକତା ନୁହେଁ କି ?

ଗୀତା 'ଅଜ୍ଞାନ' କହିଛନ୍ତି ଏହାକୁହିଁ—ଅର୍ଥାତ୍ ଆମର ଏଇ 'ସୁଖ' ବା 'ଦୁଃଖ', 'ପାପ' ବା 'ପୁଣ୍ୟ'କୁ ଅନ୍ୟଉପରେ ଢାଳିଦେବାକୁ ବା ବିଶେଷ କରି ସୁଖପାଇଁ ନିଜ କର୍ତ୍ତୃତ୍ୱ ଦାବି କରିବା ସାଥେ ସଥେ ଦୁଃଖପାଇଁ ଈଶ୍ୱରଙ୍କୁ ଦାୟୀ କରାଇବାଟାକୁ ।

ଶ୍ରୀରାମକୃଷ୍ଣ ଚମତ୍କାରଭାବରେ କହିଛନ୍ତି ଯେ, ଦୀପ ଜଳିଲେ ଘର-ଆଡ଼କୁ ଆଲୁଅ ଦିଏ—ଭଲକୁ ଆଲୁଅ ଦେଇ, ଖରାପଠାରୁ ନିଜ ପ୍ରକାଶକୁ ଟାଣି-ଆଣେ ନା । ସେହି ଆଲୁଅକୁ କେହି ବହି ପଢ଼ିବାପାଇଁ, କେହି ବା ଖାଦ୍ୟ ତିଆରି କରିବାପାଇଁ ବ୍ୟବହାର କରିପାରନ୍ତି । ପୁଣି କେହି ମଧ୍ୟ ତାକୁ ମିଥ୍ୟା-ତମସୁକ ତିଆରି କରିବାରେ ଲଗାଇପାରେ । ଏହି ବିବିଧ କର୍ମର ଭଲ, ମନ୍ଦପାଇଁ କିଏ ଆଲୋକ ଦାୟୀ ? ଦେହଭିତରେ ଚୈତନ୍ୟପୁରୁଷ ବିଦ୍ୟମାନ ଥିବାରୁହିଁ ପ୍ରତ୍ୟେକ ଲୋକ ନାନାପ୍ରକାର କର୍ମ କରିଚାଲିଛି । କିନ୍ତୁ ବାହାରର ଅଗଣିତ ବିବିଧ କର୍ମ ସହିତ ସେହି ବିଶୁଦ୍ଧ ଚେତନା ବା ବିଭୁ ବା ଈଶ୍ୱରଙ୍କର କୌଣସି ସଂପର୍କ ନାହିଁ । ସୁଖକର ଓ ଦୁଃଖକର କ୍ରିୟାଜାଳ ପ୍ରକୃତିର । ପୁରୁଷ ସେଥିପାଇଁ ସ୍ୱାଭାବିକଭାବରେ ଦାୟୀ ନୁହେଁ ।

ବରଂ ପ୍ରକୃତି ସୁଖ ଓ ଦୁଃଖ, ପାପ ଓ ପୁଣ୍ୟ ପ୍ରଭୃତି ନାନା ଅଭିଜ୍ଞତା ସହିତ ନାନା ଜଞ୍ଜାଳଭିତରେ ଯେ ଆମକୁ ବୁଡ଼େଇମାରେ । ପୁରୁଷର ସେହି ପ୍ରକୃତିପ୍ରତି ଜାଗ୍ରତ ଓ ସଚେତନ ରହିବାହିଁ ହେଉଛି ଜ୍ଞାନ । ଆମେ କେବେହେଲେ ନିଜକୁ ପଚାରୁଁ ନା, ଭୋଗ କରୁଛି କିଏ ? ଦେହ ? ତେବେ ମଲା ଦେହର ଭୋଗ ସରିଯାଏ କିଆଁ ? ତେଣୁ ଦେହଭିତରେ ଦେହାତୀତ କିଛି ଅଛି, ଯାହା ଜଡ଼ ଦେହଟାକୁ କିଛି କାଳ ଏପରି ଜୀବନ୍ତ ଓ ଭୋଗମୟ କରି ରଖେ । ଏହି ଜ୍ଞାନଟିକୁ ହରାଇବସି, ପ୍ରକୃତି ସହିତ ଏକୀଭୂତ ହୋଇଯାଇ ପ୍ରକୃତ 'ମୁଁ' ବା ପୁରୁଷ ବା ଆତ୍ମା ଅଜ୍ଞାନଗ୍ରସ୍ତ ହୋଇ ସାଧାରଣତଃ କାମ କରିଥାଏ ଏବଂ ସୁଖ ଖୋଜି ଖୋଜି ଶେଷରେ ଦୁଃଖହିଁ ଭୋଗ କରିଥାଏ । ତେଣୁ ପରବର୍ତ୍ତୀ ଶ୍ଳୋକସବୁରେ ଗୀତାର ଉପଦେଶ ହେଉଛି—

୧୬

ଜ୍ଞାନେନ ତୁ ତଦଜ୍ଞାନଂ ଯେଷାଂ ନାଶିତମାତ୍ମନଃ
ତେଷାମାଦିତ୍ୟବଜ୍‌ଜ୍ଞାନଂ ପ୍ରକାଶୟତି ତତ୍ ପରମ୍ । ୧୬ ।

ତୁ (କିନ୍ତୁ) ଯେଷାଂ (ଯେଉଁମାନଙ୍କର) ତତ୍ ଅଜ୍ଞାନଂ (ସେହି ଅଜ୍ଞତା) ଆତ୍ମନଃ ଜ୍ଞାନେନ (ଆତ୍ମାବବୋଧ ରୂପକ ଅର୍ଥାତ୍ ପ୍ରକୃତି-ପୁରୁଷ-ଭେଦମୂଳକ ଜ୍ଞାନ-ଦ୍ୱାରା) ନାଶିତଂ (ବିନଷ୍ଟ ହୋଇଯାଏ) ତେଷାଂ (ସେମାନଙ୍କର) ତତ୍ ଜ୍ଞାନଂ (ସେହି ଜ୍ଞାନ) ଆଦିତ୍ୟବତ୍ (ସୂର୍ଯ୍ୟ ପରି) ପରଂ (ପରମାତ୍ମାଙ୍କୁ) [ଅନ୍ତରରେ] ପ୍ରକାଶୟତି (ପ୍ରତିଭାତ କରାଇଦେଇଥାଏ) ।

## ଅନୁବାଦ

"କିନ୍ତୁ, ହେ ଅର୍ଜୁନ, ଯେଉଁମାନଙ୍କର ଅନ୍ତରସ୍ଥ ସେହି ମୋହ ବା ଅଜ୍ଞାନ ଆତ୍ମାବବୋଧଦ୍ୱାରା ଦୂରୀଭୂତ ହୋଇଯାଏ, ସେମାନଙ୍କ ଭିତରେ ସେହି ଜ୍ଞାନ ସେହି ଶ୍ରେଷ୍ଠ ପୁରୁଷଙ୍କୁ ସୂର୍ଯ୍ୟ ପରି ଉଦ୍‌ଭାସିତ କରିଦେଇଥାଏ ।"

## ବିଶେଷ ଭାଷ୍ୟ

କଥିତ ଅଛି ଯେ, ଗୌତମ ବୁଦ୍ଧଙ୍କୁ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଲୋକେ ଜିଜ୍ଞାସା କଲେ ସେ କେବଳ ମୌନ ରହୁଥିଲେ ବା କିମ୍ବା ଊର୍ଦ୍ଧ୍ୱକୁ କେବଳ ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ । ଅର୍ଥାତ୍, ସେ କହିବାକୁ ଚାହୁଁଥିଲେ ଯେ, ଈଶ୍ୱର ଯୁକ୍ତି-ତର୍କର ବା ବର୍ଣ୍ଣନାର ବିଷୟ ନୁହନ୍ତି, ସେ କେବଳ ଅନୁଭବର ବିଷୟ ; ଏବଂ ଶୀଳାଚରଣଦ୍ୱାରା ମାନସିକ ବିଶୁଦ୍ଧତା ଆଣିପାରିଲେ ମନର ଏକ ଊର୍ଦ୍ଧ୍ୱ ସୂକ୍ଷ୍ମ ସ୍ତରରେ ସେହି ଈଶ୍ୱର ବା ପରମାତ୍ମା ଆପେ ଉଦ୍‌ଭାସିତ ହୋଇଉଠନ୍ତି । ଉପନିଷଦ୍‌ମାନଙ୍କରେ ମଧ୍ୟ ଆମେ ଏହି ଅଲୌକିକ ଆଧ୍ୟାତ୍ମିକ ଅନୁଭବ ନାନା ସ୍ଥାନରେ ବର୍ଣ୍ଣିତ ଥିବାର ଦେଖୁଁ । ଉପନିଷଦର ଋଷିମାନେ ମଧ୍ୟ 'ବ୍ରହ୍ମ' କଣ ପଚାରିଲେ ବେଳେ ବେଳେ ମୌନହିଁ ରହିଛନ୍ତି ବା ଉତ୍ତର ଦେଇଛନ୍ତି କେବଳ ପ୍ରତୀକ ସାହାଯ୍ୟରେ, ବା 'ନେତି' 'ନେତି' (ଏହା ନୁହେଁ, ଏହା ନୁହେଁ) କହି । ବୈଦିକ ଋଷିଙ୍କର ସେହି ମହାନ ଘୋଷଣା—

ବେଦାହମେତଂ ପୁରୁଷଂ ମହାନ୍ତଂ
ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍
ତମେବ ବିଦିତ୍ୱାତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।

[ଅଜ୍ଞାନ-ଅନ୍ଧକାରର ଆର ପଟେ ସୂର୍ଯ୍ୟୋଜ୍ଜ୍ୱଳ ଯେଉଁ ମହାନ୍ ପୁରୁଷ ଅବସ୍ଥିତ, ମୁଁ ତାଙ୍କୁ ଜାଣିଛି (ଦେଖିଛି) । ତାଙ୍କୁ ଦେଖିଲେ (ଜାଣିଲେ) ଯାଇ ମନୁଷ୍ୟ ମୃତ୍ୟୁକୁ ଅତିକ୍ରମ କରିପାରିବ । ଏହା ଛଡ଼ା ଅମୃତତ୍ୱ-ଲାଭର ଅନ୍ୟ ପନ୍ଥା ନାହିଁ ।]

ଗୀତା ଏହି ଶ୍ଳୋକଟିରେ ଏହି ଉପନିଷଦ୍‌ର ମହାର୍ଘ ଅଭିଜ୍ଞତାକୁ ସୂଚିତ କରି ରଖିଛନ୍ତି । ଗୌତମ ବୁଦ୍ଧ କହିଯାଇଛନ୍ତି—ଯେକୌଣସି ଲୋକ ଅଷ୍ଟାଙ୍ଗିକ ମାର୍ଗରେ ଗଲେ ତାଙ୍କର ପରି ନିର୍ବାଣ ବା ବୁଦ୍ଧତ୍ୱ ପ୍ରାପ୍ତ ହୋଇପାରିବ । ଗୀତା ମଧ୍ୟ ସେହିପରି କହୁଛନ୍ତି ଯେ, ଦେହାତ୍ମଭେଦ-ଜ୍ଞାନ ପୂରାପୂରି ଆସିଗଲେ ଯେକୌଣସି ସାଧକର ଅନ୍ତରରେ ଆତ୍ମିକ ସୂର୍ଯ୍ୟ ଆପେ ଆପେ ଭାସିଉଠିବ ।

୧୭

ତଦ୍‌ବୁଦ୍ଧୟସ୍ତଦାତ୍ମାନସ୍ତନ୍ନିଷ୍ଠାସ୍ତତ୍ପରାୟଣାଃ
ଗଚ୍ଛନ୍ତ୍ୟପୁନରାବୃତ୍ତିଂ ଜ୍ଞାନନିର୍ଧୂତକଲ୍ମଷାଃ । ୧୭ ।

ତଦ୍‌ବୁଦ୍ଧୟଃ (ଯାହାଙ୍କର ବୁଦ୍ଧି ଏହି ଦେହ ବା ପ୍ରକୃତିଉପରେ ନିବଦ୍ଧ ନ ରହି 'ତଦ୍' ବା ସେହି ଆତ୍ମା ବା ବ୍ରହ୍ମ ବା ଈଶ୍ୱରଙ୍କଠାରେ ନିହିତ) ତଦାତ୍ମାନଃ (ତାହାଙ୍କଠାରେ ଏକୀଭୂତ) ତନ୍ନିଷ୍ଠାଃ (ଯାହାଙ୍କର ସମଗ୍ର ନିଷ୍ଠା ସେହିଠାରେହିଁ ସମର୍ପିତ) ତତ୍ପରାୟଣାଃ (ସେହିହିଁ ଯାହାଙ୍କର ଏକକ ଲକ୍ଷ୍ୟ) [ସେହି ସାଧକମାନେ ଯାହାଙ୍କର] ଜ୍ଞାନନିର୍ଧୂତକଲ୍ମଷାଃ (ଜ୍ଞାନଦ୍ୱାରା ପାପ-ପ୍ରବଣତା ଉଚ୍ଛିନ୍ନ ହୋଇଯାଇଛି, ସେମାନେ) ଅ-ପୁନରାବୃତ୍ତିଂ ଗଚ୍ଛନ୍ତି (ଆଉ ଏ ସଂସାରକୁ ଫେରନ୍ତି ନାହିଁ) ।

**ଅନୁବାଦ**

ଯାହାଙ୍କର ବୁଦ୍ଧି ସେହି ଶ୍ରେଷ୍ଠ ପୁରୁଷଙ୍କଠାରେହିଁ ସର୍ବଦା ନ୍ୟସ୍ତ, ଯାହାଙ୍କର ସମଗ୍ର ଆତ୍ମାହିଁ ତାଙ୍କଠାରେ ସମର୍ପିତ ଓ ସେହିଠାରେ ନିତ୍ୟସ୍ଥିତ, ଯାହାଙ୍କର ସେହିହିଁ କେବଳ ଲକ୍ଷ୍ୟ, ସେହି ଜ୍ଞାନଦ୍ୱାରା-ଦୂରୀଭୂତ-କଳୁଷ ସାଧକମାନେ ଆଉ ପୁନର୍ଜନ୍ମ ଲାଭ କରନ୍ତି ନାହିଁ ।

**ବିଶେଷ ଭାଷ୍ୟ**

ପୂର୍ବ ଶ୍ଳୋକରେ କୁହାଯାଇଥିଲା ଯେ, 'ଜ୍ଞାନ' (ବୋଧି) ଲାଭ ହେଲେ ସୂର୍ଯ୍ୟୋଜ୍ଜ୍ୱଳ ଆତ୍ମା ଆପେ ଆପେ ପ୍ରକାଶିତ ହୋଇଉଠନ୍ତି । କିନ୍ତୁ ତାପରେ ? ପରିଣାମ କଣ ?

ଏ ଶ୍ଳୋକରେ କୁହାଯାଉଛି ଯେ, ସେପ୍ରକାର ଆତ୍ମ-ସାକ୍ଷାତ୍‌ଫଳରେ ସାଧକ ସମଗ୍ର ସଂସାରଚକ୍ରରୁ ମୁକ୍ତ ପାଇଯାନ୍ତି । ପାଠକେ ସ୍ମରଣ କରନ୍ତୁ ସେହି ବୈଦିକ ଋଷିବାଣୀ—

'ତମେବ ବିଦିତ୍ୱାତିମୃତ୍ୟୁମେତି' ।

ତାଙ୍କୁ ଜାଣିଲେ, ମନୁଷ୍ୟ ଅତି-ମୃତ୍ୟୁ ଲାଭ କରେ, ଅର୍ଥାତ୍ ମୃତ୍ୟୁକୁ ଅତିକ୍ରମ କରିଯାଏ—ଆଉ ଜନ୍ମ ହୁଏ ନା କି ମରେ ନା । ଏ ଶ୍ଳୋକରେ ଗୀତା ସେହି ପରମ ସତ୍ୟର ପ୍ରତିଧ୍ୱନି କରିଛନ୍ତି ମାତ୍ର । କିନ୍ତୁ ଇହଜଗତରେ ଥିଲାଯାଏ ଏପ୍ରକାର ଅଲୌକିକ ଅନୁଭବସଂପନ୍ନ ଲୋକ କପରି ବ୍ୟବହାର କରିଥାନ୍ତି ? ଆତ୍ମ-ସାକ୍ଷାତ୍କାର ମାନେ କଣ ମୃତ୍ୟୁ ବା ପରମାତ୍ମାରେ ବିଲୟ ? ଗୀତା ପର ଶ୍ଳୋକରେ ତାର ଉତ୍ତର ଦେଉଛନ୍ତି ।

୧୮

ବିଦ୍ୟାବିନୟସଂପନ୍ନେ ବ୍ରାହ୍ମଣେ ଗବି ହସ୍ତିନି
ଶୁନି ଚୈବ ଶ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ । ୧୮ ।

ପଣ୍ଡିତାଃ (ଆତ୍ମାନୁଭବୀ ଜ୍ଞାନୀମାନେ) ବିଦ୍ୟାବିନୟସଂପନ୍ନେ ବ୍ରାହ୍ମଣେ (ଉଭୟ ବିଦ୍ୟା ଓ ଭଦ୍ରତାଯୁକ୍ତ ବ୍ରାହ୍ମଣମାନଙ୍କପ୍ରତି), ଗବି (ଗୋରୁପ୍ରତି), ହସ୍ତିନି (ହାତୀପ୍ରତି), ଶୁନି (କୁକୁରପ୍ରତି), ଶ୍ୱପାକେ ଚ ଏବ (ଏବଂ ଚଣ୍ଡାଳପ୍ରତି ମଧ୍ୟ) ସମଦର୍ଶିନଃ (ସମଦର୍ଶୀ ହୋଇଥାନ୍ତି) ।

**ଅନୁବାଦ**

ଏହିପ୍ରକାର ଜ୍ଞାନୀମାନେ ବିଦ୍ୱାନ୍ ଅଥଚ ବିନୟସଂପନ୍ନ ବ୍ରାହ୍ମଣମାନଙ୍କପ୍ରତି ଓ ଚଣ୍ଡାଳମାନଙ୍କପ୍ରତି, ପୁଣି ଗୋରୁ, ହାତୀ, କୁକୁର ଇତ୍ୟାଦି ସକଳ ଜୀବପ୍ରତି ସମଦର୍ଶୀ ହୋଇଥାନ୍ତି ।

**ବିଶେଷ ଭାଷ୍ୟ**

କୁକୁର ଓ ଚଣ୍ଡାଳ ବ୍ରାହ୍ମଣ୍ୟ ସଂସ୍କୃତିରେ ଚିରକାଳ ଅପବିତ୍ର ବିବେଚିତ ଏବଂ ସେହି ହେତୁରୁ ଘୃଣ୍ୟ ହୋଇଆସିଛନ୍ତି । ପ୍ରାଣୀମାନଙ୍କଭିତରେ ମନୁଷ୍ୟପ୍ରତି ସବୁଠାରୁ କଲ୍ୟାଣଦାୟକ ଜୀବ ହେଉଛି ଗୋରୁ । ଭାରତବର୍ଷରେ ଗୋରୁ ନେଇ ଋଷି ଋଷି ଏବଂ ରାଜା ରାଜା ମଧ୍ୟରେ ଯୁଦ୍ଧ ହୋଇଯାଇଛି । ହାତୀ ହେଲା ଭାରତରେ ରାଜାର ପ୍ରତୀକ, ପୁଣି ନିଜେ ସେ ବଣର ରାଜା । ବ୍ରାହ୍ମଣ ତ ସହଜେ ସମାଜରେ ସବୁଠାରୁ ପୂଜ୍ୟଜନ । କିନ୍ତୁ ଏ ଭେଦାଭେଦ କେବଳ ସାଧାରଣ

ଲୋକଚକ୍ଷୁରେ । ଆତ୍ମସାକ୍ଷାତ୍କାରୀ ପ୍ରକୃତ ଜ୍ଞାନଚକ୍ଷୁରେ ଏ ସମସ୍ତେ କିନ୍ତୁ ସମାନ ବୋଧ ହେବେ । ନିଜଭିତରେ ଆତ୍ମାକୁ ଅନୁଭବ କରିସାରିଲାପରେ ସାଧକ ଦେଖିବେ ଯେ, ଏହି ସମଗ୍ର ବିଶ୍ୱହିଁ କେବଳ ଆତ୍ମା । ବାହାରର ନାମ ଓ ରୂପର ବ୍ୟାପକ ପ୍ରହେଳିକା କେବଳ ପ୍ରକୃତିସୃଷ୍ଟ । ଆକାଶ ତଳେ ତଳେ ସମସ୍ତେ ସମଗ୍ରଭାବରେ ଏକାତ୍ମିକ । ବାହାରର ହାତୀ, କୁକୁର, ବ୍ରାହ୍ମଣ, ଚଣ୍ଡାଳ ଆଦି ଭିନ୍ନତା, ଆତ୍ମାର ବିବର୍ତ୍ତନରେ ଭିନ୍ନ ଭିନ୍ନ ସ୍ତରଯୋଗୁଁ ହିଁ କେବଳ ବାହାରକୁ ଭିନ୍ନ ଭିନ୍ନ, କିନ୍ତୁ ବସ୍ତୁତଃ ସମସ୍ତେ ଏକବସ୍ତୁ—ଆତ୍ମା । ଗୀତା ଏହିପ୍ରକାର ସମତା-ବୋଧପ୍ରତି ବାରମ୍ବାର ଆମର ଦୃଷ୍ଟି ଆକର୍ଷଣ କରିବେ । ଏହାହିଁ ଗୀତା ଦର୍ଶନରେ ଜ୍ଞାନୀର, ଯୋଗୀର ଓ ଭକ୍ତର ମୁଖ୍ୟ ଲକ୍ଷଣ । ଗୀତା-ମତରେ ଆତ୍ମଦର୍ଶୀ ଲୋକ ସମାଜ-ସଂସାରରୁ ପଳାଇଯିବେ ନାହିଁ କି ମରିଯିବେ ନାହିଁ । ସେ ସଂସାରର ସକଳ କ୍ଷୁଦ୍ରତାର ଉପରକୁ ଉଠି, ସମଦର୍ଶୀ ବିଜ୍ଞଜନ ଭାବରେ ବିଚରଣ କରିବେ । ପର ଶ୍ଳୋକରେ ମଧ୍ୟ ତାହାହିଁ ସୂଚିତ ।

୧୯

ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ
ନିର୍ଦ୍ଦୋଷଂ ହି ସମଂ ବ୍ରହ୍ମ ତସ୍ମାଦ୍‌ବ୍ରହ୍ମଣି ତେ ସ୍ଥିତାଃ । ୧୯ ।

ଯେଷାଂ ମନଃ (ଯେଉଁମାନଙ୍କର ମନ) ସାମ୍ୟେ ସ୍ଥିତଂ (ସମସ୍ତଙ୍କପ୍ରତି ସମଭାବରେ ଅବସ୍ଥିତ) ଇହ ଏବ (ଏହି ସଂସାରରେ ଥାଇ ମଧ୍ୟ) ତୈଃ (ସେମାନଙ୍କଦ୍ୱାରା) ସର୍ଗଃ (ଏହି ସଂସାର ବା ପ୍ରକୃତି) ଜିତଃ (ବିଜିତ ବୋଲି ଧରାଯିବ) । ହି ବ୍ରହ୍ମ ସମଂ ନିର୍ଦ୍ଦୋଷଂ (ବ୍ରହ୍ମ ନିର୍ଦ୍ଦୋଷ ଓ ସମ) ତସ୍ମାତ୍ (ସେହିହେତୁରୁ) ତେ (ସେହି ସମଦର୍ଶୀ ମହାତ୍ମାମାନେ) [ଜୀବନକାଳରେ ମଧ୍ୟ] ବ୍ରହ୍ମଣି ଏବ ସ୍ଥିତାଃ (ବ୍ରହ୍ମରେହିଁ ଅବସ୍ଥାନ କରନ୍ତି ବୋଲି ବୁଝାଯିବ) ।

## ଅନୁବାଦ

ଯେଉଁମାନଙ୍କର ମନ ଏହିପରିଭାବରେ ସମସ୍ତଙ୍କପ୍ରତି ସମଭାବରେ ପ୍ରେରିତ, ଇହସଂସାରରେ ଥିଲେ ମଧ୍ୟ ସେମାନଙ୍କଦ୍ୱାରା ଏହି ସଂସାର ବିଜିତ ବୋଲି ଜାଣିବ । ଯେହେତୁ ବ୍ରହ୍ମ ସ୍ୱୟଂ ଆତ୍ମ-ପରଭାବ-ଦୋଷରହିତ ଓ ସମସ୍ତଙ୍କପ୍ରତି ସମଦର୍ଶୀ, ସେହି ସମଦର୍ଶୀ ମହାତ୍ମାମାନେ ସେମାନଙ୍କ ଜୀବନକାଳରେ ମଧ୍ୟ ବ୍ରହ୍ମରେହିଁ ଅବସ୍ଥାନ କରିଥାନ୍ତି ବୋଲି ଜାଣିବ ।

୨୦

ନ ପ୍ରହୃଷ୍ୟେତ୍ ପ୍ରିୟଂ ପ୍ରାପ୍ୟ ନୋଦ୍‌ବିଜେତ୍ ପ୍ରାପ୍ୟଚାପ୍ରିୟମ୍
ସ୍ଥିରବୁଦ୍ଧିରସଂମୂଢ଼ୋ ବ୍ରହ୍ମବିଦ୍‌ବ୍ରହ୍ମଣି ସ୍ଥିତଃ । ୨୦ ।

ବ୍ରହ୍ମଣି ସ୍ଥିତଃ (ବ୍ରହ୍ମରେ ଅବସ୍ଥିତ) ସ୍ଥିରବୁଦ୍ଧିଃ (ସ୍ଥିରବୁଦ୍ଧି) ଅସଂମୂଢ଼ଃ (ମୋହଶୂନ୍ୟ) ବ୍ରହ୍ମବିତ୍ (ବ୍ରହ୍ମଜ୍ଞ ଜନ) ପ୍ରିୟଂ ପ୍ରାପ୍ୟ (ଖୁସି କରେଇବା ଦ୍ରବ୍ୟ ବା ପ୍ରିୟଜନ ପାଇ ମଧ୍ୟ) ନ ପ୍ରହୃଷ୍ୟେତ୍ (ଆନନ୍ଦରେ ବିହ୍ୱଳ ହୋଇପଡ଼ନ୍ତିନି) [ବା] ଅପ୍ରିୟଂ ଚ ପ୍ରାପ୍ୟ (ଅପ୍ରିୟ ଦ୍ରବ୍ୟ, ଘଟଣା ବା ବ୍ୟକ୍ତିକ ପାଇ ମଧ୍ୟ) ନ ଉଦ୍‌ବିଜେତ୍ (ବିଚଳିତ ହୁଅନ୍ତି ନାହିଁ) ।

## ଅନୁବାଦ

ବ୍ରହ୍ମରେ ଅବସ୍ଥିତ ସେହି ବ୍ରହ୍ମବିତ୍ ସ୍ଥିରବୁଦ୍ଧି ଓ ମୋହଶୂନ୍ୟ ହୋଇ-ଥିବାରୁ ତଥାକଥିତ ସୁଖ ପାଇ ଆନନ୍ଦରେ ବିହ୍ୱଳ ହୋଇଯାନ୍ତି ନାହିଁ, କି ଅପ୍ରିୟ ଘଟଣା ଭେଟି ବିଚଳିତ ହୁଅନ୍ତି ନାହିଁ ।

## ବିଶେଷ ଭାଷ୍ୟ

ତେବେ ଏହି ସମଦର୍ଶୀ ଓ ସମାନୁଭବୀ ତଥାକଥିତ ଜ୍ଞାନୀ ଲୋକଗୁଡ଼ିକ ଜୀବନରେ କଣ 'ସୁଖ' ବୋଲି କିଛି କଥା ଜାଣନ୍ତି ନାହିଁ ? ଯାହା ନିକଟରେ ସୁଖ ଓ ଦୁଃଖ ସମାନ, ତାର ସୁଖବୋଧର ଅର୍ଥ କଣ ? ପର ଶ୍ଳୋକରେ ଗୀତା ତାର ଉତ୍ତର ଦେଉଛନ୍ତି ।

୨୧

ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍ ସୁଖମ୍
ସ ବ୍ରହ୍ମଯୋଗଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ । ୨୧ ।

ବାହ୍ୟସ୍ପର୍ଶେଷୁ (ବାହ୍ୟ ବସ୍ତୁ ବା ପ୍ରାଣୀ ବା ଜନର ସ୍ପର୍ଶ ବା ସମ୍ପର୍କ ବିଷୟରେ) ଅସକ୍ତାତ୍ମା (ଆସକ୍ତିଶୂନ୍ୟ ସେହି ଲୋକ) ଯତ୍ ସୁଖଂ ଆତ୍ମନି ବିନ୍ଦତି (ଯେଉଁ ସୁଖକୁ ଆତ୍ମାରେ ପାଏ) ସଃ ବ୍ରହ୍ମଯୋଗଯୁକ୍ତାତ୍ମା (ବ୍ରହ୍ମରେ ଯୋଗଯୁକ୍ତ ସେହି ଲୋକ) ଅକ୍ଷୟଂ ସୁଖଂ ଅଶ୍ନୁତେ (ଅକ୍ଷୟ ସୁଖ ଭୋଗ କରନ୍ତି) ।

## ଅନୁବାଦ

ସେହି ବ୍ରହ୍ମଯୁକ୍ତାତ୍ମା ବାହ୍ୟସ୍ପର୍ଶଜନିତ ସୁଖାଦିପ୍ରତି ଅନାସକ୍ତ ରହି ନିଜର ଅନ୍ତରରେ ଯେଉଁ ସୁଖ ଅନୁଭବ କରିଥାନ୍ତି, ତାହାର କ୍ଷୟ ନାହିଁ ।

## ବିଶେଷ ଭାଷ୍ୟ

ବାହାରରୁ ଯେଉଁ ସୁଖ ଆସେ, ଆମେ ସାଧାରଣତଃ ତାକୁହିଁ 'ସୁଖ' କହିଥାଉଁ ଓ ସେହିସବୁପାଇଁ ଧାଉଁ । କିନ୍ତୁ ସେସବୁ ସବୁବେଳେ କ୍ଷଣସ୍ଥାୟୀ ଏବଂ ଅଧିକନ୍ତୁ ପରିଣାମରେ ଦୁଃଖଦ । ଧର୍ମସାଧନା ଚିରସ୍ଥାୟୀ ଓ ଚିରକଲ୍ୟାଣପ୍ରଦ ଆନନ୍ଦର ଅନ୍ୱେଷଣ ଛଡ଼ା ଆଉ କିଛି ନୁହେଁ । ଗୀତାରେ ଆମେ ବାରମ୍ବାର ଏହି ଚିରନ୍ତନ, ଅବିଚଳ ଓ ଅକ୍ଷୟ ଆନନ୍ଦର ବାର୍ତ୍ତା ପାଇବା । ଏହି ଶ୍ଳୋକରେ ଆନନ୍ଦର ତିନିଗୋଟି ପ୍ରକାର ସୂଚିତ ହୋଇଛି । ଗୋଟିଏ ହେଲା—ବାହ୍ୟସ୍ପର୍ଶ ବା ବାହାର ସମ୍ପର୍କଜନିତ ଆନନ୍ଦ ସାଧାରଣତଃ କ୍ଷଣସ୍ଥାୟୀ ଓ ଦୁଃଖଦ ହେବା ହେତୁ ଗୀତା ତାହାକୁ ସୁପାରିସ୍ କରୁ ନାହାନ୍ତି । ପ୍ରକୃତ ସୁଖ ହେଲା ଆତ୍ମଜ । କିନ୍ତୁ ଏପରି ପାର୍ଥିବ ସିଦ୍ଧି ଅଛି ଯାହାକୁ ପୂରା 'ବାହ୍ୟସ୍ପର୍ଶଜନିତ' ବୋଲି ମଧ୍ୟ କୁହାଯାଇ-ପାରିବନି, ଅଥଚ ଯାହା ସଂପୂର୍ଣ୍ଣ ଆତ୍ମଚେଷ୍ଟାଉପରେ ଠିଆ ନ ହୋଇ କେବଳ କୂଟ-କପଟ ଉପାୟରେ ବା ପ୍ରଭାବଶାଳୀ ଲୋକଙ୍କ ଅନୁଗ୍ରହ ଯୋଗୁଁ ସମ୍ଭବ ହୋଇଛି । ତାହା ମଧ୍ୟ ସମ୍ମାନନୀୟ ନୁହେଁ ବା ଶ୍ରେଷ୍ଠ ସୁଖାବହ ନୁହେଁ । ସେହି-ପରି ମଧ୍ୟ ଅନ୍ୟାନ୍ୟ ସୁଖ । ଯୌନ-ଭୋଜନାଦି ବାହାରୁ ଉତ୍ପନ୍ନ ସୁଖପ୍ରତି ଅନାସକ୍ତ ରହି, ଅନ୍ୟର ଅନୁଗ୍ରହ-ଲବ୍ଧ ସୁଖଉପରେ ନିର୍ଭର ନ କରି, ସଂପୂର୍ଣ୍ଣ-ଆତ୍ମପ୍ରଚେଷ୍ଟାଦ୍ୱାରା ଯେଉଁ ସିଦ୍ଧି ଲାଭ କରାଯାଏ, ସେହି ସିଦ୍ଧିହିଁ ଶ୍ରେଷ୍ଠ ଓ ସମ୍ମାନନୀୟ ପାର୍ଥିବ ସିଦ୍ଧି । ତେବେ 'ପାର୍ଥିବ' ଥିବା ହେତୁ, ସମ୍ମାନନୀୟ ହେଲେହେଁ ତାହା ମଧ୍ୟ କ୍ଷଣସ୍ଥାୟୀ ଏବଂ ତାହା ମଧ୍ୟ ପୂରା ଦୁଃଖଶୂନ୍ୟ ନୋହିପାରେ । ଗୀତା କହୁଛନ୍ତି, ଏହି ଯେ ଆତ୍ମ-ନିର୍ଭରଶୀଳ ବା ଆତ୍ମ-ମଗ୍ନ ଲୋକ, ଅର୍ଥାତ୍ କବି, ବିଜ୍ଞାନୀ ବା ସମାଜସେବୀ—ସେ ଆଉ ଧାପେ ଆଗକୁ ବା ଉପରକୁ ଯାଉ ନାହାନ୍ତି କାହିଁକି ? ସେ ଯଦି 'ଯୋଗଯୁକ୍ତ' ହୋଇ 'ବ୍ରହ୍ମାର୍ପିତ-ପ୍ରାଣ' ହୋଇଯାନ୍ତି, ତେବେ ସେ କ୍ଷୟହୀନ ସୁଖ ଓ ଶାନ୍ତି ପାଇବେ । କିନ୍ତୁ ଆମପରି ମୂଢ଼ ଅବିଶ୍ୱାସୀମାନଙ୍କୁ ଅଧିକ ବୁଝାଇବାପାଇଁ ବାହ୍ୟଦ୍ରବ୍ୟ-ଜନିତ ସୁଖ ଉପରେ ଗୀତା ପରି ଶ୍ଳୋକରେ ପୁଣି ଅତି ସତ୍ୟ କଥା କହୁଛନ୍ତି—

୨୨

ଯେ ହି ସଂସ୍ପର୍ଶଜା ଭୋଗା ଦୁଃଖଯୋନୟ ଏବ ତେ
ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ । ୨୨ ।

[ହେ] କୌନ୍ତେୟ (ଅର୍ଜୁନ), ଯେ ଭୋଗାଃ (ଯେଉଁସବୁ ସୁଖ) ସଂସ୍ପର୍ଶଜାଃ ହି (ବାହ୍ୟସ୍ପର୍ଶରୁହିଁ ମିଳିଥାଏ) ତେ (ସେସବୁ) ଦୁଃଖଯୋନୟଃ ଏବ (ନିଶ୍ଚିତଭାବରେ ଦୁଃଖର ଜନକ) । [ସେସବୁ] ଆଦ୍ୟନ୍ତବନ୍ତଃ (ଆରମ୍ଭ ଓ ଶେଷଯୁକ୍ତ, ଅର୍ଥାତ୍ ଅଚିରସ୍ଥାୟୀ) । [ତେଣୁ] ତେଷୁ (ସେସବୁରେ) ବୁଧଃ (ଜ୍ଞାନୀ ଲୋକ) ନ ରମତେ (ମାତି ନ ଥାନ୍ତି) ।

## ଅନୁବାଦ

"ହେ ଅର୍ଜୁନ! ଜାଣିରଖ ଯେ, ଏ ଜଗତରେ ଯେତେ ସବୁ ଭୋଗ କେବଳ ବାହ୍ୟସ୍ପର୍ଶଜନିତ, ସେସବୁ ନିଶ୍ଚିତଭାବରେ ଦୁଃଖଜନକ । ସେସବୁର ଆରମ୍ଭ ଓ ଶେଷ ଅଛି, ଅର୍ଥାତ୍ ସେସବୁ ଅଚିରସ୍ଥାୟୀ ମାତ୍ର । ସେହି କାରଣରୁ ପ୍ରକୃତ ଜ୍ଞାନୀ ଲୋକେ ସେଥିରେ ମାତି ନ ଥାନ୍ତି ।"

## ବିଶେଷ ଭାଷ୍ୟ

ପାଠକେ ନିଜେ ସଂସାରର ତଥାକଥିତ 'ସୁଖ'କୁ ଗଭୀର ବିଶ୍ଳେଷଣ ସହ ବିଚାର କରିବସିଲେ ଏଇ ସିଦ୍ଧାନ୍ତରେ ବୋଧହୁଏ ନିଶ୍ଚୟ ପହଞ୍ଚିବେ ଯେ, ଆମର ଅଧିକାଂଶ ସୁଖ କେବଳ 'ବାହ୍ୟସ୍ପର୍ଶ' ମାତ୍ର । ବଡ଼ ସୁଖ ବୋଲି ଧରାଯାଉଥିବା ଯୌନ ଓ ଭୋଜନ ସୁଖହିଁ ମୂଳତଃ ସେହି ସ୍ପର୍ଶଜ ସୁଖ ମାତ୍ର । ସେସବୁ ଆରମ୍ଭ ହୁଅନ୍ତି ଓ ଶେଷ ବି ହୁଅନ୍ତି, ଅର୍ଥାତ୍ କ୍ଷଣସ୍ଥାୟୀ ; ଏବଂ ସେଇ କ୍ଷଣସ୍ଥାୟିତା ହେତୁ ସେସବୁପାଇଁ ଜୀବନଯାକ ଆମଭିତରେ 'ଆଉ ଆଣ' 'ଆଉ ଆଣ' ଚିତ୍କାର ଚାଲିଛି । ପୁଣି ଯେହେତୁ ସେହି କ୍ଷଣସ୍ଥାୟୀ ସୁଖପାଇଁ ମଧ୍ୟ ଆମଭିତରେ ବାଡ଼ଆବାଡ଼ି, ତଜ୍ଜନିତ ସଂଗ୍ରାମ-ସଂଘର୍ଷ ଫଳରେ ସାଧାରଣତଃ ସେସବୁ ଦୁଃଖଜ ହୋଇଥାନ୍ତି । ସେହିସବୁ ଆପାତ-ସୁଖ ପଛରେ ଜୀବନଯାକ ଧାଇଁ ଧାଇଁ, ପାଇ ପାଇ ଓ ପୁଣି ହରାଇ ହରାଇ, ଆମେ ଶେଷରେ ଯେଉଁ ଶୂନ୍ୟକୁ ସେହି ଶୂନ୍ୟ । ଅଥଚ, ସେସବୁ ଫଳରେ ପୁଞ୍ଜୀଭୂତ ଜଞ୍ଜାଳସବୁକୁ ଜୀବନଯାକ ଆମକୁ ବୋହିବାକୁ ହୋଇଥାଏ । ପ୍ରକୃତ ଜ୍ଞାନୀ ଲୋକ ଯେ ଏପ୍ରକାର ସୁଖପ୍ରତି ବୀତଶ୍ରଦ୍ଧ ରହିବ, ଏଥିରେ ଆଶ୍ଚର୍ଯ୍ୟର କଥା କଣ ଅଛି ? 'ନ ତେଷୁ ରମତେ ବୁଧାଃ' ।

ପରବର୍ତ୍ତୀ ଶ୍ଳୋକରେ ଗୀତା ତେଣୁ ଏସବୁରେ-ଭୁଲି-ନ-ଯିବା ଲୋକକୁହିଁ ଯୁକ୍ତଯୁକ୍ତଭାବରେ ପ୍ରଶଂସା କରିଛନ୍ତି ।

୨୩

ଶକ୍ନୋତୀହୈବ ଯଃ ସୋଢୁଂ ପ୍ରାକ୍‌ଶରୀରବିମୋକ୍ଷଣାତ୍
କାମକ୍ରୋଧୋଦ୍‌ଭବଂ ବେଗଂ ସ ଯୁକ୍ତଃ ସ ସୁଖୀ ନରଃ । ୨୩ ।

ଯଃ (ଯେଉଁ ଲୋକ) ଶରୀରବିମୋକ୍ଷଣାତ୍ ପ୍ରାକ୍ (ଦେହତ୍ୟାଗ କରିବା ପୂର୍ବରୁ ଅର୍ଥାତ୍ ଜୀବନକାଳରେ, ପୂର୍ଣ୍ଣ ସ୍ୱାସ୍ଥ୍ୟରେ ଥାଇ ମଧ୍ୟ) କାମକ୍ରୋଧୋଦ୍‌ଭବଂ ବେଗଂ (କାମ ଓ କ୍ରୋଧଜନିତ ଉତ୍ତେଜନାକୁ) ଇହୈବ ସୋଢୁଂ (ଏହି ପୃଥିବୀରେହିଁ ସହିଯିବାକୁ, ସମ୍ଭାଳିନେବାକୁ) ଶକ୍ନୋତି (ପାରନ୍ତି), ସ ଯୁକ୍ତଃ (ସେହିଁ ଯୋଗୀ), ସ ସୁଖୀ ନରଃ [ଏବଂ] (ସେହିଁ ପ୍ରକୃତ ସୁଖୀ ଲୋକ ) ।

## ଅନୁବାଦ

ଯେଉଁ ଲୋକ ଦେହତ୍ୟାଗପୂର୍ବରୁ ଅର୍ଥାତ୍ ଜୀବନକାଳରେ ପୂର୍ଣ୍ଣ ସ୍ୱାସ୍ଥ୍ୟରେ ଥାଇ ମଧ୍ୟ କାମ-କ୍ରୋଧ-ଜନିତ ଉତ୍ତେଜନାସବୁକୁ ନିଜାୟତ୍ତ ରଖିପାରନ୍ତି, ତାଙ୍କୁହିଁ କୁହାଯିବ ଯୋଗୀ, ଏବଂ ସେହିଁ ହେବେ ପ୍ରକୃତ ସୁଖର ଅଧିକାରୀ ।

## ବିଶେଷ ଦ୍ରଷ୍ଟବ୍ୟ

ଆମ ଜୀବନ ଓ ଚିନ୍ତାରେ 'ପୁରୁଷ' ଓ 'ପ୍ରକୃତି'ର ଭିନ୍ନ ଭିନ୍ନ ଭୂମିକା ପୂର୍ବରୁ ଆଲୋଚିତ ହୋଇଗଲାଣି । ପାଠକେ ତାହା ସ୍ମରଣ କରନ୍ତୁ । 'ପ୍ରକୃତି'ର ଅଧିଷ୍ଠାନ ହେଲା ଆମର ଶରୀର । ବସ୍ତୁତଃ ଶରୀରହିଁ ପ୍ରକୃତି । ଏହି ପ୍ରକୃତିହିଁ ଆମକୁ ବାହାରର ପ୍ରକୃତି ଆଡ଼କୁ ଅହରହ ଧାବମାନ କରାଇଥାଏ ଏବଂ ଆମ ମନକୁ ସର୍ବଦା ଅସ୍ଥିର ରଖି ଆହୁରି ଆହୁରି ବାହ୍ୟ ବା 'ପ୍ରାକୃତିକ' ସୁଖର (ବାହ୍ୟସ୍ପର୍ଶଜନିତ ସୁଖର) ସଂଧାନପାଇଁ ଧାବମାନ କରାଇଥାଏ । କିନ୍ତୁ ଗୀତାଙ୍କ ମତରେ, ଯୋଗୀ ସେହି, ଯେ ଜୀବନକାଳ ମଧ୍ୟରେ ପ୍ରକୃତିର ଅଧିଷ୍ଠାନ ଏହି ଶରୀରକୁ ବୋହି ମଧ୍ୟ ସେଥିରୁ ଅହରହ ଉଦ୍ଭୂତ ହେଉଥିବା କାମ (ଭିନ୍ନ ଭିନ୍ନ ତୃଷ୍ଣା ଓ ଲାଳସା) ଓ କ୍ରୋଧ (ଆଶା କରାହେଉଥିବା ଦ୍ରବ୍ୟ ନ ମିଳିଲେ ଜାତ ହେଉଥିବା ହିଂସା, ରାଗ ଓ ଦ୍ୱେଷ ଇତ୍ୟାଦି)ର ଉତ୍ତେଜନାକୁ ନିଜ ଆୟତ୍ତରେ ରଖିପାରିଥାନ୍ତି । ଏବଂ ଗୀତାଙ୍କ ମତରେ ଏହିପରି ଲୋକହିଁ ପ୍ରକୃତ ପାର୍ଥିବ ସୁଖ ଓ ଶାନ୍ତି ଭୋଗ କରିଥାନ୍ତି ।

ପର ଶ୍ଲୋକରେ ଏହି ବାହ୍ୟ-ସୁଖପ୍ରତି ଅନାସକ୍ତ ଲୋକର ଆହୁରି ସୁନ୍ଦର ବର୍ଣ୍ଣନା ଦିଆଯାଉଛି ।

୨୪

ଯୋଽନ୍ତଃସୁଖୋଽନ୍ତରାରାମସ୍ତଥାନ୍ତର୍ଜ୍ୟୋତିରେବ ଯଃ
ସ ଯୋଗୀ ବ୍ରହ୍ମନିର୍ବାଣଂ ବ୍ରହ୍ମଭୂତୋଽଧିଗଚ୍ଛତି । ୨୪ ।

ଯଃ ଅନ୍ତଃସୁଖଃ (ଯେ ବାହାରକୁ ସୁଖର ଅନ୍ୱେଷଣରେ ନ ଯାଇ ସୁଖକୁ ନିଜ ଅନ୍ତରରେହିଁ ପାଇଥାନ୍ତି), ଅନ୍ତରାରାମଃ (ଯେ ନିଜ ଅନ୍ତରରେହିଁ ଆରାମ ବା ଆନନ୍ଦ ପାଇଥାନ୍ତି), ତଥା ଯଃ ଅନ୍ତର୍ଜ୍ୟୋତିଃ ଏବ (ଏବଂ ଯେ ପୁଣି ନିଜ ଅନ୍ତର-ମଧ୍ୟରେହିଁ ଜ୍ଞାନାଲୋକ ଖୋଜି ପାଇଛନ୍ତି), ସଃ ଯୋଗୀ (ସେହି ଯୋଗୀ) ବ୍ରହ୍ମଭୂତଃ (ବ୍ରହ୍ମ ସହିତ ଏକୀଭୂତ ହୋଇଯାଇ) ବ୍ରହ୍ମନିର୍ବାଣଂ ଅଧିଗଚ୍ଛନ୍ତି (ବ୍ରହ୍ମରେ ଲୟ ବା ମୋକ୍ଷ ପ୍ରାପ୍ତ ହୁଅନ୍ତି) ।

## ଅନୁବାଦ

"ହେ ଅର୍ଜୁନ, ଯେଉଁ ଲୋକ ବାହାରେ ସୁଖର ଅନ୍ୱେଷଣ ନ କରି ତାହା ନିଜ ଅନ୍ତରରେହିଁ ଖୋଜିପାଇଥାନ୍ତି, ଅର୍ଥାତ୍ ଯେ ଅନ୍ତରାରାମ, ଯାହାଙ୍କର ଅନ୍ତର ସ୍ୱୀୟ ଆଲୋକରେ ଉଦ୍‌ଭାସିତ, ସେହିଁ ପ୍ରକୃତ ଯୋଗୀ । ଅନ୍ତତଃ ବ୍ରହ୍ମ ସହିତ ଏକୀଭୂତ ହୋଇଯାଇ ସେ ଶେଷରେ ବିଶ୍ୱ-ବ୍ୟାପ୍ତ ପରଂବ୍ରହ୍ମରେହିଁ ଲୀନ ହୋଇଥାନ୍ତି ।"

## ବିଶେଷ ଭାଷ୍ୟ

ଗୀତାର ଶ୍ରେଷ୍ଠ ଶ୍ଳୋକମାନଙ୍କ ମଧ୍ୟରୁ ଏହା ଏକତମ । ଏହି ଶ୍ଳୋକରେ ଆମେ ଗୀତାର ଆଦର୍ଶମାନଙ୍କର ଏକ ମନୋଜ୍ଞ ଚିତ୍ର ପାଇଯାଉଛୁ । ଯିଏ ଗୁଡ଼ାଏ ବହି ପଢିଥିବେ ବା ଗୁଡ଼ାଏ ବହି ଲେଖିଥିବେ, ଯିଏ ସମାଜରେ ପ୍ରଭାବ-ପ୍ରତିପତ୍ତିଶାଳୀଙ୍କି ବା ଯିଏ ଗୁଡ଼ାଏ ଟଙ୍କାପଇସା ଜମା କରିପାରିଛନ୍ତି, ଆମେ ସାଧାରଣତଃ ସେହିମାନଙ୍କୁ ସମ୍ମାନ ଦେଉଁ, ଈର୍ଷା କରୁଁ ଏବଂ ନିଜେ ମଧ୍ୟ ସେହିପରି ହେବାକୁ ଇଚ୍ଛା କରୁଁ । ଗୀତା ଏପ୍ରକାର ତଥାକଥିତ ପାର୍ଥିବ ସିଦ୍ଧି-ଉପରେ ନୀରବ । ଗୀତା ଆମ ପ୍ରତ୍ୟେକଙ୍କଠାରୁ ଚାହାନ୍ତି କେବଳ ଯୋଡ଼ାଏ ଉଦ୍ୟମ—(୧) ଲୋକସଂଗ୍ରହର ଆଦର୍ଶକୁ ଆଖିରେ ରଖି ଆମେ ପ୍ରତ୍ୟେକେ ଫଳାସକ୍ତିଶୂନ୍ୟ ହୋଇ ବା ନିଃସ୍ୱାର୍ଥଭାବରେହିଁ ନିଜ ନିଜର କର୍ତ୍ତବ୍ୟ କର୍ମ କରିଚାଲିବା ; (୨) ଯେହେତୁ ଆମ ଅନ୍ତରରେ ସକଳ ଜ୍ଞାନ, ସକଳ ଆନନ୍ଦର ଉତ୍ସ ବିଶ୍ୱାତ୍ମା ପ୍ରତିଷ୍ଠିତ, ଆମର ସକଳ ପ୍ରେରଣା, ସକଳ ଉତ୍ସାହ, ସକଳ ଆଲୋକ ଆମେ ସେଇଠାରୁହିଁ ପାଇବାକୁ ଚେଷ୍ଟା କରିବା ।

ଗୀତା ଧର୍ମାଭ୍ୟାସ ନାମରେ କୌଣସିଠାରେ ହେଲେ ତୀର୍ଥଯାତ୍ରା ଓ ପୁରୋହିତ ପରିତୋଷଣ ବା ହୋମକର୍ମାଦି ବ୍ୟୟସାଧ୍ୟ ବାହ୍ୟାନୁଷ୍ଠାନପାଇଁ ଉପଦେଶ ଦେଇ ନାହାନ୍ତି ।

ଗୀତାର ଆଦର୍ଶ ମାନବ ଅନ୍ତର୍ଜ୍ୟୋତି, ଅନ୍ତରାରାମ ଓ ଅନ୍ତଃସୁଖ । ଅଥଚ ଗୀତାର ସେହି ଆଦର୍ଶ ମାନବ ସଙ୍କୁଚିତାତ୍ମା ବା ସ୍ୱାର୍ଥକେନ୍ଦ୍ରିକ ନୁହନ୍ତି । ପରବର୍ତ୍ତୀ ଶ୍ଳୋକ ଏହି ଆଶଙ୍କା ମଧ୍ୟ ଦୂର କରିଦେଇଛି ।

୨୫

ଲଭନ୍ତେ ବ୍ରହ୍ମନିର୍ବାଣମୃଷୟଃ କ୍ଷୀଣକଲ୍ମଷାଃ
ଛିନ୍ନଦ୍ୱୈଧା ଯତାତ୍ମାନଃ ସର୍ବଭୂତହିତେ ରତାଃ । ୨୫ ।

କ୍ଷୀଣକଲ୍ମଷାଃ (ନିଷ୍ପାପ) ଛିନ୍ନଦ୍ୱୈଧାଃ (ତ୍ୟକ୍ତସଂଶୟ) ଯତାତ୍ମାନଃ (ସମାହିତଚିତ୍ତ) [ଅଥଚ] ସର୍ବଭୂତହିତେ ରତାଃ (ସକଳ ପ୍ରାଣୀଙ୍କର ମଙ୍ଗଳରେ ଅଭିନିବିଷ୍ଟ) [ସେହି] ଋଷୟଃ (ଋଷିମାନେ) ବ୍ରହ୍ମନିର୍ବାଣଂ ଲଭନ୍ତେ (ବ୍ରହ୍ମରେ ଲୀନ ହୋଇଯାନ୍ତି ) ।

**ଅନୁବାଦ**

ଏହିପ୍ରକାର ନିଷ୍ପାପ, ତ୍ୟକ୍ତସଂଶୟ, ସମାହିତଚିତ୍ତ, ଅଥଚ ସର୍ବ-ପ୍ରାଣୀର ହିତରେ ରତ ଋଷିମାନେ ବ୍ରହ୍ମନିର୍ବାଣ ଲାଭ କରିଥାନ୍ତି ।

**ବିଶେଷ ଭାଷ୍ୟ**

ଅନାସକ୍ତି ଓ କର୍ତ୍ତୃତ୍ୱାଭିମାନତ୍ୟାଗ ଇତ୍ୟାଦି ହେଲି ମନୁଷ୍ୟର ନିଷେଧାତ୍ମକ ବା ନାସ୍ତିସୂଚକ (negative) ଗୁଣ । କିନ୍ତୁ କେବଳ ନାସ୍ତି ବା ନିଷେଧ ଦେଇ ଆମର ବ୍ୟକ୍ତିତ୍ୱ ପୂର୍ଣ୍ଣତା ଲାଭ କରିବ କିପରି ? ଆସ୍ତିସୂଚକ (positive) ଗୁଣ ମଧ୍ୟ ସେଥିପାଇଁ ଏକାନ୍ତ ଆବଶ୍ୟକ । ଦୃଷ୍ଟାନ୍ତସ୍ୱରୂପ— ଅହିଂସା ହେଲି ଏକାନ୍ତରେ ଏକ ନିଷେଧାର୍ଥକ ଗୁଣ । ମାତ୍ର ଆତ୍ମିକ ସାଧନାପାଇଁ ତାହା ଯଥେଷ୍ଟ ନୁହେଁ । ପ୍ରକୃତ ଆଧ୍ୟାତ୍ମିକ ଉନ୍ନତିପାଇଁ ତାର ବିପରୀତାତ୍ମକ ପଜିଟିଭ (positive) ଗୁଣ—କରୁଣା ବା ଜୀବେ-ଦୟା ଆମକୁ ଅଭ୍ୟାସ କରିବାକୁ ହେବ । ଗୀତା ତେଣୁ ବାରମ୍ବାର ଯୋଗୀ ବା ଧର୍ମସାଧକଙ୍କୁ 'ଲୋକ-ସଂଗ୍ରହୀ' ଓ 'ସର୍ବଭୂତହିତେ ରତାଃ' ହେବାପାଇଁ ଉପଦେଶ ଦେଇଛନ୍ତି ।

କିନ୍ତୁ ଏପ୍ରକାର 'ଫିଲାନ୍‌ଥ୍ରପି' (philanthropy) ବା ଜନସେବା ବା ଜୀବସେବା କରିବା ପୂର୍ବରୁ ମଧ୍ୟ ସାଧକ ନିଜକୁ ପରିପୂର୍ଣ୍ଣଭାବରେ

ଯେ ନିଜକୁ ଗଢ଼ିପାରିନ, ସେ ସଂସାରକୁ ଗଢ଼ିବ ବା କିପରି ? ଗୀତାର ସାଧକ ତେଣୁ ଏକ ଦିଗରେ ନିଜଭିତରେ ପରମାତ୍ମାର ସନ୍ଧାନ କରିବେ ଏବଂ ଅନ୍ୟ ଦିଗରେ ସମାଜ-ସଂସାରକୁ ସେହି ପରମାତ୍ମାର ବାହ୍ୟ ପ୍ରତିମା ବୋଲି ମନେ କରି ନିଃସ୍ୱାର୍ଥଭାବରେ ତାର ସେବା କରି, ସର୍ବଭୂତହିତେ-ରତ ଓ ଲୋକ-ସଂଗ୍ରାହୀ ହେବେ,—ଏହାହିଁ ଗୀତାର ପରମ ଆଦର୍ଶ ।

ସ୍ୱାଧୀନତା-ପର ଭାରତବର୍ଷରେ ଦେଖାଦେଇଥିବା ବ୍ୟାପକ ବିଶୃଙ୍ଖଳାର ପରମ ହେତୁ ହେଲା ଏହି ଯେ, ଯେଉଁମାନଙ୍କ ହାତରେ ଏହି ବିରାଟ ଉପ-ମହାଦେଶ ପଡ଼ିଲା, ସେମାନେ ନିଜେ ଗଢ଼ାହୋଇ ନ ଥିଲେ । ସେମାନେ ନିଜେ ଦରଗଢ଼ା ଥିବାରୁ ସମଗ୍ର ଜାତିଟାକୁ ସେମାନେ ସେହି ଅବସ୍ଥାକୁ ଟାଣିଆଣିଲେ । ଗୀତା ପରଶ୍ଳୋକରେ ତେଣୁ ବ୍ୟକ୍ତିଭିର ସେହି ଅଂଶଉପରେ ଜୋର୍ ଦେଇ କହୁଛନ୍ତି ।

୨୬

କାମକ୍ରୋଧବିୟୁକ୍ତାନାଂ ଯତୀନାଂ ଯତଚେତସାମ୍
ଅଭିତୋ ବ୍ରହ୍ମନିର୍ବାଣଂ ବର୍ତ୍ତତେ ବିଦିତାତ୍ମନାମ୍ । ୨୬ ।

କାମକ୍ରୋଧବିୟୁକ୍ତାନାଂ (କାମ ଓ କ୍ରୋଧାଦିରୁ ବିମୁକ୍ତ) ଯତଚେତସାଂ (ସଂଯତଚିତ୍ତ) ବିଦିତାତ୍ମନାଂ (ଆତ୍ମଜ୍ଞ) ଯତୀନାଂ (ଯୋଗୀମାନଙ୍କର) ବ୍ରହ୍ମନିର୍ବାଣଂ (ବ୍ରହ୍ମନିର୍ବାଣ) ଅଭିତଃ ବର୍ତ୍ତତେ (ନିକଟରେ ବା ଶରୀରଆରେ ଅବସ୍ଥିତ ଥାଏ) ।

## ଅନୁବାଦ

ସତ୍ୟ କହିବାକୁ ଗଲେ, କାମକ୍ରୋଧରୁ ମୁକ୍ତ, ସଂଯତଚିତ୍ତ, ଆତ୍ମଜ୍ଞ ସେହି ଯୋଗୀମାନଙ୍କର ବ୍ରହ୍ମନିର୍ବାଣ ତାଙ୍କ ନିକଟରେ ବା ଶରୀରଆରେହିଁ ସର୍ବଦା ଅବସ୍ଥିତ ଥାଏ ।

## ବିଶେଷ ଭାଷ୍ୟ

କାମ ଓ କ୍ରୋଧରୁ ମୁକ୍ତ ହେଲାପରେ, ସାଧକର ବ୍ୟକ୍ତିତ୍ୱଭିତରେ ବହୁ ସୁପ୍ତ ଗୁଣ ଆପେ ଆପେ ବିକଶିତ ହୋଇଉଠେ । ଗୀତା, ପୂର୍ବେ କାମ ଓ କ୍ରୋଧକୁ ମନୁଷ୍ୟର ଜ୍ଞାନ-ନାଶକ ପରମଶତ୍ରୁରୂପେ ବର୍ଣ୍ଣନା କରିଛନ୍ତି । କାମ ଓ କ୍ରୋଧ ଆମର ତମଅଂଶର ପ୍ରତୀକ । ଆମଭିତରେ ସେହି ତମ ଅଂଶର ପ୍ରଭାବ କ୍ରମେ କମିଆସନ୍ତେ, ଆମ ବ୍ୟକ୍ତିତ୍ୱଭିତରେ ସତ୍ତ୍ୱ ଗୁଣ ଓ ଧର୍ମୀୟ-ରଜୋଗୁଣସବୁର ଅଭ୍ୟୁଦୟ ଅବଶ୍ୟମ୍ଭାବୀ ହୋଇଉଠେ । ସାଧକ ଆପେ ଆପେ ହୋଇଉଠେ ଅନ୍ତର୍ଜ୍ୟୋତି ଓ ବ୍ରହ୍ମମୟ । 'ସର୍ବଭୂତହିତେ-ରତ' ହେବାଟା ଏପରି ଲୋକ ପକ୍ଷରେ ହୋଇଉଠେ ଏକ ସ୍ୱାଭାବିକ କ୍ରିୟା । ସେ ଲୋକ

ମଧ୍ୟ ଆଉ ସାମାନ୍ୟ ମନୁଷ୍ୟ ହୋଇ ରହେ ନାହିଁ । ସେ ହୋଇଉଠେ ଦେବ-ମନୁଷ୍ୟ । ବ୍ରହ୍ମନିର୍ବାଣ ବା ବ୍ରହ୍ମପ୍ରାପ୍ତି ସେ ଲୋକର ସ୍ୱାଭାବିକ ପରବର୍ତ୍ତୀ ପଦକ୍ଷେପ ମାତ୍ର (ଅଭିତଃ ବର୍ତ୍ତତେ) ।

ଏହି ଅବସ୍ଥା ଆଡ଼କୁ ଯିବା ବାଟରେ ଆମକୁ ସାହାଯ୍ୟ କରିବାପାଇଁ ଗୀତା ପରବର୍ତ୍ତୀ ତିନୋଟି ଶ୍ଳୋକ ବ୍ୟବହାର କରି ଏ ଅଧ୍ୟାୟ ଶେଷ କରିବେ ।

୨୭-୨୮

ସ୍ପର୍ଶାନ୍ କୃତ୍ୱା ବହିର୍ବାହ୍ୟାଂଶ୍ଚକ୍ଷୁଶ୍ଚୈବାନ୍ତରେ ଭ୍ରୁବୋଃ
ପ୍ରାଣାପାନୌ ସମୌ କୃତ୍ୱା ନାସାଭ୍ୟନ୍ତରଚାରିଣୌ । ୨୭ ।
ଯତେନ୍ଦ୍ରିୟମନୋବୁଦ୍ଧିର୍ମୁନିର୍ମୋକ୍ଷପରାୟଣଃ
ବିଗତେଚ୍ଛାଭୟକ୍ରୋଧୋ ଯଃ ସଦା ମୁକ୍ତ ଏବ ସଃ । ୨୮ ।

ବାହ୍ୟାନ୍ ସ୍ପର୍ଶାନ୍ ବହିଃ କୃତ୍ୱା (ବାହ୍ୟ ସ୍ପର୍ଶସବୁକୁ ମନରୁ ଦୂରରେ ରଖି) ଚକ୍ଷୁଃ (ଆଖିକୁ) ଭ୍ରୁବୋଃ ଅନ୍ତରେ ଏବ (ଦୁଇ ଭ୍ରୂଲତାର ମଧ୍ୟରେ ରଖି) ନାସାଭ୍ୟନ୍ତରଚାରିଣୌ ପ୍ରାଣାପାନୌ (ନାକଭିତରେ ଚାଲୁଥିବା ପ୍ରାଣ ଓ ଅପାନ ଉଭୟ ବାୟୁକୁ) ସମୌ କୃତ୍ୱା (ସମାନ କରି ଅର୍ଥାତ୍ ସେମାନଙ୍କ ଭିତରେ ସାମଞ୍ଜସ୍ୟ ସ୍ଥାପନ କରି) ଯତେନ୍ଦ୍ରିୟମନୋବୁଦ୍ଧିଃ (ଇନ୍ଦ୍ରିୟ, ମନ ଓ ବୁଦ୍ଧିକୁ ସଂଯମପୂର୍ବକ) ବିଗତେଚ୍ଛାଭୟକ୍ରୋଧଃ (ଇଚ୍ଛା, ଭୟ ଓ କ୍ରୋଧକୁ ବଶୀଭୂତ କରି) ଯଃ ମୁନିଃ (ଯେଉଁ ଯୋଗୀ) ମୋକ୍ଷପରାୟଣଃ (ନିଷ୍ଠାର ସହିତ ମୋକ୍ଷାନୁସରଣ କରନ୍ତି) ସଃ (ସେ) ସଦା ମୁକ୍ତଃ ଏବ (ସର୍ବଦା ଅର୍ଥାତ୍ ଜୀବନକାଳରେ ମଧ୍ୟ ମୁକ୍ତ କହିଲେ ଚଳେ) ।

**ଅନୁବାଦ**

ବାହ୍ୟ ସ୍ପର୍ଶସବୁକୁ ମନରୁ ଦୂର କରିଦେଇ, ଆଖିକୁ ଦୁଇ ଭ୍ରୂମଧ୍ୟରେ ରଖି, ପ୍ରାଣ ଓ ଅପାନ ବାୟୁଦ୍ୱୟମଧ୍ୟରେ ସାମଞ୍ଜସ୍ୟ ଆଣି, ଇନ୍ଦ୍ରିୟ, ମନ ଓ ବୁଦ୍ଧିକୁ ସଂଯତ କରି ଏବଂ ଇଚ୍ଛା, ଭୟ ଓ କ୍ରୋଧକୁ ବଶୀଭୂତ କରି ଯେଉଁ ମନନଶୀଳ ଲୋକ ଯଥାର୍ଥରେ ମୋକ୍ଷାନୁରାଗୀ ହୁଅନ୍ତି, ସେ ଜୀବନକାଳରେ ମଧ୍ୟ ମୁକ୍ତ ହୋଇ ଶାନ୍ତ ବୋଲି ଜାଣିବ ।

**ବିଶେଷ ଭାଷ୍ୟ**

ଏହି ଶ୍ଳୋକଯୁଗ୍ମର ପ୍ରଥମଟିରେ ପାତଞ୍ଜଳ-ପ୍ରଦର୍ଶିତ ରାଜଯୋଗାଭ୍ୟାସ ବର୍ଣ୍ଣିତ । ଏହା ଆମର ମନକୁ ଆୟତ୍ତକୁ ଆଣିବାରେ ସାହାଯ୍ୟ କରେ ବୋଲି କୁହାଯାଇଥାଏ । ଲେଖକର ଏ ବାଟରେ କୌଣସି ଅଭିଜ୍ଞତା ନାହିଁ । ପୁଣି ବିନା

ବିଶେଷଜ୍ଞ ସାହାଯ୍ୟରେ ଏସବୁରେ ହାତ ଦେବା ଆଦୌ ଉଚିତ ନୁହେଁ ବୋଲି ଏ କ୍ଷେତ୍ରରେ ଧୁରନ୍ଧରମାନଙ୍କଦ୍ୱାରା ବାରମ୍ବାର କୁହା ହେବାର ଲେଖକ ପଢ଼ିଛି । ତେଣୁ ସେ ସମ୍ପର୍କରେ ବିଶେଷ ଆଉ କିଛି ସେ କହିବାକୁ ଯାଉନାହିଁ । ଅନେକ କ୍ଷେତ୍ରରେ ଏ ଅଭ୍ୟାସ କ୍ଷତିକାରକ ହୋଇଥିବାର ବର୍ଣ୍ଣନା ମଧ୍ୟ ଲେଖକର ଦୃଷ୍ଟିକି ଆସିଛି । ତେଣୁ ସାଧକ ଏ ଦିଗରେ ଅତ୍ୟନ୍ତ ସାବଧାନତାର ସହିତ ଆଗେଇବା ଉଚିତ ହେବ ।

କିନ୍ତୁ ବିଂଶସ୍ତୁ ଶ୍ଳୋକଟି ପ୍ରତ୍ୟେକ ଲୋକର ଦୈନନ୍ଦିନ ଅଭ୍ୟାସସାପେକ୍ଷ । ଗୀତା ପୂର୍ବରୁ ଏପର୍ଯ୍ୟନ୍ତ ବହୁଥର ମନ, ବୁଦ୍ଧି ଓ ଇନ୍ଦ୍ରିୟମାନଙ୍କର ସଂଯମ ଏବଂ ଇଚ୍ଛା (କାମ), କ୍ରୋଧ ଓ ଭୟ ପ୍ରଭୃତି ଜାନ୍ତବଗୁଣସବୁର ପରିହାରପାଇଁ କହିସାରିଲେଣି । କାରଣ, ଆଧ୍ୟାତ୍ମିକ ଅଭ୍ୟୁଦୟପାଇଁ ଏହା ଅତ୍ୟାବଶ୍ୟକ । ତେଣୁ ଏ ସବୁର ଅଭ୍ୟାସ ଆମକୁ କରିବାକୁହିଁ ହେବ ।

କିନ୍ତୁ ଏସବୁ ସତ୍ତ୍ୱେ ଗୀତା ଶେଷ ଶ୍ଳୋକଟିରେ ଏକ ବୈପ୍ଳବାତ୍ମକ ସହଜ ପନ୍ଥା ମଧ୍ୟ ବତାଇଦେଉଛନ୍ତି ।

୨୯

ଭୋକ୍ତାରଂ ଯଜ୍ଞତପସାଂ ସର୍ବଲୋକମହେଶ୍ୱରମ୍
ସୁହୃଦଂ ସର୍ବଭୂତାନାଂ ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି । ୨୯ ।

[ସାଧକ] ମାଂ (ମୋତେ, ଅର୍ଥାତ୍ ଈଶ୍ୱରଙ୍କୁ) ଯଜ୍ଞତପସାଂ (ଯଜ୍ଞ ଓ ତପସ୍ୟାର) ଭୋକ୍ତାରଂ (ଭୋକ୍ତା) ସର୍ବଲୋକମହେଶ୍ୱରଂ (ସର୍ବଲୋକର ମହେଶ୍ୱର) [ପୁଣି] ସର୍ବଭୂତାନାଂ ସୁହୃଦଂ (ସକଳ ପ୍ରାଣୀଙ୍କର ବନ୍ଧୁ ବୋଲି) ଜ୍ଞାତ୍ୱା (ଜାଣିରଖିଲେ, ଅବବୋଧ କଲେ) [ମଧ୍ୟ] ଶାନ୍ତିଂ ଋଚ୍ଛତି (ଶାନ୍ତି ପାଇଥାନ୍ତି) ।

**ଅନୁବାଦ**

"ହେ ଅର୍ଜୁନ, (ସେସବୁ ନ କରି, କେବଳ) ସକଳ ଯଜ୍ଞ ଓ ତପସ୍ୟାର ଭୋକ୍ତା, ସର୍ବବ୍ରହ୍ମାଣ୍ଡର ଅଧୀଶ୍ୱର ମୋତେ ସର୍ବ ଜୀବର ବନ୍ଧୁ ବୋଲି ଜାଣି-ରଖି ସେହି ଅନୁଯାୟୀ କର୍ମାଭ୍ୟାସ କଲେ ମଧ୍ୟ ସାଧକ ଶାନ୍ତି ପାଇଥାନ୍ତି ।"

**ବିଶେଷ ଦ୍ରଷ୍ଟବ୍ୟ**

ଏତେପ୍ରକାର ସଂଯମ, ନିରୋଧ, ପ୍ରାଣାୟାମ ଆଦି ବର୍ଣ୍ଣନା କରି-ସାରିଲାପରେ ଗୀତାକାର ହଠାତ୍ ଏଠାରେ ସୂଚିତ କଲେ ଯେ, ସାଧାରଣ ମନୁଷ୍ୟପ୍ରତି ଯଦି ସେସବୁ କଷ୍ଟସାଧ୍ୟ ହୁଏ, ତେବେ ସେସବୁଠାରୁ ଏକ ସହଜତମ ପନ୍ଥା ଅଛି । ତାହା ଏହି । ଏ ଜଗତରେ ସବୁର ଏକ ଓ ପରମ ବନ୍ଧୁ ହେଉଛନ୍ତି ଈଶ୍ୱର । ଯେତେ ଯଜ୍ଞ ବା ତପସ୍ୟା କରାଯାଏ, ଅର୍ଥାତ୍ ଆମର ସକଳ ସାଧନାର,

ଭୋକ୍ତା ମଧ୍ୟ ହେଉଛନ୍ତି ସେହି ଈଶ୍ୱର । ସେହିଁ ସର୍ବ ଲୋକର ମହେଶ୍ୱର । ସେହିଁ କର୍ମଫଳଦାତା ଓ ମୋକ୍ଷଦାତା । ଏହି ତତ୍ତ୍ୱଟିକୁ ଆମ୍ଭେ ଅବବୋଧ କରିପାରିଲେ, ଅର୍ଥାତ୍ ଏଥିରେହିଁ ଶ୍ରଦ୍ଧା ସ୍ଥାପନ କଲେ, ସାଧକ ପରମ ଶାନ୍ତି ପାଇପାରନ୍ତି ।

ଏହି ଅଧ୍ୟାୟର ୧୪ଶ ଓ ୧୫ଶ ଶ୍ଳୋକରେ ଗୀତା କହିଛନ୍ତି ଯେ, ଈଶ୍ୱର କାହାରି ପାପ ବା ପୁଣ୍ୟ ଗ୍ରହଣ କରନ୍ତି ନାହିଁ । ଅଥଚ ଏଠି ଓଲଟା କଥା କହୁଛନ୍ତି କିପରି ?

ଗୀତା ହେଲା 'ଆଧ୍ୟାତ୍ମିକ'-ଜ୍ଞାନ-ପରିବେଷକ ଗ୍ରନ୍ଥ । ଅର୍ଥାତ୍ ସେହି ଜ୍ଞାନ ଯେଉଁ ଯେଉଁ ଭାବରେ ମନୁଷ୍ୟକୁ ପ୍ରାପ୍ତ ହୋଇପାରେ, ଗୀତା ତାହାହିଁ ଉଦାରଭାବରେ ପରିବେଷଣ କରିଚାଲିଛନ୍ତି । ସାଂଖ୍ୟ ମତରେ, ପୁରୁଷ-ପ୍ରକୃତି-ଭେଦ-ଜ୍ଞାନ ଆସିଗଲେ ମୋକ୍ଷ ହୁଏ ବୋଲି କୁହାଯାଏ । ସେଠି କୌଣସି ଈଶ୍ୱର-ବିଶ୍ୱାସର ଆବଶ୍ୟକତା ନାହିଁ, କି ପାପ ଓ ପୁଣ୍ୟର ବିଚାର ନାହିଁ । ପ୍ରକୃତିର ପାଶସବୁକୁ କାଟିବାହିଁ ସେଠି ସାଧକର ତପସ୍ୟା । କିନ୍ତୁ ପରେ ଗୀତା, ବେଦାନ୍ତ-ଦର୍ଶନର ଈଶ୍ୱରତ୍ତ୍ୱକୁ ମଧ୍ୟ ସ୍ୱୀକାର କରି ପ୍ରଚାର କଲେ ଯେ, ସାଂଖ୍ୟର ଅଗଣିତ 'ପୁରୁଷ'ଉପରେ ଜଣେ 'ପୁରୁଷୋତ୍ତମ' ମଧ୍ୟ ଅଛନ୍ତି । ସେହିଁ ଏ ସୃଷ୍ଟିରେ ଏକମାତ୍ର ବସ୍ତୁ, ଆଉସବୁ ଅ-ବସ୍ତୁ । ସେହିଁ ସାଂଖ୍ୟର ପୁରୁଷ ଓ ପ୍ରକୃତିର ସ୍ରଷ୍ଟା ଏବଂ ସେମାନଙ୍କର ଊର୍ଦ୍ଧ୍ୱସ୍ଥ । ମନୁଷ୍ୟର ଆବଶ୍ୟକତା ଅନୁସାରେ, ଧର୍ମ-ସଂସ୍ଥାପନାପାଇଁ ଅବ୍ୟକ୍ତରୁ ବ୍ୟକ୍ତ ହୋଇ ସେ ମଧ୍ୟ ତଳକୁ ଆସନ୍ତି । ଯଜ୍ଞ, ତପସ୍ୟା, କୃଚ୍ଛ୍ରସାଧନାଦି କିଛି ନ କରି, କେବଳ ତାଙ୍କର ଶରଣ ନେଲେ ମୁକ୍ତି, ନିର୍ବାଣ, ଆନନ୍ଦ, ସବୁହିଁ ପାଇବ । ଏହାହିଁ ଭକ୍ତିଯୋଗ ଯାହାକୁ କି ଗୀତା ପରେ ବିସ୍ତୃତଭାବରେ ବର୍ଣ୍ଣନା କରିବେ । ଏଠି ଏହା ସୂଚିତ ହେଲା ମାତ୍ର ।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍‌ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସଂବାଦେ ସନ୍ନ୍ୟାସଯୋଗୋ ନାମ ପଞ୍ଚମୋଽଧ୍ୟାୟଃ

---

# ଷଷ୍ଠ ଅଧ୍ୟାୟ

## (ଧ୍ୟାନଯୋଗ)

### ଅଧ୍ୟାୟ ଦୀପିକା

ଏହି ଅଧ୍ୟାୟରେ ଗୀତାର ଏକତୃତୀୟାଂଶ ଓ ଗୀତାର ତଥାକଥିତ ତିନୋଟି ତାତ୍ତ୍ୱିକ ବିଭାଗରୁ ଗୋଟିଏ, ଅର୍ଥାତ୍ 'କର୍ମଯୋଗ' ଶେଷ ହୋଇଯିବ ।

କିନ୍ତୁ ପୂର୍ବରୁ କୁହାଯାଇଛି ଯେ ଗୀତାର ଛଅ ଛଅଟି ଅଧ୍ୟାୟକୁ କ୍ରମାନ୍ୱୟରେ କର୍ମଯୋଗ-ଭକ୍ତିଯୋଗ-ଜ୍ଞାନଯୋଗ-କେନ୍ଦ୍ରିକ ବୋଲି ପୂର୍ବର ଟୀକାକାରମାନେ କହିଯାଇଥିଲେ ମଧ୍ୟ ପ୍ରସ୍ତାବଗୁଡ଼ିକର ପୁଙ୍ଖାନୁପୁଙ୍ଖ ଆଲୋଚନା କଲେ ତାର କୌଣସି ହେଲେ ଯଥାର୍ଥତା ଆମେ ଦେଖିପାରୁ ନାହୁଁ । ଆମେ ବରଂ ଦେଖୁଁ ଯେ, ଗୀତା ଆମ ଆଗରେ ଏକ ସୁସମଞ୍ଜସ ଓ ସମନ୍ୱୟଧର୍ମୀ ମନୋଜ୍ଞ-ଛନ୍ଦ-ସଂପନ୍ନ ଜୀବନାଦର୍ଶ ଉପସ୍ଥାପିତ କରିଚାଲିଛି, ଯାହା ଜ୍ଞାନ-ଭକ୍ତି-କର୍ମର ତ୍ରିବେଣୀ-ସଂଗମରେ ଏକାଧାରରେ ପବିତ୍ର ଓ ଉର୍ବର ।

ଗୀତା, ଦ୍ୱିତୀୟ ଅଧ୍ୟାୟରେହିଁ ସ୍ଥିତପ୍ରଜ୍ଞ ବା ଆଦର୍ଶ ମନୁଷ୍ୟର ଚିତ୍ର ଆମ ସମ୍ମୁଖରେ ଥୋଇଲାପରେ, ଆମେ ସାଧାରଣ ନରନାରୀଏ ସେହି ଉନ୍ନତ ବୌଦ୍ଧିକ ବା ଆତ୍ମିକ ସ୍ତରରେ କିପରି ପହଞ୍ଚିପାରିବା, ପରବର୍ତ୍ତୀ ଚାରିଟି ଅଧ୍ୟାୟରେ ଗୀତା ତାହାହିଁ ବର୍ଣ୍ଣନା କରିଆସିଛନ୍ତି । ଗୀତାର ସେହି ପ୍ରସ୍ତାବଗୁଡ଼ିକ କିପରି ବୈପ୍ଳବିକ ଏବଂ ସାର୍ବକାଳିକ ଓ ସଂପୂର୍ଣ୍ଣ ସାର୍ବଜନୀନ ତାହା ପ୍ରତ୍ୟେକ ଅଧ୍ୟାୟରେ ଯଥାସ୍ଥାନରେ ଆଲୋଚିତ ହୋଇସାରିଛି । ସେସବୁର ସାରତତ୍ତ୍ୱ ହେଲା ଏହି ।

ପ୍ରଥମରେ ଭାରତୀୟ ଐତିହ୍ୟରେ ଉନ୍ନତ ମନୁଷ୍ୟଜୀବନପାଇଁ ଯେଉଁ ସଂସାରତ୍ୟାଗ ବା କର୍ମତ୍ୟାଗ, ଅର୍ଥାତ୍ 'ସନ୍ନ୍ୟାସ'ର ଆଦର୍ଶ ଥିଲା, ଗୀତା ତା-ମୂଳରେ ଉତ୍ସାହପୂର୍ଣ୍ଣ କୁଠାରାଘାତ କରିଛନ୍ତି । ଗୀତା, ସନ୍ନ୍ୟାସ ପରିବର୍ତ୍ତରେ ଆମ ଆଗରେ ଥୋଇଛନ୍ତି ବୀର୍ଯ୍ୟବାନ୍‌ଚିନ୍ତାପୂର୍ଣ୍ଣ ଓ ସାହସିକ 'ଲୋକସଂଗ୍ରହ'

ଓ 'କର୍ମଯୋଗ'ର ଆଦର୍ଶ । ଗୀତା କହିବାକୁ ଯାଇଛନ୍ତି ଯେ, ସଂସାର ତ୍ୟାଗ କରି ପଳାଇଯିବା ଅପେକ୍ଷା 'ଲୋକସଂଗ୍ରହ' ଅର୍ଥାତ୍ ସାମାଜିକ କଲ୍ୟାଣ ଲକ୍ଷ୍ୟରେ ପ୍ରତ୍ୟେକ ନର ଓ ନାରୀ ନିଜ ନିଜର ସ୍ୱ-ଧର୍ମାନୁଯାୟୀ, ଅର୍ଥାତ୍ ଜନ୍ମଗତବ୍ୟବସାୟ ଅନୁଯାୟୀ ବା ସ୍ୱରୁଚି ଓ ପ୍ରତିଭା ଅନୁଯାୟୀ କର୍ତ୍ତବ୍ୟ କର୍ମ କରିଚାଲିବାହିଁ ଉଚିତ—ସକଳ ବାଧା-ବିଘ୍ନ ସତ୍ତ୍ୱେ ।

କିନ୍ତୁ ଦୁଇଟି ଦିଗରେ ଆମକୁ ସାବଧାନ ରହିବାକୁ ହେବ । ପ୍ରଥମରେ, 'ମୁଁ-କରୁଛି'-ଭାବ, ଅର୍ଥାତ୍ ଅହଂକାର ବା କର୍ତ୍ତୃତ୍ୱାଭିମାନ ରହିବ ନାହିଁ । ଦ୍ୱିତୀୟରେ, କାମର ଫଳାଶା ନେଇ ଅକାରଣ ବିବ୍ରତ ନ ହୋଇ (ବିଗତଜ୍ୱରଃ) କେବଳ-ଗଭୀର-କର୍ତ୍ତବ୍ୟ-ବୋଧ ନେଇ କାମ କରିଚାଲିବାକୁ ହେବ । ଗୀତାଙ୍କ ମତରେ, ଏହିଭାବରେ କାମ କଲେ ଆମର ପ୍ରତ୍ୟେକ ଦୈନନ୍ଦିନ କର୍ମହିଁ ଏକ ଏକ 'ଯଜ୍ଞ'ରେ ପରିଣତ ହୋଇଉଠିବ । ବୈଦିକ ଧର୍ମରେ ଯଜ୍ଞ ଓ ତପ ମଧ୍ୟ ଥିଲା ଫଳାଶାପୂର୍ଣ୍ଣ ଓ ଅହଂକାରଜଡ଼ିତ । ଗୀତା ପ୍ରଥମ କରି ବେଦର ଫଳାଶାପୂର୍ଣ୍ଣ 'ଦ୍ରବ୍ୟମୟ' ଯଜ୍ଞସବୁକୁ ପରିତ୍ୟାଗ କରି ଆମ ଦୈନନ୍ଦିନ ଜୀବନର ବୌଦ୍ଧିକ-ଆତ୍ମିକ-ବ୍ୟବହାରିକ ପ୍ରକ୍ରିୟାସବୁକୁହିଁ କିପରି 'ଯଜ୍ଞ' ବା ଧର୍ମ-ସାଧନାରେ ପରିଣତ କରାଯାଇପାରିବ, ତାର ପଥ ନିର୍ଦ୍ଦେଶ କରିଦେଲେ ।

ସାଧାରଣ ଜୀବଜନ୍ତୁଙ୍କ ସହିତ ମନୁଷ୍ୟ ନାମକ ଜୀବ ମଧ୍ୟ ଅଧିକାଂଶରେ ପ୍ରବୃତ୍ତିଚାଳିତ । ପ୍ରବୃତ୍ତିଚାଳିତ ହୋଇ ମନୁଷ୍ୟ ମଧ୍ୟ ଅନ୍ୟାନ୍ୟ ଜୀବଜନ୍ତୁ ପରି ବାହ୍ୟଜଗତରୁହିଁ 'ସୁଖ' ଖୋଜିବୁଲେ ଏବଂ ଠିକ ସେହି କାରଣରୁ ପରିଣାମରେ ଦୁଃଖଜର୍ଜରିତ ହୁଏ, କାରଣ ସକଳ ପାର୍ଥିବ ସୁଖ ଅଚିରସ୍ଥାୟୀ, ଚିରପଳାୟମାନ ଓ ଜଞ୍ଜାଳମୟ ।

ଜଞ୍ଜାଳହୀନ ଅଥଚ ଚିରନ୍ତନ ସୁଖ ଓ ଆନନ୍ଦପାଇଁ ଗୀତା ମନୁଷ୍ୟକୁ ଅନ୍ତର୍ମୁଖୀ ହେବାକୁ ଉପଦେଶ ଦେଇଛନ୍ତି (ଯୋଽନ୍ତଃସୁଖୋଽନ୍ତରାରାମସ୍ତଥା-ନ୍ତର୍ଜ୍ୟୋତିରେବ ଯଃ—୫।୨୪) । ପୁଣି ମନୁଷ୍ୟ ଏକ ମନନଶୀଳ ଓ ବିଚାର-ଶୀଳ ଜୀବ । ଯେଉଁ ମନୁଷ୍ୟର କର୍ମରେ ବୁଦ୍ଧି ଓ ବିଚାରର ତତ୍ପରତା ନାହିଁ, ଅଛି କେବଳ ପ୍ରବୃତ୍ତି-ପ୍ରବଣତା, ସେ ତ ଏକ ଜନ୍ତୁ—ସେ କେବଳ ଆକାରରେହିଁ ମନୁଷ୍ୟ ।

ଗୀତା ତେଣୁ ପ୍ରଥମେ ପ୍ରତ୍ୟେକ ନର ଓ ନାରୀଙ୍କୁ 'ବୁଦ୍ଧିଯୋଗ'ର ଆଶ୍ରୟ ନେବାକୁ କହିଛନ୍ତି । ବୁଦ୍ଧି ଓ ବିଚାର ପ୍ରୟୋଗପୂର୍ବକ ଅହଂକାରଶୂନ୍ୟ ରହି ଓ ଫଳୋଦ୍ବିଗ୍ନ ନ ହୋଇ ଲୋକସଂଗ୍ରହ ଲକ୍ଷ୍ୟରେ ସ୍ୱ-ଧର୍ମବୋଧ ସହିତ ଯେଉଁ କର୍ମ କରାଯାଏ, ଗୀତାଙ୍କ ମତରେ ତାହାହିଁ ଶ୍ରେଷ୍ଠ ବା ମନୁଷ୍ୟୋଚିତ କର୍ମ । ତାହାହିଁ ପ୍ରକୃଷ୍ଟ ଯୋଗ । ଏପ୍ରକାର ଯୋଗାଶ୍ରିତ ବା

ସଙ୍କଳ୍ପିତ କର୍ମ ମନୁଷ୍ୟପ୍ରତି ସର୍ବଥା କଲ୍ୟାଣପ୍ରଦ । "ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋଭୟାତ୍" ବା "ନ ହି କଲ୍ୟାଣକୃତ୍ କଶ୍ଚିଦ୍ଦୁର୍ଗତିଂ ତାତ ଗଚ୍ଛତି" ।

ଗୀତା ଏହି ସ୍ତରକୁ ଆସିଲାପରେହିଁ ଈଶ୍ୱରଙ୍କର ଅବତାରଣା କରିଛନ୍ତି । ଗୀତା କହିଛନ୍ତି ଯେ—ଅନ୍ୟ କିଛି ନକରି ସାଧକ ତାର ସକଳ କର୍ମକୁ ଈଶ୍ୱରଙ୍କଠାରେହିଁ ସମର୍ପଣ କରିଦେଉ ।

କିଏ ସେ ଈଶ୍ୱର ? ସେ 'ସର୍ବଲୋକମହେଶ୍ୱର' ଭୂତର ସୁହୃଦ୍' (ବନ୍ଧୁ) ତେଣୁ "ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି"—"ମତେ (ସେହି ଈଶ୍ୱରଙ୍କୁ) ଜାଣିଲେହିଁ ମନୁଷ୍ୟ ଶାନ୍ତି ପାଏ", ଅର୍ଥାତ୍ ବିଧି ଦେଇ ବିଧାତାଙ୍କୁ ଜାଣିଲେ ହିଁ ମନୁଷ୍ୟ ପ୍ରକୃତ ଶାନ୍ତି ପାଇବ ।

କିନ୍ତୁ ଏହି ଈଶ୍ୱର କଣ ବାହାରେ କେଉଁଠି ଥାନ୍ତି, ଯେଉଁଠୁ ତାଙ୍କୁ ଖୋଜି ବାହାର କରିବାକୁ ହେବ ?

ନା, ଗୀତା ମୂଳରୁ ଶେଷଯାଏ କହିଚାଲିଛନ୍ତି ଯେ, ସେହି 'ସର୍ବଲୋକ-ମହେଶ୍ୱର' ଓ 'ସୁହୃଦଃ ସର୍ବଭୂତାନାଂ' ଆମର ଆତ୍ମାଭିତରେହିଁ ଅବସ୍ଥିତ। ବସ୍ତୁତଃ ଆମର ଆତ୍ମାହିଁ ସେହି ବ୍ରହ୍ମ ବା ଈଶ୍ୱର । ମନୁଷ୍ୟ ପ୍ରବୃତ୍ତି-ମାର୍ଗ ତ୍ୟାଗ କରି ଓ ନିବୃତ୍ତି-ମାର୍ଗ ଧରି ଅନ୍ତର୍ମୁଖୀ ହୋଇ 'ଧ୍ୟାନ' କଲେ ତାଙ୍କୁ ଦେଖି-ପାରିବ ବା ଜାଣିପାରିବ ।

ଏହି ଅଧ୍ୟାୟଟି ବିଶେଷଭାବରେ ସେହି 'ଧ୍ୟାନ'ରହିଁ ବର୍ଣ୍ଣନା । ତେଣୁ ଏହାର ନାମ 'ଧ୍ୟାନଯୋଗ' ।

ଏହି ଅଧ୍ୟାୟରେ ୧ରୁ ୯ ଶ୍ଲୋକଯାଏ ଆଦର୍ଶ ଯୋଗୀର ବର୍ଣ୍ଣନା, ୧୦ରୁ ୨୬ ଶ୍ଲୋକଯାଏ ଧ୍ୟାନ-ପଦ୍ଧତି, ୨୭ରୁ ୩୬ଯାଏ ମାନସିକ ସମତା ଏବଂ ୩୭ରୁ ୪୭ ଶ୍ଲୋକଯାଏ ଯୋଗ-ଭଙ୍ଗର ଫଳ ବର୍ଣ୍ଣିତ ଅଛି ।

ବର୍ତ୍ତମାନ ଶ୍ଲୋକଗୁଡ଼ିକୁ ଏକପରେ ଏକ ଆଲୋଚନା କରିଚାଲିବା ।

୧

ଶ୍ରୀ ଭଗବାନୁବାଚ

ଅନାଶ୍ରିତଃ କର୍ମଫଳଂ କାର୍ଯ୍ୟଂ କର୍ମ କରୋତି ଯଃ
ସ ସନ୍ନ୍ୟାସୀ ଚ ଯୋଗୀ ଚ ନ ନିରଗ୍ନିର୍ନଚାକ୍ରିୟଃ । ୧ ।

ଶ୍ରୀ ଭଗବାନ୍ (ଭଗବାନ୍ ଶ୍ରୀକୃଷ୍ଣ) ଉବାଚ (କହିଲେ) । ଯଃ (ଯେଉଁ ଲୋକ) କର୍ମଫଳଂ ଅନାଶ୍ରିତଃ (କର୍ମଫଳକୁ ନ ଅନାଇ) କାର୍ଯ୍ୟଂ କର୍ମ କରୋତି (ଯାହା କର୍ତ୍ତବ୍ୟ କର୍ମ ତାହା କରିଚାଲନ୍ତି) ସଃ ସନ୍ନ୍ୟାସୀ (ସେହି ଏକା ସନ୍ନ୍ୟାସୀ) ଯୋଗୀ ଚ (ଏବଂ ସେ ମଧ୍ୟ ପ୍ରକୃତ ଯୋଗୀ) । ନ ନିରଗ୍ନିଃ (ଯେ ଖାଲି ଯାଗଯଜ୍ଞ

ଛାଡ଼ିଦେଇଛନ୍ତି ସେ ନୁହନ୍ତି) ନ ଚ ଅକ୍ରିୟଃ (ବା ଯିଏ ସବୁ କାମ ଛାଡ଼ିଦେଇ ଘରଠୁଁ ମାଗି ବଞ୍ଚନ୍ତି, ସେ ବି ନୁହନ୍ତି) ।

**ଅନୁବାଦ**

ଶ୍ରୀ ଭଗବାନ୍ କହିଲେ—ଯେଉଁ ଲୋକ କର୍ମଫଳକୁ ନ ଅନାଇ ଯାହା କର୍ତ୍ତବ୍ୟ ତାହା କରିଚାଲେ, ହେ ଅର୍ଜୁନ, ସେହିଁ ପ୍ରକୃତ ଯୋଗୀ ଓ ସନ୍ନ୍ୟାସୀ, ନୁହେଁ ଯଜ୍ଞତ୍ୟାଗୀ ବା କର୍ମତ୍ୟାଗୀ ଲୋକ ।

**ବିଶେଷ ଭାଷ୍ୟ**

ଗୀତା ରଚିତ ହେଲାବେଳକୁ ଭାରତବର୍ଷରେ ମୁଖ୍ୟତଃ ତିନ ଶ୍ରେଣୀର 'କର୍ମତ୍ୟାଗୀ' ଦେଖା ଦେଇଥିଲେ । ବେଦର 'ଆରଣ୍ୟକ' ଭାଗ ଓ 'ଉପନିଷଦ୍'ସବୁର ରଚନା ବେଳକୁ, ବୈଦିକ କର୍ମକାଣ୍ଡ ବା ଯାଗଯଜ୍ଞାଦିକୁ ନିରର୍ଥକ ଭାବି ଅନେକେ କେବଳ ବ୍ରହ୍ମ-ଜିଜ୍ଞାସା ବା ଜ୍ଞାନ-କାଣ୍ଡୀୟ ସାଧନାପାଇଁ ଘରଦ୍ୱାର ଛାଡ଼ି ଓ ନଗରସଭ୍ୟତାକୁ ଦୂରରେ ରଖି ଜନବସତିହୀନ ଅରଣ୍ୟାଶ୍ରମ-ମାନଙ୍କରେ ରହିଲେଣି । ଯେହେତୁ ବେଦର 'କର୍ମ' ମାନେ ଯଜ୍ଞ ଓ ଯଜ୍ଞ ମାନେ ଅଗ୍ନି ପୂଜା, ଏମାନେ ସେହି ଅଗ୍ନି-ପୂଜା-ରୂପକ ଯଜ୍ଞ ତ୍ୟାଗ କରିଥିବାରୁ ଗୀତା ଏମାନଙ୍କୁ ତାଚ୍ଛଲ୍ୟରେ 'ନିରଗ୍ନି' କହିଛନ୍ତି । ନିରଗ୍ନି = ଯଜ୍ଞତ୍ୟାଗୀ = 'କର୍ମ'ତ୍ୟାଗୀ । ପୁଣି କର୍ମ ଅର୍ଥାତ୍ ସାଂସାରିକ-ସାମାଜିକ କର୍ମମାନେ ପ୍ରକୃତିର ପାଶ ବୋଲି ପ୍ରଚାର କରୁଥିବା ସାଂଖ୍ୟ ଦର୍ଶନର ପ୍ରଭାବରେ ମଧ୍ୟ ଅନେକେ କର୍ମ ତ୍ୟାଗ କରି ଜନହୀନ ସ୍ଥାନମାନଙ୍କରେ ଯୋଗାଭ୍ୟାସ କରୁଥିଲେ ।

ତେଣେ, ଗୌତମ ବୁଦ୍ଧଙ୍କ 'ବୋଧି' ବା 'ଜ୍ଞାନ'ର ସମ୍ପ୍ରସାରଣ ଲକ୍ଷ୍ୟରେ ଭାରତର ସକଳ ପ୍ରାନ୍ତରେ ଲକ୍ଷ ଲକ୍ଷ କର୍ମଠ ଲୋକ ମଧ୍ୟ ସାମାଜିକ କର୍ତ୍ତବ୍ୟ ଛାଡ଼ି ସଂଘାରାମମାନଙ୍କରେ ହଳଦିଆ ଲୁଗା ପିନ୍ଧି, ଭିକ୍ଷୁ ସାଜି, ସମ୍ପୂର୍ଣ୍ଣ ନିଷ୍କ୍ରିୟ ଜୀବନ ଯାପନ କଲେଣି । ଗୀତା ବୋଧହୁଏ ଏଇମାନଙ୍କୁ ତାଚ୍ଛଲ୍ୟରେ 'ଅକ୍ରିୟ' କହିଛନ୍ତି ଏବଂ ଏହି ତିନ ଶ୍ରେଣୀର ତଥାକଥିତ 'ସନ୍ନ୍ୟାସାଭ୍ୟାସୀ'ମାନଙ୍କ ବିପରୀତରେ ପ୍ରକୃତ ଯୁକ୍ତିଯୁକ୍ତ ସାମାଜିକ ଆଦର୍ଶ ଭାବରେ ଠିଆ କରାଇଛନ୍ତି ସେହି ନୀରବ ସାଧକକୁ, ଯେ ଘର ଓ ସମାଜ ନ ଛାଡ଼ି ବା ପୁରସ୍କାର ବା ମାନ-ସମ୍ମାନର ଆଶା ମଧ୍ୟ ନ ରଖି, 'କାର୍ଯ୍ୟଂ କର୍ମ'—ଯେଉଁ କାମ ତାର କରିବାର କଥା, ତାହା ସେ ନୀରବରେ କରିଚାଲିଛି । ନୁହନ୍ତି ନିରଗ୍ନିଃ (ଯଜ୍ଞତ୍ୟାଗୀ ବୈଦିକ) ବା ଅକ୍ରିୟଃ (ସଂସାର-ତ୍ୟାଗୀ, ଭିକ୍ଷାନ୍ନଜୀବୀ, ମଠବାସୀ ନିଷ୍କର୍ମା ବୌଦ୍ଧ ଭିକ୍ଷୁସବୁ ) । ଗୀତାର ଆଦର୍ଶ ହେଲା କର୍ତ୍ତବ୍ୟପରାୟଣ, ଅନାସକ୍ତ, ନିରହଙ୍କାର, ଲୋକସଂଗ୍ରହକାରୀ ଗୃହସ୍ଥ ।

ପରବର୍ତ୍ତୀ ଶ୍ଳୋକରେ ଗୀତା ଏହି ପ୍ରକାର 'କର୍ମଯୋଗ'କୁହିଁ ପ୍ରକୃତ 'ସନ୍ନ୍ୟାସ' ଆଖ୍ୟା ଦେଇଛନ୍ତି ।

୨

ଯଂ ସନ୍ନ୍ୟାସମିତି ପ୍ରାହୁର୍ଯୋଗଂ ତଂ ବିଦ୍ଧି ପାଣ୍ଡବ
ନ ହ୍ୟସଂନ୍ୟସ୍ତସଙ୍କଳ୍ପୋ ଯୋଗୀ ଭବତି କଶ୍ଚନ । ୨ ।

[ହେ] ପାଣ୍ଡବ (ଅର୍ଜୁନ) [ପଣ୍ଡିତମାନେ] ଯଂ (ଯାହାକୁ) ସନ୍ନ୍ୟାସଂ ଇତି ପ୍ରାହୁଃ (ସନ୍ନ୍ୟାସ ବୋଲି କହିଥାନ୍ତି) ତଂ ଯୋଗଂ ବିଦ୍ଧି (ତାକୁହିଁ କର୍ମଯୋଗ ବୋଲି ଜାଣ), ହି (ଯେହେତୁ) ଅସଂନ୍ୟସ୍ତସଙ୍କଳ୍ପଃ (ଯେଉଁ ଲୋକ କେବଳ ଶାରୀରିକ କ୍ରିୟା ବାହାରକୁ ଛାଡ଼ିଦେଇଥିଲେ ମଧ୍ୟ ଭିତରେ ମାନସିକ ଭୋଗ-ସ୍ୱପ୍ନସବୁକୁ ପ୍ରଶ୍ରୟ ଦେଇ ଚାଲିଛି) କଶ୍ଚନ ଯୋଗୀ ନ ଭବତି ( ଏପରି କୌଣସି ଲୋକ ସନ୍ନ୍ୟାସୀ ବୋଲାଇବା ଦୂରେ ଥାଉ, ଯୋଗୀ ମଧ୍ୟ ବୋଲାଇ-ପାରିବ ନାହିଁ) ।

**ଅନୁବାଦ**

ହେ ଅର୍ଜୁନ, ପୂର୍ବେ ପଣ୍ଡିତମାନେ ଯେଉଁ ଅର୍ଥରେ 'ସନ୍ନ୍ୟାସ' ଶବ୍ଦ ବ୍ୟବହାର କରୁଥିଲେ ତାହାର ପ୍ରକୃଷ୍ଟ ତାତ୍ପର୍ଯ୍ୟ ମତ୍-ପ୍ରଖ୍ୟାପିତ (କର୍ମ) ଯୋଗରେ ପର୍ଯ୍ୟବସିତ । କାରଣ ଯେଉଁ ଲୋକ 'ସଙ୍କଳ୍ପ' ତ୍ୟାଗ କରି ନ ପାରିଛି, ସେ (କର୍ମ ତ୍ୟାଗ କଲେ ମଧ୍ୟ) ନୁହେଁ ସନ୍ନ୍ୟାସୀ, କି ନୁହେଁ ଯୋଗୀ ।

**ବିଶେଷ ଭାଷ୍ୟ**

'ସନ୍ନ୍ୟାସ' ଏହି ଶବ୍ଦଟିର ଅର୍ଥହିଁ 'ତ୍ୟାଗ' । ତେଣୁ 'ସନ୍ନ୍ୟାସୀ' ସେହି, ଯେ ସଂସାରର ଘର-ପରିବାର-ସମ୍ପତ୍ତି ଆଦି ସକଳ ବନ୍ଧନକୁ କାଟିଦେଇ ଓ ଲୋକସମ୍ମାନ ବା ଯୌନସୁଖାଦି ପ୍ରଲୋଭନକୁ ନ ଅନାଇ, ଯଦୃଚ୍ଛାଲବ୍ଧ-ଅନ୍ନ-ବାସରେ ସନ୍ତୁଷ୍ଟ ରହି, ସମଗ୍ରଭାବରେ ଧର୍ମ-ସାଧନାର ଜୀବନ ବରଣ କରନ୍ତି ।

କିନ୍ତୁ ଏପ୍ରକାର ବାହ୍ୟ ତ୍ୟାଗ କରି ମଧ୍ୟ ବହୁ ଲୋକଙ୍କଠାରେ ଆଭ୍ୟନ୍ତରୀଣ ବାସନାସବୁ କିପରି ପ୍ରଜ୍ୱଳିତ ରହିଥାଏ, ତାର ସାଂପ୍ରତିକ ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ସ୍ୱାଧୀନତୋତ୍ତର ଭାରତବର୍ଷରେ ଦେଖା ଦେଇଥିବା ଅଗଣିତ ଖଦଡ଼-ଧୋତି ଚଦର-ଟୋପି-ପରିଧାୟୀ ପ୍ରଭୁତ୍ୱ-ମଦ-ମତ୍ତ ତଥାକଥିତ ଗାନ୍ଧି-ଶିଷ୍ୟ କଂଗ୍ରେସୀଏ, ଯେଉଁମାନଙ୍କ ଅନ୍ୟାୟ-ଅତ୍ୟାଚାରରେ ଏ ଦେଶର ସାତ ହଜାର ବର୍ଷର ସଂସ୍କୃତି ମାତ୍ର କୋଡ଼ିଏଟା ବର୍ଷରେ ପୋକଡ଼ା ହୋଇଗଲା । ଜନ-ଚେତନାରେ ଠିକ୍ ଏଇ ଧାରଣା ମଧ୍ୟ 'ଚଇତନଆ'ଙ୍କ ସମ୍ପର୍କରେ । ବାହାରେ ଭେକଟି ବେଶ୍ ; କିନ୍ତୁ ଭିତର ଆବର୍ଜନାମୟ ।

ଗୀତା ଯେ ବହୁ ଶତାବ୍ଦୀ ପୂର୍ବେ ଏହିପ୍ରକାର ନୈତିକ ବ୍ୟଭିଚାରର ମାରାତ୍ମକତା ସ୍ପଷ୍ଟ ଦେଖିପାରିଥିଲେ, ତାହାହିଁ ପରମ ବିସ୍ମୟ । ସେଥିପାଇଁ ଗୀତା ମୂଳରୁ ଶେଷଯାଏ ସବୁପ୍ରକାର ଧର୍ମ-ସାଧନାକୁ 'ବାହ୍ୟ'ରୁ ନେଇ 'ଆଭ୍ୟନ୍ତରୀଣ' କରିବାକୁ ଯାଇଛନ୍ତି ।

ଆମେ ବାହାରେ ଯେତେସବୁ କାମ କରୁଁ, ସେସବୁ ଆମ ଭିତରର 'ସଂକଳ୍ପ'ସବୁର ବହିଃପ୍ରକାଶ ମାତ୍ର । କୃପଣର କୃପଣତା ବା ବ୍ୟଭିଚାରୀର ଯୌନପିପାସାର ଚେରଥାନ୍ତି ସେମାନଙ୍କ ମନର ଗହନରେ । ଗୀତା କହନ୍ତି ଯେ, ପ୍ରକୃତ ସନ୍ନ୍ୟାସ ବା କର୍ମତ୍ୟାଗ ସେହି ଚେରର ଉତ୍ପାଟନରୁ ଆରମ୍ଭ ହେବା ଉଚିତ । ଏହା କେବଳ ବାହ୍ୟ ପ୍ରଦର୍ଶନରେ ପର୍ଯ୍ୟବସିତ ହେବା ଉଚିତ ନୁହେଁ । ସେ ଚେରକୁ ନ ଉପାଡ଼ି, ବାହାରେ ତ୍ୟାଗର ପୋଷାକ ପିନ୍ଧିବାର ପରିଣତି,—କେବଳ ମାରାତ୍ମକ ଖଦଡ଼ୀ ବା ବୈଷ୍ଣବୀ ଭଣ୍ଡତା । ତୃତୀୟ ଅଧ୍ୟାୟର ୬ଷ୍ଠ ଶ୍ଳୋକରେ ଗୀତା ଏହି ମାରାତ୍ମକ କପଟତାକୁହିଁ ନିନ୍ଦା କରି କହିସାରିଛନ୍ତି—

କର୍ମେନ୍ଦ୍ରିୟାଣି ସଂଯମ୍ୟ ଯ ଆସ୍ତେ ମନସା ସ୍ମରନ୍
ଇନ୍ଦ୍ରିୟାର୍ଥାନ୍ ବିମୂଢ଼ାତ୍ମା ମିଥ୍ୟାଚାରଃ ସ ଉଚ୍ୟତେ ।

(ବାହାରେ କର୍ମେନ୍ଦ୍ରିୟମାନଙ୍କର ସଂଯମର ପ୍ରତାରଣା କରି, ଭିତରେ ଭିତରେ ଯିଏ ଇନ୍ଦ୍ରିୟ-ଭୋଗଗୁଡ଼ିକୁ ଭାବି ହେଉଥାଏ, ସେହି ମୋହଗ୍ରସ୍ତ ଲୋକ ମିଥ୍ୟାଚାରୀ ।)

ଗୀତା ଆଲୋଚ୍ୟମାନ ଶ୍ଳୋକରେ ମଧ୍ୟ ସେହି କଥା ପୁଣି କହୁଛନ୍ତି—; କେବଳ 'କର୍ମତ୍ୟାଗ', 'ଯୋଗ' ବା 'ସନ୍ନ୍ୟାସ' ବୋଲାଇବ ନାହିଁ । ପ୍ରଥମ ଓ ପ୍ରକୃତ 'ତ୍ୟାଗ" ହେଉଛି,-- ଆମ ଭିତରେ ସକଳପ୍ରକାର 'ସଂକଳ୍ପ'ର ବିସର୍ଜନ । ବରଂ ଯେ ଅନ୍ତରରେ ସଂକଳ୍ପସବୁକୁ ତ୍ୟାଗ କରି-ପାରିଛନ୍ତି, ସେ ବାହାରେ ଯେତେ କାମ କରିଚାଲନ୍ତୁ ନା କାହିଁକି, ତାଙ୍କୁହିଁ ଯଥାର୍ଥରେ କୁହାଯିବ ଉଭୟ 'ଯୋଗୀ' ଓ 'ସନ୍ନ୍ୟାସୀ' ।

୩

ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମକାରଣମୁଚ୍ୟତେ
ଯୋଗାରୂଢ଼ସ୍ୟ ତସ୍ୟୈବ ଶମଃ କାରଣମୁଚ୍ୟତେ । ୩ ।

ଯୋଗଂ ଆରୁରୁକ୍ଷୋଃ ମୁନେଃ (ଯୋଗ-ନିଶୁଣି ଦେଇ ଉପରକୁ ଉଠିବାକୁ ଇଚ୍ଛା କରୁଥିବା ମୁନିଙ୍କ ପକ୍ଷରେ, କର୍ମ କାରଣଂ ଉଚ୍ୟତେ (କର୍ମହିଁ ଏକମାତ୍ର ଉପାୟ ବୋଲି କୁହାଯାଏ,—ନିଷ୍କ୍ରିୟତା ନୁହେଁ ) । ଯୋଗାରୂଢ଼ସ୍ୟ

ତସ୍ୟ ( ସେହି ସାଧକ ଯୋଗାରୂଢ଼ ହୋଇସାରିଲାପରେ ଯାଇନ୍ହିଁ ତାଙ୍କ ପକ୍ଷରେ) ଶମଃ କାରଣଂ ଉଚ୍ୟତେ ( ଯୋଗାନୁଭବକୁ ସ୍ଥିର ରଖିବାପାଇଁ ଶମ — ଅର୍ଥାତ୍ ଧ୍ୟାନଯୁକ୍ତ ନୈଷ୍କର୍ମ୍ୟହିଁ ଉପାୟ ବୋଲି ବୁଝାଯାଏ) ।

## ଅନୁବାଦ

"(ଅଥଚ) କର୍ମ ଓ ନୈଷ୍କର୍ମ୍ୟ, ଧର୍ମସାଧନାରେ ଏହିଉଭୟର ଉପଯୋଗିତା ଅଛି । ଯୋଗ-ନିଶୁଣି ଦେଇ ସାଧନାର ଉପରକୁ ଉପରକୁ ଉଠି ମୁନି ହେବାକୁ ଇଚ୍ଛା କରୁଥିବା ଲୋକର 'କର୍ମ'ହିଁ ଏକମାତ୍ର ଉପାୟ ଏବଂ ଯୋଗାରୂଢ଼ ହୋଇସାରିଲାପରେ ସେହି ଯୋଗାନୁଭବକୁ ସ୍ଥିର ରଖିବାପାଇଁ ଶମ ବା ଧ୍ୟାନଯୁକ୍ତ ନୈଷ୍କର୍ମ୍ୟହିଁ ଏକମାତ୍ର ଉପାୟ ବୋଲି ଜାଣିବ ।"

## ବିଶେଷ ଭାଷ୍ୟ

'ଆରୁରୁକ୍ଷୁ' ( ଆରୋହଣପାଇଁ ଇଚ୍ଛୁକ ) ଶବ୍ଦରୁ ନିଶୁଣି-ଚଢ଼ିବା ଭାବକଳ୍ପଟିକୁ ଉପମାସ୍ୱରୂପ ନିଆଯାଇଛି । ନିଶୁଣି ଚଢ଼ିସାରିଲାପରେ ଆଉ ଯେ କର୍ମ ନ ଥାଏ ନୁହେଁ ; କିନ୍ତୁ ଚଢ଼ିବାଟା ଯେଉଁ କର୍ମ ସେ ଆଉ ସାଧନା ହୋଇ ନ ଥାଏ । ସେ ହୋଇଉଠେ କେବଳ ସିଦ୍ଧିର ପ୍ରକାଶ । ଗୀତା ଏଠାରେ 'ସାଧନାବସ୍ଥା' ଓ 'ସିଦ୍ଧାବସ୍ଥା'ରହିଁ ପ୍ରଭେଦ ଦେଖାଇଛନ୍ତି । ଗୀତା ପରି ଏକ-ଗ୍ରନ୍ଥ-ରଚନା ଯେଉଁ କର୍ମ, ତାର ପଟାନ୍ତର କାହିଁ ? କିନ୍ତୁ ଯାକୁ ଆମେ ସାଧାରଣ କର୍ମ ସହିତ ତୁଳନା କରିବା କି ? ଏ ଯେ ପରମତମ ଓ ଚରମତମ ମାନବିକ ସିଦ୍ଧି ; କିନ୍ତୁ ଏପରି ଗ୍ରନ୍ଥରଚନା ପଛରେ କି ଅସାମାନ୍ୟ କର୍ମ-ସାଧନା ଥାଇପାରେ, ପାଠକେ ତାହା କଳ୍ପନାକୁ ନେଇ, ଆଲୋଚ୍ୟ ଶ୍ଳୋକରେ 'ଆରୁରୁକ୍ଷୁ' ଓ 'ଆରୂଢ଼' ଶବ୍ଦଦୁଇଟିଭିତରେ କି ପାର୍ଥକ୍ୟ, ତାହା ଅନୁଭବ କରିପାରିବେ ବୋଲି, ଆଶା । ଯେ ପରେ ବିରାଟ ପଣ୍ଡିତ ହୁଅନ୍ତି, ସେ ମଧ୍ୟ ବର୍ଣ୍ଣମାଳାରୁ ଆରମ୍ଭ କରି ଉପରକୁ ଉପରକୁ ଉଠିଥାନ୍ତି । ତେଣୁ ଆମେ ସମସ୍ତେ ପ୍ରଥମ ସ୍ତରରେ କର୍ମକାଣ୍ଡ (କର୍ମବାନ୍) ରହିବାହିଁ ରହିବା । 'ନ ହି କଶ୍ଚିତ୍ କ୍ଷଣମପିଜାତୁ ତିଷ୍ଠତ୍ୟକର୍ମକୃତ୍' (ଗୀତା ୩।୫)— କେହି କ୍ଷଣେ ହେଲେ କର୍ମଶୂନ୍ୟ ହୋଇ ରହିପାରିବେ ନାହିଁ । ଆମର ଏହି ଦୈନନ୍ଦିନ କର୍ମକୁ ଧର୍ମ-ସାଧନାରେ ପରିଣତ କରିବାର ଉପାୟ ହେଲା, ତାକୁ କର୍ତ୍ତୃତ୍ୱାଭିମାନଶୂନ୍ୟ ଓ ଫଳାଭିଳାଷଶୂନ୍ୟ କରିପକାଇବା, ଅର୍ଥାତ୍ ନିଃସ୍ୱାର୍ଥ କର୍ମ । ଏହା ହେଲେ ଆମର ପ୍ରତ୍ୟେକ କର୍ମହିଁ ପଳାୟିତ ହୋଇଉଠିବ ଏବଂ କ୍ରମେ ଆମେ ପ୍ରକୃତ ଯୋଗୀ ଓ ସନ୍ନ୍ୟାସୀ ହେବା । ଏହି ମାନସିକ ପରିବର୍ତ୍ତନ ମଧ୍ୟ, ସାଧକକୁ ସେ ବାହାରେ ନାନା କର୍ମ କରି ଚାଲିଥିବା ସତ୍ତ୍ୱେ,ଗଭୀର ମନନରେ ସହାୟତା କରିବ । ସେହି ଗଭୀର ମନନ ବା ଯୋଗାରୂଢ଼ ଅବସ୍ଥା ଆସିଗଲାପରେ, ସାଧାରଣ ସାଂସାରିକ-

ସାମାଜିକ କର୍ମ ଅନାବଶ୍ୟକ ହୋଇଉଠିବ ବା କର୍ମର ପ୍ରତିକ୍ରିୟା-ବିଷ ସେହି ସିଦ୍ଧଜନଙ୍କୁ ଆଉ ଲାଗିବ ନାହିଁ । ସେତେବେଳେ ଯୋଗୀ ବା ସିଦ୍ଧଜନର ଚଳାହିଁ ବାହାରେ ବିଶିଷ୍ଟ କର୍ମରୂପେ ଦେଖା ଦେବ । 'ଯୋଗାରୂଢ଼' କାହାକୁ କୁହାଯାଏ, ପରବର୍ତ୍ତୀ ଶ୍ଳୋକ ତାହା ସ୍ପଷ୍ଟତର କରୁଛି ।

୪

ଯଦାହି ନେନ୍ଦ୍ରିୟାର୍ଥେଷୁ ନ କର୍ମସ୍ୱନୁଷଜ୍ଜତେ
ସର୍ବସଂକଳ୍ପସନ୍ନ୍ୟାସୀ ଯୋଗାରୂଢ଼ସ୍ତଦୋଚ୍ୟତେ । ୪ ।

ଯଦାହି (ଯେତେବେଳେ) ସର୍ବସଂକଳ୍ପସନ୍ନ୍ୟାସୀ (କେବଳ କର୍ମ ନୁହେଁ, କର୍ମର ସକଳ ସଂକଳ୍ପ ବା ଯୋଜନାକୁ ମଧ୍ୟ ଯିଏ ତ୍ୟାଗ କରି-ସାରିଲେଣି, ଏପରି ସାଧକ) ଇନ୍ଦ୍ରିୟାର୍ଥେଷୁ (ଇନ୍ଦ୍ରିୟମାନଙ୍କର ଭୋଗ୍ୟ ବିଷୟାଦିରେ) ନ ଅନୁଷଜ୍ଜତେ (ଆସକ୍ତ ହୁଅନ୍ତି ନାହିଁ) କର୍ମସୁ ନ (ବା ତଦ୍‌ଭାବ-ପରିପୋଷକ କୌଣସିପ୍ରକାର କର୍ମରେ ନୁହେଁ) ତଦା (ସେତିକିବେଳେହିଁ) [ସେ ଲୋକ] ଯୋଗାରୂଢ଼ଃ ଉଚ୍ୟତେ (ଯୋଗାରୂଢ଼ ବୋଲି କୁହାଯାଇଥାନ୍ତି) ।

**ଅନୁବାଦ**

ହେ ଅର୍ଜୁନ, ଯେତେବେଳେ ସାଧକ ସକଳପ୍ରକାର ସଂକଳ୍ପକୁ ମଧ୍ୟ ବିସର୍ଜନ କରିବାଫଳରେ ଇନ୍ଦ୍ରିୟ-ଭୋଗ୍ୟ ବିଷୟ ବା ତଦ୍‌ଭାବ-ପରିପୋଷକ କର୍ମମାନଙ୍କରେ ଆଉ ମାତନ୍ତି ନାହିଁ, ସେତିକିବେଳେହିଁ ତାଙ୍କୁ ଯୋଗାରୂଢ଼ କୁହାଯାଇଥାଏ ।

**ବିଶେଷ ଭାଷ୍ୟ**

ବାହାରେ କାମପାଇଁ ଆଗ୍ରହ ଚାଲିଯାଇଥିବ ଓ ଭିତରେ ସକଳ-ପ୍ରକାର ସଂକଳ୍ପ ('ଯା କରିବି', 'ତା କରିବି', 'ଯା ଭୋଗ କରିବି', 'ତା ଭୋଗ କରିବି'ର ଯୋଜନା) ମଧ୍ୟ ମନରୁ ଉଭେଇଯାଇଥିବ,—ଏହି ହେଲା ଯୋଗାରୂଢ଼ର ଅବସ୍ଥା । ଏ ସ୍ତରରେ ନିଷ୍କ୍ରିୟତା ଅସ୍ୱାଭାବିକ ନୁହେଁ । ଏ ସ୍ତରକୁ ଆସିଲା-ପରେ ସାଧକ ଯେ ଆତ୍ମିକ ସ୍ତରରେ ଗମ୍ଭୀରଭାବରେ ସକ୍ରିୟ ହୋଇଉଠନ୍ତି, ଏ କଥା ଗୀତା ବହୁ ଶ୍ଳୋକରେ ଆଗରୁ ସୂଚନା ଦେଇଛନ୍ତି । ଅର୍ଥାତ୍, ଆମେ ସାର୍ଥକ ବ୍ୟଞ୍ଜନାପୂର୍ଣ୍ଣ 'ନିଷ୍କ୍ରିୟତା'ର ନାମୋଚ୍ଚାରଣ କରିପାରିବା କେବଳ ସେତିକିବେଳେ, ଯେତେବେଳେ ଆମେ ଗାନ୍ଧି, ରାମକୃଷ୍ଣ ବା ବୁଦ୍ଧଙ୍କ ମରି ଅନ୍ତରରେ ହୋଇଉଠିବା ସମ୍ପୂର୍ଣ୍ଣ ବାସନାଶୂନ୍ୟ, ଅଥଚ ଅନ୍ତର୍ଜ୍ୟୋତି ଓ ଅନ୍ତରାରାମ ଏବଂ ସ୍ୱାଭାବିକଭାବରେ ସର୍ବଭୂତହିତେ-ରତ । ତା ପୂର୍ବରୁ ନିଷ୍କ୍ରିୟତା କେବଳ ଭଣ୍ଡତା ।

କର୍ମତ୍ୟାଗର ମୂଳକଥା ତେଣୁ ହେଲା ବାସନା-ବା-ସଂକଳ୍ପ-ତ୍ୟାଗ । ଯେପର୍ଯ୍ୟନ୍ତ ଆମେ ମାନସିକ ସ୍ତରରେ କର୍ମଯୋଜନା ବା ଭୋଗଯୋଜନା-ସବୁ ପରିହାର ନ କରିଛୁଁ, ସେପର୍ଯ୍ୟନ୍ତ ବାହାରର ସକଳ ଭେକ, ସକଳ ପ୍ରଚୃର କେବଳ ଆତ୍ମପ୍ରତାରଣା ମାତ୍ର । 'ମହାଭାରତର' ପରିପୋଷକ ଏହି ଶ୍ଳୋକଟି ( ଶାନ୍ତି ପର୍ବ ୭୭।୨୫ ) ଏ ସଂପର୍କରେ ବିଶେଷ ଉଲ୍ଲେଖନୀୟ—

କାମ, ଜାନାମି ତେ ମୂଳଂ
ସଂକଳ୍ପାତ୍ ତ୍ୱଂ ହି ଜାୟସେ
ନ ତ୍ୱଂ ସଂକଳ୍ପୟିଷ୍ୟାମି
ତେନ ମେ ନ ଭବିଷ୍ୟସି ।

(ହେ କାମ, ଅର୍ଥାତ୍ ବାସନା, ତୁମର ଉତ୍ପତ୍ତି ମୁଁ ବର୍ତ୍ତମାନ ଜାଣିଲିଣି । ତୁମେ ମାନସିକ ସଂକଳ୍ପରୁହିଁ ଜାତ ହୁଅ । ମୁଁ ଆଉ କୌଣସି ସଂକଳ୍ପକୁ ପ୍ରଶ୍ରୟ ଦେବି ନାହିଁ । ତେଣୁ ତୁମେ ମୋଠାରେ ଦେଖା ଦେଇପାରିବ ନାହିଁ ।)

ବିଷ୍ଣୁ ପୁରାଣ (୬।୭।୨୮)ର ନିମ୍ନଲିଖିତ ଶ୍ଳୋକ ମଧ୍ୟ ସଂପୂର୍ଣ୍ଣ ଅନୁରୂପ ଭାବବାହୀ—

ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ
ବନ୍ଧସ୍ୟ ବିଷୟାସଙ୍ଗଃ, ମୁକ୍ତେ ର୍ନିର୍ବିଷୟଂ ତଥା ।

( ମନହିଁ ମନୁଷ୍ୟମାନଙ୍କର ବନ୍ଧନ ଓ ମୁକ୍ତି ଉଭୟର ଏକମାତ୍ର କାରଣ । ବିଷୟାସକ୍ତ ମନ ବନ୍ଧନର ଏବଂ ବିଷୟ-ବିରକ୍ତ ମନହିଁ ମୁକ୍ତିର ଉପାୟ । )

କିନ୍ତୁ କିପରି ବା କିଏ ଆମକୁ ଏହି ଅପୂର୍ବ ଅବସ୍ଥାକୁ ଆସିବାରେ ସାହାଯ୍ୟ କରିପାରେ ? ପରବର୍ତ୍ତୀ ଦୁଇ ଶ୍ଳୋକରେ ଗୀତା ତାର ସ୍ପଷ୍ଟ ଉତ୍ତର ଦେଉଛନ୍ତି ।

୫

ଉଦ୍ଧରେଦାତ୍ମନାତ୍ମାନଂ ନାତ୍ମାନମବସାଦୟେତ୍
ଆତ୍ମୈବ ହ୍ୟାତ୍ମନୋ ବନ୍ଧୁରାତ୍ମୈବ ରିପୁରାତ୍ମନଃ । ୫ ।

ଆତ୍ମନା (ଆତ୍ମାଦ୍ୱାରାହିଁ) ଆତ୍ମାନଂ ଉଦ୍ଧରେତ୍ (ଆତ୍ମାକୁ ଉପରକୁ ଉଠେଇବାକୁ ହେବ), ଆତ୍ମାନଂ ନ ଅବସାଦୟେତ୍ [ତେଣୁ] (ଆତ୍ମାକୁ ତଳକୁ ଖସିବାକୁ ଦେବ ନାହିଁ), ହି (ଯେହେତୁ) ଆତ୍ମା ଏବ (ଏହି ଆତ୍ମାହିଁ) ଆତ୍ମନଃ ବନ୍ଧୁଃ ( ଆତ୍ମାର ବନ୍ଧୁ ), ଆତ୍ମା ଏବ ଆତ୍ମନଃ ରିପୁଃ (ଆତ୍ମାହିଁ ଆତ୍ମାର ଶତ୍ରୁ ) ।

**ଅନୁବାଦ**

ହେ ଅର୍ଜୁନ, ମନେ ରଖିବ ଯେ, କେବଳ ସ୍ୱଚେଷ୍ଟାରେହିଁ ମନୁଷ୍ୟ ନିଜର ଆତ୍ମାକୁ ଉପରକୁ ଉଠେଇପାରିବ । ତେଣୁ ଆତ୍ମାକୁ କେବେହେଲେ ହେଲେ ଅଧୋଗାମୀ ହେବାକୁ ଦେବ ନାହିଁ ; କାରଣ ଆତ୍ମାହିଁ ଆତ୍ମାର ଏକମାତ୍ର ବନ୍ଧୁ ଏବଂ ଆତ୍ମାହିଁ ଆତ୍ମାର ଏକମାତ୍ର ଶତ୍ରୁ ବୋଲି ଜାଣିବ ।

୬

ବନ୍ଧୁରାତ୍ମାତ୍ମନସ୍ତସ୍ୟ ଯେନାତ୍ମୈବାତ୍ମନାଜିତଃ
ଅନାତ୍ମନସ୍ତୁ ଶତ୍ରୁତ୍ୱେ ବର୍ତ୍ତେତାତ୍ମୈବ ଶତ୍ରୁବତ୍ । ୬ ।

ଯେନ ଆତ୍ମନା ଏବ ( ଯେଉଁ ଆତ୍ମାଦ୍ୱାରା) ଆତ୍ମା ଜିତଃ (ଆତ୍ମା ନିୟନ୍ତ୍ରିତ), ଆତ୍ମା ତସ୍ୟ ଆତ୍ମନଃ ବନ୍ଧୁଃ (ସେଠାରେ ଆତ୍ମା ସେହି ଆତ୍ମାର ବନ୍ଧୁ) । ଅନାତ୍ମନଃତୁ (କିନ୍ତୁ ଆତ୍ମାକୁ ଜିଣି ନ ପାରିଥିବା ଲୋକର) ଆତ୍ମା ଶତ୍ରୁବତ୍ ଶତ୍ରୁତ୍ୱେ ବର୍ତ୍ତେତେ ଏବ (ନିଜ ନିଜର ଶତ୍ରୁ ପରି ଅପକାରକ ହୋଇ ରହନ୍ତି) ।

**ଅନୁବାଦ**

ଯେଉଁଠାରେ ଆତ୍ମା ଆତ୍ମାଦ୍ୱାରା ନିୟନ୍ତ୍ରିତ, ସେଠାରେ ଆତ୍ମାହିଁ ଆତ୍ମାର ବନ୍ଧୁ । କିନ୍ତୁ ଯେଉଁଠି ଆତ୍ମା ଅନିୟନ୍ତ୍ରିତ, ସେଠାରେ ଆତ୍ମା ଆତ୍ମାର ଶତ୍ରୁ ହୋଇଉଠେ ।

**ବିଶେଷ ଭାଷ୍ୟ**

ଗୀତା ହେଲା ମୁଖ୍ୟତଃ ଈଶ୍ୱର-ନିର୍ଭରତା ବା ଭକ୍ତିଯୋଗର ଗ୍ରନ୍ଥ । ତେଣୁ ଆତ୍ମନିର୍ଭରତା-ପ୍ରବୃତ୍ତକ ଏହି ଦୁଇଟିଯାକ ଶ୍ଳୋକର ତାତ୍ପର୍ଯ୍ୟ ମନେହୁଏ ଏକାନ୍ତ ବୌଦ୍ଧ । ବୁଦ୍ଧଙ୍କ ମତରେ ପୂଜା-ପ୍ରାର୍ଥନା, ଈଶ୍ୱରଭକ୍ତି ଇତ୍ୟାଦି କେବଳ ଆତ୍ମପ୍ରତାରଣା ବା ନିଜକୁ ଭୁଲେଇବା କଥା । ଆମେ ବର୍ତ୍ତମାନ ଯାହା, ତାହା ଆମର ଅତୀତର କର୍ମଫଳ ଏବଂ ଆମର ଭବିଷ୍ୟତ୍ ହେବ ଆମର ବର୍ତ୍ତମାନର କର୍ମଫଳ । ଅର୍ଥାତ୍ ଆମେହିଁ ଆମର ଭାଗ୍ୟ ଓ ଜୀବନର ସ୍ରଷ୍ଟା ଓ ଶିଳ୍ପୀ, ଅନ୍ୟ କେହି ନୁହେଁ । ଆମେ ଯୋଗୀ ହେବା, ବ୍ରହ୍ମଭୂତ ହେବା, ଜ୍ଞାନୀ ହେବା ବା ଭକ୍ତ ହେବା କେବଳ ଆମର ନିଜ ପ୍ରଚେଷ୍ଟାରେ । ଯଦି ତା ନ ହୋଇପାରେ ଆମେ ସଂସାର-ଚକ୍ରରେ କେବଳ ମରୁଛିହେଉଛୁ, ସେଥିପାଇଁ ଆମେହିଁ କେବଳ ଦାୟୀ, ଅନ୍ୟ ନୁହେଁ । ଆମେହିଁ ( ଆତ୍ମାହିଁ ) ଆମର (ଆତ୍ମାର) ବନ୍ଧୁ । ଆମେହିଁ (ଆତ୍ମାହିଁ) ଆମର (ଆତ୍ମାର) ଶତ୍ରୁ ।

ବୌଦ୍ଧ ଧମ୍ମପଦ (୧୬୦ ଓ ୩୮୦) ରେ ସମଭାବବାହୀ ଶ୍ଲୋକ ପାଠକଙ୍କର କୌତୂହଳ-ତୁଷ୍ଟିପାଇଁ ଏଠାରେ ଦିଆଗଲା—

ଅତ୍ତାହି ଅତ୍ତନୋ ନାଥୋ
କୋହି ନାଥୋ ପରୋ ସିୟା
ଅତ୍ତନା'ବ ସୁଦନ୍ତେ ନ
ନାଥଂ ଲଭତି ଦୁଲ୍ଲଭଂ ।

(ପ୍ରତ୍ୟେକ ବ୍ୟକ୍ତି ତାର ନିଜର ପ୍ରଭୁ । ତା ଛଡ଼ା ଅନ୍ୟ ସ୍ୱାମୀ ତାର ଆଉ କିଏ ? ନିଜକୁ ସୁବଶୀଭୂତ କରିପାରିଲେହିଁ ଲୋକେ ଦୁର୍ଲଭ ସ୍ୱାମୀ ଅର୍ଥାତ୍ ବୋଧିମଯ୍ନ ନିର୍ବାଣ ପାଇଥାନ୍ତି । )

ପୁଣି ଅନ୍ୟତ୍ର—

ଅତ୍ତାହି ଅତ୍ତନୋ ନାଥୋ
ଅତ୍ତାହି ଅତ୍ତନୋ ଗତି
ତସ୍ମା ସଞ୍ଞମୟ୍ୟତାନଂ
ଅସ୍‌ସଂ ଭଦ୍ରଂ ବା ବାଣିଜୋ ।

(ପ୍ରତ୍ୟେକ ଲୋକ ନିଜର ପ୍ରଭୁ ନିଜେ । ପ୍ରତ୍ୟେକେ ନିଜେହିଁ ନିଜର ଆଶ୍ରୟ । ବଣିକ ଯେପରି ଉତ୍ତମ ଅଶ୍ୱକୁ ନିଜାୟତ୍ତ କରି ଚଳାଇଥାଏ, ହେ ସାଧକ, ତୁମେ ମଧ୍ୟ ସେହିପରି ନିଜକୁ ସଂଯତ କରି ଚଳ ।)

ପାଠକେ ପୁଣି ସ୍ୱାଭାବିକଭାବରେ ପ୍ରଶ୍ନ କରିପାରନ୍ତି ଯେ, ସେ ଯାହା ହେଉ, କିଏ କାହାକୁ ସଂଯତ କରିବ ? ଅର୍ଥାତ୍ ଏ ଶ୍ଲୋକମାନଙ୍କରେ ଯେପରି କୁହାଯାଇଛି, କେଉଁ ଆତ୍ମା କେଉଁ ଆତ୍ମାକୁ ବାଗକୁ (ସୁପଥକୁ) ଆଣିବ ?

ସବୁ ଧର୍ମରେ ମନୁଷ୍ୟଭିତରେ ଏକ ନିମ୍ନସ୍ଥ ଓ ଏକ ଊର୍ଦ୍ଧ୍ୱସ୍ଥ ସତ୍ତା ଥିବାର ସୂଚିତ ହୋଇଛି । ଅର୍ଥାତ୍ ମନୁଷ୍ୟତା ଜୀବତ୍ୱ ଓ ଦେବତ୍ୱର ସମାହାର ମାତ୍ର । ଆମେ ସାଧାରଣତଃ ଆମର ଜୀବାଂଶକୁ ନେଇହିଁ ବ୍ୟସ୍ତ ଓ ତତ୍‌ପର । ଗୀତା ଓ ସକଳ ଧର୍ମଶାସ୍ତ୍ର ଚାହାନ୍ତି ଯେ, ପ୍ରତ୍ୟେକ ମନୁଷ୍ୟ, ଅହରହ ଜୀବସ୍ତରରୁ ଦେବ-ସ୍ତରକୁ ଉଠିବାକୁ ଚେଷ୍ଟା କରିବେ । ଅର୍ଥାତ୍, ଆମର ଊର୍ଦ୍ଧ୍ୱସ୍ଥ ସତ୍ତା ଯେପରି ନିମ୍ନସ୍ଥ ସତ୍ତାକୁ ନିୟନ୍ତ୍ରିତ କରି ଚଳେ । ସାଧାରଣତଃ ବ୍ୟାପାର କିନ୍ତୁ ଠିକ୍ ଓଲଟା ହୋଇ-ଥାଏ । ଆମର ନିମ୍ନ ସ୍ତରର ଆତ୍ମାହିଁ ଊର୍ଦ୍ଧ୍ୱସ୍ତରର ଆତ୍ମାକୁ ନିୟନ୍ତ୍ରିତ କରିଥାଏ ।

ଗୀତାରେ 'ଆତ୍ମା' ଶବ୍ଦ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହୋଇଛି । ଏଠାରେ 'ଆତ୍ମା' 'Soul,' ନୁହେଁ । ଏଠାରେ ଆତ୍ମାର ଅର୍ଥ 'ଆପଣା' 'ନିଜେ' । କିନ୍ତୁ ଏହାରିଭିତରେ ଗୀତା ଏକ ମହାନ୍ ଉପଦେଶ ଦେଇଯାଇଛନ୍ତି,

ଯାହା ପାଠକେ ସର୍ବଦା ସ୍ମରଣ ରଖିବେ । ତା ହେଲା, 'ନାତ୍ମାନମବସାଦୟେତ୍' —ଆତ୍ମାକୁ ଅଧୋଗାମୀ ହେବାକୁ ଦିଅ ନାହିଁ ବା ନିଜକୁ ନୈରାଶ୍ୟଗ୍ରସ୍ତ ହେବାକୁ ମଧ୍ୟ ଦିଅ ନାହିଁ । ଯଦି ନୈରାଶ୍ୟର ପ୍ରବଣତାରେ ଭସିଯାଅ, ତେବେ ତାହାହିଁ ହେବ ତୁମର ତୁମ ନିଜପ୍ରତି ସବୁଠାରୁ ବଳି ଶତ୍ରୁତା । ବିଜ୍ଞ ପାଠକେ ଜାଣିରଖିବେ, ତାହାହିଁ ହେବ ଯେକୌଣସି ବାହ୍ୟ ଶତ୍ରୁତାଠାରୁ ଘୋରତର ।

ଅନ୍ୟ କଥାରେ, ଗୀତା ଆମକୁ କହୁଛନ୍ତି ଯେ, ଆତ୍ମାକୁ ସର୍ବଦା ଊର୍ଦ୍ଧ୍ୱମୁଖୀ ଓ ଉତ୍ସାହୀ ରଖିବାକୁ,— ସର୍ବଦାହିଁ 'ଆରୁରୁକ୍ଷୁ' ବା ଆରୋହଣ-କାମୀ ହୋଇ ରହିବାପାଇଁ, ବା ଜୀବତ୍ୱରୁ ଦେବତ୍ୱ ଆଡ଼କୁ ଉଠେଇବାପାଇଁ ।

ପରବର୍ତ୍ତୀ କେତୋଟି ଶ୍ଳୋକରେ ଗୀତା ତେଣୁ ଏହିପ୍ରକାର 'ଯୋଗାରୂଢ଼' ବା 'ଜିତାତ୍ମା' ବା 'ନିଜକୁ ଜୟ କରିଥିବା' ଲୋକର ଲକ୍ଷଣସବୁ ବର୍ଣ୍ଣନା କରିବେ ।

୭

ଜିତାତ୍ମନଃ ପ୍ରଶାନ୍ତସ୍ୟ ପରମାତ୍ମା ସମାହିତଃ
ଶୀତୋଷ୍ଣସୁଖଦୁଃଖେଷୁ ତଥା ମାନାପମାନୟୋଃ । ୭ ।

ଜିତାତ୍ମନଃ (ସେହିପ୍ରକାର ଜିତେନ୍ଦ୍ରିୟ ବା ଯେ ନିଜ ନିଜର ଅନ୍ତଃକରଣକୁ ଜୟ କରିଛନ୍ତି, ସେପରି ଲୋକର) [ଓ] ପ୍ରଶାନ୍ତସ୍ୟ ( ରାଗଦ୍ୱେଷଶୂନ୍ୟ ପ୍ରଶାନ୍ତ-ଚିତ୍ତ ଲୋକର) ପରମାତ୍ମା (ଊର୍ଦ୍ଧ୍ୱସ୍ତରର ଆତ୍ମା) ଶୀତୋଷ୍ଣ-ସୁଖଦୁଃଖେଷୁ (ଶୀତ-ଗ୍ରୀଷ୍ମ ବା ସୁଖ-ଦୁଃଖରେ ) ତଥା ମାନାପମାନୟୋଃ (ଏବଂ ସମ୍ମାନ ବା ଅପମାନରେ) ସମାହିତଃ (ଅବିଚଳିତ) [ଥାନ୍ତି] ।

**ଅନୁବାଦ**

ଏହିପ୍ରକାର ପ୍ରଶାନ୍ତ ଓ ଆତ୍ମଜୟୀ ଲୋକର ଊର୍ଦ୍ଧ୍ୱସ୍ତର ଆତ୍ମା ଶୀତ ଓ ଉଷ୍ଣାଦି ଦୈହିକ, ସୁଖ ଓ ଦୁଃଖାଦି ମାନସିକ ଏବଂ ମାନ ଓ ଅପମାନାଦି ବୌଦ୍ଧିକ, ଏପ୍ରକାର ନିର୍ବିଧ ଦ୍ୱନ୍ଦ୍ୱ ଭିତରେ ଅବିଚଳ ରହିବାର କଥା ।

୮

ଜ୍ଞାନବିଜ୍ଞାନତୃପ୍ତାତ୍ମା କୂଟସ୍ଥୋ ବିଜିତେନ୍ଦ୍ରିୟଃ
ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ ସମଲୋଷ୍ଟ୍ରାଶ୍ମକାଞ୍ଚନଃ । ୮ ।

ଜ୍ଞାନବିଜ୍ଞାନତୃପ୍ତାତ୍ମା ( ଜ୍ଞାନ ଓ ବିଜ୍ଞାନରେହିଁ ପରିତୃପ୍ତଚିତ୍ତ ) କୂଟସ୍ଥ (ଅଚଳ ଓ ନିର୍ବିକାର) ବିଜିତେନ୍ଦ୍ରିୟଃ (ଜିତେନ୍ଦ୍ରିୟ) ସମଲୋଷ୍ଟ୍ରାଶ୍ମକାଞ୍ଚନଃ (ମାଟି, ପଥର ଓ ସୁନା ଯାହାଙ୍କ ନିକଟରେ ସମାନ, ଏପରି) ଯୋଗୀ (ଯୋଗ-ସାଧକହିଁ) ଯୁକ୍ତ ଇତି ଉଚ୍ୟତେ (ଯୁକ୍ତ ବା ଯୋଗସିଦ୍ଧ ବୋଲି କୁହାଯିବେ) ।

## ଅନୁବାଦ

ଜ୍ଞାନ ଓ ବିଜ୍ଞାନରେହିଁ ପରିତୃପ୍ତଚିତ୍ତ, ଅଚଳ ଓ ନିର୍ବିକାର, ଜିତେନ୍ଦ୍ରିୟ ଏବଂ ମାଟି-ପଥର-ସୁନାପ୍ରତି ସମଭାବାପନ୍ନ ଯେଉଁ ଯୋଗୀ, ତାଙ୍କୁହିଁ କେବଳ ଯଥାର୍ଥରେ 'ଯୁକ୍ତ' କୁହାଯିବ ।

## ବିଶେଷ ବିଷୟ

ଆମର ଧାରଣା, ଯୋଗୀ ସନ୍ନ୍ୟାସୀ ଶ୍ରେଣୀର ଲୋକେ ସାଂସାରିକ ବିଷୟସବୁ ସଂପର୍କରେ ସାଧାରଣତଃ ମୂର୍ଖ ; କିନ୍ତୁ ଏହି ସାଂସାରିକ ଜ୍ଞାନ ଯାହା ଉପନିଷଦରେ ଅ-ପରା (ନିକୃଷ୍ଟ) ବିଦ୍ୟା ବୋଲି ବର୍ଣ୍ଣିତ ହୋଇଥାଏ, ତାହା ମଧ୍ୟ ଆଧ୍ୟାତ୍ମିକ ସାଧକର ଏକାନ୍ତ ଅନାବଶ୍ୟକ ।

ଗୀତା ଯୋଗ-ସାଧନା ସଂପର୍କରେ ବରାବର 'ଜ୍ଞାନ' ଓ 'ବିଜ୍ଞାନ' ଉଭୟ ଶବ୍ଦ ବ୍ୟବହାର କରିଆସୁଛନ୍ତି (ଜ୍ଞାନବିଜ୍ଞାନନାଶନଂ—ଗୀତା ୩।୪୧) ଏବଂ ଏଠାରେ ମଧ୍ୟ କହୁଛନ୍ତି ଯେ, ଯେ ପ୍ରକୃତ ଯୋଗୀ ସେ ହେବେ ଜ୍ଞାନ-ବିଜ୍ଞାନତୃପ୍ତାତ୍ମା—ସେ ନିଜଭିତରେ ଉଭୟ ଜ୍ଞାନ ଓ ବିଜ୍ଞାନର ପ୍ରାଚୁର୍ଯ୍ୟ ଯୋଗିହିଁ ତୃପ୍ତାତ୍ମା ରହିବେ । ଜ୍ଞାନ ହେଲା ଜାଗତିକ ବିଷୟାଦିର ଜ୍ଞାନ ବା ଶାସ୍ତ୍ର-ପଠିତ ଜ୍ଞାନ ଏବଂ ବିଜ୍ଞାନ ହେଲା ପ୍ରତ୍ୟକ୍ଷ ଆଧ୍ୟାତ୍ମିକ ଅନୁଭବ । ଆଦର୍ଶ ମାନବ ଏହି ଉଭୟ ଜ୍ଞାନର ଅଧିକାରୀ ହେବା ଗୀତାଙ୍କର ଆଦର୍ଶ ।

କୂଟସ୍ଥ = 'କୂଟ' ହେଉଛି ସ୍ୱର୍ଣ୍ଣକାରମାନଙ୍କର ଲୌହ, ଯାହାଉପରେ ସେମାନେ ସୁନା ଓ ରୁପାକୁ ପିଟି ଭିନ୍ନ ଭିନ୍ନ ରୂପ ଦିଅନ୍ତି । ସୁନା ଓ ରୁପାର ଖଣ୍ଡସବୁ ନାନା ଆକାର ଧାରଣ କରନ୍ତି ; କିନ୍ତୁ ଲୌହ ଥାଏ ଅପରିବର୍ତ୍ତିତ ! 'କୂଟ'ର ଅନ୍ୟ ଅର୍ଥ ମଧ୍ୟ ହେଲା—ସର୍ବୋଚ୍ଚ ସ୍ଥାନ । ଏହି ଉଭୟ ଅର୍ଥ ମିଶି 'କୂଟସ୍ଥ' ଶବ୍ଦର ଅର୍ଥ ହେବ 'ଅଚଳ ଓ ଊର୍ଦ୍ଧ୍ୱସ୍ଥ' ।

ସମଲୋଷ୍ଟ୍ରାଶ୍ମକାଞ୍ଚନ = ଆମେ ସଂସାରୀ ଲୋକେ ସାଧାରଣତଃ ଏଇ ମାଟି, ପଥର ଓ ଧାତୁ (ସୁନା) ନେଇହିଁ ବ୍ୟାକୁଳ ଥାଉଁ ଓ ସେହିସବୁ ପାଇଁହିଁ ପରସ୍ପରକୁ ହିଂସା-ଈର୍ଷା କରୁଁ ଏବଂ ତଣ୍ଟି କଟାକଟି ମଧ୍ୟ କରୁଁ ; କିନ୍ତୁ ଯାର ଅନୁରାଗ ଈଶ୍ୱରଙ୍କଠାରେ 'ଯୁକ୍ତ' ହୋଇସାରିଲାଣି, ସେ ମାଟି-ପଥର-ଧାତୁ ପରି ଅସ୍ଥାୟୀ-ସୁଖଦ ଦ୍ରବ୍ୟପ୍ରତି ଆସକ୍ତ ହେବ କାହିଁକି ? ସଂସାରୀ ଆଖିରେ ସ୍ନେହ, ଦୟା, ସାଧୁତାଦି ଗୁଣ ଅପେକ୍ଷା ମାଟିହିଁ ଅତ୍ୟନ୍ତ ମୂଲ୍ୟବାନ୍, ମାଟିଠାରୁ ଅଧିକ ପଥର, ଓ ପଥରଠାରୁ ସୁନା ଅଧିକ ମୂଲ୍ୟବାନ୍ ; କିନ୍ତୁ ପ୍ରକୃତ ଯୋଗୀର ଆଖିରେ ସେ ସମସ୍ତହିଁ ଏକ ମାଟି । ଶ୍ରୀ ରାମକୃଷ୍ଣଙ୍କ ବାଣୀରେ

"ସଂସାରୀ ଲୋକେ ସଂସାରର ଅସ୍ଥାୟୀ ଜିନିଷ ନେଇ ବ୍ୟସ୍ତ । ଯିଏ ଭକ୍ତ, ସେ କେବଳ ଈଶ୍ୱରଙ୍କୁ ଖୋଜେ, ଆଉ କିଛି ନୁହେଁ ।"

୯

ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ
ସାଧୁଷ୍ୱପି ଚ ପାପେଷୁ ସମବୁଦ୍ଧିର୍ବିଶିଷ୍ୟତେ । ୯ ।

ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥ ଦ୍ୱେଷ୍ୟବନ୍ଧୁଷୁ (ଘନିଷ୍ଠ ବନ୍ଧୁ, ମିତ୍ର, ଅରି, ଉଦାସୀନ, ମଧ୍ୟସ୍ଥ, ଘୃଣ୍ୟଜନ ଓ ସାଧାରଣ ବନ୍ଧୁଜନଠାରେ ସାଧୁଷ୍ୱପି ଚ ପାପେଷୁ (ପୁଣି ସାଧୁଜନ ଓ ଦୁରାଚାରୀଠାରେ) [ଯେଉଁ ଲୋକ] ସମବୁଦ୍ଧିଃ (ସମାନଜ୍ଞାନସଂପନ୍ନ ହୋଇଥାନ୍ତି) ବିଶିଷ୍ୟତେ [ତାଙ୍କୁହିଁ] ବିଶିଷ୍ଟ ବା ଶ୍ରେଷ୍ଠ କୁହାଯାଏ ।

## ଅନୁବାଦ

ଘନିଷ୍ଠ ବନ୍ଧୁ, ମିତ୍ର, ଶତ୍ରୁ, ଉଦାସୀନ, ମଧ୍ୟସ୍ଥ, ଘୃଣ୍ୟ ଓ ସାଧାରଣ ସାଙ୍ଗମାନଙ୍କଠାରେ ପୁଣି ଉଭୟ ସାଧୁଜନ ଓ ଦୁରାଚାରୀ ଜନଠାରେ ମଧ୍ୟ ଯେ ସମବୁଦ୍ଧି, ସମାଜରେ ସେହି ଲୋକହିଁ ପ୍ରକୃତ ବିଶିଷ୍ଟତାସଂପନ୍ନ ।

## ବିଶେଷ ଭାଷ୍ୟ

ସୁହୃତ୍—ଯେ ପ୍ରତ୍ୟାଶା ନ ରଖି ଉପକାର କରିଥାନ୍ତି ।

ମିତ୍ର—ଯେ ସ୍ନେହାକର୍ଷଣ ଯୋଗୁଁ ଉପକାର କରିଥାନ୍ତି ।

ଅରି—ଯେ କେବଳ ଅପକାରହିଁ କରିଥାନ୍ତି ।

ଉଦାସୀନ—ଯେ କେବଳ ନିଜ ଚର୍ମ-ରକ୍ଷାପାଇଁହିଁ ଏପଟ ସେପଟ କାହା ପଟ ନ ହୋଇ ନିରପେକ୍ଷତା ଅବଲମ୍ବନ କରନ୍ତି ।

ମଧ୍ୟସ୍ଥ—ବିବଦମାନ ଦୁଇ ପକ୍ଷର ଯେ ହିତାକାଙ୍କ୍ଷୀ ।

ଦ୍ୱେଷ୍ୟ—ଯାହାଙ୍କଠାରୁ ସର୍ବଦା ଅପକାରର ଆଶଙ୍କାହିଁ ଥାଏ ।

ବନ୍ଧୁ—କୁଟୁମ୍ବ ଲୋକେ ।

ଏ ସମସ୍ତଙ୍କପ୍ରତି ଏବଂ ସମାଜର ସବୁ ଶ୍ରେଣୀରେ ଦେଖା ଦେଉଥିବା ସାଧୁ ଅସାଧୁ ଉଭୟ ଧରଣର ଲୋକଙ୍କପ୍ରତି ଯେ ସମାନ ବ୍ୟବହାର ଦେଖାଇଥାନ୍ତି, ତାଙ୍କୁହିଁ ପ୍ରକୃତରେ ଯୋଗସିଦ୍ଧ କୁହାଯିବ ।

"ସମବୁଦ୍ଧିର୍ବିଶିଷ୍ୟତେ"—ଏହି ହେଲା ଗୀତାର ମୁଖ୍ୟ ମହାବାଣୀ । ଗୀତା ବାରମ୍ବାର ଏହି ଆଦର୍ଶ ପ୍ରଚାର କରିଛନ୍ତି । ଏହା ଭକ୍ତ, ଜ୍ଞାନୀ, କର୍ମୀ ସମସ୍ତଙ୍କରହିଁ ଶେଷ ଲକ୍ଷଣ ।

ବର୍ତ୍ତମାନ ଏହି ଆଦର୍ଶର ପରିପୋଷକ 'ଧ୍ୟାନ-ଯୋଗ'ର ବର୍ଣ୍ଣନା ଆରମ୍ଭ ହେଲା । ପରବର୍ତ୍ତୀ ବହୁ ଶ୍ଳୋକ ଧରି ତାହା ଚାଲିବ ।

୧୦

ଯୋଗୀ ଯୁଞ୍ଜୀତ ସତତମାତ୍ମାନଂ ରହସି ସ୍ଥିତଃ
ଏକାକୀ ଯତଚିତ୍ତାତ୍ମା ନିରାଶୀରପରିଗ୍ରହଃ । ୧୦ ।

ଯୋଗୀ, ଏକାକୀ ରହସି ସ୍ଥିତଃ (ଯୋଗୀ, ଏକା ଏକା ନିର୍ଜନ ସ୍ଥାନରେ ରହି), ଯତଚିତ୍ତାତ୍ମା (ଚିତ୍ତ ଓ ଆତ୍ମାକୁ ନିୟନ୍ତ୍ରିତ କରି) ନିରାଶୀଃ (ସକଳ ଆଶା-ଆକାଂକ୍ଷା ପରିତ୍ୟାଗ କରି) ଅପରିଗ୍ରହଃ (କାହାଠାରୁ କିଛି ଦାନ ଗ୍ରହଣ ନ କରି ଅର୍ଥାତ୍ ଲୋଭଶୂନ୍ୟ ହୋଇ) ସତତଂ (ନିରନ୍ତର) ଆତ୍ମାନଂ ଯୁଞ୍ଜୀତ (ନିଜକୁ ଯୋଗ-ନିଯୁକ୍ତ କରି ରଖିବେ) ।

**ଅନୁବାଦ**

ଆଦର୍ଶ ଯୋଗୀ ଏକା ଏକା ନିର୍ଜନ ସ୍ଥାନରେ ରହି, ଚିତ୍ତ ଓ ନିମ୍ନସ୍ଥ ଆତ୍ମାକୁ ନିୟନ୍ତ୍ରିତ କରି, ସକଳ ଆଶା-ଆକାଙ୍କ୍ଷା ପରିତ୍ୟାଗ କରି, କାହାରିଠାରୁ କିଛି ଗ୍ରହଣ ନ କରି ଅର୍ଥାତ୍ ଲୋଭଶୂନ୍ୟ ହୋଇ ସର୍ବଦା ନିଜ ମନକୁ ଏକାଗ୍ର ଓ ଅଚଳ କରି ରଖିବେ ।

**ବିଶେଷ ଭାଷ୍ୟ**

ଏହା ଓ ପରବର୍ତ୍ତୀ ବହୁ ଶ୍ଳୋକ ଏକାନ୍ତ 'ଟେକ୍‌ନିକାଲ୍', ଅର୍ଥାତ୍ ପତଞ୍ଜଳି-ପ୍ରଦର୍ଶିତ ଯୋଗାଭ୍ୟାସର ସୂଚନା । ଏକାନ୍ତ 'ଟେକ୍‌ନିକାଲ୍' ଜ୍ଞାନ ହୋଇଥିବା ଯୋଗୁଁହିଁ ଏହା ଭାରତବର୍ଷରେ ଗୁରୁ-ଶିଷ୍ୟ-ପରଂପରାକ୍ରମେହିଁ ବିତରିତ ହୋଇଥାଏ । କେବଳ ବହି ପଢ଼ି ଏହା ହୁଏ ନା ଏବଂ ହେବାକୁ ବିଶେଷଭାବରେ ମନା । ଗୀତା ଆଦର୍ଶ ମାନବତ୍ୱ ପାଇବା ଦିଗରେ ଏହାକୁ ବହୁ ଉପାୟଭିତରୁ ଅନ୍ୟତମ ପଦ୍ଧତିରୂପେ କେବଳ ସୂଚନା ଦେଇଯାଇଛନ୍ତି । ଏଥିରେ କିନ୍ତୁ ଏହି ଲେଖକର କିଛି କହିବାର ନାହିଁ, କାରଣ ସେ ଏଥିରେ ଏକାନ୍ତ ଅନଭିଜ୍ଞ । ଯେଉଁମାନେ ଏ ଦିଗରେ ଅଭିଜ୍ଞ ହେବାକୁ ଚାହାନ୍ତି, ସେମାନେ ଏ କ୍ଷେତ୍ରରେ କେବଳ ପ୍ରକୃତ ସିଦ୍ଧ ବ୍ୟକ୍ତିରହିଁ ଆଶ୍ରୟ ନେବେ । ନଚେତ୍ ଏ ପଥ ବିପଜ୍ଜନକ ବୋଲି କୁହାଯାଇଥାଏ ।

କିନ୍ତୁ ଏ ଶ୍ଳୋକରେ ବ୍ୟବହୃତ ହୋଇଥିବା କେତୋଟି ଶବ୍ଦ ସାଧକ ପକ୍ଷରେ ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ । ପାଠକେ ସେଗୁଡ଼ିକପ୍ରତି ଯଥାର୍ଥ ଧ୍ୟାନ ଦେବେ । ସେଗୁଡ଼ିକ ହେଲା—

ସତତଂ—ସବୁବେଳେ । ଯେପରି ପାର୍ଥିବ, ସେହିପରି ମଧ୍ୟ ଆଧ୍ୟାତ୍ମିକ ବିଷୟର ସାଧନାର ନିୟମ । ଉଭୟ କ୍ଷେତ୍ରରେ ପରିପୂର୍ଣ୍ଣ ସିଦ୍ଧିପାଇଁ ନିରବଚ୍ଛିନ୍ନ ଭାବନା ଆବଶ୍ୟକ । ଯୋଗସାଧନା ମଧ୍ୟ ସେହିପରି ନିରବଚ୍ଛିନ୍ନ ଚିନ୍ତା ଦରକାର କରେ । ଏଥିପାଇଁ ଶ୍ରୀରାମକୃଷ୍ଣଙ୍କ ପରି ପବିତ୍ରାତ୍ମା ପୁରୁଷ ଏକ ଅପରିହାର୍ଯ୍ୟ

ଉଦାହରଣ ଦେବାକୁ ମଧ୍ୟ ଯାଇଛନ୍ତି । ସେ କହିଛନ୍ତି—ଆମେ ଭଗବାନଙ୍କୁ କିପରି ସ୍ମରଣ କରିବା ?—ଠିକ୍ ଯେପରି ଘରର ସବୁ କାମ ଭିତରେ ଅସତୀ ସ୍ତ୍ରୀ ତାର ଜାର-ଜନ ସହ ମିଳନର କଥା ଭାବୁଥାଏ ।

**ରହସି ଓ ଏକାକୀ—**

ରହସି—ନିର୍ଜନ ଅବସ୍ଥାରେ । ଗୀତା ଏହି କଥା ଏକାଧିକ ବାର ଜୋର ଦେଇ କହିଛନ୍ତି, କାରଣ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ମଧ୍ୟବର୍ତ୍ତୀ କୌଣସି ଲୋକ ବା ବିଷୟ ଆଦୌ ନ ରହିବାର କଥା । ଇଂରାଜୀରେ ସୁନ୍ଦର ଏକ କଥା ଅଛି—**alone to Alone**, ଅର୍ଥାତ୍ ନିଃସଙ୍ଗ ଭକ୍ତ ଏକା ଏକା ଧାଇଁବ ତାଙ୍କରି ନିକଟକୁ, ଯେ କେବଳ 'ଏକମେବାଦ୍ୱିତୀୟମ୍' । ସେହିପରି ସମ୍ପୂର୍ଣ୍ଣ ଏକାକୀତ୍ୱ ଅବସ୍ଥାରେହିଁ ଭକ୍ତର ସମଗ୍ର ପ୍ରାଣ ଈଶ୍ୱରଙ୍କ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣ ହୋଇଉଠେ । ଏ ସମ୍ପର୍କରେ 'ମହାଭାରତ'ରେ ଘୋର ବ୍ୟକ୍ତିଗତ ସଙ୍କଟ-କାଳରେ ଶ୍ରୀକୃଷ୍ଣଙ୍କର ଅତି-ପ୍ରିୟଜନ ଦ୍ରୌପଦୀଙ୍କ ଆତ୍ମାର ଚିତ୍କାର ପାଠକେ ମନେ ରଖିବେ—

ନୈବ ମେ ପତୟଃ ସନ୍ତି ନ ପୁତ୍ରା ନ ଚ ବାନ୍ଧବାଃ
ନ ଭ୍ରାତାରୋ ନ ଚ ପିତା ନୈବ ତ୍ୱଂ ମଧୁସୂଦନ ।

(ମୋର ବର୍ତ୍ତମାନ ପାଞ୍ଚ ପତି ମଧ୍ୟ ସହାୟ ନୁହନ୍ତି, ନାହିଁ ପୁଅ, ନାହିଁ ବନ୍ଧୁଜନ, ନାହିଁ ପିତା ଓ ଭ୍ରାତା ଏବଂ ଏପରିକି, ହେ ମଧୁସୂଦନ, ତୁମେ ବି ମୋର ହୋଇ ନାହଁ ।)

ଯୀଶୁଖ୍ରୀଷ୍ଟଙ୍କର ସେହି ପ୍ରାକ୍-ମରଣକାଳର ମହାନ୍ କରୁଣ ଚିତ୍କାର ମଧ୍ୟ ସ୍ମରଣୀୟ—"ହେ ମୋର ଈଶ୍ୱର, ହେ ମୋର ଈଶ୍ୱର, କି କାରଣରୁ ତୁମେ ମଧ୍ୟ ମୋତେ ପରିତ୍ୟକ୍ତ କରିଦେଲ ?"

କିନ୍ତୁ ଆତୁର ପ୍ରାଣର ଏହିପ୍ରକାର ସମଗ୍ର ଚିତ୍କାରପାଇଁହିଁ ଈଶ୍ୱର ଯେପରିକି ଅପେକ୍ଷା କରିଥାନ୍ତି । ମଧୁସୂଦନ ଯେ ଦ୍ରୌପଦୀଙ୍କର ପାଖେ ପାଖେ, ତାହା ଦ୍ରୌପଦୀ ହୁଏତ ଜାଣି ନ ଥିଲେ । ନଚେତ୍ ତାଙ୍କର ନାରୀତ୍ୱର ମର୍ଯ୍ୟାଦା ସେହି ବର୍ବରମଣ୍ଡଳୀରେ ସଂରକ୍ଷିତ ହେଲା କିପରି ? ଏବଂ ଈଶ୍ୱର-ପରିତ୍ୟକ୍ତ ଯୀଶୁଙ୍କର ସ୍ୱର୍ଗୀୟ ପୁନରୁତ୍ଥାନ ବା କିପରି ଘଟିଥାନ୍ତା ?

ପରମହଂସ ଦେବଙ୍କର ପରମ ବଚନ ଏ ସମ୍ପର୍କରେ ଅନୁଧ୍ୟେୟ । ସେ କହିଛନ୍ତି—"ପ୍ରକୃତ ସାଧୁଜନ ସେହି, ଯେ ଏକା ଏକା ଥାଇ ମଧ୍ୟ କୌଣସି ଅକର୍ମ କରେ ନାହିଁ । ଲୋକମତପାଇଁ ଯେଉଁ କର୍ମ କରାଯାଏ, ତାହା ପୁଣ୍ୟ କର୍ମ ନୁହେଁ । ସେହି କେବଳ ସଂଯତ, ଯେ ଏକା ଥାଇ ମଧ୍ୟ ମନରେ କୌଣସି

ସ୍ତ୍ରୀଲୋକର ଚିନ୍ତା କରେ ନା । ସେହି କେବଳ ନିର୍ଲୋଭ, ଯେ ଶୂନ୍ୟ ଗୃହରେ ଗଦାଏ ସ୍ୱର୍ଣ୍ଣମୁଦ୍ରା ଥୁଆ ହୋଇଥିବାର ଦେଖି ମଧ୍ୟ ସେଆଡ଼କୁ ଭ୍ରୂକ୍ଷେପ କରେ ନା । ତେଣୁ ଯାହା ଲୋକଲୋଚନର ଅନ୍ତରାଳରେ ଆତ୍ମୋନ୍ନତିପାଇଁ କରାଯାଏ, ତାହାହିଁ କେବଳ ଧର୍ମୀୟ କର୍ମ ।"

ଯତଚିତ୍ତାତ୍ମା—

ଏଠାରେ ଆତ୍ମାକୁ କେହି କେହି ଟୀକାକାର ଆପଣାର 'ଦେହ'କୁହିଁ ବୁଝାଇବ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ତାହା ହେଲେ ଏହାର ଅର୍ଥ ହେବ— 'ସାଧକ ନିଜର ଦେହ ଓ ମନକୁ ସଂଯତ କରି' । ଏଠାରେ 'ସଂଯମ'ର ଅର୍ଥ ଚିତ୍ତଶୁଦ୍ଧି ଓ ଆତ୍ମଶୁଦ୍ଧି । କେବଳ ଶୁଦ୍ଧୀଭୂତ ଚିତ୍ତ ଓ ଶୁଦ୍ଧୀଭୂତ ଆତ୍ମାହିଁ ପରମାତ୍ମାଙ୍କୁ ପ୍ରତିବିମ୍ବିତ କରିପାରିବ । ଆମର ସମସ୍ତ ବାହ୍ୟ ପ୍ରଲୋଭନ ଓ ଆସକ୍ତି ଆତ୍ମ ମନକୁ ଟାଣିଆଣି ଏକାଗ୍ରଭାବରେ ଆତ୍ମାର ଗଭୀର କେନ୍ଦ୍ରରେ ନିବିଷ୍ଟ କଲେ ଆମେ ନିଜେହିଁ ନିଜକୁ ଆବିଷ୍କାର କରିପାରିବା । ଗୁରୁ ଶିଷ୍ୟକୁ କିଛି ଦିଅନ୍ତି ନାହିଁ—କେବଳ ଶିଷ୍ୟକୁ ବତାଇଦିଅନ୍ତି, ସେ ନିଜେ ନିଜକୁ କିପରି ଆବିଷ୍କାର କରିପାରିବ । ଗଭୀର ଧ୍ୟାନହିଁ ଏହି ଉପାୟ ।

**ନିରାଶୀ**—ଧନ, ସମ୍ମାନ, ପରିବାର ପ୍ରଭୃତିର ଭାବନାରେ ଘାଣ୍ଟି- ହେଉଥିବା ଲୋକ ପକ୍ଷରେ ଆତ୍ମ-ଦର୍ଶନ ବା ସତ୍ୟ-ଦର୍ଶନ ଅସମ୍ଭବ । କାରଣ ଏପରି ଲୋକ ତ ସତ୍ୟ ଖୋଜୁନି—ସେ ଖୋଜୁଛି ପାର୍ଥିବ ସିଦ୍ଧିସବୁ । ଯେ କୌଣସି ପାର୍ଥିବ ଆଶା ନ ରଖି (ନିରାଶୀ) କେବଳ ଈଶ୍ୱରଙ୍କୁ ବା ଆତ୍ମ-ଦର୍ଶନ ବା ସତ୍ୟ-ଦର୍ଶନ ଚାହେଁ, ସେହିଁ କେବଳ ସେହି ମହତ୍ତର ଅନୁଭବସବୁ ପାଏ ।

**ଅପରିଗ୍ରହ**—ଆମର ସାଧାରଣ ଚିତ୍ତ-ବିଶୃଙ୍ଖଳାର କାରଣ ହେଲା ପାର୍ଥିବ ଦ୍ରବ୍ୟାଶା—ଟଙ୍କାପଇସା, କୋଠା ବାଡ଼ି ଓ ଅନ୍ୟ ବିବିଧ ଦ୍ରବ୍ୟଉପରେ ମାଲିକତ୍ୱ । ଏହା ଯୋଗୁଁ ସ୍ୱାମୀ ସ୍ତ୍ରୀ, ବାପ ପୁଅ, ମା-ଝିଅଙ୍କ ଭିତରେ ମଧ୍ୟ ଦ୍ୱନ୍ଦ୍ୱ ଓ ବିଦ୍ୱେଷ । ପ୍ରକୃତ ସାଧକ ଏହି ସମସ୍ତପ୍ରକାର ପାର୍ଥିବ ଲିପ୍ସାରୁ ମନକୁ ସମ୍ପୂର୍ଣ୍ଣରୂପେ ମୁକ୍ତ ରଖିବା ଉଚିତ । ଯେତେ ଦିନପର୍ଯ୍ୟନ୍ତ ଆମେ ପାର୍ଥିବ ଧନ କ୍ଷମତା ଓ ଦ୍ରବ୍ୟମତ୍ତତାଦିର ଅହଙ୍କାର ଓ ଆସକ୍ତିରୁ ଚିତ୍ତକୁ ମୁକ୍ତ ନ କରି- ପାରିଛେଁ, ସେତେ ଦିନପର୍ଯ୍ୟନ୍ତ ଅନ୍ତତଃ ଈଶ୍ୱରାନୁଭବ ବା ସତ୍ୟ-ଦର୍ଶନ ସହଜ ନୁହେଁ ।

୧୧—୧୨

ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ ସ୍ଥିରମାସନମାତ୍ମନଃ
ନାତ୍ୟୁଚ୍ଛ୍ରିତଂ ନାତିନୀଚଂ ଚୈଲାଜିନକୁଶୋତ୍ତରମ୍‌ । ୧୧ ।
ତତ୍ରୈକାଗ୍ରଂ ମନଃ କୃତ୍ୱା ଯତଚିତ୍ତେନ୍ଦ୍ରିୟକ୍ରିୟଃ
ଉପବିଶ୍ୟାସନେ ଯୁଞ୍ଜ୍ୟାଦ୍‌ଯୋଗମାତ୍ମବିଶୁଦ୍ଧୟେ । ୧୨ ।

ଶୁଚୌ ଦେଶେ (ପବିତ୍ର ସ୍ଥାନରେ) ସ୍ଥିରଂ (ନିଶ୍ଚଳ ହୋଇ) ନ ଅତ୍ୟୁଚ୍ଛ୍ରିତଂ (ବେଶୀ ଉଚ୍ଚା ନ ଥିବା) ନ ଅତିନୀଚଂ [ଚ] (ବେଶୀ ନୀଚ ନ ଥିବା) ଚୈଲାଜିନକୁଶୋତ୍ତରମ୍‌ (ପ୍ରଥମେ କୁଶ, ତା ଉପରେ ମୃଗଚର୍ମ ଓ ତା ଉପରେ ବସ୍ତ୍ର ସଜଡ଼ା ହୋଇଥିବା) ଆତ୍ମନଃ ଆସନଂ (ନିଜର ଆସନକୁ) ପ୍ରତିଷ୍ଠାପ୍ୟ (ସଂସ୍ଥାପନ ପୂର୍ବକ) ତତ୍ର ଆସନେ (ସେହି ଆସନରେ) ଉପବିଶ୍ୟ (ବସି) ଯତଚିତ୍ତେନ୍ଦ୍ରିୟକ୍ରିୟଃ (ଚିତ୍ତ ମନ ଓ ଇନ୍ଦ୍ରିୟମାନଙ୍କର କ୍ରିୟାକୁ ସଂଯତ କରି) ମନଃ ଏକାଗ୍ରଂ କୃତ୍ୱା (ମନକୁ ଏକାଗ୍ର କରି) ଆତ୍ମବିଶୁଦ୍ଧୟେ (ଆତ୍ମଶୁଦ୍ଧିପାଇଁ) [ଯୋଗସାଧକ] ଯୋଗଂ ଯୁଞ୍ଜ୍ୟାତ୍‌ (ଯୋଗାଭ୍ୟାସ କରିବେ । )

**ଅନୁବାଦ—**

ସେହି ଯୋଗୀ ପବିତ୍ର ସ୍ଥାନରେ ବେଶୀ-ଉଚ୍ଚ-ନୁହେଁକି ବେଶୀ ନୀଚ-ନୁହେଁ ଏପରି ଏକ ଆସନ ପ୍ରତିଷ୍ଠା କରିବେ ତହିଁରେ କୁଶ, ମୃଗଚର୍ମ ଓ ବସ୍ତ୍ର ପକାଇବେ ଏବଂ ତା ଉପରେ ଦୃଢ଼ଭାବରେ ନିଶ୍ଚଳ ହୋଇ ବସି, ନିଜର ମନ ଓ ଇନ୍ଦ୍ରିୟମାନଙ୍କୁ ସଂଯତ କରି, ମନକୁ ଏକାଗ୍ର କରି ନିଜର ଆତ୍ମଶୁଦ୍ଧିପାଇଁହିଁ ଯୋଗାଭ୍ୟାସ କରିବେ ।

**ବିଶେଷ ଭାଷ୍ୟ**

ଆମେ ତେଲ, ସାବୁନ ଓ ନାନା ଅଙ୍ଗରାଗ ଦେଇ ଆମର ବାହାରଟାକୁ ସଫା ଓ ଶୋଭମାୟ କରି ରଖିବାକୁ ସତତ ଯତ୍ନଶୀଳ ; କିନ୍ତୁ ଆନ୍ତର ଶୌଚ ଓ ଶୋଭନୀୟତାପାଇଁ କେତେ ଜଣ ଭାବିଥାନ୍ତି ? ସେହି ମାନସିକ ଶୌଚ ଓ ଶୁଦ୍ଧତାପାଇଁ ମଧ୍ୟ ପ୍ରାତ୍ୟହିକ ସ୍ନାନ ଏକାନ୍ତ ଆବଶ୍ୟକ । ଯୋଗ ବା ମନନ ଗୀତାଙ୍କ ମତରେ ସେହି ସ୍ନାନ । ତା ବିନା ଆତ୍ମ ବିଶୁଦ୍ଧି ହୋଇ ନ ପାରେ ।

୧୩—୧୪

ସମଂ କାୟଶିରୋଗ୍ରୀବଂ ଧାରୟନ୍ନଚଳଂ ସ୍ଥିରଃ
ସଂପ୍ରେକ୍ଷ୍ୟ ନାସିକାଗ୍ରଂ ସ୍ୱଂ ଦିଶଶ୍ଚାନବଲୋକୟନ୍‌ । ୧୩ ।
ପ୍ରଶାନ୍ତାତ୍ମା ବିଗତଭୀର୍ବ୍ରହ୍ମଚାରିବ୍ରତେ ସ୍ଥିତଃ
ମନଃ ସଂଯମ୍ୟ ମଚ୍ଚିତ୍ତୋ ଯୁକ୍ତ ଆସୀତ ମତ୍‌ପରଃ । ୧୪ ।

କାୟଶିରୋଗ୍ରୀବଂ (ଶରୀର, ମସ୍ତକ ଓ ଗ୍ରୀବାକୁ) ସମଂ ଅଚଳଂ ଧାରୟନ୍ (ସିଧା ଓ ନିଶ୍ଚଳ ରଖି) ସ୍ଥିରଃ (ସମଗ୍ର ଶରୀରକୁ ସ୍ଥିର ରଖି) ସ୍ୱଂ ନାସିକାଗ୍ରଂ ସଂପ୍ରେକ୍ଷ୍ୟ (ନିଜ ନାକର ଅଗ୍ରଭାଗରେ ଦୃଷ୍ଟି ନିବଦ୍ଧ କରି) ଦିଶଃ ଚ ଅନବଲୋକୟନ୍ (ଏ ଦିଗ ସେ ଦିଗ, କେଉଁ ଆଡକୁ ନ ଅନାଇ) ପ୍ରଶାନ୍ତାତ୍ମା (ପ୍ରଶାନ୍ତଚିତ୍ତ) [ଓ] ବିଗତଭୀଃ ( ନିର୍ଭୟ ରହି ) [ପୁଣି] ବ୍ରହ୍ମଚାରିବ୍ରତେ ସ୍ଥିତଃ (ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ) ମନଃ ସଂଯମ୍ୟ (ମନକୁ ସଂଯତ କରି), ମଚ୍ଚିତ୍ତଃ (ମଦ୍‌ଗତଚିତ୍ତ ଅର୍ଥାତ୍ ଈଶ୍ୱରସମର୍ପିତଧ୍ୟାନ) [ଓ] ମତ୍‌ପରଃ (ମତ୍‌ପରାୟଣ ବା ଈଶ୍ୱରପରାୟଣ ହୋଇ) ଯୁକ୍ତଃ ଆସୀତ (ସମାଧିସ୍ଥ ହେବେ) ।

## ଅନୁବାଦ

ସେହିପରି ଆସନରେ ନିଜକୁ ପ୍ରତିଷ୍ଠିତ କଲାପରେ, ନିଜର ମସ୍ତକ ଓ ଗ୍ରୀବା ସହିତ ସମଗ୍ର ଦେହକୁ ସିଧା ରଖି ଏବଂ ଏ ଦିଗ ସେ ଦିଗ ନ ଅନାଇ କେବଳ ନିଜର ନାସିକାଗ୍ରରେ ଦୃଷ୍ଟି ନିବଦ୍ଧ କରି ପ୍ରଶାନ୍ତଚିତ୍ତ, ଆଶଙ୍କାହୀନ, ବ୍ରହ୍ମଚର୍ଯ୍ୟବ୍ରତୀ ସେହି ଯୋଗୀ ଈଶ୍ୱରପରାୟଣ ରହି ନିଜକୁ ଈଶ୍ୱରଙ୍କଠାରେ ଯୁକ୍ତ କରିବେ ।

## ବିଶେଷ ଭାଷ୍ୟ

୧୩ଶ ଶ୍ଳୋକରେ ଥିବା "ନାସିକାଗ୍ର"ର ସାଧାରଣ ଅର୍ଥ କରାଯାଇଥାଏ 'ନାକର ଶେଷ ବିନ୍ଦୁ' ; କିନ୍ତୁ ଅଧିକାଂଶ ମତରେ ଏବେ ନାସିକାର ଅଗ୍ରକୁ ଅର୍ଥାତ୍ ଦୁଇ ଭ୍ରୂଲତାର ମଧ୍ୟସ୍ଥ, ନାକର ମୂଳ ବିନ୍ଦୁକୁ ବୁଝାଉଛି । 'ଯୌଗିକ ଧ୍ୟାନ'ପାଇଁ ଏହାହିଁ ଅଧିକ ପ୍ରଶସ୍ତ ବୋଲି ଏବେ କୁହାଯାଉଛି ।

୧୪ଶ ଶ୍ଳୋକସ୍ଥ "ବ୍ରହ୍ମଚାରିବ୍ରତେ ସ୍ଥିତଃ"ର ଅର୍ଥ ବ୍ରହ୍ମଚର୍ଯ୍ୟ ବ୍ରତରେ ଦୃଢ଼ପ୍ରତିଷ୍ଠ' । ଗୀତା ଆଉ ଥରେ ମାତ୍ର (୮/୧୧) 'ବ୍ରହ୍ମଚର୍ଯ୍ୟ' ଶବ୍ଦ ବ୍ୟବହାର କରିଛନ୍ତି । ସେଠାରେ କୁହାଯାଇଛି—

ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି

( ସେହି ପରମ ଲୋକକୁ ଯିବାପାଇଁ ଯେଉଁମାନେ ଇହଜଗତରେ କଠୋର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥାନ୍ତି ।)

ଭାରତୀୟ ଅଧ୍ୟାତ୍ମ ସାଧନାରେ ଯୌନ-ସଂଯମକୁ ଅତି ଉଚ୍ଚ ସ୍ଥାନ ଦିଆଯାଇଛି । ଆଧ୍ୟାତ୍ମିକ ସିଦ୍ଧିପାଇଁ ଏହାହିଁ ପ୍ରଥମ ଆବଶ୍ୟକତା । ଯାଜ୍ଞବଲ୍‌କ୍ୟଙ୍କ ଭାଷାରେ ବ୍ରହ୍ମଚର୍ଯ୍ୟର ନିର୍ଦ୍ଦେଶ ହେଲା—

କର୍ମଣା ମନସା ବାଚା ସର୍ବାବସ୍ଥାସୁ ସର୍ବଦା
ସର୍ବତ୍ର ମୈଥୁନତ୍ୟାଗୋ ବ୍ରହ୍ମଚର୍ଯ୍ୟଂ ପ୍ରଚକ୍ଷତେ ।

(ସର୍ବତ୍ର, ସର୍ବଦା ଓ ସବୁ ଅବସ୍ଥାରେ, କେବଳ ଦେହ ନୁହେଁ, ବାକ୍ୟ ଓ ମନରେ ମଧ୍ୟ ସକଳପ୍ରକାର ମୈଥୁନତ୍ୟାଗକୁହିଁ ବ୍ରହ୍ମଚର୍ଯ୍ୟ କୁହାଯାଇ-ଥାଏ) ।

ପାଠକେ ଶ୍ରୀରାମକୃଷ୍ଣଙ୍କର ମୁଖ୍ୟ ଆଧ୍ୟାତ୍ମିକ ସାଧନା, 'କାମିନୀ-କାଞ୍ଚନ-ଆସକ୍ତି-ତ୍ୟାଗ' ଏ କ୍ଷେତ୍ରରେ ସ୍ମରଣ କରିବେ ।

ଏହା ଯେ ଏକ କଠିନ ସାଧନା, ଏଥିରେ ସନ୍ଦେହ ନାହିଁ । ଆଜିକାଲିର ମନସ୍ତାତ୍ତ୍ୱିକ ବିଜ୍ଞାନର ପିତା ଫ୍ରୟେଡ୍‌ଙ୍କ ମତରେ ଯୌନପିପାସା ହେଲା ଜୀବ ଓ ମନୁଷ୍ୟର ସବୁଠାରୁ ପ୍ରବଳ ପ୍ରବୃତ୍ତି ; କିନ୍ତୁ ମନୁଷ୍ୟସଭ୍ୟତା ଆମ ଜୈବ ପ୍ରବୃତ୍ତିମାନଙ୍କର ଶୋଭନୀୟ ନିୟନ୍ତ୍ରଣଉପରେହିଁ ଦଣ୍ଡାୟମାନ ଏବଂ ଜୀବର ଦେବକୁ ରୂପାନ୍ତରୀକରଣ ଏକାନ୍ତଭାବରେ ପ୍ରବୃତ୍ତିମାନଙ୍କର ବଶୀ-କରଣଉପରେହିଁ ନିର୍ଭର କରେ । ସେଥିପାଇଁ ଜ୍ଞାନସଙ୍କଳନୀ ତନ୍ତ୍ରରେ ବ୍ରହ୍ମଚର୍ଯ୍ୟକୁ ଅର୍ଥାତ୍ ଆମର ବ୍ୟାପକଭାବରେ ପ୍ରବଳ ଯୌନପ୍ରବୃତ୍ତିର ଜୟକୁ ଏହିପରିଭାବରେ ପ୍ରଶଂସା କରାଯାଇଛି --

ନ ତପଃ ତପ ଇତ୍ୟାହୁଃ
ବ୍ରହ୍ମଚର୍ଯ୍ୟଂ ତପୋତ୍ତମମ୍
ଊର୍ଦ୍ଧ୍ୱରେତା ଭବେଦ୍ ଯସ୍ତୁ
ସ ଦେବୋ ନ ତୁ ମାନୁଷଃ ।

ଆମେ ରାମକୃଷ୍ଣ, ବିବେକାନନ୍ଦ ଓ ଗାନ୍ଧିଜୀଙ୍କ ଅସାଧାରଣ ବ୍ୟକ୍ତିତ୍ୱ-ସବୁକୁ ସ୍ମରଣ କଲେ ବ୍ରହ୍ମଚର୍ଯ୍ୟର ଏ ପ୍ରଶଂସା ଅତିରଞ୍ଜିତ ମନେ ହୁଏ ନାହିଁ । କାରଣ ଏହା ଅସତ୍ୟ ନୁହେଁ ଯେ, ଗାନ୍ଧି ବା ରାମକୃଷ୍ଣ ମନୁଷ୍ୟଦେହଧାରୀ ଦେବତାହିଁ ଥିଲେ ଏବଂ ଏହି ଦେବତ୍ୱ-ପ୍ରାପ୍ତିରେ ସେମାନଙ୍କର କ୍ଷୁର-ଧାର ବ୍ରହ୍ମଚର୍ଯ୍ୟ-ସାଧନାହିଁ ହୁଏତ ଥିଲା ଏକାନ୍ତରେ ଦାୟୀ ।

ଅନ୍ୟ ପକ୍ଷରେ, ମନୁଷ୍ୟର ଏହି ଅନ୍ତର୍ନିହିତ, ସହଜାତ ଓ ଦୁର୍ଦ୍ଧର୍ଷ-ଭାବରେ ପ୍ରବଳ ଯୌନକ୍ଷୁଧା ଓ ତାକୁ ମେଣ୍ଟାଇବାର ସ୍ୱାଭାବିକତା ଅନ୍ତର୍ଦ୍ରଷ୍ଟା ମନୁ ସ୍ପଷ୍ଟଭାବରେ ସ୍ୱୀକାର କରିଯାଇଛନ୍ତି । ତାଙ୍କର ଉପଦେଶହିଁ ବିବାହିତ ନର ଓ ନାରୀ ଉଭୟଙ୍କ ପକ୍ଷରେ ପାଳନୀୟ । ତାହାହିଁ ହେବ ଗୃହସ୍ଥର ଯଥୋଚିତ 'ବ୍ରହ୍ମଚର୍ଯ୍ୟ' । ବୁଦ୍ଧ ମଧ୍ୟ ଏହି ସ୍ୱାଭାବିକତାକୁ ମାନିନେଇଛନ୍ତି । ସେ କେବଳ ଅବୈଧ ଯୌନ-ସମ୍ପର୍କକୁ ଗୃହସ୍ଥର ନିଷେଧାତ୍ମକ

ପଞ୍ଚଶୀଳଭିତରୁ ଏକତମ କରି ଥୋଇଯାଇଛନ୍ତି । ଗୃହସ୍ଥ ପକ୍ଷରେ ଏକାବେଳକେ ଯୌନ-ସୁଖ-ତ୍ୟାଗପାଇଁ ବୁଦ୍ଧ କୌଣସିଠାରେ କହି ନାହାନ୍ତି । ମନୁଙ୍କ ଉପଦେଶ କିନ୍ତୁ ଅତ୍ୟନ୍ତ ବୋଧିମନ୍ତ ମନେ ହୁଏ—

ନ ମାଂସଭକ୍ଷଣେ ଦୋଷଃ
ନ ମଦ୍ୟେ ନ ଚ ମୈଥୁନେ
ପ୍ରବୃତ୍ତିରେଷା ଭୂତାନାଂ
ନିବୃତ୍ତିସ୍ତୁ ମହାଫଳା ।

କିନ୍ତୁପରେ ଗୀତା ମନୁଙ୍କର ଏହି ପରମିତାଗୃହରହିଁ ପ୍ରତିଧ୍ୱନି କରିବେ ।

୧୫

ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ନିୟତମାନସଃ
ଶାନ୍ତିଂ ନିର୍ବାଣପରମାଂ ମତ୍‌ସଂସ୍ଥାମଧିଗଚ୍ଛତି । ୧୫ ।

ଯୋଗୀ (ଯୋଗସାଧକ) ଏବଂ (ଏହିପରିଭାବରେ) ସଦା (ସବୁବେଳେ ଅର୍ଥାତ୍ ନିୟମିତଭାବରେ) ଆତ୍ମାନଂ ଯୁଞ୍ଜନ୍ (ଆତ୍ମା ସହିତ ନିଜକୁ ଯୁକ୍ତ ରଖି) ନିୟତମାନସଃ [ଏବଂ ସେହିଯୋଗୁଁ ] (ସଂଯତମନା ହୋଇ) ମତ୍ ସଂସ୍ଥାଂ ନିର୍ବାଣପରମାଂ ଶାନ୍ତିଂ (ମୋଠାରେ ଥିବା ନିର୍ବାଣରୂପକ ପରମଶାନ୍ତି) ଅଧିଗଚ୍ଛତି (ପ୍ରାପ୍ତ ହୁଅନ୍ତି) ।

**ଅନୁବାଦ**

ସେହି ଯୋଗସାଧକ ଏହିପରିଭାବରେ, ବରାବର ଆତ୍ମା ସହିତ ନିଜକୁ ଯୁକ୍ତ ରଖି, ଏବଂ ସେହିଯୋଗୁଁ ସଂଯତମନା ରହି ଶେଷରେ ମୋଠାରେ ଥିବା ନିର୍ବାଣ ରୂପ ପରମଶାନ୍ତି ପ୍ରାପ୍ତ ହୁଅନ୍ତି ।

୧୬

ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି ନ ଚୈକାନ୍ତମନଶ୍ନତଃ
ନ ଚାତି ସ୍ୱପ୍ନଶୀଳସ୍ୟ ଜାଗ୍ରତୋ ନୈବ ଚାର୍ଜୁନ । ୧୬ ।

ହେ ଅର୍ଜୁନ, ଅତ୍ୟଶ୍ନତଃ ତୁ (ବହୁଭୋଜୀ ଲୋକର) ଯୋଗଃ ନ ଅସ୍ତି (ଯୋଗାଭ୍ୟାସ ହୁଏ ନାହିଁ) । ଏକାନ୍ତଂ ଅନଶ୍ନତଃ ଚ ନ (ଏକାବେଳକେ ନ ଖାଉଥିବା ଲୋକର ମଧ୍ୟ ହୁଏ ନାହିଁ) । ଅତି ସ୍ୱପ୍ନଶୀଳସ୍ୟ ଚ ନ (ଅତ୍ୟନ୍ତ ନିଦ୍ରାପରାୟଣ ଲୋକର ମଧ୍ୟ ହେବ ନାହିଁ ) । ଜାଗ୍ରତଃ ଏବ ଚ ନ (ନିଦରେ ନ ଶୋଉଥିବା ଅର୍ଥାତ୍ ବିଶ୍ରାମ ନ ନେଉଥିବା ଲୋକର ମଧ୍ୟ ଏହା ହୁଏ ନାହିଁ) ।

**ଅନୁବାଦ**

ହେ ଅର୍ଜୁନ, ବହୁଭୋଜୀ ଏବଂ ନିରାହାର ଲୋକର ଯୋଗାଭ୍ୟାସ ଉତ୍ତମ ହୁଏ ନାହିଁ । ନିଦ୍ରାପରାୟଣ ଲୋକର ମଧ୍ୟ ଯୋଗ ହୁଏ ନାହିଁ, ପୁଣି ଆଦୌ ବିଶ୍ରାମ ନେଉ ନ ଥିବା ଲୋକର ମଧ୍ୟ ଏହା ହୁଏ ନାହିଁ ।

୧୭

ଯୁକ୍ତାହାରବିହାରସ୍ୟ ଯୁକ୍ତଚେଷ୍ଟସ୍ୟ କର୍ମସୁ
ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗୋ ଭବତି ଦୁଃଖହା । ୧୭ ।

ଯୁକ୍ତାହାରବିହାରସ୍ୟ (ପରିମିତ ଆହାରବିହାରଶୀଳ) କର୍ମସୁ ଯୁକ୍ତ ଚେଷ୍ଟସ୍ୟ (କର୍ମରେ ଯେ ଯଥାର୍ଥ ଚେଷ୍ଟାଶୀଳ) ଯୁକ୍ତସ୍ୱପ୍ନାବବୋଧସ୍ୟ (ଯଥାର୍ଥ ପରିମିତ ନିଦ୍ରା ଓ ଜାଗରଣଶୀଳ) [ଲୋକର] ଯୋଗଃ ଦୁଃଖହା ଭବତି (ଯୋଗାଭ୍ୟାସ ଦୁଃଖ-ନିବାରକ ହୁଏ) ।

**ଅନୁବାଦ**

ପରିମିତ ଆହାର-ବିହାରଶୀଳ, ସ୍ୱ-କର୍ତ୍ତବ୍ୟରେ ଯଥାର୍ଥ ଚେଷ୍ଟାବାନ୍, ଯଥାର୍ଥ ପରିମିତ ନିଦ୍ରା ଓ ଜାଗରଣଶୀଳ ଲୋକରହିଁ ଉତ୍ତମ ଯୋଗ ହୁଏ ଏବଂ ସେହି ଯୋଗହିଁ ତାର ସକଳ ଦୁଃଖ ନାଶ କରିଥାଏ ।

**ବିଶେଷ ଭାଷ୍ୟ**

କେତେକ ପଣ୍ଡିତ-ସମାଲୋଚକଙ୍କ ମତରେ, ଗୀତାର ଏହି ପ୍ରସିଦ୍ଧ ଦୁଇ ଶ୍ଳୋକରେ (୧୬, ୧୭) ଗୌତମ ବୁଦ୍ଧଙ୍କ 'ମଜ୍ଝିମ ପନ୍ଥା'ର ଓ ମନୁଙ୍କ ପରିମିତାଚାରର ଛାୟାହିଁ ପଡ଼ିଛି । ଦିନେ ଭାରତବର୍ଷରେ 'ଧର୍ମସାଧନା' ଭାବରେ ବିବିଧ କୃଚ୍ଛ୍ରସାଧନାହିଁ ବହୁ କାଳ ଧରି ଚାଲିଆସୁଥିଲା । ବସ୍ତୁତଃ 'ତପସ୍ୟା' କହିଲେ ଏକପ୍ରକାର ବ୍ୟକ୍ତିଗତ କୃଚ୍ଛ୍ରସାଧନାକୁହିଁ ବୁଝାଉଥିଲା । ଗୌତମ ବୁଦ୍ଧ ନିଜେ ପୂର୍ବେ ପାଞ୍ଚ ବର୍ଷକାଳ କଠୋର କୃଚ୍ଛ୍ରସାଧନା (ବା ତପସ୍ୟା) କରି, ଶେଷରେ ପ୍ରକୃତ ଆଧ୍ୟାତ୍ମିକ ଜ୍ଞାନପାଇଁ ଏପ୍ରକାର କୃଚ୍ଛ୍ରସାଧନାର କୌଣସି ବିଶେଷ ଉପଯୋଗିତା ନାହିଁ ବୋଲି ସ୍ଥିର କରି, ପୁଣି ପୂର୍ବତନ ସାଧାରଣ ଜୀବନଯାପନ ବ୍ୟବସ୍ଥାକୁ ଫେରିଆସିଥିଲେ ଏବଂ ଗଭୀର ମନନଫଳରେ 'ବୋଧି' (ଜ୍ଞାନ) ଲାଭପରେ ମନୁଙ୍କ ପରି ପ୍ରବୃତ୍ତି ଓ ନିବୃତ୍ତିର ମଝାମଝି, ଭୋଗ ଓ କୃଚ୍ଛ୍ରସାଧନାଭିତରେ ସେ ଏକ ଯୁକ୍ତିଯୁକ୍ତ 'ମଧ୍ୟମ ପନ୍ଥା' ଗ୍ରହଣ କରିବାହିଁ ମନୁଷ୍ୟପକ୍ଷରେ ଯଥାର୍ଥ ଧର୍ମସାଧନା ହେବ ବୋଲି ଉପଦେଶ ଦେଇଥିଲେ । ଗୀତାର 'ଯୁକ୍ତାହାରବିହାର' ସେହି 'ମଧ୍ୟ ପନ୍ଥା' । ୟୁରୋପୀୟ ସଂସ୍କୃତିରେ ମଧ୍ୟ ଗ୍ରୀକ୍‌ମାନଙ୍କ କାଳରୁହିଁ 'ଗୋଲ୍‌ଡେନ୍ ମିନ୍' (Golden mean) ଦେଇ ଏହି ମିତାଚାରର ଆଦର୍ଶ ରହିଆସିଛି । ବସ୍ତୁତଃ 'ମଡରେସନ୍' ବା

ମିତବ୍ୟବହାର ଆଧୁନିକ ୟୁରୋପୀୟ ସଭ୍ୟତାରେ ଏବଂ ବିଶେଷ କରି ଭଦ୍ର, ଶିକ୍ଷିତ ଇଂରେଜମାନଙ୍କଠାରେ, ବିଶେଷଭାବରେ ଲକ୍ଷଣୀୟ ।

ତେଣୁ କେବଳ ଯୋଗାଭ୍ୟାସପାଇଁ ଯେ 'ଯୁକ୍ତାହାରବିହାର' ଆବଶ୍ୟକ ତାହା ନୁହେଁ; ତାହାହିଁ ଆମର ଦୈନନ୍ଦିନ ଜୀବନର, ଆମର ସମଗ୍ର ଜୀବନ-ବ୍ୟବସ୍ଥାର ଆଦର୍ଶ ହୋଇ ରହିବା ଉଚିତ । ଏହି 'ଯୁକ୍ତାହାରବିହାର'ହିଁ ଆମର ଆଭ୍ୟନ୍ତରୀଣ ଜାନ୍ତବ ପ୍ରବଣତାଗୁଡ଼ିକୁ ଠିକ୍ ମାପରେ ଓ ବାଟରେ ରଖିବାର ସାଧନା ଏବଂ ଏହାହିଁ ଗୃହସ୍ଥର 'ଯୋଗ' । କେବଳ ଏହି ଯୋଗ ବା ଅଭ୍ୟାସ ମଧ୍ୟ ଆମପ୍ରତି ବହୁ ପରିମାଣରେ 'ଦୁଃଖହା' ବା ଦୁଃଖନାଶକ ହେବାର ଆଶା କରାଯାଏ ।

ଏ ସମ୍ପର୍କରେ ମନୁ ସ୍ମୃତିର ସ୍ପଷ୍ଟ ବାଣୀ ଗଭୀର ପ୍ରଣିଧାନଯୋଗ୍ୟ —

ଅନାରୋଗ୍ୟଂ, ଅନାୟୁଷ୍ୟଂ, ଅସ୍ୱର୍ଗ୍ୟଂ ଚାତିଭୋଜନମ୍
ଅପୁଣ୍ୟଂ, ଲୋକବିଦ୍ୱିଷ୍ଟଂ, ତସ୍ମାତ୍ ତତ୍ପରିବର୍ଜୟେତ୍ ।

('ଅତିଭୋଜନ' ଅସ୍ୱାସ୍ଥ୍ୟ-ଆନୟନକାରୀ, ଆୟୁଷ-ହାନିକର, ସ୍ୱର୍ଗ-ଗମନର ବାଧା-ସ୍ୱରୂପ, ପୁଣ୍ୟହାନିକାରକ, ପୁଣି ସମାଜରେ ନିନ୍ଦା-ଆନୟନକାରୀ । ତେଣୁ ତାହା ସର୍ବଥା ପରିତ୍ୟାଜ୍ୟ ।)

ଆଜିର ବିଶ୍ୱବ୍ୟାପୀ ଓ ବିଶେଷରେ ଭାରତବ୍ୟାପୀ ଖାଦ୍ୟାଭାବ ଅବସ୍ଥାରେ ବହୁ ସହସ୍ର ବର୍ଷ ପୂର୍ବେ ପ୍ରଦତ୍ତ ମନୁଙ୍କ ଉପଦେଶ କି ମୂଲ୍ୟବାନ୍, ପାଠକେ ବିଚାର କରନ୍ତୁ ।

୧୮

ଯଦା ବିନିୟତଂ ଚିତ୍ତମାତ୍ମନ୍ୟେବାବତିଷ୍ଠତେ
ନିଃସ୍ପୃହଃ ସର୍ବକାମେଭ୍ୟୋ ଯୁକ୍ତ ଇତ୍ୟୁଚ୍ୟତେ ତଦା । ୧୮ ।

ଯଦା (ଯେତେବେଳେ) [ସାଧକର] ବିନିୟତଂ ଚିତ୍ତଂ (ସଂଯତ ମନ) ଆତ୍ମନି ଏବ ଅବତିଷ୍ଠତେ (ଆତ୍ମାରେହିଁ କେବଳ ଅବସ୍ଥାନ କରେ) ତଦା (ସେହି ଅବସ୍ଥାରେ) ସର୍ବକାମେଭ୍ୟଃ (ସମସ୍ତ କାମନାରୁ) ନିଃସ୍ପୃହଃ (ବୀତଶ୍ରଦ୍ଧ) [ସେହି ସାଧକକୁ] ଯୁକ୍ତଃ ଇତି ଉଚ୍ୟତେ (ଯୁକ୍ତ ବୋଲି କୁହାଯାଇଥାଏ) ।

**ଅନୁବାଦ**

ଯେତେବେଳେ ସାଧକର ସଂଯତ ଚିତ୍ତ ଆତ୍ମାରେହିଁ ପ୍ରତିଷ୍ଠିତ ରହେ, ସେତେବେଳେହିଁ ସମସ୍ତ-କାମନା ପ୍ରତି-ବୀତଶ୍ରଦ୍ଧ ସେହି ସାଧକକୁ ଯଥାର୍ଥରେ 'ଯୁକ୍ତ' ବୋଲି କୁହାଯାଏ ।

**ବିଶେଷ ଭାଷ୍ୟ**

ମନକୁ ସକଳ ପାର୍ଥିବ କାମନାରୁ (ସର୍ବକାମେଭ୍ୟଃ) ଟାଣିଆଣି ବାହାରେ ଅଚିନ୍ତ୍ୟ-ବୋଲି-ପ୍ରତୀୟମାନ-ହେଉଥିବା ଈଶ୍ୱରଙ୍କୁ ଅନ୍ତରରେ ବା ଆତ୍ମାରେ ସମ୍ପୂର୍ଣ୍ଣଭାବରେ ଅବସ୍ଥାପିତ କରିବା, ଯାହା କି ଏହି ଶ୍ଳୋକର ଉପଦେଶ, ତାହା ଗୀତା ବାରଂବାର କହିଆସୁଛନ୍ତି ଏବଂ ପୁଣି ବହୁ ସ୍ଥାନରେ କହିବେ। ପରେ ଏହା 'ଈଶ୍ୱରତତ୍ତ୍ୱ' ଆଲୋଚନାବେଳେ ଅଧିକ ଆଲୋଚିତ ହେବ। ଗୀତା ଅଦ୍ୱୈତାନୁଭୂତିର ଶାସ୍ତ୍ର। ସାଧାରଣ ଜୀବନରେ ଆମେ ପ୍ରାୟ ପ୍ରତ୍ୟେକେ ବହୁଧା-ବିଭକ୍ତ। ଆମର ମନ ଓ ବୁଦ୍ଧି ବହୁ କଳ୍ପନାପଛରେ ଅହରହ ପ୍ରଧାବିତ। ଗୀତାଙ୍କର ଦର୍ଶନ ହେଲା ଏହି ଯେ, ଏହି ସମଗ୍ର ବିଶ୍ୱରେ ସତ୍ତା ଏକ, ଏବଂ 'ମୁଁ' ଓ ଯେତେସବୁ 'ମୁଁ-ନୁହେଁ' ସେସମସ୍ତହିଁ ଏକ ଓ ଅଭିନ୍ନ। ଦ୍ରଷ୍ଟା ଓ ଦୃଷ୍ଟ ଉଭୟହିଁ ଏକ ବ୍ରହ୍ମ। ଆମ ମନ ଯେତିକି ଯେତିକି ବାହାରର ଆପାତବିଭିନ୍ନତା ଆଡୁ ଟାଣିହୋଇ ଆଭ୍ୟନ୍ତରୀଣ ଆତ୍ମାରେ ପ୍ରତିଷ୍ଠିତ ରହିବ, ଆମେ ସେତିକି ସେତିକି ଏହି ବିଶ୍ୱବ୍ୟାପ୍ତ ଏକତ୍ୱଭାବ ଅନୁଭବ କରିବା, ଏବଂ ତାହାହିଁ 'ବ୍ରହ୍ମନିର୍ବାଣ', 'ବୋଧି' ବା 'ପ୍ରଜ୍ଞା'। ଗଭୀର ନିରବଚ୍ଛିନ୍ନ ଧ୍ୟାନହିଁ ଆମକୁ ସେହି 'ଯୁକ୍ତ' ଅବସ୍ଥା ପାଇବାରେ ସାହାଯ୍ୟ କରେ। ସେ ପ୍ରକାର 'ଧ୍ୟାନ'ର ବର୍ଣ୍ଣନା ପରବର୍ତ୍ତୀ ଶ୍ଳୋକରେ ଦିଆଯାଉଛି।

## ୧୯

ଯଥା ଦୀପୋ ନିବାତସ୍ଥୋ ନେଙ୍ଗତେ ସୋପମା ସ୍ମୃତା
ଯୋଗିନୋ ଯତଚିତ୍ତସ୍ୟ ଯୁଞ୍ଜତୋ ଯୋଗମାତ୍ମନଃ। ୧୯।

ଯଥା (ଯେପରି) ନିବାତସ୍ଥଃ ଦୀପଃ ନ ଇଙ୍ଗତେ (ପବନଶୂନ୍ୟ ସ୍ଥାନରେ ଥିବା ପ୍ରଦୀପର ଶିଖା ହଲଚଲ ହୁଏ ନାହିଁ) [ସେହିପରି] ଆତ୍ମନଃ ଯୋଗଂ ଯୁଞ୍ଜତଃ (ଆତ୍ମଯୋଗ-ଅଭ୍ୟାସକାରୀ) ଯତଚିତ୍ତସ୍ୟ ଯୋଗିନଃ (ସଂଯତଚିତ୍ତ ଯୋଗୀର) ସା ଉପମା ସ୍ମୃତା ( ତାହା ହିଁ ଉପମା ବୋଲି ମନକୁ ଆସେ )।

**ଅନୁବାଦ**

ପବନଶୂନ୍ୟ ସ୍ଥାନରେ ଥିବା ଆଦୌ ହଲଚଲ ହେଉ ନ ଥିବା ପ୍ରଦୀପର ଶିଖାହିଁ ଆତ୍ମଯୋଗ-ଅଭ୍ୟାସକାରୀ ସଂଯତଚିତ୍ତ ଯୋଗୀପ୍ରତି ପ୍ରକୃତ ଉପମା ବୋଲି ଜାଣିବ।

**ବିଶେଷ ଭାଷ୍ୟ**

ମହାଭାରତ (୧୨।୩୦୦।୩୨)ରେ ଏହାର ସମାନ୍ତରାଳ ମନୋଜ୍ଞ ଦୃଷ୍ଟାନ୍ତ ପାଠକେ ପାଇବେ —

ସ୍ନେହପୂର୍ଣ୍ଣେ ଯଥା ପାତ୍ରେ ମନ ଆଧାୟ ନିଶ୍ଚଳମ୍
ପୁରୁଷୋ ଯୁକ୍ତ ଆରୋହେତ୍ ସୋପାନଂ ଯୁକ୍ତମାନସଃ ।
ଯଥା ଚ ନାବଂ କୌନ୍ତେୟ କର୍ଣ୍ଣଧାରସମାହିତଃ
ମହାର୍ଣ୍ଣବଗତାଂ ଶୀଘ୍ରଂ ନୟେତ୍ ପାର୍ଥିବସତ୍ତମଃ ।
ତଦ୍‌ବତ୍ ଆତ୍ମସମାଧାନଂ ଯୁକ୍ତ୍ୱା ଯୋଗେନ ତତ୍ତ୍ୱବିତ୍
ଦୁର୍ଗମଂ ସ୍ଥାନମାପ୍ନୋତି ହିତ୍ୱା ଦେହମିମଂ, ନୃପ ।

( ମୁଣ୍ଡରେ ତୈଳପୂର୍ଣ୍ଣ ପାତ୍ର ରଖି ପାହାଚ ଉଠିଲାବେଳେ ଆରୋହୀ ଯେପରି ଧ୍ୟାନ ରଖିଥାଏ ତୈଳପାତ୍ରଉପରେ, ଅଥବା ମହାସମୁଦ୍ରରେ ସାବଧାନ ନାବିକ ନୌକାର କର୍ଣ୍ଣଉପରେହିଁ ଯେପରି ଧ୍ୟାନ ରଖେ, ଯୋଗୀ ସେହିପରି ତାର ଦେହସଂପୃକ୍ତ ସକଳ ଚିନ୍ତାକୁ ସଂପୂର୍ଣ୍ଣ ଭୁଲିଯାଇ ତାର ମନକୁ ଏକାବେଳକେ କେବଳ ଆତ୍ମାରେ ସମାହିତ କରିପାରିଲେହିଁ ସେହି ଦୁର୍ଗମ ସ୍ଥାନରେ ପହଞ୍ଚିପାରିବ । )

ଏଠାରେ 'ମନ' ହେଲା 'ଶିଖା' ଏବଂ 'ପବନ' ହେଲା ଆମର ସକଳ 'ବାହ୍ୟ ଆକର୍ଷଣ' ଯାହା ଯୋଗୁଁ ଆମର ମନ ଅହରହ କୌଣସି-ନା-କୌଣସି କାରଣ ଯୋଗେ ବିକ୍ଷୁବ୍ଧ । ତାହା କେବେହେଲେ ଶାନ୍ତ ନୁହେଁ । ଶାନ୍ତ, ସମାହିତ, ଅନୁଦ୍‌ବେଳିତ ଚିତ୍ତକୁ ଗୀତା ମୂଳରୁ ଶେଷଯାଏ ଶ୍ରେଷ୍ଠ-ମନୁଷ୍ୟତ୍ୱର ପ୍ରଥମ ଓ ପରମ ଲକ୍ଷଣ ବୋଲି କହିଆସିଛନ୍ତି । ପୁଣି ଶାନ୍ତ, ଅକ୍ଷୁବ୍ଧ, ଅନାକୁଳ ଚିତ୍ତ କେବଳ ଯେ ଆଧ୍ୟାତ୍ମିକ ଅନୁଭବ ବା ଉନ୍ନତିପାଇଁ ଏକାନ୍ତ ଆବଶ୍ୟକ ସେତିକି ନୁହେଁ, ପାଠକେ ମନେ ରଖିବେ ଯେ, ତାହା ମଧ୍ୟ ଏକାନ୍ତ ଆବଶ୍ୟକ ସକଳପ୍ରକାର ଛୋଟ-ବଡ଼ ପାର୍ଥିବ ସିଦ୍ଧିପାଇଁ । ଜଗତର ଅସାଧାରଣ କାବ୍ୟ-ଶିଳ୍ପ ବା ବିଜ୍ଞାନର କୃତିତ୍ୱର ଇତିହାସ ଖୋଜିବାକୁ ଗଲେ ଆମେ ଶେଷରେ ସେହି 'ନିବାତସ୍ଥ ପ୍ରଦୀପ' ରୂପକ ମନଠିହିଁ ପହଞ୍ଚିବା । ରୁଗ୍‌ଣ, ଋଣଗ୍ରସ୍ତ ପଠାଣି ସାଆନ୍ତେ ଖଣ୍ଡପଡ଼ା ଜଙ୍ଗଲରେ ରାତି ରାତି ଅନିଦ୍ରା ରହି, ଶୂଳ କଷ୍ଟ କରି, ଆକାଶର ନକ୍ଷତ୍ରମାନଙ୍କର ଗତିବିଧି ପର୍ଯ୍ୟବେକ୍ଷଣ କରିବାର ବିଚିତ୍ର ଘଟନା ପାଠକେ ସ୍ମରଣ କରନ୍ତୁ — ଦୂରକୁ ଯିବା ଦରକାର ନାହିଁ । ଯେକୌଣସି ସିଦ୍ଧିପାଇଁ ମନର ସେପ୍ରକାର ଅବିଚଳିତ ଏକମୁଖିତା ଯେ କିପରି ଏକାନ୍ତ ଆବଶ୍ୟକ, ପାଠକେ ସେଇଥିରୁହିଁ ଜାଣିପାରିବେ ।

ପରବର୍ତ୍ତୀ ଗୁଟିଏ ଶ୍ଳୋକରେ ଗୀତା ଏହିପ୍ରକାର ଯୋଗାଭ୍ୟାସ-ଫଳରେ ନିବୃତ୍ତି ମାର୍ଗ ବା ପାର୍ଥିବ-ଅନାସକ୍ତିରୁ ଆତ୍ମାରେ ଯେଉଁ ପରମ ସୁଖ ଉତ୍ପନ୍ନ ହୁଏ, ତାହାରହିଁ ମନୋଜ୍ଞ ବର୍ଣ୍ଣନା ଦେଇ ଗୁଲବେ ।

୨୦-୨୧-୨୨-୨୩

ଯତ୍ରୋପରମତେ ଚିତ୍ତଂ ନିରୁଦ୍ଧଂ ଯୋଗସେବୟା
ଯତ୍ର ଚୈବାତ୍ମନାତ୍ମାନଂ ପଶ୍ୟନ୍ନାତ୍ମନି ତୁଷ୍ୟତି । ୨୦ ।
ସୁଖମାତ୍ୟନ୍ତିକଂ ଯତ୍ତଦ୍‌ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟମ୍
ବେତ୍ତି ଯତ୍ର ନ ଚୈବାୟଂ ସ୍ଥିତଶ୍ଚଳତି ତତ୍ତ୍ୱତଃ । ୨୧ ।
ଯଂ ଲବ୍ଧ୍ୱା ଚାପରଂ ଲାଭଂ ମନ୍ୟତେ ନାଧିକଂ ତତଃ
ଯସ୍ମିନ୍ ସ୍ଥିତୋ ନ ଦୁଃଖେନ ଗୁରୁଣାଽପି ବିଚାଲ୍ୟତେ । ୨୨ ।
ତଂ ବିଦ୍ୟାଦ୍ଦୁଃଖସଂଯୋଗବିୟୋଗଂ ଯୋଗସଂଜ୍ଞିତମ୍
ସ ନିଶ୍ଚୟେନ ଯୋକ୍ତବ୍ୟୋ ଯୋଗୋଽନିର୍ବିଣ୍ଣଚେତସା । ୨୩ ।

ଯତ୍ର (ଯେଉଁ ଅବସ୍ଥାରେ) ଯୋଗସେବୟା (ଧ୍ୟାନଯୋଗାଭ୍ୟାସଦ୍ୱାରା) ନିରୁଦ୍ଧଂ ଚିତ୍ତଂ [ସାଧକର] (ନିୟନ୍ତ୍ରିତ ମନ) ଉପରମତେ (ଉପରତ ବା ଶାନ୍ତ ହୋଇଆସେ), ଯତ୍ର ଚ ( ଯେଉଁ ଅବସ୍ଥାରେ ମଧ୍ୟ) ଆତ୍ମନା ଏବ ଆତ୍ମନି ଆତ୍ମାନଂ ପଶ୍ୟନ୍ ତୁଷ୍ୟତି ( ଆତ୍ମାହିଁ ଆତ୍ମାକୁ ଆତ୍ମାରେ ଦେଖିପାରି ତୃପ୍ତିଲାଭ କରିଥାଏ) ;

ଯତ୍ର (ଯେଉଁ ଅବସ୍ଥାରେ) ଅୟଂ (ଏହିପ୍ରକାର ସାଧକ) ଅତୀନ୍ଦ୍ରିୟଂ ବୁଦ୍ଧିଗ୍ରାହ୍ୟଂ (ଇନ୍ଦ୍ରିୟମାନଙ୍କ ଅଗୋଚର ଅଥଚ କେବଳ ବୁଦ୍ଧିଦ୍ୱାରାହିଁ ଗ୍ରହଣୀୟ) ଯତ୍ ଆତ୍ୟନ୍ତିକଂ ସୁଖଂ (ଯେଉଁ ଅଲୌକିକ ସୁଖ) ତତ୍ ବେତ୍ତି (ତାହା ଅନୁଭବ କରିପାରନ୍ତି), ଯତ୍ର ଚ ସ୍ଥିତଃ ତତ୍ତ୍ୱତଃ ନ ଚଳତି (ଯେଉଁଠି ଥରେ ଅବସ୍ଥାନ କଲାପରେ ସେହି ସତ୍ୟ ବା ଆତ୍ମସ୍ଥ ଭାବରୁ ସେ ଆଉ ବିଚଳିତ ହୁଅନ୍ତି ନାହିଁ) ;

ଯଂ ଚ ଲବ୍ଧ୍ୱା (ଯେଉଁ ସୁଖକୁ ଲାଭ କଲାପରେ) [ସେହି ସାଧକ] ଅପରଂ ଲାଭଂ (ଅନ୍ୟ କୌଣସି ଲାଭକୁ) ତତଃ ଅଧିକଂ (ତାହାଠାରୁ ଅଧିକ ବୋଲି) ନ ମନ୍ୟତେ (ମନେ କରନ୍ତି ନାହିଁ), ଯସ୍ମିନ୍ ସ୍ଥିତଃ (ଯେଉଁ ସୁଖରେ ଅବସ୍ଥାନ କଲାପରେ) ଗୁରୁଣା ଦୁଃଖେନ ଅପି (ଦୁଃସହ ଦୁଃଖରେ ମଧ୍ୟ) ନ ବିଚାଲ୍ୟତେ (ବିଚଳିତ ହୁଅନ୍ତି ନାହିଁ ବା ସେଥିରୁ ବିଶ୍ୱାସ ହରାନ୍ତି ନାହିଁ) ;

ତଂ (ସେହି) ଦୁଃଖସଂଯୋଗବିୟୋଗଂ (ଦୁଃଖ ସଂଯୋଗର ବିୟୋଗକୁ ଅର୍ଥାତ୍ ଦୁଃଖଶୂନ୍ୟତାକୁ ବା ଅଲୌକିକ ସୁଖକୁହିଁ) ଯୋଗସଂଜ୍ଞିତଂ

ବିଦ୍ୟାତ୍ (ଯୋଗ ବୋଲି ଜାଣିବ) । ଅନିର୍ବିଣ୍ଣଚେତସା (ନିର୍ବେଦରହିତ ଚିତ୍ତ ବା ଅବସାଦଶୂନ୍ୟ ଚିତ୍ତଦ୍ୱାରା ଅର୍ଥାତ୍ କେବେହେଲେ ବିଶ୍ୱାସ ନ ହରାଇ) ନିଶ୍ଚୟେନ (ଦୃଢ଼ ନିରବଚ୍ଛିନ୍ନ ଅଧ୍ୟବସାୟଦ୍ୱାରା) ସଃ ଯୋଗଃ (ଏହିପରି ସେହି ଯୋଗ) ଯୋକ୍ତବ୍ୟଃ (ଅଭ୍ୟାସ କରିବା ଉଚିତ) ।

## ଅନୁବାଦ

କ୍ରମଶଃ ଧ୍ୟାନଯୋଗାଭ୍ୟାସ ଫଳରେ ଯେଉଁ ଅବସ୍ଥାରେ ସାଧକର ନିୟନ୍ତ୍ରିତ ମନ ଏହିପରି ଶାନ୍ତ ଅବସ୍ଥା ପ୍ରାପ୍ତ ହୁଏ, ଯେଉଁଠି କି ଆତ୍ମା ଆତ୍ମାକୁ ଆତ୍ମାରେ ଦେଖି ପରିତୃପ୍ତ ହୁଏ, ଯେଉଁ ଅବସ୍ଥାରେ ସାଧକ ସାଧାରଣ-ଇନ୍ଦ୍ରିୟମାନଙ୍କର-ଅଗୋଚର, କେବଳ ବୁଦ୍ଧିଗ୍ରାହ୍ୟ ଅଲୌକିକ ସୁଖ ଅନୁଭବ କରିଥାନ୍ତି ଏବଂ ସେହି ଅନୁଭବରେ, ଅବିଚଳିତ ରହି ଅନ୍ୟ କୌଣସି ଲାଭକୁ ତାଠାରୁ ଅଧିକ ମନେ କରନ୍ତି ନାହିଁ ବା (ବାହ୍ୟ ଜଗତର) ଦୁଃସହ ଦୁଃଖରେ ପଡ଼ି ମଧ୍ୟ ଯେଉଁଥିରୁ ଖସିଯିବାକୁ ଚାହାନ୍ତି ନାହିଁ, ସେହି ସଂପୂର୍ଣ୍ଣ ଦୁଃଖଲେଶଶୂନ୍ୟ ଅବସ୍ଥାକୁହିଁ ପ୍ରକୃତ ଯୋଗ କୁହାଯିବ । ହେ ଅର୍ଜ୍ଜୁନ, ଅବସାଦଶୂନ୍ୟ ଚିତ୍ତରେ ଅର୍ଥାତ୍ ଆଦୌ ବିଶ୍ୱାସ ନ ହରାଇ, ନିରବଚ୍ଛିନ୍ନ ଅଧ୍ୟବସାୟଦ୍ୱାରା ସାଧକ ସେହିପ୍ରକାର 'ଯୋଗ'ହିଁ ଅଭ୍ୟାସ କରିବା ଉଚିତ ।

## ବିଶେଷ ଭାଷ୍ୟ

ସାଧାରଣ ଧାରଣା ଯେ, ଧର୍ମୀୟ ଜୀବନ, କଠୋର ନୈତିକତା-ଅଭ୍ୟାସ ଓ ସଂଯମ-ସାଧନା ଆଦି ଦେଇ କେବଳ କ୍ଳେଶଦାୟକ । ଗୀତା ତାର ବାରମ୍ବାର ପ୍ରତିବାଦ କରିଆସିଛନ୍ତି । ପଞ୍ଚମ ଅଧ୍ୟାୟରେ କୁହାଯାଇଛି "ସ ବ୍ରହ୍ମଯୋଗ-ଯୁକ୍ତାତ୍ମା ସୁଖମକ୍ଷୟମଶ୍ନୁତେ"— ବ୍ରହ୍ମଯୁକ୍ତ ସେହି ଯୋଗୀ ଅକ୍ଷୟ ସୁଖ ଲାଭ କରିବେ । ଏଠାରେ ଆଲୋଚ୍ୟ ଶ୍ଳୋକରେ ସେହିପରି 'ଆତ୍ୟନ୍ତିକ ସୁଖ'ର କଥା କୁହାଯାଉଛି । ଏହି ଅଧ୍ୟାୟର ୨୭ ଶ୍ଳୋକରେ 'ଉତ୍ତମ ସୁଖ'ର ଏବଂ ୨୮ରେ 'ଅତ୍ୟନ୍ତ ସୁଖ'ର କଥା କୁହାଯିବ । ଆମର ଚେତନା, ସାଧାରଣତଃ, ଆମର ନୈଜିକ ବୃତ୍ତର ବାହାରେ ବା ଉପରେ କଣ ଥାଇପାରେ, ତାହା କଳ୍ପନା ମଧ୍ୟ କରିପାରେ ନାହିଁ । ଆମେ ଆମର ସୁଖର ଯୋଜନା ଆମ ଇନ୍ଦ୍ରିୟମାନଙ୍କର ମାନଦଣ୍ଡ ଦେଇହିଁ ଗଢ଼ିଥାଉଁ । ଏହି ଇନ୍ଦ୍ରିୟମାନଙ୍କ ବାହାରେ କୌଣସି ସୁଖ ଥିବାର ଆମେ କଳ୍ପନା କରିପାରୁଁ ନା । ଆମର ତଥାକଥିତ 'ସ୍ୱର୍ଗ' ମଧ୍ୟ ଆମର ସୀମାବଦ୍ଧ ପାର୍ଥିବ ଚେତନା ଦେଇ ଗଠିତ ।

ଗୀତା, ବରଂ ବର, ଆମର ସୀମାବଦ୍ଧ ଏହି ଚେତନାରୁ ଉଠିଯାଇ ଆମକୁ ଅତୀନ୍ଦ୍ରିୟ, ସ୍ୱାଧୀନ ଚେତନାର ସ୍ତରରେ କ୍ଷୟହୀନ, ଶେଷହୀନ ସୁଖ ଓ ଆନନ୍ଦ ଭୋଗ କରିବାପାଇଁ ହିଁ ଆହ୍ୱାନ ଜଣାଇଥିଲେ ଛନ୍ତି । ଗୀତା ସେଥିପାଇଁ ଆମର ସାଧାରଣ 'ସ୍ୱର୍ଗ'-କଳ୍ପନା ଓ ସ୍ୱର୍ଗକୁ ଯିବାର ଅଭିଳାଷକୁ ମଧ୍ୟ ତାଚ୍ଛଲ୍ୟ କରିଛନ୍ତି । ସକଳ ସୁଖର ଉତ୍ସ ହେଉଛି ଆତ୍ମା । ରାଜଯୋଗର ଶେଷ ଅବସ୍ଥା 'ସମାଧି'ରେ ସାଧକ ସେହି ଆତ୍ମାକୁହିଁ ଭେଟେ । ସେହି ଅବସ୍ଥାରେ ସାଧକ ବୁଡ଼ିଯାଏ ସତ୍-ଚିତ୍-ଆନନ୍ଦର ସମୁଦ୍ରରେ । ସେତେବେଳେ ସାଧକର ଇନ୍ଦ୍ରିୟସବୁ ଅକର୍ମା ହୋଇପଡ଼ନ୍ତି ଏବଂ ସାଧକ ମଧ୍ୟ ସେହି ଅତୁଳନୀୟ ଆନନ୍ଦରୁ ସଂସାରକୁ ଫେରିବାକୁ ଚାହିଁ ନ ଥାନ୍ତି ।

ବୃହଦାରଣ୍ୟକ ଉପନିଷଦର ସେହି ଅତ୍ୟନ୍ତ ଯୁକ୍ତିଯୁକ୍ତ ଉପଦେଶ ପାଠକେ ସ୍ମରଣ କରନ୍ତୁ । ଯାଜ୍ଞବଲ୍କ୍ୟ, ପ୍ରିୟତମା ପତ୍ନୀ ମୈତ୍ରେୟୀ ଦେବୀଙ୍କୁ ବୁଝାଇଦେଇଛନ୍ତି—

"ହେ ପ୍ରିୟେ, କେବଳ ପତିପାଇଁ ପତି, ସ୍ତ୍ରୀର ପ୍ରିୟ ହୋଇ ନ ଥାଏ, ପତ୍ନୀର ଆତ୍ମପ୍ରୟୋଜନରେହିଁ ପତି ପ୍ରିୟ ହୋଇଥାଏ । ହେ ପ୍ରିୟେ, ପତ୍ନୀ ପାଇଁ ପତ୍ନୀ ପ୍ରିୟ ହୋଇ ନ ଥାଏ । ଆତ୍ମପ୍ରୟୋଜନ ଯୋଗୁହିଁ ପତ୍ନୀ ସ୍ୱାମୀର ପ୍ରିୟ ହୋଇଥାଏ । ହେ ପ୍ରିୟେ, ପୁତ୍ରମାନଙ୍କ ପାଇଁ ଯେ ପୁତ୍ରମାନେ ପ୍ରିୟ ହୋଇଥାନ୍ତି ତାହା ନୁହେଁ, ପିତାମାତାଙ୍କର ଆତ୍ମପ୍ରୟୋଜନରେହିଁ ପୁତ୍ରମାନେ ପ୍ରିୟ ହୋଇଥାନ୍ତି । ହେ ପ୍ରିୟେ, ସମ୍ପଦପାଇଁ ସମ୍ପଦ ପ୍ରିୟ ହୋଇ ନ ଥାଏ । ମନୁଷ୍ୟର ଆତ୍ମପ୍ରୟୋଜରେ ହିଁ ସମ୍ପଦ ପ୍ରିୟ ହୋଇଥାଏ ।"

ଅର୍ଥାତ୍ ଆତ୍ମପ୍ରୀତିହିଁ ମୁଖ୍ୟ ପ୍ରୀତି, ଅନ୍ୟ ସକଳ ପ୍ରୀତି ଗୌଣ । ଏବଂ ସେହି କାରଣରୁ ଗୌଣ ପ୍ରୀତି ଚିରସ୍ଥାୟୀ ହୁଏ ନାହିଁ ଏବଂ ଯିଏ ସୁଖ ହଏ, ତାର ଜଞ୍ଜାଳ, ସାଧାରଣତଃ ସେ ଦେଉଥିବା ସୁଖ ଅପେକ୍ଷା ଅତି ବେଶୀ ହୋଇଯିବାରୁ, ଆମେ ସେହି ବାହ୍ୟ-ସୁଖାନୁସନ୍ଧାନରେ ଶେଷରେ କ୍ଳାନ୍ତ ହୋଇପଡ଼ୁଁ ଏବଂ ଜାଣିବାକୁ ବାଧ ହେଉ ଯେ ଚିରସ୍ଥାୟୀ ସୁଖ ବା ଜଞ୍ଜାଳହୀନ ଅନାବିଳ ସୁଖ ମିଳିପାରେ କେବଳ ନିଜର ଆତ୍ମାରୁ ବା ଆତ୍ମାର ମୂଳଭୂମି ପରମାତ୍ମାଙ୍କଠାରୁ, ଅର୍ଥାତ୍ ଯାହା କି ଇନ୍ଦ୍ରିୟସବୁର ବାହାରେ, ଯାହା କି ପୂର୍ବ-ପୂର୍ବ ବୌଦ୍ଧିକ (ବୁଦ୍ଧିଗ୍ରାହ୍ୟ ଓ ଅତୀନ୍ଦ୍ରିୟ ଅର୍ଥାତ୍ ଇନ୍ଦ୍ରିୟ ବାହାରେ) । ଗୀତା କହୁଛନ୍ତି ଯେ, ଜଣ୍ଡାପର ସାଧକ ଥରେ ଏହି ସୁଖକୁ ଜାଣିଲେ କୌଣସି ବାହ୍ୟ,

ସାଂସାରିକ ସଙ୍କଟ ବା ବିପଦ ମଧ୍ୟ ତାଙ୍କୁ ସେହି ସୁଖରୁ ବିଚଳିତ କରିପାରିବ ନାହିଁ । ପାଠକେ ବରାବର ମନେ ରଖିବେ ଯେ, ଭଗବଦ୍‌ଗୀତା ଏହି ମହାନ୍ ଆନନ୍ଦର ଓ ଶାଶ୍ୱତ ସୁଖବାଦର ଗାଥା । କୃଚ୍ଛ୍ର ସାଧନାର ଅନାନନ୍ଦ ଓ ବ୍ୟର୍ଥତାମୟ ପଳାୟନବାଦର ଏକ ଗ୍ରନ୍ଥ ଗୀତା ନୁହେଁ । ଅବଶ୍ୟ, ଜଗତରେ ଏପରି କୌଣସି ସିଦ୍ଧି ବା କୃତକାର୍ଯ୍ୟତା ବା ସୁଖ ନାହିଁ, ଯାହା କୌଣସି-ନା-କୌଣସି-ପ୍ରକାର କଷ୍ଟ-ସାଧନା ବା ତ୍ୟାଗ ଦରକାର କରେ ନାହିଁ । ତେଣୁ ଯେଉଁ ସୁଖ ବା ଆନନ୍ଦ ଚିରନ୍ତନ, ଆତ୍ୟନ୍ତିକ ଓ ଅସାଧାରଣ, ତାହା କିପରି କୌଣସିପ୍ରକାର ଚେଷ୍ଟା, ଯତ୍ନ, ସାଧନା ବା ତ୍ୟାଗ ବିନା ଆମ ହାତକୁ ଆସିଯିବ ? ସେହି ଚେଷ୍ଟା ବା ସାଧନାହିଁ 'ଯୋଗ' । ତାହାର ବର୍ଣ୍ଣନାହିଁ ଗୀତାର ମୁଖ୍ୟ ବିଷୟବସ୍ତୁ ।

ଅବଶ୍ୟ ଉପରେ, ୧୦ରୁ ୨୩ ଶ୍ଳୋକ ପର୍ଯ୍ୟନ୍ତ, ପତଞ୍ଜଳି-ପ୍ରଦର୍ଶିତ ରାଜଯୋଗାଭ୍ୟାସ ଓ ତଜ୍ଜନିତ ଆତ୍ମିକ ସୁଖହିଁ ସୂଚିତ ହୋଇଛି । ରାଜଯୋଗର ଶେଷାବସ୍ଥା 'ସମାଧି' ଏହିପରି ଆନନ୍ଦଜନକ ବୋଲି କୁହାଯାଇଥାଏ । କିନ୍ତୁ ଗୀତା କହୁ ନାହାନ୍ତି ଯେ, ଏହା ଏକମାତ୍ର ଉପାୟ । ଜ୍ଞାନ (ମନନ) ଓ ଭକ୍ତି (ଆତ୍ମସମର୍ପଣ) ପଥ ଦେଇ ମଧ୍ୟ ଏହି ଚିରନ୍ତନ ଆନନ୍ଦ ସାଧାରଣ ମନୁଷ୍ୟ ପକ୍ଷରେ ଲାଭ କରାଯାଇପାରେ । ବୈଷ୍ଣବ ମତରେ ମନୁଷ୍ୟର ଇହଜୀବନରେ ଦୁଃଖର କାରଣ ହେଲା, 'ଦ୍ୱିତୀୟାଭିନିବେଶ', ଅର୍ଥାତ୍ ମନୁଷ୍ୟର ଏକମାତ୍ର 'ଅଭିନିବେଶ' ହେବା ଉଚିତ, କେବଳ ଭଗବାନ୍ । କିନ୍ତୁ ଆମେ ସେ ଅଭିନିବେଶକୁ ଏକାବେଳକେ ପାଶୋରିଦେଇ, ଦ୍ୱିତୀୟ ବା ଅନ୍ୟ ଅର୍ଥାତ୍ ପାର୍ଥିବ, ଅନିତ୍ୟ ଅଭିନିବେଶସବୁରେ ମାତିଛୁ । ଆମରି ମନ ଯେତେବେଳେ ଏହି 'ଦ୍ୱିତୀୟ' ବା ଅନ୍ୟ ଅଭିନିବେଶରୁ ଯାଇ ଆତ୍ମା ବା ଈଶ୍ୱର ବା ପରମାତ୍ମା (ସବୁହିଁ ଏକା କଥା) ଠାଏର ନିବିଷ୍ଟ ରହିବ, ତେବେ ଯାଇ ହେବ ଦୁଃଖର ଏବଂ କ୍ଷଣସ୍ଥାୟୀ ଓ ଠିକ୍-ସେହିହେତୁରୁ-ଜଞ୍ଜାଳମୟ ସୁଖରାଜିର ଶେଷ ଏବଂ ଆତ୍ୟନ୍ତିକ ସୁଖ ବା ଚିରନ୍ତନ ଆନନ୍ଦର ପୁନଃପ୍ରାପ୍ତି । ପାତଞ୍ଜଳ-ଯୋଗ କେତେଗୁଡ଼ିଏ କାୟିକ ଅଭ୍ୟାସଦ୍ୱାରା ଆମର ଚିତ୍ତକୁ ଏହିପରି ବିପରୀତମୁଖୀ କରାଇବାରେ ସମର୍ଥ ହୁଏମାତ୍ର । ପାତଞ୍ଜଳ-ଯୋଗର ତେଣୁ ପ୍ରଥମ ସୂତ୍ର ହେଲା — 'ଚିତ୍ତବୃତ୍ତି-ନିରୋଧଃ ଯୋଗଃ' ଅର୍ଥାତ୍ ଚିତ୍ତର ସାଧାରଣ ବହିର୍ମୁଖୀ ବୃତ୍ତି ବା ପ୍ରବଣତାକୁ ନିରୋଧ କରି ବିପରୀତ ମାର୍ଗରେ ଚଳାଇବା ହେଲା ଯୋଗର ଲକ୍ଷ୍ୟ । ତେବେ ସମସ୍ତଙ୍କ ପକ୍ଷରେ ଏହି 'ରାଜଯୋଗ' ସମ୍ଭବ ନୁହେଁ । ପୁଣି ଅଧିକାରୀ ଭେଦ ଅଛି, ବ୍ୟକ୍ତିଭିତରେ ସତ୍ତ୍ୱ, ରଜଃ, ତମଃ ଗୁଣମାନଙ୍କର

ତାରତମ୍ୟ ମଧ୍ୟ ଅଛି । ସମସ୍ତଙ୍କୁ ଗୋଟିଏମାନ ପନ୍ଥା ସୁଖକର ମଧ୍ୟ ହେବ ନାହିଁ । ଅଥଚ ଆତ୍ମିକ ସୁଖ, ଆନନ୍ଦ ଓ ଶାନ୍ତିପାଇଁ, 'ଚିତ୍ତବୃତ୍ତିନିରୋଧ' ପ୍ରତ୍ୟେକର ଅପରିହାର୍ଯ୍ୟଭାବରେ ଆବଶ୍ୟକ । ତେଣୁ କେବଳ ରାଜଯୋଗ-ଉପରେ ସେ ବିଷୟଟିକୁ ଛାଡ଼ି ନ ଦେଇ, ଗୀତା ଯେତେ ଯେତେ ଉପାୟରେ ଆମ ମନ ମେଧାକୁ ପରମ ଲକ୍ଷ୍ୟ ଆଡ଼କୁ ସମୁଚିତ ଓ କଲ୍ୟାଣକର ପଥରେ ଗତି କରିବାର ଆଶା, ସେସବୁ, ପୁନରାବୃତ୍ତି-ଦୋଷ ଗ୍ରହଣ କରି ମଧ୍ୟ, ବର୍ଣ୍ଣନା କରି-ଚାଲିଛନ୍ତି ।

ତେଣୁ ପରବର୍ତ୍ତୀ ଶ୍ଳୋକମାନଙ୍କରେ ମଧ୍ୟ ଗୀତା ଏହିପରି ଆତ୍ୟନ୍ତିକ ସୁଖ ବା ଅକ୍ଷୟ ଆନନ୍ଦ ଲାଭପାଇଁ ଅନ୍ୟ କେଉଁ କେଉଁ ମାନସିକ ଅଭ୍ୟାସ ପୁଣି ଦରକାର, ସେସବୁ ବର୍ଣ୍ଣନା କରିଚାଲିବେ ।

୨୪-୨୫

ସଂକଳ୍ପ-ପ୍ରଭବାନ୍ କାମାଂସ୍ତ୍ୟକ୍ତ୍ୱା ସର୍ବାନଶେଷତଃ
ମନସୈବେନ୍ଦ୍ରିୟଗ୍ରାମଂ ବିନିୟମ୍ୟ ସମନ୍ତତଃ । ୨୪ ।

ଶନୈଃ ଶନୈରୁପରମେଦ୍ ବୁଦ୍ଧ୍ୟା ଧୃତି ଗୃହୀତୟା
ଆତ୍ମସଂସ୍ଥଂ ମନଃ କୃତ୍ୱା ନ କିଂଚିଦପି ଚିନ୍ତୟେତ୍ । ୨୫ ।

[ସାଧକ] ସଂକଳ୍ପ-ପ୍ରଭବାନ୍ (କଳ୍ପନାପ୍ରସୂତ) ସର୍ବାନ୍ କାମାନ୍ (ସମସ୍ତ କାମନାକୁ) ଅଶେଷତଃ (ନିଃଶେଷରୂପେ) ତ୍ୟକ୍ତ୍ୱା (ତ୍ୟାଗ କରି) ମନସା ଏବ (ମନଦ୍ୱାରାହିଁ) ଇନ୍ଦ୍ରିୟଗ୍ରାମଂ (ଇନ୍ଦ୍ରିୟମାନଙ୍କୁ) ସମନ୍ତତଃ (ଚାରିଆଡ଼ୁ) ବିନିୟମ୍ୟ (ନିବୃତ୍ତ କରି) ଧୃତି ଗୃହୀତୟା ବୁଦ୍ଧ୍ୟା (ଦୃଢ଼ତାଯୁକ୍ତ ବୁଦ୍ଧିଦ୍ୱାରା) ଶନୈଃ ଶନୈଃ (ଧୀରେ ଧୀରେ) ଉପରମେତ୍ (ଶାନ୍ତ ଅବସ୍ଥା ପ୍ରାପ୍ତ ହେବେ) । [ସେ] ମନଃ (ମନକୁ) ଆତ୍ମସଂସ୍ଥଂ (ଆତ୍ମାରେ ପ୍ରତିଷ୍ଠିତ କରି) କିଂଚିଦପି ନ ଚିନ୍ତୟେତ୍ (ଅନ୍ୟ କିଛି ଚିନ୍ତା କରିବେ ନାହିଁ) ।

## ଅନୁବାଦ

ସାଧକ, ସଂକଳ୍ପଜାତ ସମସ୍ତ କାମନାବାସନାକୁ ପରିତ୍ୟାଗ କରି, ମନର ଅଭ୍ୟନ୍ତର ପ୍ରଦେଶରୁହିଁ ଇନ୍ଦ୍ରିୟମାନଙ୍କୁ ଚାରିଆଡ଼ୁ ନିବୃତ୍ତ କରିଆଣି, ଦୃଢ଼ତା-ସଂପନ୍ନ ବୁଦ୍ଧିପ୍ରୟୋଗଫଳରେ ଆସ୍ତେ ଆସ୍ତେ ଶାନ୍ତ ଅବସ୍ଥା ପ୍ରାପ୍ତ ହେବେ

ଏବଂ ମନକୁ ଆତ୍ମାରେ ପ୍ରତିଷ୍ଠିତ କର, ଅନ୍ୟ କୌଣସି (ବାହ୍ୟ) ଅବସ୍ଥାପ୍ରତି ବିକ୍ଷୁବ୍ଧ ହେବାକୁ ଦେବେ ନାହିଁ ।

୨୬

ଯତୋ ଯତୋ ନିଶ୍ଚରତି ମନଶ୍ଚଞ୍ଚଳମସ୍ଥିରମ୍
ତତସ୍ତତୋ ନିୟମ୍ୟୈତଦାତ୍ମନ୍ୟେବ ବଶଂ ନୟେତ୍ । ୨୬ ।

ଚଞ୍ଚଳଂ ଅସ୍ଥିରଂ ମନଃ [ସାଧକର] (ଚଞ୍ଚଳ, ଅସ୍ଥିର ମନ) ଯତଃ ଯତଃ ନିଶ୍ଚରତି (ଯେତିକ ଯେତିକ ବାହାର ବିଷୟପ୍ରତି ଧାଉଁଥିବ) ତତଃ ତତଃ [ସାଧକ] (ସେତିକ ସେତିକ) ଏତତ୍ ନିୟମ୍ୟ (ତାକୁ ଆୟତ୍ତାଧୀନ କରି) ଆତ୍ମନ ଏବ (ଆତ୍ମାରେହିଁ) ବଶଂ ନୟେତ୍ (ବଶୀଭୂତ କରିବେ) ।

## ଅନୁବାଦ

ତେଣୁ, ହେ ଅର୍ଜୁନ, ସାଧକର ଚଞ୍ଚଳ ଓ ଅସ୍ଥିର ମନ ଯେତିକ ଯେତିକ ବାହ୍ୟ ବିଷୟାଦିପ୍ରତି ଧାବମାନ ଥିବ, ସେ ସେତିକ ସେତିକ ତାକୁ ଆୟତ୍ତାଧୀନ କରି ଆତ୍ମାର ବଶୀଭୂତ କରି ରଖିବେ ।

## ବିଶେଷ ଭାଷ୍ୟ

ଏଇ କେତୋଟି ଶ୍ଲୋକରେ (୨୪, ୨୫, ୨୬) ଗୀତା ଇନ୍ଦ୍ରିୟ-ସଂଯମ, ମନଃସଂଯମ ଏବଂ ଶେଷରେ ସଂପୂର୍ଣ୍ଣ ଆତ୍ମଯୁକ୍ତ ଅବସ୍ଥାର ଯେଉଁ ତିନୋଟି ସ୍ତର ବ୍ୟଞ୍ଜିତ କରିଛନ୍ତି, ତାହାକୁ ପାଠକେ ସର୍ବଦା ସ୍ମରଣ ରଖିବେ ।

ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍ ଓ ଜନନେନ୍ଦ୍ରିୟ ଆଦି ଇନ୍ଦ୍ରିୟଗୁଡ଼ିକ ଆମକୁ ସର୍ବଦା ବହିର୍ମୁଖୀ କରି ରଖନ୍ତି । କିନ୍ତୁ ଏହି ଇନ୍ଦ୍ରିୟଗ୍ରାମ ଆପେ ଆପେ ସଂପୂର୍ଣ୍ଣ ଶକ୍ତିହୀନ । ସେମାନଙ୍କୁ ଅହରହ ପ୍ରଣୋଦିତ ଓ ଉତ୍ତେଜିତ କରିରଖେ ଆମର ତଥାକଥିତ 'ମନ' ।

କିନ୍ତୁ ମନ ବୋଲି କୌଣସି ସ୍ୱତନ୍ତ୍ର ସତ୍ତା ଆମଭିତରେ ନାହିଁ । ଏହା କେବଳ ଚିନ୍ତାର ଏକ ନିରବଚ୍ଛିନ୍ନ-ପ୍ରବହମାନ ସ୍ରୋତ । ଏହି ସ୍ରୋତର ଉତ୍ପତ୍ତି-ସ୍ଥଳ ହେଲା 'ସଂକଳ୍ପ' ଅର୍ଥାତ୍ ଆମର ସହଜାତ ବାସନାଜାଳ । ପୂର୍ବଜନ୍ମାର୍ଜିତ ଓ ସହଜାତ ଏହି ବାସନା ବା ତୃଷ୍ଣାସବୁକୁ ଚରିତାର୍ଥ କରୁ କରୁ ଆମେ

ନୂତନ ତୃଷ୍ଣା ବା ବାସନା-କାମନା ମଧ୍ୟ ଆମଭିତରେ ଆଣି ଜମା କରୁଁ । ସେଇ ହିଁ ଜୀବର ବନ୍ଧନ ।

ତେଣୁ, ଆମକୁ ଇନ୍ଦ୍ରିୟସଂଯମ କରିବାକୁ ହେଲେ କେବଳ ଇନ୍ଦ୍ରିୟ-ମାନଙ୍କୁ ସେମାନଙ୍କର ଅପଥ୍ୟ ଆହାରରୁ ବଞ୍ଚିତ କରିବାକୁ ହେବ ନାହିଁ, ଆମକୁ ବାସନା-କାମନାର ଉତ୍ପତ୍ତିସ୍ଥଳ 'ସଂକଳ୍ପ'ରୁ ମଧ୍ୟ ନିଗ୍ରହାଭ୍ୟାସ କରିବାକୁ ହେବ । ପାଠକେ ଆଲୋଚ୍ୟ ୨୪ ଶ୍ଲୋକରେ 'ସର୍ବାନ୍' ଓ 'ଅଶେଷତଃ' ଶବ୍ଦଯୋଡ଼ିକୁ ମଧ୍ୟ ଲକ୍ଷ୍ୟ କରନ୍ତୁ । ପୁଣି ୨୫ ଶ୍ଲୋକରେ ଲକ୍ଷ୍ୟ କରନ୍ତୁ 'ଶନୈଃ ଶନୈଃ' କ୍ରିୟାବିଶେଷଣ ପ୍ରତି । ଗୀତାର ଲକ୍ଷ୍ୟ ହେଲା— ଆମର ପ୍ରତ୍ୟେକଟି ବାସନାର ନିଃଶେଷଭାବରେ ସମୂଳେ ପ୍ରତ୍ୟାହାର ।

କିନ୍ତୁ ଗୀତା କଣ ଆମପରି ସାଧାରଣ ମନୁଷ୍ୟଙ୍କର ସୀମାବଦ୍ଧ କ୍ଷମତା ଜାଣନ୍ତି ନାହିଁ ? ଏହା କି ଆମଭଳି ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ ?

ନିଶ୍ଚୟ ସମ୍ଭବ । ଗୀତା ସର୍ବଥା ସାଧାରଣ ନରନାରୀଙ୍କର ଜୀବନଦର୍ଶନ । ତେଣୁ ମନଃସଂଯମ ଓ ଇନ୍ଦ୍ରିୟସଂଯମର କାଠିନ୍ୟ ଜାଣିହିଁ ଗୀତା ଉପଦେଶ ଦେଉଛନ୍ତି— ଶନୈଃ ଶନୈଃ, ଆସ୍ତେ ଆସ୍ତେ ।

ସାଧକ, ତେଣୁ ଇନ୍ଦ୍ରିୟମାନଙ୍କୁ ଇନ୍ଧନ ଯୋଗେଇବା ବନ୍ଦ କରିବେ ଏବଂ ସଙ୍ଗେ ସଙ୍ଗେ କାମନା-ବାସନାମାନଙ୍କର ଉତ୍ପତ୍ତିସ୍ଥଳ ସଂକଳ୍ପମାନଙ୍କୁ ମଧ୍ୟ ରୋଧିବେ । ଏଥିରେ ସାହାଯ୍ୟ କରିବ 'ଧୃତିଗୃହୀତ ବୁଦ୍ଧି' ବା ଦୃଢ଼ତାସଂପନ୍ନ ବିଗୃରକ୍ରିୟା । ଏହିପରିଭାବରେହିଁ ଚଞ୍ଚଳ ଓ ଅସ୍ଥିର ମନ କ୍ରମେ ନିଜ ଆୟତ୍ତକୁ ଆସିବ ଏବଂ ଯାପରେ ତୃତୀୟ ପଦକ୍ଷେପ ହେଲା ସେହି ବାସନା-ଲେଶଶୂନ୍ୟ ମନକୁ ସଂପୂର୍ଣ୍ଣଭାବରେ ବାହାର ଜଗତରୁ ଟାଣିଆଣି ଆମର ଅଭ୍ୟନ୍ତରସ୍ଥ ଆତ୍ମାନାମକ ଆମ ପ୍ରତ୍ୟେକଠାରେ ଥିବା ଏକମାତ୍ର ଶାଶ୍ୱତ ସତ୍ତା ସହିତ ଯୁକ୍ତ କରିଦେବା । ଆମର ନିଖିଳ ଚେତନାକୁ ସେହି ଆତ୍ମା ସହିତ ଯୁକ୍ତ କରିବାହିଁ ପ୍ରକୃତ 'ଧ୍ୟାନ'— ଯାହା ଦେଇ ଆମେ 'ଆତ୍ମସ୍ଥ' ବା 'ଆତ୍ମଜ୍ଞ' ହେବାକୁ ଆଶା କରିବା, ଅର୍ଥାତ୍ ଆପଣାର 'ସ୍ୱ-ଭୂ' କୁ ବା ନିଜକୁ ଭେଟିବା । ସେହି ସାକ୍ଷାତହିଁ ସଚ୍ଚିଦାନନ୍ଦରସାକ୍ଷାତ । ସେହି ହେଲା ସାଂଖ୍ୟର କୈବଲ୍ୟାନନ୍ଦ । ଆମର ଚିରବହିର୍ମୁଖୀ, ଅହମିକା-କେନ୍ଦ୍ରିକ ସ୍ୱାତନ୍ତ୍ର୍ୟ-ଭାବହିଁ ଆମକୁ ଆମର ସଚ୍ଚିଦାନନ୍ଦରୂପୀ 'ସ୍ୱ-ଭୂ'ଠାରୁ ଅଲଗାରଖି ଆମକୁ ସାଂସାରିକ ଜଞ୍ଜାଳରେ ବୁଡ଼ାଇମାରୁଛି । ଧ୍ୟାନରୁ ଜାତ ହେବା ପରମ କାମ୍ୟ ଅନ୍ତର୍ମୁଖିତା ଏବଂ

ତତ୍ପରେ ଆତ୍ମସାକ୍ଷାତର ପରମାନନ୍ଦମୟ ସେହି ଅବସ୍ଥା ତେଣୁ ଗୀତା ପରବର୍ତ୍ତୀ ଶ୍ଳୋକମାନଙ୍କରେ ବର୍ଣ୍ଣନା କରୁଛନ୍ତି ।

୨୭

ପ୍ରଶାନ୍ତମନସଂ ହ୍ୟେନଂ ଯୋଗିନଂ ସୁଖମୁତ୍ତମମ୍
ଉପୈତି ଶାନ୍ତରଜସଂ ବ୍ରହ୍ମଭୂତମକଳ୍ମଷମ୍ । ୨୭ ।

ପ୍ରଶାନ୍ତମନସଂ (ପ୍ରଶାନ୍ତଚିତ୍ତ) ଶାନ୍ତରଜସଂ (ଶାନ୍ତ ହୋଇଯାଇଛି ରଜୋ-ଗୁଣ ଯାହାର) [ପୁଣି] ଅକଳ୍ମଷଂ (ତମୋଗୁଣଜନିତ-ସକଳ-ପାପରହିତ) ବ୍ରହ୍ମଭୂତଂ [ଅଥଚ] (ବ୍ରହ୍ମରେ ସମର୍ପିତଚିତ୍ତ) ଏନଂ ଯୋଗିନଂ ହି (ଏପ୍ରକାର ଯୋଗୀ ବା ସାଧକଙ୍କୁ) ଉତ୍ତମଂ ସୁଖଂ ଉପୈତି (ପରମ ସୁଖ ଆଶ୍ରୟ କରିଥାଏ ।)

## ଅନୁବାଦ

ହେ ଅର୍ଜ୍ଜୁନ, ଜାଣିରଖ ଯେ, ଏହିପରି ଯେ ଧ୍ୟାନୀ ଯୋଗୀ ଯାହାଙ୍କର ରଜୋଗୁଣ ଶାନ୍ତ ହୋଇଯାଇଥିବାରୁ ଏବଂ ଯିଏ ତମୋଗୁଣଜାତ ସକଳ କଳୁଷରୁ ମୁକ୍ତ ହୋଇସାରିଥିବାରୁ ତାଙ୍କର ସମଗ୍ର ଚିତ୍ତ ପ୍ରଶାନ୍ତ ହୋଇଉଠିଛି, ଏବଂ ଯାହାଙ୍କଠାରେ ସେହି ଚିତ୍ତ ମଧ୍ୟ ବ୍ରହ୍ମ ସହିତ ଏକପ୍ରକାର ଏକୀଭୂତ ହୋଇ-ସାରିଛି, ତାଙ୍କୁ ସର୍ବଦା ପରମ ସୁଖହିଁ ଆଶ୍ରୟ କରି ରହେ ।

## ବିଶେଷ ଭାଷ୍ୟ

ପରମହଂସଦେବଙ୍କ ଅପୂର୍ବ ଉପମାମୂଳକ ବାଣୀ ଏଠାରେ ସ୍ମରଣୀୟ— "ଜମିଦାର କୌଣସି ଗରିବ ପ୍ରଜାର ନିମନ୍ତ୍ରଣ ଗ୍ରହଣ କଲେ ତା ଘରକୁ ଆଗରୁ ଯଥାଯୋଗ୍ୟ ଆସବାବ ପଠାଇଦେଇଥାନ୍ତି, ଯେପରି କି ସେ ସେଠାରେ ସସମ୍ମାନ ଅଭ୍ୟର୍ଥିତ ହେବେ । ସେହିପରି ଭଗବାନ୍ କୌଣସି ଲୋକକୁ ଦର୍ଶନ ଦେବା ଆଗରୁ ତାକୁ ଚିତ୍ତଶୁଦ୍ଧି, ନିଷ୍ଠା ଓ ବିଶ୍ବାସ ଆଦି ଦୈବୀଗୁଣସବୁରେ ଅଳଂକୃତ କରିଦେଇଥାନ୍ତି ।"

୨୮

ଯୁଞ୍ଜନ୍ନେବଂ ସଦାତ୍ମାନଂ ଯୋଗୀ ବିଗତକଳ୍ମଷଃ
ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ । ୨୮ ।

ଏବଂ (ଏହିପରି) ଆତ୍ମାନଂ (ନିଜକୁ) ସଦା ଯୁଞ୍ଜନ୍ (ସର୍ବଦା ଯୋଗାଭ୍ୟାସ-ରତ ରଖି) ବିଗତକଳ୍ମଷଃ ଯୋଗୀ (ପାପଶୂନ୍ୟ ଯୋଗୀ) ସୁଖେନ (ଅନାୟାସରେ) ବ୍ରହ୍ମସଂସ୍ପର୍ଶଂ ଅତ୍ୟନ୍ତଂ ସୁଖଂ (ବ୍ରହ୍ମସ୍ପର୍ଶଜନିତ ପରମ ସୁଖକୁ) ଅଶ୍ନୁତେ (ଲାଭ କରିଥାନ୍ତି) ।

## ଅନୁବାଦ

ନିଜକୁ ଏହିପରି ସଦା ଯୋଗଯୁକ୍ତ ରଖି ପାପଶୂନ୍ୟ ସେହି ଯୋଗୀ ଅନାୟାସରେହିଁ ବ୍ରହ୍ମସ୍ପର୍ଶଜନିତ ସେହି ପରମ ସୁଖକୁ ଭୋଗ କରିଚାଲିଥାନ୍ତି ।

## ବିଶେଷ ଭାଷ୍ୟ

ବେଦାନ୍ତ ମତରେ ଏହି ସୃଷ୍ଟିରେ ବ୍ରହ୍ମହିଁ ଏକମାତ୍ର ସତ୍ୟ ସତ୍ତା । ବ୍ରହ୍ମହିଁ ସତ୍ୟ, ଅନ୍ୟ ସମସ୍ତ ମିଥ୍ୟା ବା କେବଳ ଆପାତ-ସତ୍ୟ । ପ୍ରକୃତ ସତ୍ୟକୁ ଛାଡ଼ି ଆମେ ଆପାତ-ସତ୍ୟ ବା ମିଥ୍ୟା ପଛରେ ଧାବମାନ ହେବା ହେତୁହିଁ ଦୁଃଖ ଭୋଗ କରୁ ।

ଯେହେତୁ ବ୍ରହ୍ମହିଁ ଏ ଜଗତରେ ଏକମାତ୍ର ସତ୍ୟ, ତେଣୁ ଆମେ ମଧ୍ୟ ବ୍ରହ୍ମ,— ଅବଶ୍ୟ, କେବଳ ଆପେକ୍ଷିକଭାବରେ । ସାଧାରଣତଃ ଆମେ ନିଜର ନଶ୍ୱର ବା ଅସ୍ଥାୟୀ ଦେହଟାକୁହିଁ ଆମର ସତ୍ୟ ବ୍ୟକ୍ତିତ୍ୱ ବୋଲି ମନେ କରିଥାଉଁ । ଆମ ଚିନ୍ତାରେ ଦେହ ମୁଖ୍ୟ, ଆତ୍ମା ଗୌଣ । କିନ୍ତୁ ପ୍ରକୃତ ତଥ୍ୟ ହେଉଛି ଏହି ଯେ— ଆତ୍ମା ମୁଖ୍ୟ ଓ ନିତ୍ୟ, ଏ ଦେହଟା ଏକାନ୍ତ ଗୌଣ । ଏବର ଏହି ଦେହ ପରି ବହୁ ଦେହ ଆତ୍ମା ଗ୍ରହଣ କରିସାରିଛି ଓ ପୁଣି କରିବ, ଯଦି ଆମେ ସେହି ଜନ୍ମ-ଜୀବନ-ମୃତ୍ୟୁର ପ୍ରବାହକୁ ଚେଷ୍ଟା କରି ବନ୍ଦ ନ କରୁଁ । ସେହି ପ୍ରବାହ ଚାଲିଛି, କାରଣ ପୂର୍ବ ଜନ୍ମର ବାସନାଜାଳ ଆମକୁ ବହିର୍ମୁଖୀ କରି ରଖିଛି ।

ବୁଦ୍ଧି ବା ଆମ ମନର ଭଲ-ମନ୍ଦ-ବିଚାର-ଶକ୍ତିହିଁ ଆମର ବହିର୍ମୁଖୀ ଓ ଅନ୍ତର୍ମୁଖୀ ଜୀବନର ପରସ୍ପର ସମ୍ପର୍କ ଓ ଆପେକ୍ଷିକତାକୁ ଆମ ଆଗରେ ସ୍ପଷ୍ଟ କରିପାରେ । ପରମହଂସଦେବ ସାଧକ ଅବସ୍ଥାରେ ଗଙ୍ଗାକୂଳରେ ଏକ ହାତରେ ଏକ ଢେଳା ମାଟି ଓ ଆର ହାତରେ ଗୋଟାଏ ଟଙ୍କା ଧରି ଆପେ ଆପେ ଯୁକ୍ତି କରୁଥିଲେ— "ଏଇ ଟଙ୍କା ! ଏଇଥିରୁ ମନୁଷ୍ୟ ଘର, ଜମି, ଯାନ, ବାହନ ପାଏ ଓ ଭଲ ଖାଏ । ଏଇ ମାଟିରୁ ମଧ୍ୟ ଲୋକେ ସେହି

ଘର, ଜମି, ଯାନ, ବାହନ ଓ ଉତ୍ତମ ଭୋଜନ ପାଇଥାନ୍ତି । ତେଣୁ ଟଙ୍କା ଯାହା, ମାଟି ତାହା, ଉଭୟ ସମାନ ।'' ତାପରେ, ସେହି ହୋଇଆସୁଥିବା-ପରମହଂସ, ଅବିଚଳିତଚିତ୍ତରେ ମାଟି ଓ ଟଙ୍କା ଉଭୟକୁ ଗଙ୍ଗାର ଅଗାଧ ଜଳକୁ ଫୋପାଡ଼ି ଦେଲେ । ଜଗତର ପ୍ରବଳତମ ପ୍ରଲୋଭନ ନାରୀ-ଦେହ ସଂପର୍କରେ ମଧ୍ୟ ବୁଦ୍ଧ, ରାମକୃଷ୍ଣ ପ୍ରଭୃତି ଏ ଧରାର ଶ୍ରେଷ୍ଠ ସତ୍ୟଦ୍ରଷ୍ଟାଗଣ ଠିକ୍ ଏହିପରି ବିଚାର ଆମ ଆଗରେ ଥୋଇଛନ୍ତି । କିନ୍ତୁ ମୋହାନ୍ଧତାବଶତଃ ଆମେ ସେହି ଶ୍ରେଷ୍ଠ ପୁରୁଷମାନଙ୍କ ପ୍ରଦର୍ଶିତ ସତ୍ୟର ଆଲୋକ ଦେଖି ମଧ୍ୟ ମୂର୍ଖତାର ଅନ୍ଧକାରରେହିଁ ରହିବାକୁ ଚାହୁଁ ଏବଂ ସେହି ଅନୁସାରେ ଦୁଃଖ ମଧ୍ୟ ଭୋଗ କରୁଁ । ଏଇଥିରୁ ଆମେ ଜାଣିବା ଯେ, ଆମ ଇନ୍ଦ୍ରିୟମାନଙ୍କର ଉତ୍ସାହ ଓ କର୍ମ-ତତ୍ପରତାର ଉତ୍ସ ରହିଛି, ଆମ ବହିର୍ମୁଖୀତୃଷ୍ଣାଜର୍ଜର ମନରେ । ତୃଷ୍ଣାବ୍ୟାକୁଳ ମନହିଁ ଆମର ସକଳ ଦୁଃଖର ହେତୁ । ତୃଷ୍ଣାମାନଙ୍କର ନିୟନ୍ତ୍ରଣ ଅର୍ଥ, ମନର ନିୟନ୍ତ୍ରଣ । କିନ୍ତୁ ଏକ ନିୟନ୍ତ୍ରିତ ମନ, ଏକ ନେଗେଟିଭ୍ (negative) ବା ନଞ୍ଚାତ୍ମକ ଅବସ୍ଥା ମାତ୍ର । ବାହ୍ୟଜଗତରୁ ନିଃଶେଷଭାବରେ ଆକର୍ଷିତ ମନକୁ ଧ୍ୟାନବଳରେ ଆମେ ଯେତେବେଳେ ଆମର ଆତ୍ମା ସହିତ ସଂଯୁକ୍ତ କରିପାରିବା, ସେତେବେଳେ ଆମେ ଚିରସ୍ଥାୟୀ ଅଲୌକିକ ପରମ ସୁଖ ଓ ଆନନ୍ଦ ପାଇବା ବୋଲି ଗୀତାଙ୍କର ବ୍ୟଞ୍ଜନା । ଗୀତାଙ୍କର ଏହି ବ୍ୟଞ୍ଜନା ଯଥାର୍ଥ ବୋଲି ମନେ ହୁଏ । କାରଣ ତୈତ୍ତିରୀୟୋପନିଷଦର ସେହି ପ୍ରସିଦ୍ଧ ବାଣୀ (୩।୬)—''ଆନନ୍ଦରୁହିଁ ଭୂତବର୍ଗ ଜନ୍ମ ଗ୍ରହଣ କରନ୍ତି; ଆନନ୍ଦଦ୍ୱାରାହିଁ ପ୍ରବର୍ଦ୍ଧିତ ହୁଅନ୍ତି ଏବଂ ଆନନ୍ଦ ଆଡ଼କୁ ପ୍ରତ୍ୟାବର୍ତ୍ତନ କରି ଆନନ୍ଦରେହିଁ ବିଲୀନ ହୋଇଥାନ୍ତି''—ଏହି ସୃଷ୍ଟିର ପରମତମ ବିଧି ଓ ସତ୍ୟ ବୋଲି ମନେ ହୁଏ । ପ୍ରତ୍ୟେକ ଜୀବ ଓ ମନୁଷ୍ୟ ଅହରହ କୌଣସି-ନା-କୌଣସି ଆନନ୍ଦ ପଛରେ ଧାବିତ । ତାହାହିଁ ଜୀବନ । କିନ୍ତୁ ଯାହା ପଛରେ ଆମେ ସୁଖ ଓ ଆନନ୍ଦପାଇଁ ଧାଉଁ, ସେସବୁ ତ ନିଜେ ମିଥ୍ୟା ଓ ଅନିତ୍ୟ, ସେ ଆମକୁ ସତ୍ୟ ସୁଖ ବା ଆନନ୍ଦ ଦେଇପାରିବେ କୁଆଡ଼ୁ ? ସେଥିପାଇଁ ଗୀତା ଠିକ୍ ପୂର୍ବବର୍ତ୍ତୀ ଅଧ୍ୟାୟର ୨୨ ଶ୍ଳୋକରେ କହିସାରିଛନ୍ତି ଯେ—

ଯେ ହି ସଂସ୍ପର୍ଶଜା ଭୋଗାଃ ଦୁଃଖଯୋନୟ ଏବ ତେ<br>
ଆଦ୍ୟନ୍ତବନ୍ତଃ କୌନ୍ତେୟ ନ ତେଷୁ ରମତେ ବୁଧଃ ।

ଅର୍ଥାତ୍, ବାହ୍ୟସ୍ପର୍ଶଜାତ ଯେତେ ସୁଖ, ସେ ସମସ୍ତ ଆଦ୍ୟନ୍ତବନ୍ତ ଏବଂ ସେହି କାରଣରୁ ଦୁଃଖ-ଜନକ । ନିତ୍ୟ ସୁଖ ମିଳିବ କେବଳ ନିତ୍ୟ ବସ୍ତୁ ପାଇଲେ ; ଏବଂ ସେହି ନିତ୍ୟ ବସ୍ତୁ ବା ବ୍ରହ୍ମ ବା ଆତ୍ମା

ସହିତ ଆମର ମିଳନ ଘଟିଲେ ଆମେ ନିଜ ଭିତରେ କେବଳ ଅତୁଳନୀୟ ଆନନ୍ଦ ଭୋଗ କରିବା, ଏବଂ ଦୁଃଖମୟ ସଂସାର ମଧ୍ୟ ଆମକୁ ଆନନ୍ଦମୟ ବୋଧ ହେବ। ପରମହଂସଙ୍କ ବାଣୀରେ — ପୂର୍ଣ୍ଣ ମାଠିଆଟି ପାଣିଭିତରେ ଥିଲେ ତାର ଯେପରି ଭିତରେ ଓ ବାହାରେ ପୂରିଆଡ଼େ ଜଳ, ଈଶ୍ୱରଯୁକ୍ତ ଲୋକ ପୂରିଆଡ଼େ ସେହିପରି ଦେଖିବ କେବଳ ସତ୍-ଚିତ୍-ଆନନ୍ଦ।

ପରବର୍ତ୍ତୀ କେତୋଟି ଶ୍ଳୋକରେ ଗୀତା ସମଦର୍ଶିତା ଏବଂ ପରମ ସୁଖକୁ ବର୍ଣ୍ଣନା କରିଚାଲିବେ।

୨୯

ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି
ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ ।୨୯।

ସର୍ବତ୍ର ସମଦର୍ଶନଃ (ସବୁଠାରେ ସମଦୃଷ୍ଟି ରଖି) ଯୋଗଯୁକ୍ତାତ୍ମା (ଯୋଗାଭ୍ୟାସ ଯୋଗୁଁ ସତତ ଆତ୍ମଯୁକ୍ତ ବ୍ୟକ୍ତି) ଆତ୍ମାନଂ ସର୍ବଭୂତସ୍ଥଂ (ଆପଣାକୁ ସବୁ ପ୍ରାଣୀଠାରେ ଥିବାର) ସର୍ବଭୂତାନି ଚ ଆତ୍ମନି (ଏବଂ ସବୁ ପ୍ରାଣୀଙ୍କୁ ମଧ୍ୟ ଆପଣାଠାରେ ଥିବାର) ଈକ୍ଷତେ (ଦେଖନ୍ତି)।

## ଅନୁବାଦ

ହେ ଅର୍ଜୁନ, ସେହି ଯୋଗଯୁକ୍ତାତ୍ମା ନିଜକୁ ସକଳ ଜୀବଠାରେ ଓ ସକଳ ଜୀବଙ୍କୁ ନିଜଠାରେ ଦେଖି ସର୍ବତ୍ର ସମଦର୍ଶୀ ହୋଇଉଠନ୍ତି।

## ବିଶେଷ ଭାଷ୍ୟ

ଆମେ ନିଜର ସୀମାବଦ୍ଧତା ଯୋଗୁଁ ଭୂମା ଓ ଅସୀମକୁ ଯେ କେବଳ ଦେଖି-ପାରୁ ନାହୁଁ ତା ନୁହେଁ, ତାର ଅସ୍ତିତ୍ୱ ମଧ୍ୟ ଅସ୍ୱୀକାର କରିଥାଉଁ। କିନ୍ତୁ ସକଳ ମୃତ୍ପାତ୍ରରେ ଯେପରି ସେହି ଏକ ମାଟି, ସକଳ ସ୍ୱର୍ଣ୍ଣାଲଂକାରରେ ଯେପରି ସେହି ଏକ ସୁନା, ପ୍ରତ୍ୟେକ ଊର୍ମିରେ ଯେପରି ସେହି ଏକ ମହାର୍ଣ୍ଣବ, ସକଳ ସୀମାବଦ୍ଧ ଜୀବଦେହରେ, ସେହିପରି ସେହି ଏକ ପରମାତ୍ମା ବିରାଜିତ। ଭିନ୍ନାକୃତିର ଲକ୍ଷ ଲକ୍ଷ ବଲ୍ବ୍ ଭିତରେ ସେହି ଏକ ବିଦ୍ୟୁତ୍। ଆମେ ଆମ ଦେହ-ସ୍ତରର ଅନୁଭବରୁହିଁ ଅନ୍ୟ ଅନ୍ୟ ଦେହକୁ ବିଚାର କରୁ; ଅନୁଭବର ସ୍ତରରୁ ଅନ୍ୟର ଅନୁଭବ ବୁଝୁଁ ଏବଂ ବୁଦ୍ଧିର ସ୍ତରରେ ଅନ୍ୟର ବୌଦ୍ଧିକ

ମଣ୍ଡିମା ବୁଝିପାରୁ । ଦେହ, ମନ, ବୁଦ୍ଧିକୁ ଡେଇଁ ଆମେ ଯେତେବେଳେ ଆତ୍ମାର ସ୍ତରରେ ପହଞ୍ଚିବା, ସେତେବେଳେ ସକଳ ଅଗଣିତ ଦେହ, ମନ ଓ ବୁଦ୍ଧିତଳେ କେବଳ ଏକ ଅଭିନ୍ନ ଓ ସର୍ବବ୍ୟାପ୍ତ ଆତ୍ମାହିଁ ଆମେ ଦେଖିବା ।

ମନୁଷ୍ୟ ଯେ ଗୋଟାଏ ଜନ୍ତୁମାତ୍ର ନୁହେଁ, ସେ ଯେ ଏକ ପ୍ରଚ୍ଛନ୍ନ ଦେବତା, ଏକ ବିପଥଗାମୀ ଈଶ୍ୱର ମାତ୍ର,--ମୂଳରୁ ଶେଷଯାଏଁ ଗୀତା ଏହି ମହତ୍ ସନ୍ଦେଶହିଁ ପ୍ରଚାର କରିଚାଲିଥିବାର ପାଠକେ ଦେଖିବେ । ଗୀତା ମନୁଷ୍ୟର ପରିପୂର୍ଣ୍ଣତାର, ଈଶ୍ୱରଭବନର ଶାସ୍ତ୍ର । ଏହିଠାରେହିଁ ଗୀତାର ସାର୍ବଜନୀନତା । ଯେପରି ପାହାଡ଼କୁ ଉଠିବା ଲୋକର ଆଖିରେ ତଳର ଗଛ ଓ ଘାସ ସମାନ ଦିଶନ୍ତି, ସେହିପରି ପରିପୂର୍ଣ୍ଣତାପ୍ରାପ୍ତ ମନୁଷ୍ୟ ଯେ ନିଖିଳ ବିଶ୍ୱରେ ଏକ ଅଭିନ୍ନ ଦୈବୀ ଚେତନାହିଁ ପରିବ୍ୟାପ୍ତ ଥିବାର ଦେଖିବ, ଏଥିରେ ସନ୍ଦେହ କ'ଣ ? ସାଧୁ ଓ ନିଷ୍ଠାନ୍ୱିତ ଧର୍ମୀୟ ସାଧନାର ଏହାହିଁ ସ୍ୱାଭାବିକ ମାନସିକ ପରିଣତି ।

ଏକ ସ୍ଥାନରେ ପରମହଂସ ରାମକୃଷ୍ଣ ମଧ୍ୟ କହିଛନ୍ତି —"ଗଙ୍ଗାରେ ଆଡ଼ି ପକେଇ ସେହି ଅଳ୍ପ ଜଳକୁ 'ମୋର ଗଙ୍ଗା' କହିବା ଯାହା, ଆତ୍ମକେନ୍ଦ୍ରିକ 'ଭିନ୍ନତାନୁଭବ' ଠିକ୍ ସେହିପରି ମୂର୍ଖତା" ।

ଗୀତାଙ୍କର 'ସର୍ବତ୍ର ସମଦର୍ଶନ'—ଭାବ, ତେଣୁ ଆଧ୍ୟାତ୍ମିକ ଉନ୍ନତିର ଶେଷ ସ୍ୱାଭାବିକ ପରିଣତି ବୋଲି ଧରିବାକୁ ହେବ ।

କିନ୍ତୁ ଏହି ପରମ ଉନ୍ନତ ଓ ପରମ କାମ୍ୟ ଅବସ୍ଥାରେ ମନୁଷ୍ୟ ଓ ଈଶ୍ୱରଙ୍କର ସମ୍ପର୍କ କିପରି ହେବ, ଏବଂ ସମାଜ ଓ ସେହି ପୂର୍ଣ୍ଣ-ମନୁଷ୍ୟର ସଂପର୍କ କିପରି ହେବ, ଗୀତା ତାହା ପରବର୍ତ୍ତୀ ତିନୋଟି ଶ୍ଳୋକରେ ବର୍ଣ୍ଣନା କରୁଛନ୍ତି ।

ଗୀତା-ପ୍ରଚାରିତ ଏଭଳି 'ସମଦର୍ଶନ' ଅବସ୍ଥା ଆଦର୍ଶ ହୋଇପାରେ, କିନ୍ତୁ ବାସ୍ତବରେ ସମ୍ଭବ ନୁହେଁ ବୋଲି କେହି ଆଶଙ୍କା ପ୍ରକାଶ କରିବା ସ୍ୱାଭାବିକ । ନିଜ ପୁତ୍ରକନ୍ୟା ଓ ଅନ୍ୟ ପୁତ୍ରକନ୍ୟା ଭିତରେ ଆଦୌ ପ୍ରଭେଦ ଦେଖି ନ ପାରିବା, ବସ୍ତୁତଃ ଅସମ୍ଭବ ବୋଧ ହୋଇପାରେ । ପୁଣି ସେପ୍ରକାର ବ୍ୟବହାର ମଧ୍ୟ ଉଭୟ ସାଧକଜୀବନ ଓ ସାମାଜିକ ଜୀବନଭିତରେ ବିଭ୍ରାଟ ଆଣିପାରେ ବୋଲି କେହି କେହି ଆଶଙ୍କା କରିପାରନ୍ତି ; କିନ୍ତୁ ବିଶ୍ଳେଷଣ କରି ଦେଖିଲେ, ଆମେ ଏହି ନିଷ୍କର୍ଷରେ ନିଶ୍ଚୟ ଆସିବା ଯେ, ସାମାଜିକ ଓ ରାଷ୍ଟ୍ରିକ ଅଶାନ୍ତି କେବଳ ନୁହେଁ, ବ୍ୟକ୍ତିଗତ ଅଶାନ୍ତି ମଧ୍ୟ 'ସ୍ୱାର୍ଥପରତା'ରୁହିଁ ଆସିଥାଏ, 'ନିଃସ୍ୱାର୍ଥତା'ରୁ ନୁହେଁ । 'ମୁଁ କେବଳ ଭୋଗ କରିବି"—ମନୁଷ୍ୟର ଏହି

ଲାଳସାରୁ ଅନିଷ୍ଟ ସୃଷ୍ଟି ସିନା ହୁଏ, 'ନା, ସେ ମଧ୍ୟ ଭୋଗ କରୁ' ଏହି ତ୍ୟାଗ-ଭାବରୁ କୌଣସି ଅନିଷ୍ଟ ଆସେ କି ? ସମଦର୍ଶନ ଥିବା ଲୋକର 'ନିଜର' ବୋଲି କିଛି ନ ଥିବାରୁ, ଅର୍ଥାତ୍ ନିଜର ଘର, ସଂପତ୍ତି, ପରିବାର, ଟଙ୍କା ଇତ୍ୟାଦି ନ ଥିବାରୁ, ସେ ଲୋକର ପାର୍ଥିବ ଜୀବନ ଦୁଃଖମୟ ଓ ବ୍ୟର୍ଥତାମୟ ହେବା ମଧ୍ୟ ସାଧାରଣ ଆଶଙ୍କା ହୋଇପାରେ ଏବଂ ଏହି ସାଧାରଣ ଆଶଙ୍କାରୁହିଁ ଆମର ସ୍ୱାର୍ଥପରତା ଆସିଥାଏ । କିନ୍ତୁ ଗୀତା ସେହି-ପ୍ରକାର ତ୍ୟାଗବାନ୍, ନିଃସ୍ୱାର୍ଥ ସମଦର୍ଶନ ବ୍ୟକ୍ତିଙ୍କୁ ପରବର୍ତ୍ତୀ ଦୁଇଗୋଟି ଶ୍ଳୋକରେ ପରମ ଆଶ୍ୱାସନା ଦେଇଛନ୍ତି । ପାଠକେ ମଧ୍ୟ ନିକଟ ଅତୀତରେ ଆମ ଦେଶର ଇତିହାସରେ ଗୌରବମୟଭାବରେ ଦେଖା ଦେଇଥିବା ଦୁଇଟି ନିଃସ୍ୱାର୍ଥ ସମଦର୍ଶନ-ଜୀବନକୁ ସ୍ମରଣ ରଖନ୍ତୁ । ସେ ହେଲା ଗାନ୍ଧିଜି ଓ ଶାସ୍ତ୍ରୀଜିଙ୍କ ଜୀବନ, ଯାହାଙ୍କର ନିଜର କୌଣସି ବ୍ୟାଙ୍କ ଆକାଉଣ୍ଟ ନ ଥିଲା, ଘର ନ ଥିଲା ; କି ସଂପତ୍ତି ନ ଥିଲା । ଏବଂ ଠିକ୍ ସେହି କାରଣରୁହିଁ ସମଗ୍ର ଜାତି ସେମାନଙ୍କ ସ୍ମୃତିକୁ ଏବେ ମୁଣ୍ଡରେ ମୁଣ୍ଡେଇଛି । ଗୀତାର ନିମ୍ନ ଶ୍ଳୋକଗୁଡ଼ିକ ସେହିମାନଙ୍କ ଜୀବନରେ ଗୌରବାବହଭାବରେ ପ୍ରତିଫଳିତ ଦେଖି, ସେଗୁଡ଼ିକର ତାତ୍ପର୍ଯ୍ୟରେ ପାଠକେ ଅବିଶ୍ୱାସ କରିବେ ନାହିଁ ବୋଲି ଆଶା ।

୩୦

ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି
ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି । ୩୦ ।

ଯଃ (ଯେ) ସର୍ବତ୍ର (ସବୁଠାରେ) ମାଂ ପଶ୍ୟତି (ମତେ ଅର୍ଥାତ ଈଶ୍ୱରଙ୍କୁ ଦେଖନ୍ତି) ମୟି ଚ (ଏବଂ ମୋଠାରେ ମଧ୍ୟ) ସର୍ବଂ ପଶ୍ୟତି (ସମସ୍ତଙ୍କୁ ଦେଖନ୍ତି) ଅହଂ ତସ୍ୟ ନ ପ୍ରଣଶ୍ୟାମି (ମୁଁ ତାଙ୍କୁ କେବେ ହରାଇ ବସେ ନାହିଁ ସ ଚ ମେ ନ ପ୍ରଣଶ୍ୟତି (ସେ ମଧ୍ୟ ମତେ କେବେ ହରାଇ ବସେ ନାହିଁ) ।

## ଅନୁବାଦ

ଯେତେବେଳେ ସାଧକ ସବୁଠାରେ ମତେ (ଈଶ୍ୱରଙ୍କୁ)ହିଁ ଦେଖନ୍ତି ଏବଂ ମୋଠାରେହିଁ ସମସ୍ତ ଦେଖନ୍ତି, ସେତେବେଳେ ସେ ମୋଠାରୁ (ଈଶ୍ୱରଠାରୁ) କେବେହେଲେ ଦୂରସ୍ଥ ରହିପାରନ୍ତି ନାହିଁ, କି (ଈଶ୍ୱର) ମୁଁ ମଧ୍ୟ ତାଙ୍କଠାରୁ ଅଉ ଦୂରସ୍ଥ ରହିପାରେନା ।

## ବିଶେଷ ଭାଷ୍ୟ

ସାଧକ ଯେତେବେଳେ ସେହି ସର୍ବବ୍ୟାପ୍ତ ଏକକ ସତ୍ୟ ବ୍ରହ୍ମ ବା ଆତ୍ମା ସହିତ ପରିଚିତ ହୋଇଯାଆନ୍ତି, ସେ ଜଗତର ଅଗଣିତ ବସ୍ତୁ ଭିତରେ କେବଳ ଯେ ତାଙ୍କୁଇ ଦେଖିବେ, ଏଥିରେ ସନ୍ଦେହ କ'ଣ ? ତାହା ତ ସ୍ୱାଭାବିକ ପରିଣତି । ପରମହଂସଙ୍କ ଅପୂର୍ବ କଥନରେ, 'ଗୁଡ଼ିଆମାନେ ଘୋଡ଼ା, କୁକୁଡ଼ାଦି ନାନା ପ୍ରାଣୀର ଆକାରରେ ମିଠାଇ ତିଆରି କରି ଠିଆ କରିଥାନ୍ତି । କିନ୍ତୁ ସେସମସ୍ତ ଗୋଟିଏ ଜିନିଷ, ଚିନିରେହିଁ ତିଆରି । ଠିକ୍ ସେହିପରି, ଏ ଜଗତର ଜୀବ ଓ ଜଡ ସକଳହିଁ ସେହି ଏକ ସତ୍-ଚିତ୍-ଆନନ୍ଦରେ ତିଆରି । ଚକ୍ଷୁଷ୍ମାନ ଯୋଗୀ ତାହା ସ୍ପଷ୍ଟ ଦେଖିପାରେ । ତେଣୁ ଯୋଗୀର ଦୃଷ୍ଟିଆଡ଼େ ତ ସଚ୍ଚିଦାନନ୍ଦ । ସେ ଓ ଈଶ୍ୱର ଙ୍କ ମଧ୍ୟରେ ସର୍ବଦା ଓ ସର୍ବ ସ୍ଥାନରେ ଅଚ୍ଛିନ୍ନ ସବନ୍ଧ ।

୩୧

ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱମାସ୍ଥିତଃ
ସର୍ବଥା ବର୍ତ୍ତମାନୋଽପି ସ ଯୋଗୀ ମୟି ବର୍ତ୍ତତେ । ୩୧ ।

ଯଃ (ଯେ) ଏକତ୍ୱଂ ଆସ୍ଥିତଃ (ସେ, ସଂସାର ଓ ଜୀବଗ୍ରାମ ଏକ ଓ ଅଭିନ୍ନ ବୋଲି ଅବଧାରଣ କରି) ସର୍ବଭୂତସ୍ଥିତଂ ମାଂ (ସବୁ ପ୍ରାଣୀଠାରେ ଥିବା ଆତ୍ମାଙ୍କୁ ଭଜନ୍ତି (ଉପାସନା କରନ୍ତି) ସଃ ଯୋଗୀ (ସେହି ଯୋଗୀ) ସର୍ବଥା ବର୍ତ୍ତମାନଃ ଅପି (ଯେକୌଣସି ଅବସ୍ଥାରେ ଥିଲେ ମଧ୍ୟ) ମୟି ବର୍ତ୍ତତେ (ଆତ୍ମାଠାରେ ଅବସ୍ଥିତ ବୋଲି ମନେ କରିବ) ।

## ଅନୁବାଦ

ଏହିପ୍ରକାରେ ଯେଉଁ ସାଧକ ନିଜ ଓ ପର ସହିତ ଏକୀଭୂତ ହୋଇଯାଇ, ସବୁ ଜୀବରେ ମୁହିଁହିଁ ଅବସ୍ଥିତ ବୋଲି ମନେ କରି ସେହିଭଳିଭାବରେ (ଅର୍ଥାତ୍ ଜୀବ ଓ ମନୁଷ୍ୟର ସେବାରେହିଁ) ମତେ ପୂଜା କରନ୍ତି, ସେହି ମୁକ୍ତ-ପୁରୁଷ (ଯୋଗୀ) ଯେକୌଣସି ସାମାଜିକ ଅବସ୍ଥାରେ ଥାଆନ୍ତୁ ନା କାହିଁକି, ସେ ସତ୍ୟରେ ମୋଠାରେ (ଈଶ୍ୱରଙ୍କଠାରେ) ଅବସ୍ଥିତ ବୋଲି ଜାଣିବ ।

## ବିଶେଷ ଭାଷ୍ୟ

ପରମହଂସଦେବଙ୍କ ଅପୂର୍ବ ବଚନରେ "କେବଳ ଅଜ୍ଞ ଲୋକେହିଁ ଭାବିଥାନ୍ତି ଯେ, ଈଶ୍ୱର ସ୍ୱର୍ଗ ବୋଲି ଏକ ଦୂର ସ୍ଥାନରେ ଥାଆନ୍ତି । କିନ୍ତୁ ଜ୍ଞାନୀ

ଈଶ୍ୱରଙ୍କୁ ତାର ଜୀବନର ଜୀବନ ବୋଲିହିଁ ଅନୁଭବ କରେ । ଈଶ୍ୱର ସକଳ ଜନର ହୃଦୟରେ ଅବସ୍ଥିତ । ଭକ୍ତ ତେଣୁ ତାଙ୍କୁ ପ୍ରଥମେ ନିଜଭିତରେହିଁ ଖୋଜି ପାଏ ।"

୩୨

ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ
ସୁଖଂ ବା ଯଦି ବା ଦୁଃଖଂ ସ ଯୋଗୀ ପରମୋମତଃ । ୩୨ ।

(ହେ) ଅର୍ଜୁନ, ଯଃ (ଯେଉଁ ଲୋକ) ସର୍ବତ୍ର ଆତ୍ମୌପମ୍ୟେନ (ସମସ୍ତଙ୍କୁ ନିଜପରି ଦେଖିବାଦ୍ୱାରା) ସୁଖଂ ବା ଯଦି ବା ଦୁଃଖଂ (ଅନ୍ୟମାନଙ୍କର ସୁଖ ଓ ଦୁଃଖକୁ ମଧ୍ୟ) ସମଂ ପଶ୍ୟତି (ସମାନଭାବରେ ଦେଖେ, ଅର୍ଥାତ୍ ଅନ୍ୟକୁ ନିଜପରି ମନେ କରିବା ଫଳରେ ଅନ୍ୟର ଦୁଃଖ ଓ ଅନ୍ୟର ସୁଖରେ ସମଭାବରେ ପ୍ରଭାବିତ ହୁଏ) ସଃ ଯୋଗୀ (ସେହି ଯୋଗୀ) ପରମଃ ମତଃ (ସର୍ବାପେକ୍ଷା ଶ୍ରେଷ୍ଠ ବ୍ୟକ୍ତି ବୋଲି ଜାଣିବ) ।

## ଅନୁବାଦ

ହେ ଅର୍ଜୁନ, ଯେଉଁ ଲୋକ ସୁଖ ଓ ଦୁଃଖ ଉଭୟବିଧ ଅନୁଭବରେ, ନିଜପରିହିଁ ଅନ୍ୟ ସମସ୍ତଙ୍କୁ ସମାନୁଭବ ସହିତ ଦେଖିପାରେ, ସେହି ଲୋକହିଁ ଶ୍ରେଷ୍ଠ ଯୋଗୀ ବୋଲି ବିବେଚିତ ହୋଇଥାଏ ।

## ବିଶେଷ ଭାଷ୍ୟ

ଧର୍ମୀୟ ବା ଆଧ୍ୟାତ୍ମିକ ସାଧନା ସାଧାରଣ ନାଗରିକପାଇଁ ନୁହେଁ ଏବଂ ଏହା କେବଳ ସମାଜବାହାରେ ସମ୍ଭବ, ଏ ଏକ ମାରାତ୍ମକ ଅପପ୍ରଚାର । ସମଗ୍ର ଗୀତା ଏହି ଅପପ୍ରଚାରର ଏକ ଯୁକ୍ତିଯୁକ୍ତ ତୀବ୍ର ପ୍ରତିବାଦ । ଗୀତା ପଳାୟନବାଦକୁ କୌଣସିଠାରେ ସାମାନ୍ୟତମ ପ୍ରଶ୍ରୟ ଦେଇ ନାହାନ୍ତି । ଗୀତା ଜୀବନ-ସାମ୍ମୁଖ୍ୟର ଗ୍ରନ୍ଥ, ନାଗରିକର ଓ ଗୃହସ୍ଥର ଶ୍ରେଷ୍ଠ ଜୀବନ-ଦର୍ଶନ । ଗୀତା ଏଥିପାଇଁ ଏକ ପକ୍ଷରେ କର୍ମଯୋଗର ଓ ଅନ୍ୟ ପକ୍ଷରେ 'ଲୋକସଂଗ୍ରହ' ବା ଜନକଲ୍ୟାଣର ଆଦର୍ଶ ଆମ ଆଗରେ ଥୋଇଛନ୍ତି । ଗୀତାର ଯୋଗୀ ବା ଆଦର୍ଶପୁରୁଷ ସମାଜ ତ୍ୟାଗକରି ଅରଣ୍ୟ ବା ପର୍ବତ ଗୁହାରେ ଈଶ୍ୱର ଖୋଜିବାର ଲୁହାଯାଇ ନାହିଁ । ବରଂ ଗୀତା ଏହି ଶ୍ଳୋକପରି ଦୃଢ଼ ସ୍ୱରରେ ବହୁ ସ୍ଥାନରେ

ଇତ୍ୟାଦିର ଆମେ ଦେଖିବା ଯେ, ସମଦର୍ଶିତା, ସମାନୁଭବ, ମାନବିକତା, ପ୍ରତ୍ୟେକ ଜୀବ ଓ ମନୁଷ୍ୟ ଈଶ୍ୱର ବ୍ୟତୀତ ଅନ୍ୟ କିଛି ନୁହନ୍ତି, ସେମାନଙ୍କର ସୁଖ-ଦୁଃଖକୁ ନିଜର ସୁଖ-ଦୁଃଖ ବୋଲିହିଁ ମନେ କରିବା ପ୍ରକୃତ ଯୋଗୀ ବା ଧର୍ମ-ସାଧକର ଶ୍ରେଷ୍ଠ ଲକ୍ଷଣ । ଗୀତା ଆଲୋଚ୍ୟ ଏହି ତିନୋଟି ଶ୍ଳୋକରେ ତାହାହିଁ ଘୋଷଣା କରିଛନ୍ତି । ଏଇଥିରୁ ପାଠକେ ଗୀତାର ଈଶ୍ୱରବାଦ ଯେ ବାସ୍ତବରେ ସମାଜବାଦ, ସାମ୍ୟବାଦ ଓ ମାନବବାଦ, ଏହା ସହଜରେ ଗ୍ରହଣ କରିବେ ବୋଲି ବିଶ୍ୱାସ କରୁଁ । ପୁଣି, ଗୀତାର ଏହି ଉଦାର ଭାବ ସହିତ ଈଶୋପନିଷଦର ସମାନ୍ତରାଳ ଭାବ ପାଠକ ଉପଭୋଗ କରିବେ ବୋଲି ଆଶା—

ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବାଭୂଦ୍ୱିଜାନତଃ
ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ । ୭ ।

(ଯେତେବେଳେ ଜ୍ଞାନୀ ଲୋକର ଆତ୍ମାରେ ସକଳ ବସ୍ତୁ ସେହି ଆତ୍ମାହିଁ ହୋଇଗଲେ, ସେତେବେଳେ ସମସ୍ତେ ତ ଏକ—ଚକ୍ଷୁଷ୍ମାନ୍ ସେହି ତତ୍ତ୍ୱଦର୍ଶୀର ଆଉ ମୋହ କଣ, ଶୋକ କଣ ? ) ।

ପରମହଂସଦେବଙ୍କ କଥାମୃତରୁ ଏକ ମନୋଜ୍ଞ ଉଦାହରଣ ମଧ୍ୟ ଏଠାରେ ଦିଆଯାଇପାରେ ।

ଏକ ଗ୍ରାମର ଅଦୂରରେ ଏକ ଆଶ୍ରମରେ କେତେଗୁଡ଼ିଏ ସନ୍ନ୍ୟାସୀ ବାସ କରୁଥିଲେ । ଥରେ କୌଣସି ସନ୍ନ୍ୟାସୀ ଗ୍ରାମକୁ ଯାଉ ଯାଉ ଦେଖିଲେ ଯେ, ସେଠାର ଜମିଦାର ଜଣେ ଲୋକକୁ ନିର୍ଦ୍ଦୟଭାବରେ ପ୍ରହାର କରୁଛନ୍ତି । ସନ୍ନ୍ୟାସୀ ଜମିଦାରଙ୍କୁ ନିବର୍ତ୍ତାନ୍ତେ ସେ କ୍ରୋଧାନ୍ଧ ହୋଇ ଲୋକଟି ପରିବର୍ତ୍ତରେ ସନ୍ନ୍ୟାସୀଙ୍କୁ ପିଟିବାକୁ ଲାଗିଲେ । ନିଷ୍ଠୁର ପ୍ରହାରରେ ସନ୍ନ୍ୟାସୀ ମୂର୍ଚ୍ଛିତ ହୋଇ ପଡ଼ିରହିଲେ । ଏ ଖବର ପାଆନ୍ତେ, ଆଶ୍ରମର ଅନ୍ୟ ସନ୍ନ୍ୟାସୀମାନେ ପ୍ରହାରିତ ସନ୍ନ୍ୟାସୀଙ୍କୁ ଟେକିନେଇ ଆଶ୍ରମରେ ପ୍ରାଥମିକ ଚିକିତ୍ସା କଲେ । ପ୍ରହାରିତ ସନ୍ନ୍ୟାସୀ ପ୍ରଥମ ଥରପାଇଁ ଆଖି ଫିଟାନ୍ତେ ସେବାକାରୀ ସନ୍ନ୍ୟାସୀ ପଚାରିଲେ, "ମହାଭାଗ, ମୁଁ କିଏ ଚିହ୍ନି ପାରୁଛନ୍ତି ?" ପ୍ରହାରିତ ସନ୍ନ୍ୟାସୀ ଉତ୍ତର ଦେଲେ, "ଯେଉଁ ହସ୍ତ ମତେ ପ୍ରହାର କରିଥିଲା, ସେହି ହସ୍ତହିଁ ମୋର ସେବା କରୁଥିବାର ଦେଖୁଛି !"

ଅର୍ଥାତ୍ ଏହି ବ୍ରହ୍ମଜ୍ଞ ସନ୍ନ୍ୟାସୀଙ୍କ ଅନୁଭବରେ ଆତ୍ମ-ପର ଓ ନିଗ୍ରାହକ-ନିଗୃହୀତ ଇତ୍ୟାଦି ଭେଦଭାବ ସମ୍ପୂର୍ଣ୍ଣ ଉଭେଇଯାଇଥିଲା । ସେ ଜଗତକୁ କେବଳ ବ୍ରହ୍ମମୟ ଦେଖୁଥିଲେ ।

କିନ୍ତୁ ଏ କଣ ସହଜ ? ମନୁଷ୍ୟ ଯେ ଏକ ଦୁର୍ବଳ ପ୍ରାଣୀ । ତାପାଇଁ ରହିଛି ସ୍ୱାର୍ଥପରତାର ପ୍ରଲୋଭନ । ସେ ଈର୍ଷା, ହିଂସା, କ୍ରୋଧରେ ଜର୍ଜର । ଜ୍ଞାନ ତାର ସୀମିତ । ପରିଣାମ ସେ ଜାଣେ ନାହିଁ । ପୁଣି, ବାହାରିପରି ତାର ଭିତର ମଧ୍ୟ ତାର ଆୟତ୍ତାଧୀନ ନୁହେଁ । ଭିତରେ ତାର ଦୁର୍ବାର ଅହଂକାର ଓ ଭୋଗତୃଷ୍ଣା । ତେଣୁ ଏପ୍ରକାର ସମଦର୍ଶନ-ଭାବ ଏକ ପ୍ରହେଳିକା ଛଡ଼ା ତା ପକ୍ଷରେ ଆଉ କଣ ହୋଇପାରେ ?

ମନୁଷ୍ୟର ଏହି ସାଧାରଣ ଦୟନୀୟ ଦୁର୍ବଳ ଅବସ୍ଥାକୁ ଗୀତା କୌଣସିଠାରେ ଅସ୍ୱୀକାର କରି ନାହାନ୍ତି । ଆମେ ମାନୁଛୁଁ ଯେ, ସମଦର୍ଶନ-ଅତି ମହାନ୍ । ବିଷୟପ୍ରତି ଅନାସକ୍ତ ଓ ବ୍ରହ୍ମପ୍ରତି ଯୁକ୍ତ ରହିବାର ଆଦର୍ଶ ଅତି ମନୋଜ୍ଞ । କିନ୍ତୁ ସାଧାରଣ ଲୋକପକ୍ଷରେ ତାହା ସହଜ ଓ ସମ୍ଭବ କି ? ତେଣୁ ବିରାଟ ଅର୍ଜୁନ ଆମପରି ସାଧାରଣ, ଦୁର୍ବଳ ଓ ସୀମିତ ମନୁଷ୍ୟପକ୍ଷରୁ ଏହି ପ୍ରଶ୍ନ ପଚାରିଲେ ।

### ୩୩-୩୪

ଅର୍ଜୁନ ଉବାଚ ।

ଯୋଽୟଂ ଯୋଗସ୍ତ୍ୱୟା ପ୍ରୋକ୍ତଃ ସାମ୍ୟେନ ମଧୁସୂଦନ;
ଏତସ୍ୟାହଂ ନ ପଶ୍ୟାମି ଚଞ୍ଚଳତ୍ୱାତ୍ ସ୍ଥିତିଂ ସ୍ଥିରାମ୍ । ୩୩ ।
ଚଞ୍ଚଳଂ ହି ମନଃ କୃଷ୍ଣ ପ୍ରମାଥି ବଳବଦ୍ଦୃଢ଼ମ୍
ତସ୍ୟାହଂ ନିଗ୍ରହଂ ମନ୍ୟେ ବାୟୋରିବ ସୁଦୁଷ୍କରମ୍ । ୩୪ ।

ଅର୍ଜୁନଃ ଉବାଚ (ଅର୍ଜୁନ କହିଲେ)—ହେ ମଧୁସୂଦନ (ହେ ଶ୍ରୀକୃଷ୍ଣ), ତ୍ୱୟା ସାମ୍ୟେନ ଅୟଂ ଯଃ ଯୋଗଃ ଉକ୍ତଃ (ତୁମଦ୍ୱାରା ସମତାରୂପକ ଏହି ଯେଉଁ ଯୋଗ କଥିତ ହେଲା) ଚଞ୍ଚଳତ୍ୱାତ୍ [ମନର] (ଅସ୍ଥିରତାବଶତଃ) ଏତସ୍ୟ (ଏହାର) ସ୍ଥିରାଂ ସ୍ଥିତିଂ (ସ୍ଥିର ଅବସ୍ଥାନ) ଅହଂ ନ ପଶ୍ୟାମି (ମୁଁ ଦେଖିପାରୁ ନାହିଁ) । ହେ କୃଷ୍ଣ, ହି (ଯେହେତୁ) [ଏହି] ମନଃ (ମନ) ଚଞ୍ଚଳଂ (ଚଞ୍ଚଳ) ପ୍ରମାଥି (ଇନ୍ଦ୍ରିୟମାନଙ୍କର ବିକ୍ଷୋଭକାରୀ) ବଳବତ

(ବଳବାନ୍) ଦୃଢ଼ଂ [ଏବଂ ନିଜ ଶକ୍ତିରେ] (ଦୃଢ଼) [ସେଥିହେତୁ] ଅହଂ (ମୁଁ) ତସ୍ୟ (ସେହି ମନର) ନିଗ୍ରହଂ (ନିରୋଧ) ବାୟୋଃ ଇବ (ବାୟୁକୁ ନିରୋଧ କଲାପରି) ସୁଦୁଷ୍କରଂ ମନ୍ୟେ (ଦୁଃସାଧ୍ୟ ମନେ କରେଁ) ।

**ଅନୁବାଦ—**

ଅର୍ଜୁନ କହିଲେ— ହେ ଶ୍ରୀକୃଷ୍ଣ, ତୁମେ ମନୁଷ୍ୟପକ୍ଷରେ ସମଭାବ ଓ ସମଦର୍ଶନ ରୂପକ ଏହି ଯେଉଁ ଯୋଗ (ଧର୍ମ-ସାଧନା) କଥା କହିଲ, ମନୁଷ୍ୟ-ମନର ସ୍ୱାଭାବିକ ଅସ୍ଥିରତା କଥା ଭାବି ମୁଁ ଏହାର ନିରବଚ୍ଛିନ୍ନ ସ୍ଥାୟିତ୍ୱର ଧାରଣା କରିପାରୁ ନାହିଁ । କାରଣ ମନୁଷ୍ୟର ମନ ଭାରି ନିଜେ ଚଞ୍ଚଳ, ପୁଣି ଇନ୍ଦ୍ରିୟମାନେ ଭାରି ବିକ୍ଷୋଭକ ଏବଂ ଅପ୍ରତିରୋଧ୍ୟଭାବରେ ବଳବାନ୍ ଓ ଦୃଢ଼, ତାହା ତ ଜଣାଶୁଣା । ମନର ନିୟନ୍ତ୍ରଣ ବାୟୁର ନିୟନ୍ତ୍ରଣ ପରି ମୋତେ ତ ସମ୍ପୂର୍ଣ୍ଣ ଦୁଃସାଧ୍ୟ ମନେ ହେଉଛି ।

**ବିଶେଷ ଭାଷ୍ୟ**

ପ୍ରାଚୀନ ଭାରତୀୟମାନେ ମନଉପରେ ଗଭୀର ଆଲୋଚନା କରିଯାଇଛନ୍ତି । ସେମାନଙ୍କର ଆବିଷ୍କାରସବୁ ସର୍ବାଧୁନିକ ମନୋବିଜ୍ଞାନୀମାନଙ୍କ ମତ ସହିତ ଅନେକାଂଶରେ ମିଳିଯାଉଥିବାରୁ, ପ୍ରାଚୀନ ଭାରତୀୟମାନଂକର ବିଶ୍ଳେଷଣ-ଶକ୍ତି ପ୍ରକୃତରେ ଉଚ୍ଚ ପ୍ରଶଂସାର ଯୋଗ୍ୟ । ବସ୍ତୁତଃ ୟୁଙ୍ଗ୍ ପ୍ରଭୃତି ଅନେକ ବିଶ୍ୱବିଖ୍ୟାତ ଆଧୁନିକ ମନୋବିଜ୍ଞାନୀ ପାତଞ୍ଜଳଯୋଗ-ପ୍ରକାଶିତ ଭାରତୀୟ ମନସ୍ତତ୍ତ୍ୱଦ୍ୱାରା ଗଭୀରଭାବରେ ପ୍ରଭାବିତ । ପ୍ରାଚୀନ ଭାରତୀୟମାନେ ସ୍ଥିର ଜାଣିଥିଲେ ଯେ, ଆମ ମନ ଯାହା, ଆମେ କେବଳ ସେଇଆ । ବୁଦ୍ଧବାଣୀ 'ଧମ୍ମପଦ'ର ପ୍ରଥମ ଅଧ୍ୟାୟର ପ୍ରଥମ ଶ୍ଳୋକଟି ହେଲା—

"ଆମର ସକଳ ବ୍ୟକ୍ତିଗତ ଧର୍ମ (ରୁଚି, ବିଚାର, ବ୍ୟବହାର, କର୍ମ ଆଦି) ମନରୁ ଜାତ, ମନ ଦେଇ ଗଢ଼ା ଏବଂ ସମ୍ପୂର୍ଣ୍ଣ ମନୋମୟ । ତେଣୁ କଳୁଷିତ ମନ ଦେଇ ଯେଉଁଲୋକ କଥା କହେ ବା କର୍ମ କରେ, ଶଗଡ଼-ଚକ ବଳଦର ଖୁରକୁ ଅନୁବର୍ତ୍ତନ କଲାପରି ଦୁଃଖ ସେହି ଲୋକର ପଛେ ପଛେ ନିଶ୍ଚୟ ଗଡ଼ିବ ।"

କିନ୍ତୁ ଆମେ ଭୁଲିଯିବା ନାହିଁ ଯେ, ପ୍ରାଚୀନମାନେ ମନକୁ ଆମର ଶିଖାଇ ଦେଇଛନ୍ତି, ଏକ ଉପାୟ ରୂପେହିଁ ଖୋଜି ଛନ୍ତି । ଆମେ ସାଧାରଣତଃ ମନର କ୍ରୀତଦାସ-ରୂପେ କାମ କରିଥାଉଁ, ପ୍ରଭୁରୂପେ ନୁହେଁ । କିନ୍ତୁ ମନର ଆରପଟେ

ବିଧାତା ପ୍ରତ୍ୟେକ ମନୁଷ୍ୟଠାରେ 'ବୁଦ୍ଧି'କୁ ଖଞ୍ଜି ରଖିଛନ୍ତି । ଏହି 'ବୁଦ୍ଧି' ମନୁଷ୍ୟକୁ ଭଲ ଓ ମନ୍ଦର ତୁଳନାତ୍ମକ ବିଚାର ଯୋଗାଇଥାଏ । ଗୀତା ମୂଳରୁ ଉପର ଏହି 'ବୁଦ୍ଧି'ଉପରେ ନିର୍ଭର କରି ସତ୍ୟାସତ୍ୟ ଗ୍ରହଣ କରିବାକୁ ଦୃଢ଼-ଭାବରେ ଉପଦେଶ ଦେଇଛନ୍ତି, ତାହାପ୍ରତି ଆମେ ଯଥାସ୍ଥାନରେ ପାଠକ-ମାନଙ୍କର ଦୃଷ୍ଟି ଆକର୍ଷଣ କରିସାରିଛୁଁ, (ଦ୍ୱିତୀୟ ଅଧ୍ୟାୟ, ବୁଦ୍ଧୌଶରଣମନ୍ୱିଚ୍ଛ) । ମନ ଓ ବୁଦ୍ଧିର ସଂଗ୍ରାମହିଁ ଆମର ଆଧ୍ୟାତ୍ମିକ ଜୀବନର ନାଟକ । ସ୍ରଷ୍ଟା ଜାଣି ଜାଣି ମନକୁ ବହିର୍ମୁଖୀ କରି ସୃଷ୍ଟି କରିଛନ୍ତି, ଯେପରିକି ଆମେ ଏହି ଶବ୍ଦ-ଗନ୍ଧ-ସ୍ପର୍ଶ-ରୂପ-ସମ୍ବଳିତ ବିଚିତ୍ର ସଂସାରପ୍ରତି ଆକୃଷ୍ଟ ହୋଇ ପ୍ରକୃତିକୁ ଜାଣିପାରିବା, ନାନା ଆପାତସୁଖକର ଅଥଚ ପରିଣାମରେ ଦୁଃଖମୟ ଅଭିଜ୍ଞତା ଦେଇ । ହିନ୍ଦୁ ଦ୍ରଷ୍ଟାମାନଙ୍କ ମତରେ ଏ ଜଗତକୁ ଆତ୍ମା ଆସିଛି ଏହି 'ଜାଣିବା'ପାଇଁ । ପ୍ରକୃତିର ପ୍ରକୃତିକୁ ଜାଣିବାହିଁ 'ଜ୍ଞାନ' ବା ବୋଧ' ଏବଂ ସେହି ବୋଧି ବା ଅବବୋଧହିଁ 'ମୁକ୍ତି' ବା 'ନିର୍ବାଣ' । ପାଠକେ ତେଣୁ ସ୍ମରଣ ରଖିଥିବେ ଯେ, ଆମର ଆଧ୍ୟାତ୍ମିକ ଉନ୍ନୟନ ବାସ୍ତବରେ ଏକ 'ସ୍ୱାଧୀନତା-ସଂଗ୍ରାମ' । ଆ଼ମେ ବହିର୍ମୁଖୀ ମନର ପରାଧୀନତାରେହିଁ ସାଧାରଣତଃ ବନ୍ଦୀ କାଟୁଁ ଏବଂ ତା କବଳରେ ପଡ଼ି ନାନା ବାସନାରେ ପ୍ରଭାବିତ ହୋଇ ଦୁଃଖ ଭୋଗହିଁ କରି-ଚାଲିଛୁଁ । ଆମର ପ୍ରାକ୍ତନ ସ୍ୱାଧୀନତା ଫେରିଆସିବ, କେବଳ ମନ ସହିତ ଏହି-ପ୍ରକାର ଅହରହ ସଂଗ୍ରାମ ଚଳାଇ । ଆମେ ପ୍ରକୃତିଦ୍ୱାରାହିଁ ପ୍ରକୃତିକୁ ଜୟ କରିବା ।

ମନ ଏକ ଅଦୃଶ୍ୟ ସତ୍ତା ଏବଂ ବାୟୁଠାରୁ ମଧ୍ୟ ସୂକ୍ଷ୍ମ । ଜନ୍ମ-ଜନ୍ମାନ୍ତରର ଅଭ୍ୟାସ ଓ ତଜ୍ଜନିତ ସଂସ୍କାର ଦେଇ ସେ ଆମଭିତରେ ଦୁର୍ବାର ହୋଇ ପ୍ରତିଷ୍ଠିତ (ଦୃଢ଼) । ମନର ଉତ୍ତମ ପର୍ଯ୍ୟବେକ୍ଷକ ହିନ୍ଦୁ ଦ୍ରଷ୍ଟାମାନେ ମନର ଏହି ଅସ୍ଥିରତା ଓ ଦୁର୍ବାର୍ଯ୍ୟତା ବର୍ଣ୍ଣନା କରିବାକୁ ଯାଇ ତାକୁ ଏକାଧାରରେ ମଦ ଖାଇଥିବା ଏବଂ ବୃଶ୍ଚିକ ଦଂଶନଯନ୍ତ୍ରଣାରେ ଛଟପଟ ହେଉଥିବା ଏକ ସ୍ୱଭାବତଃ ଅସ୍ଥିର ମାଙ୍କଡ଼ ସହିତ ତୁଳନା କରିଛନ୍ତି । ତେଣୁ ଗୀତା ଏପର୍ଯ୍ୟନ୍ତ ବାରମ୍ବାର, ପୁନରାବୃତ୍ତି ଦୋଷ ବହନ କରି ମଧ୍ୟ, ଚଞ୍ଚଳ ମନର ଅହରହ ଇତସ୍ତତଃ-ଧାବମାନତାକୁ ରୋକି ତାକୁ ବିଷୟ-ଭୋଗ-ଚିନ୍ତାରୁ ଅର୍ଥାତ୍ ବହିର୍ମୁଖିତାରୁ ଟାଣି ଟାଣି ଅନ୍ତର୍ମୁଖୀ କରିବାକୁ ଆମକୁ ଉପଦେଶ ଦେଇ ଚାଲିଛନ୍ତି ଏବଂ ଏହି ଅଧ୍ୟାୟର ଏହି କେତୋଟି ଶ୍ଳୋକରେ ମନକୁ ବିପରୀତ ଦିଗକୁ ଟାଣିବାର କୌଶଳ ମଧ୍ୟ ବତାଇଦେଉଛନ୍ତି । ଅର୍ଜୁନଙ୍କ ପ୍ରଶ୍ନରେ ଶ୍ରୀକୃଷ୍ଣ ଉତ୍ତର ଦେଉଛନ୍ତି —

୩୫

ଶ୍ରୀ ଭଗବାନୁବାଚ

ଅସଂଶୟଂ ମହାବାହୋ, ମନୋ ଦୁର୍ନିଗ୍ରହଂ ଚଳଂ
ଅଭ୍ୟାସେନ ତୁ କୌନ୍ତେୟ ବୈରାଗ୍ୟେଣ ଚ ଗୃହ୍ୟତେ । ୩୫ ।

ଶ୍ରୀଭଗବାନ୍ (ଭଗବାନ୍ ଶ୍ରୀକୃଷ୍ଣ) ଉବାଚ (କହିଲେ)--ହେ ମହାବାହୋ (ଅର୍ଜୁନ), ମନଃ ଦୁର୍ନିଗ୍ରହଂ ଚଳଂ (ଏହି ମନ ଯେ ଦୁର୍ନିରୋଧ୍ୟ ଏବଂ ଚଞ୍ଚଳ) [ଏହା] ଅସଂଶୟଂ (ନିଃସନ୍ଦେହରେ ସତ୍ୟ) ; ତୁ (କିନ୍ତୁ) ହେ କୌନ୍ତେୟ (ଅର୍ଜୁନ), ଅଭ୍ୟାସେନ (ଅଭ୍ୟାସଦ୍ୱାରା) ବୈରାଗ୍ୟେଣ ଚ (ଏବଂ ବୈରାଗ୍ୟଦ୍ୱାରା) [ଏହା] ଗୃହ୍ୟତେ (ନିଗୃହୀତ ହୋଇଥାଏ) ।

## ଅନୁବାଦ

ଶ୍ରୀ ଭଗବାନ୍ କହିଲେ—ହେ ଅର୍ଜୁନ, ମନୁଷ୍ୟର ମନ ଯେ ଦୁର୍ନିରୋଧ୍ୟ ଓ ଅସ୍ଥିର, ଏଥିରେ ସନ୍ଦେହ ନାହିଁ । କିନ୍ତୁ ହେ ଅର୍ଜୁନ, ବୈରାଗ୍ୟ ଓ ନିରବଚ୍ଛିନ୍ନ ଅଭ୍ୟାସଫଳରେ ଏହା ଶେଷରେ ସମ୍ପୂର୍ଣ୍ଣ ନିୟନ୍ତ୍ରିତ ହୋଇପାରେ ।

## ବିଶେଷ ଭାଷ୍ୟ

ମନକୁ ଆୟତ୍ତକୁ ଆଣିବାପାଇଁ ଶ୍ରୀକୃଷ୍ଣ କୌଣସି ହଠଚମକ-ପନ୍ଥା ବତେଇ ନାହାନ୍ତି । ଗୀତା କୌଣସି ହଠଚମକ-ବିଦ୍ୟାର ଗ୍ରନ୍ଥ ନୁହେଁ । ଗୀତା ଆଧ୍ୟାତ୍ମିକ ସାଧନାର ଯୁକ୍ତିଯୁକ୍ତ ଉପଦେଶମାଳା ମାତ୍ର । ସାଧାରଣ ମନୁଷ୍ୟ ତାର ସାଧାରଣ ଦୈନନ୍ଦିନ ଜୀବନରେ ମଧ୍ୟ କିପରି ଦେବତ୍ୱ ଆଡ଼କୁ ଗତି କରିବ, ତାହାରହିଁ ବିଭିନ୍ନ ମାର୍ଗ-ପ୍ରଦର୍ଶକ ହେଉଛି ଗୀତା । ମନକୁ ସଂଯତ କରିବା ହୁଏତ ଶ୍ରୀକୃଷ୍ଣଙ୍କ ପରି ଯୋଗୀଶ୍ୱରଙ୍କୁ କିଛି ନୁହେଁ । ହୁଏତ ତାହା ତାଙ୍କ ପକ୍ଷରେ ସ୍ୱାଭାବିକ ହୋଇଥିବ, ଯେପରି 'ସମାଧି' ହୋଇଥିଲା ଶ୍ରୀରାମକୃଷ୍ଣଙ୍କ ପ୍ରତି । କିନ୍ତୁ ସାଧାରଣ ମନୁଷ୍ୟର ଅଭାବ-ଦୁର୍ବଳତାପ୍ରତି ପ୍ରଗାଢ଼ ସମବେଦନା ଜଣାଇ, ଶ୍ରୀକୃଷ୍ଣ ସ୍ୱୀକାର କରିଛନ୍ତି ଯେ -- ହଁ, ମନୁଷ୍ୟର ମନ ପ୍ରକୃତରେ ଅସଂଯମ୍ୟ । ମନ ସହଜରେ ଆମର ଆୟତ୍ତକୁ ଆସେ ନା । କିନ୍ତୁ ଆମଭିତରୁ କେତେ ଜଣ ମନକୁ ସତରେ ଜବତ କରିବାକୁ ଚେଷ୍ଟା କରିଥାନ୍ତି ? ଆମେସବୁ କିଣ

ବିବିଧ ଆସକ୍ତିର ସ୍ୱେଚ୍ଛାକୃତ କ୍ରୀତଦାସ ନୋହୁଁ ? ସବୁ ଦୁଃଖ ଜଞ୍ଜାଳ ସତ୍ତ୍ୱେ ଆମେ ଶବ୍ଦ-ଗନ୍ଧ-ରୂପ-ସ୍ପର୍ଶ ପଛରେ ଦଉଡ଼ିବାକୁ ଚାହୁଁ । କେତେ ଜଣ ପ୍ରକୃତରେ ଏ ଧାବନ-ପ୍ରତିଯୋଗିତାରେ ଯୋଗ ଦେବାକୁ ନାରାଜ ? ଅଥଚ ମନର କାମ ହେଲା ସେୟା,-ଶବ୍ଦ ରୂପ-ସ୍ପର୍ଶ-ଗନ୍ଧ ଆଡ଼କୁ ଆମକୁ ଟାଣିବା । ତେଣୁ ମନର ସ୍ୱେଚ୍ଛାକୃତ କ୍ରୀତଦାସ ଥାଇ ଥାଇ ସେ ଆମ ଆୟତ୍ତରେ ନାହିଁ ବୋଲି ଆମେ କହିବା କପରି ? ଇନ୍ଦ୍ରିୟ-ସୁଖାଦିକୁ ନ ଲୋଡ଼ି, ଆମଭିତରୁ କେତେ ଜଣ ପ୍ରକୃତରେ ସଂସାର-ବୈରାଗ୍ୟ ଚାହାନ୍ତି ? ଗୀତା ତେଣୁ, କହୁଛନ୍ତି ଯେ — ହଁ, ମନ ଚଞ୍ଚଳ ଓ ଦୁର୍ନିଗ୍ରୋଧ୍ୟ ସତ, କିନ୍ତୁ ତାହା ଯେ ସେପରି ଜଣାପଡ଼େ, ତାହା କେବଳ ଆମର ଆଭ୍ୟନ୍ତରୀଣ ଅନୁକୂଳ ପ୍ରବଣତାସବୁ ଯୋଗୁଁ । ବୈରାଗ୍ୟ ବା ସାଂସାରିକ ଆକର୍ଷଣାଦିପ୍ରତି ପ୍ରତିକୂଳ-ପ୍ରବଣତା ଆମଭିତରେ ଦେଖା ଦେଲେ ମନର ବହିର୍ମୁଖୀ ଚଞ୍ଚଳତା ଆପେ ଆପେ କମିଆସିବ ; ଏବଂ ଯେହେତୁ ମନ ଦୁର୍ବଳ ମୁହୂର୍ତ୍ତ ପାଇଲମାତ୍ରେ ଆମକୁ ପୁଣି ଆମେ ଯାହା ସତରେ ନ ଚାହୁଁ ସେଥିରେ ନେଇ ପୂରେଇ, ପ୍ରତିହିଂସା ନେଇଥାଏ, ତେଣୁ ସେହି ବୈରାଗ୍ୟ-ପ୍ରବଣତାକୁ ଆମକୁ ଅହରହ ଅଭ୍ୟାସ କରିବାକୁ ହେବ ।

ଶ୍ୱେତାଶ୍ୱତର ଉପନିଷଦ (୨/୯)ରେ କୁହାଯାଇଛି —

ଦୁଷ୍ଟାଶ୍ୱମିବ ବାହମେନଂ
ବିଦ୍ୱାନ୍ ମନୋ ଧାରୟେତା ପ୍ରମତ୍ତଃ ।

ଦୁଷ୍ଟ ଅଶ୍ୱଯୁକ୍ତ ରଥରେ ଆରୂଢ଼ ସାରଥୀ ପରି ହିଁ [ଯୋଗୀ] ମନକୁ ନିୟନ୍ତ୍ରିତ କରି ଅପ୍ରମତ୍ତଭାବରେ ଧ୍ୟେୟ ବସ୍ତୁ (ଈଶ୍ୱରଠାରେ) ଠାରେ ଏକାଗ୍ର କରିବେ ।

ଆମେ ସାଧାରଣତଃ ଆମର ଅଭ୍ୟାସ (ଭଲ ଓ ଖରାପ) ମାନଙ୍କର ସମାହାର ମାତ୍ର । ଲକ୍ଷ୍ୟ ଓ ଆଦର୍ଶର ପରିବର୍ତ୍ତନ ସହିତ ଆମକୁ ଅଭ୍ୟାସସବୁର ପରିବର୍ଦ୍ଧନ କରିବାକୁ ହେବ । ଆମେ ଯଦି ପ୍ରକୃତରେ ସତ୍ୟ ବା ଈଶ୍ୱର ବା ମୁକ୍ତି ଚାହୁଁ, ତେବେ ସଂସାରପ୍ରତି ଅନୁରାଗ ପରିବର୍ତ୍ତରେ ମନକୁ ସେଥିପ୍ରତି ବିରାଗ-ପ୍ରବଣ କରେଇବାହିଁ ମୁଖ୍ୟ ଅଭ୍ୟାସ ହେବା ଉଚିତ । ନୂତନଅଭ୍ୟାସ ଦ୍ୱାରା ପୁରାତନ ଅଭ୍ୟାସକୁ ପରାଜିତ ବା ବିତାଡ଼ିତ କରିବାକୁ ହେବ । ତତ୍ତ୍ୱର ଏହି ରୂପାନ୍ତରୀକରଣ ଶନୈଃ ଶନୈଃ ହେବ । ଏ ସୃଷ୍ଟିରେ ପ୍ରତ୍ୟେକ ଘଟଣା ସମୟ

ଅନୁସାରେ ଘଟେ । ପୂର୍ବାପର-ନିରପେକ୍ଷଭାବରେ ହଠାତ୍ କୌଣସି ଘଟଣା ଘଟିଯାଏ ନାହିଁ । ସେହିପରି ମଧ୍ୟ ଆମର ମନର ନିୟନ୍ତ୍ରଣ ବା ରୂପାନ୍ତରୀ-କରଣ । ପୁଣି ମନେ ରଖିବାକୁ ହେବ ଯେ, ରସନା ଓ ଜନନେନ୍ଦ୍ରିୟ ସ୍ବାଦର ଉତ୍ପାତରେ ମାତିରହି, ଉନ୍ନତ ଆଧ୍ୟାତ୍ମିକ ଜୀବନ ଯାପନ କରିବାର ଆଶା ବୃଥା । ଆଧ୍ୟାତ୍ମିକ ଜୀବନହିଁ ହେଲା ଅନ୍ତର୍ମୁଖୀ ଜୀବନ । ସେଥିପାଇଁ ମନକୁ ତାର ସ୍ୱାଭାବିକ ବହିର୍ମୁଖିତାରୁ ଆମକୁ ଆସ୍ତେ ଆସ୍ତେ ଅନ୍ତର୍ମୁଖୀ କରାଇବାକୁ ହେବ ବୈରାଗ୍ୟାଭ୍ୟାସଦ୍ୱାରା ।

ପୂର୍ବେ ମଧ୍ୟ ସୂଚିତ ହୋଇଛି ଯେ, ପାତଞ୍ଜଳ ଯୋଗର ପ୍ରଥମ ସୂତ୍ର ହେଲା — "ଚିତ୍ତବୃତ୍ତି-ନିରୋଧଃ ଯୋଗଃ ।" ତାପରେ ଦ୍ୱିତୀୟ ସୂତ୍ରଟି ହେଲା— "ଅଭ୍ୟାସ ବୈରାଗ୍ୟାଭ୍ୟାଂ ତନ୍ନିରୋଧଃ ।" ଗୀତା ହୁଏତ ତାହାହିଁ ଏଠାରେ ପୁନରାବୃତ୍ତି କରିଛନ୍ତି ବା ସେସମୟରେ ଏହାହିଁ ଥିଲା ସର୍ବବାଦିସମ୍ମତ, ଯାହାକୁ ଗୀତା ଏଠାରେ ଶ୍ଳୋକ ଆକାରରେ ପରିବେଷିତ କରିଦେଇଛନ୍ତି । କିନ୍ତୁ ମନକୁ ବ୍ରହ୍ମାର୍ପିତ କରିବାରେ, ଉନ୍ନୀତ କରିବାରେ, ବୈରାଗ୍ୟର ଦୈନନ୍ଦିନ ଅଭ୍ୟାସ ଯେ ଏକମାତ୍ର ପନ୍ଥା, ଏଥିରେ ସନ୍ଦେହ ନାହିଁ ।

ଏ ସମ୍ପର୍କରେ ପରମହଂସଦେବଙ୍କର ଅନୁପମ ଉପଦେଶ ମଧ୍ୟ ଏକାନ୍ତ ଅନୁଧ୍ୟେୟ —

"ଯିଏ ଉତ୍ତମ ସନ୍ତରକ ହେବାକୁ ଆଶା କରନ୍ତି, ତାଙ୍କୁ ତ ବାରମ୍ବାର ପହଁରା ଅଭ୍ୟାସ କରିବାକୁ ହେବହିଁ ହେବ । କେବଳ ଥରେ ଦୁଇ ଥରରେ ତା ହେବ ନାହିଁ । ଦିନେମାତ୍ର ପହଁରା ଶିଖି କୌଣସି ଲୋକ କ'ଣ ଉତ୍ତାଳ ସମୁଦ୍ରରେ ପହଁରିବାକୁ ଯିବ ? ସେହିପରି ଯିଏ ସତ୍-ଚିତ୍-ଆନନ୍ଦର ସମୁଦ୍ରରେ ପହଁରିବାକୁ ଚାହାନ୍ତି, ତାଙ୍କୁ ମଧ୍ୟ ବାରମ୍ବାର ବହୁ ଅଭ୍ୟାସ କରିବାକୁ ହେବ । ପ୍ରଥମ ଅଭ୍ୟାସରେ ବିଫଳତା ସ୍ୱାଭାବିକ । ତାପରେ ନିରବଚ୍ଛିନ୍ନ ସାଧନା ଆବଶ୍ୟକ । ଗୋଟାଏ ପ୍ରକାର ମାକଡ଼ସା ଅଛି, ଯିଏ କାମୁଡ଼ିଦେଲେ, ତା ବିଷ ସହଜରେ ଦେହରୁ ଯିବନି । ହଳଦୀ-ଚେର ଦେଇ ଏକପ୍ରକାର ମନ୍ତ୍ର ଉଚ୍ଚାରଣ କଲେଯାଇ ସେ ବିଷ କଟିବ । ଯୁଆ ଛଡ଼ା ଅନ୍ୟ କୌଣସି ଔଷଧକୁ ସେ ମାନେନା । ସାଧାରଣ ଲୋକ ଲୋଭ ଓ ମୋହର ମାକଡ଼ସାଦ୍ୱାରା ଦଂଶିତ । କେବଳ

ବୈରାଗ୍ୟର ମନ୍ତ୍ରହିଁ ତାଙ୍କୁ ସେ ବିଷ କାଢ଼ିନେଇପାରେ । ଏହା ବ୍ୟତୀତ ଅନ୍ୟ ସକଳ ସାଧନା ବୃଥା ।"

ଏହାହିଁ ଯେ ଉନ୍ନତ ଜୀବନର ମୂଳଭିତ୍ତି, ଗୀତା ପର ଶ୍ଳୋକରେ ତାହା ମଧ୍ୟ ବର୍ଣ୍ଣନା କରୁଛନ୍ତି ।

୩୬

ଅସଂଯତାତ୍ମନା ଯୋଗୋ ଦୁଷ୍ପ୍ରାପ ଇତି ମେ ମତିଃ
ବଶ୍ୟାତ୍ମନା ତୁ ଯତତା ଶକ୍ୟୋଽବାପ୍ତୁମୁପାୟତଃ । ୩୬ ।

ଅସଂଯତାତ୍ମନା (ଯେଉଁ ଲୋକର ମନ ସଂଯତ ହୋଇ ନାହିଁ ତାଙ୍କୁ) ଯୋଗଃ ଦୁଷ୍ପ୍ରାପ (ଯୋଗ-ସିଦ୍ଧି ସହଜରେ ମିଳେ ନାହିଁ) । ଇତି ମେ ମତିଃ (ଏହାହିଁ ମୋର ମତ) । ତୁ (କିନ୍ତୁ) ଯତତା (ବାରମ୍ବାର ଯତ୍ନରେ ଲାଗିଥିବା) ବଶ୍ୟାତ୍ମନା (ନିଜକୁ ସଂଯତ କରୁଥିବା ଲୋକ) [ଏହା] ଉପାୟତଃ ଅବାପ୍ତୁଂ ଶକ୍ୟଃ (ସଦୁପାୟରେହିଁ ପ୍ରାପ୍ତ ହୋଇପାରେ) ।

## ଅନୁବାଦ

ହେ ଅର୍ଜୁନ, ଜାଣିରଖ ଯେ ଅସଂଯତ ଲୋକ ପକ୍ଷରେ ଯେକୌଣସି ଯୋଗ ଯେ ଦୁଷ୍ପ୍ରାପ୍ୟ, ଏହା ସ୍ୱାଭାବିକ କଥା । କିନ୍ତୁ ଯିଏ ସଂଯତ ଓ ଯତ୍ନଶୀଳ, ସେ ଉତ୍ତମ ଉପାୟରେ ଅଭ୍ୟାସ କଲେ ସହଜରେ ଯୋଗଯୁକ୍ତ ହୋଇପାରିବ ।

## ବିଶେଷ ଲକ୍ଷ୍ୟ

ଶ୍ରୀରାମକୃଷ୍ଣ କହିଛନ୍ତି, "ସେକାଳରେ ଯେତେବେଳେ ମୁଁ ସାଧନାରେ ମାତିରହିଥିଲି, ଯେତେବେଳେ ମୁଁ ପ୍ରଥମେ ମୋ ମନରୁ ସକଳ ସାଂସାରିକ ବାସନା-କାମନା ସଂପୂର୍ଣ୍ଣ ପୋଛିନେଇ ତାକୁ ପବିତ୍ର-ପରିଷ୍କୃତ କରିସାରିଲା-ପରେ ଯାଇ ଈଶ୍ୱରଙ୍କୁ ଡାକେ, 'ଆସ ପ୍ରଭୁ, ଏଠାରେ ଆସନ ଗ୍ରହଣ କର ।' ତୁମ୍ଭେମାନେ ମଧ୍ୟ ସେହିପରି କର ।"

କିନ୍ତୁ ଏହା ମଧ୍ୟ ଅଜଣା ନୁହେଁ ଯେ, ବହୁ ସାଧକଙ୍କ ଜୀବନରେ, ସାଧନାର ଉନ୍ନତ ସ୍ତରକୁ ଆସିଲାପରେ ମଧ୍ୟ, ଅଧଃପତନ ଘଟିଛି । କେଉଁ ଏକ ଏକ ଦୁର୍ବଳ ମୁହୂର୍ତ୍ତରେ ପ୍ରକୃତି ତାର ପ୍ରତିହିଂସା ନେଇଥାଏ । ସାଧନା-ପଥରେ ସେହି ପରମହଂସଙ୍କ ପରି ଅନ୍ତର୍ଜ୍ୟୋତି ପୁରୁଷ ମଧ୍ୟ କାମ-କାମନାଦ୍ୱାରା

ଆତଙ୍କିତ ହୋଇ ଇଷ୍ଟଦେବତାଙ୍କୁ କାତର କଣ୍ଠରେ ଜଣାଇଥିଲେ—"ମା, ଏ ଦୁର୍ବଳତା ଯଦି ସାମାନ୍ୟଭାବରେ ମୋଠାରେ ଦେଖା ଦଏ, ତେବେ ମୁଁ ଆତ୍ମହତ୍ୟା କରି ମରିବି।" ଏବଂ କୁହାଯାଏ ଯେ, ଏହି କାମ-କାମନାକୁ ତାଙ୍କର ଅବଚେତନରୁ ସଂପୂର୍ଣ୍ଣ ଉତ୍ପାଟିତ କରିବାପାଇଁ ସେପରି ମହାମାନବଙ୍କୁ ମଧ୍ୟ ଦୀର୍ଘ ଛଅ ମାସ ଲାଗିଯାଇଥିଲା। ବାପୁଜୀଙ୍କ ପରି ପୁରୁଷ ମଧ୍ୟ ବ୍ରହ୍ମଚର୍ଯ୍ୟ ପ୍ରତିଜ୍ଞାରୁ ଥରେ ଦି ଥର ଖସିଯାଇଥିଲେ। ତେଣୁ ଆମପରି ବିବିଧ ଇନ୍ଦ୍ରିୟ-ଲାଳସାରେ ଲଟପଟ ହେଉଥିବା ସାମାନ୍ୟ କୀଟ-ପତଙ୍ଗଙ୍କ ପକ୍ଷରେ ଉପରକୁ କଷ୍ଟ ବାଟ ଯାଇ, ତଳକୁ ପୁଣି ଖସିଆସିବା ବିଚିତ୍ର କ'ଣ ?

ଗୀତା, ଆମପରି ସାଧାରଣ ଲୋକର ସେହି ଦୟନୀୟ ଦୁର୍ବଳତାର କଥା ମଧ୍ୟ ସ୍ୱୀକାର କରୁଛନ୍ତି, ଅର୍ଜୁନଙ୍କର ପୁନଃପୃଷ୍ଟ ନିମ୍ନର ପ୍ରଶ୍ନଜାଳ ଦେଇ—

## ୩୭-୩୮-୩୯

## ଅର୍ଜୁନ ଉବାଚ

ଅଯତିଃ ଶ୍ରଦ୍ଧୟୋପେତୋ ଯୋଗାଚ୍ଚଳିତମାନସଃ
ଅପ୍ରାପ୍ୟ ଯୋଗସଂସିଦ୍ଧିଂ କାଂ ଗତିଂ କୃଷ୍ଣ ଗଚ୍ଛତି । ୩୭ ।
କଚ୍ଚିନ୍ନୋଭୟବିଭ୍ରଷ୍ଟଶ୍ଛିନ୍ନାଭ୍ରମିବ ନଶ୍ୟତି
ଅପ୍ରତିଷ୍ଠୋ ମହାବାହୋ ବିମୂଢ଼ୋ ବ୍ରହ୍ମଣଃ ପଥି । ୩୮ ।
ଏତନ୍ମେ ସଂଶୟଂ କୃଷ୍ଣଚ୍ଛେତ୍ତୁମର୍ହସ୍ୟଶେଷତଃ
ତ୍ୱଦନ୍ୟଃ ସଂଶୟସ୍ୟାସ୍ୟଚ୍ଛେତ୍ତା ନ ହ୍ୟୁପପଦ୍ୟତେ । ୩୯ ।

ଅର୍ଜୁନଃ ଉବାଚ (ଅର୍ଜୁନ କହିଲେ) । [ହେ] କୃଷ୍ଣ, ଶ୍ରଦ୍ଧୟା ଉପେତଃ (ଶ୍ରଦ୍ଧାପୂର୍ବକ ଅଧ୍ୟାତ୍ମ୍ୟ ସାଧନା କରୁଥିବା ଲୋକ) ଅଯତିଃ (ସଂଯତ ନ ହୋଇପାରି) ଯୋଗାତ୍ ଚଳିତମାନସଃ [ଏବଂ] ଯୋଗପଥରୁ ତାର ମନ ଖସିଆସିବା ହେତୁରୁ) ଯୋଗସଂସିଦ୍ଧିଂ ଅପ୍ରାପ୍ୟ (ଯୋଗସିଦ୍ଧି ଲାଭ କରି ନ ପାରି) କାଂ ଗତିଂ ଗଚ୍ଛନ୍ତି (କି ପ୍ରକାର ଗତି ପାଏ ?) । [ହେ] ମହାବାହୋ (ଶ୍ରୀକୃଷ୍ଣ) [ସେ ଲୋକ] ବ୍ରହ୍ମଣଃ ପଥି (ବ୍ରହ୍ମୋପଲବ୍ଧିର ସାଧନାପଥରେ) ବିମୂଢ଼ଃ ଅପ୍ରତିଷ୍ଠଃ (କୌଣସି ପ୍ରଲୋଭନଦ୍ୱାରା ବିଭ୍ରାନ୍ତ ଓ ନିରାଶ୍ରୟ ହୋଇ [ଏବଂ ସେହି ହେତୁରୁ] ଉଭୟବିଭ୍ରଷ୍ଟଃ (ସାଂସାରିକ ଓ ଆଧ୍ୟାତ୍ମିକ ଉଭୟ ପଥରୁ ଭ୍ରଷ୍ଟ ହୋଇ) ଛିନ୍ନାଭ୍ରଂ ଇବ (ଛିନ୍ନଭିନ୍ନ ମେଘ ପରି) କଚ୍ଚିତ୍ ନ ନଶ୍ୟତି ? (କଣ କେବଳ ଉଭେଇଯାଇ ନ ଥାନ୍ତି କି ? ) । [ହେ] କୃଷ୍ଣ, ମେ (ମୋର) ଏତତ୍

ସଂଶୟଂ (ଏହି ସଂଶୟକୁ) ଅଶେଷତଃ ଛେତ୍ତୁଂ (ନିଃଶେଷଭାବରେ ଛେଦନ କରିବାକୁ) [ତୁମେହିଁ] ଅର୍ହସି (ସମର୍ଥ)। ହି (ଯେହେତୁ) ଅସ୍ୟ ସଂଶୟସ୍ୟ (ଏହି ସନ୍ଦେହର) ଛେତ୍ତା (ଛେଦନକାରୀ) ତ୍ୱଦନ୍ୟଃ (ତୁମଛଡ଼ା ଅନ୍ୟ କେହି) ନ ଉପପଦ୍ୟତେ (ମିଳିବେ ନାହିଁ)।

## ଅନୁବାଦ

ଅର୍ଜୁନ କହିଲେ "ହେ କୃଷ୍ଣ, ଶ୍ରଦ୍ଧାପୂର୍ବକ ଅଧ୍ୟାତ୍ମସାଧନା କରୁଥିବା ଲୋକ କାଳେ ଯଦି ସଂଯମ ହରାଇ ଯୋଗ-ପଥରୁ ବିଚଳିତ-ଚିତ୍ତ ହୋଇଯାଏ, ତେବେ ତାର କି ପରିଣାମ ହେବ ? ହେ କୃଷ୍ଣ, ବ୍ରହ୍ମୋପଲବ୍ଧିର ପଥରେ ଯାଉ ଯାଉ କୌଣସି ସାଂସାରିକ ଉପଲବ୍ଧିରେ (ପ୍ରଲୋଭନରେ) ପୁଣି ବିଭ୍ରାନ୍ତ ହୋଇପଡ଼ିଲେ, ସେହି ବିମୂଢ଼ ସାଧକ, ସାଂସାରିକ ଓ ଆଧ୍ୟାତ୍ମିକ, ଛିନ୍ନ-ବିଚ୍ଛିନ୍ନ ମେଘଖଣ୍ଡ ମହାକାଶରେ ବିଲୀନ ହୋଇଗଲା ପରି—ଉଭୟ ସିଦ୍ଧିରୁ ନଷ୍ଟ ହୋଇଯିବ କି ? ହେ କୃଷ୍ଣ, ମୋର ଏହି ସନ୍ଦେହକୁ ସମୂଳେ ଛେଦନ କରିବା ପାଇଁ ତୁମ ଛଡ଼ା ଆଉ କିଏ ଅଛି ?

୪୦

ଶ୍ରୀଭଗବାନୁବାଚ

ପାର୍ଥ ନୈବେହ ନାମୁତ୍ର ବିନାଶସ୍ତସ୍ୟ ବିଦ୍ୟତେ
ନ ହି କଲ୍ୟାଣକୃତ୍ କଶ୍ଚିଦ୍ଦୁର୍ଗତିଂ ତାତ ଗଚ୍ଛତି । ୪୦ ।

ଶ୍ରୀଭଗବାନ୍ (ଭଗବାନ୍ ଶ୍ରୀକୃଷ୍ଣ) ଉବାଚ (କହିଲେ)—ପାର୍ଥ (ହେ ଅର୍ଜୁନ) ତସ୍ୟ (ତାହାଙ୍କର, ଅର୍ଥାତ ସେହିପ୍ରକାରସାଧକଙ୍କର) ଇହ ଏବ ବିନାଶଃ ନ ବିଦ୍ୟତେ (ଇହଲୋକରେ ବିନାଶ ନାହିଁ, ଅର୍ଥାତ୍ ତାଙ୍କର ସାଧନା ସମ୍ପୂର୍ଣ୍ଣ ବିଫଳ ହୋଇଯିବ ନାହିଁ) ଅମୁତ୍ର ନ (ପରଲୋକରେ ମଧ୍ୟ ବିଫଳ ହେବ ନାହିଁ)। ହି (ଯେହେତୁ) ତାତ (ହେ ବତ୍ସ) କଶ୍ଚିତ୍ କଲ୍ୟାଣକୃତ୍ (ଶୁଭାନୁଷ୍ଠାନକାରୀ, ଉତ୍ତମ ଲକ୍ଷ୍ୟରେ କାମ କରିଚାଲିଥିବା କୌଣସି ବ୍ୟକ୍ତି) [କେବେହେଲେ] ଦୁର୍ଗତିଂ ନ ଗଚ୍ଛତି (ଦୁର୍ଗତି ପ୍ରାପ୍ତ ହୋଇ ନ ଥାନ୍ତି)।

## ଅନୁବାଦ

ଶ୍ରୀ ଭଗବାନ୍ ଉତ୍ତର ଦେଲେ—"ହେ ଅର୍ଜୁନ, ଦୃଢ଼ଭାବରେ ଜାଣିରଖ ଯେ, ସେପ୍ରକାର ସାଧକର ଇହ ବା ପର କୌଣସି ଲୋକରେ କୌଣସି

ପ୍ରକାର ବିନାଶ ବା ଅନିଷ୍ଟ ଘଟିବ ନାହିଁ । ଜାଣିରଖ ଯେ, ଶୁଭାନୁଷ୍ଠାନକାରୀ କୌଣସି ଲୋକ କେବେହେଲେ ଦୁର୍ଗତି ପ୍ରାପ୍ତ ହୋଇ ନ ଥାନ୍ତି ।"

**ବିଶେଷ ଭାଷ୍ୟ**

ଏହି ଶ୍ଳୋକର ଦ୍ୱିତୀୟ ପାଦଟି 'ନ ହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି)' ଗୀତାର ଏବଂ ସମଗ୍ର ବିଶ୍ୱ-ସାହିତ୍ୟର ଏକ ମହାନ୍ ବାଣୀବୋଲି ପାଠକେ ସ୍ମରଣ ରଖିବେ । ଯେକୌଣସି ମହତ୍ ଅଭିଯାନ-ପଥରେ ସହସ୍ର ବିଫଳତା ଦେଖା ଦେବାଇଁ ଦେବ । କିନ୍ତୁ ହେ ଅଭିଯାତ୍ରୀ, ଅବସାଦକୁ ପ୍ରଶ୍ରୟ ଦିଅ ନାହିଁ ସେଥିପାଇଁ । ବିଫଳତା-ଲବ୍ଧ ଜ୍ଞାନକୁ ସମ୍ବଳ କରି ପୁଣି ଉଠ, ଉନ୍ନତତର ଅଭିଯାନରେ । ଦେଖିବ, ଏଥର ଯାତ୍ରା ସହଜତର ହୋଇଉଠିବ । ବିଧାତାର ସୃଷ୍ଟିରେ କୌଣସି ହେଲେ ଶୁଭକର୍ମ ଓ ଉତ୍ତମ ପ୍ରଚେଷ୍ଟା ବ୍ୟର୍ଥ ଯାଏ ନା । ତାର ଫଳ ଆମେ ଜାଣେ ନା ଜାଣେ ଭୋଗ କରିବା । ରବୀନ୍ଦ୍ରନାଥଙ୍କର ସେହି ଅମର ସଂଗୀତ—

'ଜୀବନେ ଯତ ପୂଜା ହଲୋ ନା ସାରା
ଜାନି ହେ ଜାନି ତାଓ ହୟନି ହାରା ।'

ସ୍ମରଣ ମଧ୍ୟ କର ପାଠକେ, ଏବଂ ଗୀତାର ଦ୍ୱିତୀୟ ଅଧ୍ୟାୟର ସେହି ମହାନ୍ ବାଣୀ—'ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍'—(ଏହି ଧର୍ମର ଅର୍ଥାତ୍ କର୍ମଯୋଗର ସାମାନ୍ୟ ଅଭ୍ୟାସ ମଧ୍ୟ ସାଧକକୁ ଘୋର ସଂକଟରୁ ରକ୍ଷା କରିପାରେ) । ପୁଣି କଠୋପନିଷଦର ସେହି ମହାନ୍ ବାଣୀ—

କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା
ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ।

କବି ବା ଋଷିମାନେ କହନ୍ତି ଯେ, ସେ ବ୍ରହ୍ମଲାଭ ବା ମୁକ୍ତିର ପଥ ଖୁରଧାର ପରି ଦୁର୍ଗମ, ଅର୍ଥାତ୍ ଏକେ କଷ୍ଟଦାୟକ, ପୁଣି ଖସିପଡ଼ିବାର ଆଶଙ୍କା ସବୁବେଳେ, କିନ୍ତୁ ତଥାପି ସତ୍ୟଦ୍ରଷ୍ଟା ଋଷି କହୁଛନ୍ତି—

'ଉତ୍ତିଷ୍ଠତ, ଜାଗ୍ରତ,
ପ୍ରାପ୍ୟ ବରାନ୍ ନିବୋଧତ ।'

(ଉଠ, ଅଜ୍ଞାନ-ନିଦ୍ରାରୁ ଜାଗ୍ରତ ହୁଅ ; ଏବଂ ଯାଅ, ଦୌଡ଼, ବରେଣ୍ୟମାନଙ୍କୁ ଖୋଜ, ବିଦ୍ୟା କ'ଣ, ଜ୍ଞାନ କ'ଣ, ପରାଧୀନତା କ'ଣ, ମୁକ୍ତି କଣ, ତାହା ବୁଝିରଖ ଓ ସେହି ଅନୁସାରେ ଅଭ୍ୟାସ କର ।)

ପ୍ରକୃତରେ ସାଧକମାନଙ୍କ ପକ୍ଷରେ ଗୀତାର ଏହି ଶ୍ଳୋକଟି ସାଧନା-ସାଗରରେ ଗତି କରିବାର ଦିଗ-ଦର୍ଶନ ଯନ୍ତ୍ର ପରି ବିରାଟ ଆଶାର ବାଣୀ ।

୪୧

ପ୍ରାପ୍ୟ ପୁଣ୍ୟକୃତାଂ ଲୋକାନୁଷିତ୍ୱା ଶାଶ୍ୱତୀଃ ସମାଃ
ଶୁଚୀନାଂ ଶ୍ରୀମତାଂ ଗେହେ ଯୋଗଭ୍ରଷ୍ଟୋଽଭିଜାୟତେ । ୪୧ ।

ଯୋଗଭ୍ରଷ୍ଟଃ (ସେହି ଯୋଗପଥ-ସ୍ଖଳିତ ଲୋକ) ପୁଣ୍ୟକୃତାଂ ଲୋକାନ୍ ପ୍ରାପ୍ୟ ମୃତ୍ୟୁପରେ ପୁଣ୍ୟାତ୍ମାମାନେ ଯେଉଁ ଲୋକରେ ବାସ କରନ୍ତି, ସେହି ଲୋକକୁ ଯାଇ) [ସେଠାରେ] ଶାଶ୍ୱତୀଃ ସମାଃ ଉଷିତ୍ୱା (ବହୁକାଳଯାଏ ଅବସ୍ଥାନ କରିସାରିଲାପରେ) [ପୁଣି] ଶୁଚୀନାଂ (ସଦାଚାରଶୀଳ) ଶ୍ରୀମତାଂ (ଐଶ୍ୱର୍ଯ୍ୟବନ୍ତ ଲୋକଙ୍କ) ଗେହେ ଅଭିଜାୟତେ (ଗୃହରେ ଜନ୍ମଗ୍ରହଣ କରିଥାନ୍ତି) ।

## ଅନୁବାଦ

ହେ ଅର୍ଜୁନ, ଯୋଗପଥ-ସ୍ଖଳିତ ସେହି ସାଧକ ମୃତ୍ୟୁପରେ ପୁଣ୍ୟାତ୍ମାମାନଙ୍କ ପାଇଁ ଉଦ୍ଦିଷ୍ଟ ଲୋକକୁ ଯାନ୍ତି ଏବଂ ସେଠାରେ ବହୁକାଳ ଉପଭୋଗ କଲାପରେ, ପୁଣି ପୃଥିବୀରେ ସଦାଚାରଶୀଳ ଓ ଐଶ୍ୱର୍ଯ୍ୟବନ୍ତ ଲୋକଙ୍କ ଗୃହରେ ଜନ୍ମଗ୍ରହଣ କରିଥାନ୍ତି ।

## ବିଶେଷ ଭାଷ୍ୟ

ଯୋଗ ଓ ଭୋଗ ପରସ୍ପରବିରୋଧୀ । କୁହାଯାଏ ଯେ, ସାଧନାବସ୍ଥାରେ ପାର୍ଥିବ-ଭୋଗସ୍ପୃହା ପ୍ରବଳତର ହୋଇଉଠେ । ଅନେକ ସାଧକଙ୍କର ସେହି ଭୋଗାଭିଳାଷପାଇଁହିଁ ଯୋଗ-ପଥରୁ ସ୍ଖଳନ ହୁଏ । ହିନ୍ଦୁ ମତରେ ଏପ୍ରକାର ଆତ୍ମା ମୃତ୍ୟୁପରେ ପୁଣ୍ୟବାନ୍ ଲୋକମାନେ ଥିବା ଲୋକକୁ ଯାଇ ସେଠାରେ ବହୁକାଳ ପର୍ଯ୍ୟନ୍ତ ଅପୂର୍ଣ୍ଣ ଭୋଗବାସନା ପୂରଣ କରିଥାନ୍ତି । ତାପରେ ପୁଣି

ତାଙ୍କୁ ଧର୍ମଶରୀର ଧାରଣ କରି, ଅପୂର୍ଣ୍ଣ ଯୋଗକୁ ପୂର୍ଣ୍ଣ କରିବାକୁ ଅବକାଶ ଦିଆଯାଏ । ହିନ୍ଦୁ ମତରେ ଆତ୍ମାର ଗୁଣ ଓ ଅଧିକାର ଅନୁଯାୟୀହିଁ ସେ ବିଶେଷ ଦେଶ, ସମାଜ ଓ ପରିବାରରେ ଜନ୍ମ ନେଇଥାନ୍ତି, ଯେପରିକି ସେ ନିଜର ଅପୂର୍ଣ୍ଣତାକୁ ପୂର୍ଣ୍ଣତା ଆଡ଼କୁ ନେଇପାରିବେ ।

୪୨

ଅଥବା ଯୋଗିନାମେବ କୁଳେ ଭବତି ଧୀମତାମ୍
ଏତଦ୍ଧି ଦୁର୍ଲଭତରଂ ଲୋକେ ଜନ୍ମ ଯଦୀଦୃଶମ୍ । ୪୨ ।

ଅଥବା (କିଂବା) [ସେ ଲୋକ] ଧୀମତାଂ ଯୋଗିନାଂ ଏବ କୁଳେ (ଜ୍ଞାନନିଷ୍ଠ ଯୋଗାଭ୍ୟାସୀଙ୍କ କୁଳରେ) ଭବତି (ଜନ୍ମଗ୍ରହଣ କରନ୍ତି) । ଈଦୃଶଂ ଯତ୍ ଜନ୍ମ (ଏପରି ଯେଉଁ ଜନ୍ମ) ଲୋକେ (ଜଗତରେ) ଏତତ୍ ହି (ଏହାହିଁ) ଦୁର୍ଲଭତରଂ (ଅତି ଦୁର୍ଲଭ) ।

## ଅନୁବାଦ

ଅଥବା ସେ ଲୋକ ଜ୍ଞାନସାଧନାରତ ଯୋଗିଜନଙ୍କ ପରିବାରରେ ଜନ୍ମ ନେଇଥାନ୍ତି । ପୃଥିବୀରେ ଏପ୍ରକାର ଜନ୍ମ ଦୁର୍ଲଭ ।

୪୩

ତତ୍ର ତଂ ବୁଦ୍ଧିସଂଯୋଗଂ ଲଭତେ ପୌର୍ବଦେହିକମ୍
ଯତତେ ଚ ତତୋ ଭୂୟଃ ସଂସିଦ୍ଧୌ କୁରୁନନ୍ଦନ । ୪୩ ।

[ହେ] କୁରୁନନ୍ଦନ (ଅର୍ଜୁନ), [ସେହି ଭ୍ରଷ୍ଟ ସାଧକ] ତତ୍ର (ସେ ଜନ୍ମରେ) ପୌର୍ବଦେହିକଂ (ପୂର୍ବଦେହଜାତ) ତଂ ବୁଦ୍ଧିସଂଯୋଗଂ (ପୂର୍ବ ଜନ୍ମରେ ଯୋଗ ଆଡ଼କୁ ଲଗାଇଥିବା ବୁଦ୍ଧିକୁ) ଲଭତେ [ପୁଣି] (ପାଆନ୍ତି) ; ତତଃ ଚ (ତା ପରେହିଁ) ଭୂୟଃ (ପୁନର୍ବାର) [ସେ] ସଂସିଦ୍ଧୌ (ପୂର୍ଣ୍ଣସିଦ୍ଧିଲାଭ ଦିଗରେ ଅର୍ଥାତ୍ ମୁକ୍ତି ପାଇବା ଦିଗରେ) ଯତତେ (ଯତ୍ନବାନ୍ ହୋଇଉଠନ୍ତି) ।

## ଅନୁବାଦ

ହେ ଅର୍ଜୁନ, ସେପ୍ରକାର ପୂର୍ବଜନ୍ମରେ, ସାଧକର ବୁଦ୍ଧି ପୂର୍ବଜନ୍ମର ସାଧନା ସହିତ ସଂଯୁକ୍ତ ହୋଇଉଠେ ଏବଂ ଫଳରେ ସେ ପୂର୍ବଜନ୍ମର ଅପୂର୍ଣ୍ଣ ସାଧନାର ପୂର୍ଣ୍ଣତାପାଇଁ ଏ ଜନ୍ମରେ ପୁଣି ଯତ୍ନବାନ୍ ହୋଇଉଠନ୍ତି ।

୪୪

ପୂର୍ବାଭ୍ୟାସେନ ତେନୈବ ହ୍ରିୟତେ ହ୍ୟବଶୋଽପି ସଃ
ଜିଜ୍ଞାସୁରପି ଯୋଗସ୍ୟ ଶବ୍ଦବ୍ରହ୍ମାତିବର୍ତ୍ତତେ । ୪୪ ।

ସଃ (ସେ ଲୋକ) ତେନ ଏବ ପୂର୍ବାଭ୍ୟାସେନ (ସେହି ପୂର୍ବଜନ୍ମର ଅଭ୍ୟାସ ଯୋଗୁଁ) ଅବଶଃ ଅପି ହ୍ରିୟତେ (ବାଧ ହୋଇ ସେହି ଆଡ଼କୁ ଆକୃଷ୍ଟ ହୁଅନ୍ତି) । [ଏବଂ] ଯୋଗସ୍ୟ ଜିଜ୍ଞାସୁଃ ଅପି (ଯୋଗ ଜାଣିବାକୁ ଉତ୍ସୁକ ହୋଇ) [ସେ] ଶବ୍ଦବ୍ରହ୍ମାତିବର୍ତ୍ତତେ [ସହଜରେ] (ଶବ୍ଦବ୍ରହ୍ମ, ଅର୍ଥାତ୍ ବେଦ ବା ବେଦର ବାହ୍ୟ ଆଚାର ଆଦିକୁ ଅତିକ୍ରମ କରି ପ୍ରକୃତ ବ୍ରହ୍ମାନୁଭବକୁ ଉଠିଯାନ୍ତି ) ।

## ଅନୁବାଦ

ସେ ସାଧକ ପୂର୍ବଜନ୍ମର ଅଭ୍ୟାସ ଯୋଗୁଁ ଏକପ୍ରକାର ବାଧ ହୋଇ ସେହି ଆଡ଼କୁ ଆକୃଷ୍ଟ ହୁଅନ୍ତି ଏବଂ ଯୋଗକୁ ସଂପୂର୍ଣ୍ଣଭାବରେ ଜାଣିବାକୁ କରିବାକୁ ଉତ୍ସୁକ ରହି କ୍ରମେ ବେଦ-ଶାସ୍ତ୍ରନିର୍ଦ୍ଦିଷ୍ଟ ଆନୁଷ୍ଠାନିକ ଅନୁଷ୍ଠାନସବୁକୁ ସହଜରେ ଅତିକ୍ରମ କରିଯାଇ, ପ୍ରକୃତ ବ୍ରହ୍ମାନୁଭବକୁ ଉଠିଯାନ୍ତି ।

## ବିଶେଷ ଦ୍ରଷ୍ଟବ୍ୟ

ଉପରର ପାଞ୍ଚଟି ଶ୍ଳୋକରେ ଗୀତା ଜନ୍ମାନ୍ତରବାଦକୁ ଗ୍ରହଣ କରି-ନେଇଛନ୍ତି । ଏପର୍ଯ୍ୟନ୍ତ ପୃଥିବୀରେ ଏହା ସର୍ବସ ଗୃହୀତ ନ ହେଲେହେଁ ବସ୍ତୁତଃ ଜନ୍ମାନ୍ତରବାଦ, ଆଧୁନିକ ବିଜ୍ଞାନର ବିବର୍ତ୍ତନବାଦ (evolution) ଛଡ଼ା ଆଉ କିଛି ନୁହେଁ । କିନ୍ତୁ ଡାର୍‌ଉଇନ ବିବର୍ତ୍ତନବାଦ କେବଳ ବାହ୍ୟ ପ୍ରକୃତିକୁ ନେଇ ଗଠିତ । ଡାର୍‌ଉଇନୀୟ ସିଦ୍ଧାନ୍ତ ଅନୁସାରେ ସେହିନର ସରୀସୃପହିଁ ଆଜି ପକ୍ଷୀ ହୋଇ ଆକାଶରେ ଉଡ଼ୁଛି, ମାଙ୍କଡ଼ହିଁ ଶେଷରେ ମଣିଷ ହୋଇଛି । ଏହା ସତ୍ୟ ହୋଇଥିଲେ ମଧ୍ୟ, ଏହା କେବଳ ଶରୀର-ଯନ୍ତ୍ରର

ବିବର୍ତ୍ତନକୁ ବୁଝାଉଛି । କିନ୍ତୁ ପ୍ରଶ୍ନ ହେଉଛି, ମାଙ୍କଡ଼ଙ୍କ ଭିତରୁ ଗୋଟାଏ ଗାନ୍ଧି ବା ଆଇନ୍‌ଷ୍ଟାଇନ୍‌ର ଆବିର୍ଭାବ ହେଲା କିପରି ? ଏହାହିଁ ପର୍ଯ୍ୟବେକ୍ଷଣ କରି କରି, ହିନ୍ଦୁମାନେ ଶରୀର ପରି ଆତ୍ମାର ମଧ୍ୟ ବିବର୍ତ୍ତନ ସ୍ୱୀକାର କରିଥିଲେ । ବସ୍ତୁତଃ ସେମାନଙ୍କ ମତରେ ବିବର୍ତ୍ତନ ଘଟେ ପ୍ରକୃତରେ ଆତ୍ମା, ବୁଦ୍ଧି ଓ ମନର । ଏମାନଙ୍କର ବିବର୍ତ୍ତନର ସ୍ତରାନୁସାରୀ ହିଁ ଆତ୍ମା ଜନ୍ମେ ଜନ୍ମେ, ଦେଶ, ଧର୍ମ, ସମାଜ ଓ ଏପରିକି ଶରୀର ପାଇଥାନ୍ତି । ଗାନ୍ଧି, ରବୀନ୍ଦ୍ରନାଥ, ରାମକୃଷ୍ଣ ପ୍ରଭୃତିଙ୍କ ଜୀବନ ଆଲୋଚନା କଲେ, ଏହି ବିରାଟ ପୁରୁଷମାନେ କିପରି ଅନୁକୂଳ ପରିବାର ଓ ବାତାବରଣରେ ଜନ୍ମ ହୋଇଥିଲେ, ତାହା ଆମେ ସହଜରେ ବୁଝିପାରିବା । ବିଶେଷତଃ ଗୋଟିଏ ନିରକ୍ଷର ପଣ୍ଡା-ବ୍ରାହ୍ମଣ ଗଦାଧର ଭଟ୍ଟାଚାର୍ଯ୍ୟଙ୍କ ସାଧନା ଓ ସିଦ୍ଧିପାଇଁ ଅନୁକୂଳ ପରିବେଶସବୁ କିପରି ଆଗରୁ ସଜାଡ଼ ରଖାହୋଇଥିଲା, ତାହା ଭାବିଲେ ବିସ୍ମୟାଭିଭୂତ ହେବାକୁ ହୁଏ । ଏହି ଗୋଟିକ ଜୀବନହିଁ ଗୀତାର ଏହି ପାଞ୍ଚଟିଯାକ ଶ୍ଳୋକର କିପରି ଶାଶ୍ୱତ-ଜ୍ୱଳନ୍ତ ପ୍ରକଟୀକରଣ, ତାହା ପାଠକେ ନିଜେହିଁ ବିଚାର କରନ୍ତୁ । ଏକ ନିରକ୍ଷର ପଣ୍ଡା-ପୂଜାରୀପାଇଁ ଆଗରୁ ଦକ୍ଷିଣେଶ୍ୱରରେ ଗୋଟାଏ ନୂଆ କାଳୀ-ମନ୍ଦିର କେବଳ ଗଢ଼ା ହୋଇ ନ ଥିଲା, ସେହି ନିରକ୍ଷର ପଣ୍ଡା-ଠାକୁରଙ୍କ ସ୍ୱତନ୍ତ୍ର ସାଧନାର ପ୍ରଚାରପାଇଁ, ତେଣେ ବିବେକାନନ୍ଦଙ୍କ ପରି ଅସାଧାରଣ ପ୍ରତିଭାଧର ପବ୍ଲିସିଟି-ଅଫିସର୍ ମଧ୍ୟ ଆଗରୁ ଆପଏଣ୍ଟ୍‌ମେଣ୍ଟ୍ (ନିଯୁକ୍ତି) ପାଇ ଆସିଥିଲେ ।

ଆଧୁନିକ ଯୁଗରେ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ବଦହଜମି କଥାରେ ମାତି, ଆମ ଦେଶରେ ମଧ୍ୟ ମନୁଷ୍ୟର ଉନ୍ନତିପାଇଁ heredity (ପୈତୃକ ଗୁଣ) ଓ environment (ପରିବେଶ) ଏକାନ୍ତ ଦାୟୀ ବୋଲି ବିତଣ୍ଡା କରାଯାଇଥାଏ । ଅର୍ଥାତ୍ ଆମେ ବିଶ୍ୱାସ କରୁଁ ଓ ସେହିପରି କହୁଥାଉଁ ଯେ, ଆମର ଅଧୋଗତ ଅବସ୍ଥା ବା ବ୍ୟର୍ଥତା ପାଇଁ ଆମ ଛଡ଼ା ଆଉ ସମସ୍ତେ — ବାପା, ମା, ଶିକ୍ଷକ, ସମାଜ, ମନ୍ତ୍ରୀ ଇତ୍ୟାଦି-ଦାୟୀ । ଏହି ଧୁଆଁରେ ଏବେ ମାତିହିଁ ଚାରିଆଡ଼େ 'ସଂସ୍କାର' ଓ 'ବିପ୍ଳବ'ର ଚିତ୍କାର ଶୁଣାଯାଏ । ଅର୍ଥାତ୍, ପରିବେଶକୁ ବଦଳାଇଦେଲେ ସମାଜ ଓ ମନୁଷ୍ୟ ଆପେ ଆପେ ବଦଳିଯିବେ ଏବଂ ଧରାରେ ସ୍ୱର୍ଗ ଆପେ ଆପେ ଆସିଯିବ । କିନ୍ତୁ ଭାରତବର୍ଷ ରାଜନୈତିକ ସ୍ୱାଧୀନତା ପାଇଲା, ଶୋଷକ ଇଂରେଜ ଓ ରାଜା-ମହାରାଜା-ଜମିଦାର ଶ୍ରେଣୀ ତ ଗଲେ— ଏପରିକି ଗଉଁତିଆ ଓ ଗ୍ରାମ୍ୟ ଚଉକିଦାର ମଧ୍ୟ । ଗ୍ରାମେ ଗ୍ରାମେ କଲେଜ ମଧ୍ୟ ବସିଗଲା । ଜନତା-ଭିତରେ କଳ୍ପନାତୀତ ପରିମାଣ ଟଙ୍କା ବଣ୍ଟାହେଲା କେବଳ 'ଶିକ୍ଷା'ପାଇଁ

ନୁହେଁ, ତଥାକଥିତ 'ଉଚ୍ଚଶିକ୍ଷା'ର ପ୍ରସ୍ତୁତିପାଇଁ ମଧ୍ୟ। କିନ୍ତୁ ଫଳ କ'ଣ ହେଲା ପାଠକେ ? ଶିକ୍ଷା, ଏ ଦେଶର କୌଣସି ସମସ୍ୟା ସମାଧାନ କରିବା ପରିବର୍ତ୍ତରେ ନିଜେଇଁ ସବୁଠାରୁ ବଳ ଜଞ୍ଜାଳମୟ ସମସ୍ୟା ହୋଇଉଠିଛି ଏବଂ ପିଲେ ଶିକ୍ଷକମାନଙ୍କୁ ପିଟି, ପରୀକ୍ଷାରେ କପି କରି ମୂଲ୍ୟହୀନ ସାର୍ଟିଫିକେଟ ଯୋଗାଡ଼ କରିବାହିଁ ହେଲା ଏ ଦେଶରେ 'ଉଚ୍ଚଶିକ୍ଷା' !

ଏହି କଷ୍ଟବ୍ୟୟ ଓ ଦୁଃଖାନ୍ତକ ଦୃଶ୍ୟର ବିପରୀତରେ ଆରପଟେ ଆମେ ଯଦି ଇତିହାସର ବିରାଟ ପୁରୁଷମାନଙ୍କ ଜୀବନୀ ଆଲୋଚନା କରୁଁ, ତେବେ ଆମେ ସେଠି ଦେଖୁଁ କ'ଣ ? ଦେଖୁଁ ଯେ, ସେଠି ହେରିଡ଼ିଟି (heredity) ଓ ଏନ୍‌ଭିରନ୍‌ମେଣ୍ଟ (enviror m3nt) ର ପ୍ରଶ୍ନ ଏକାବେଳକେ ଅବାନ୍ତର। ସେଠି ଖଣ୍ଡପଡ଼ାର ଜଙ୍ଗଲରେ ରହି, ପଠାଣିସାମନ୍ତ ବିଶ୍ୱବିଖ୍ୟାତ ହୋଇପାରନ୍ତି, କାଠୁରିଆର ପୁଅ ଲିନ୍‌କନ୍ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ହୋଇପାରନ୍ତି ଏବଂ ଏକ ନିରକ୍ଷର ଦେଉଳପଣ୍ଡା ପରମହଂସ-ଭାବରେ ବିଶ୍ୱଗୁରୁ ହୋଇପାରନ୍ତି।

ତେଣୁ ସୃଷ୍ଟିର ପ୍ରକୃତ ତଥ୍ୟ ଏହି ଯେ, ପରିବାର ବା ପିତାମାତା ବା ସାମାଜିକ ପରିବେଶ ଆତ୍ମାର ଉନ୍ନୟନ ଆଣନ୍ତି ନାହିଁ। ଆତ୍ମାହିଁ ଆତ୍ମାର ଉନ୍ନତି ତିଆରି କରେ, ଜନ୍ମ ଜନ୍ମାନ୍ତରର ସାଧନା ଦେଇ। ପୂର୍ବଜନ୍ମର ଅପୂର୍ଣ୍ଣ ବିବେକାନନ୍ଦହିଁ ଏ ଜନ୍ମର ପୂର୍ଣ୍ଣ ବିବେକାନନ୍ଦ। ବିବେକାନନ୍ଦ ହିଁ ବିବେକାନନ୍ଦର ଉତ୍ତରାଧିକାରୀ। ସେହିପରି ଆମେ ପ୍ରତ୍ୟେକେ ମଧ୍ୟ ଆମ ପିତାମାତାଙ୍କର ନୁହେଁ, ଆମ ପ୍ରତ୍ୟେକଙ୍କର ଉତ୍ତରାଧିକାରୀ। ସେକ୍‌ସ୍‌ପିଅର୍, ଆଇନ୍‌ଷ୍ଟାଇନ୍, ଲିନ୍‌କନ୍ ପ୍ରଭୃତି ଲୋକୋତ୍ତର ପୁରୁଷମାନଙ୍କ ଜୀବନଗାଥା ଏକ ଏକ ପରମ ବିସ୍ମୟ। କାରଣ, ଏପ୍ରକାର ବିରାଟ ପ୍ରତିଭାମାନଙ୍କର ନାହିଁ ପରିବେଶ, ନାହିଁ ପାରିବାରିକ ପରଂପରା; ଏମାନଙ୍କ ପ୍ରତିଭାର କୌଣସି ଗୋପନ ଉତ୍ସ କୌଣସିଠାରେହିଁ ପାଉଁନାହୁଁ। ତେଣୁ ଆତ୍ମାର ଇଭଲ୍ୟୁଶନ୍ evolution) ବା ଜନ୍ମ ଜନ୍ମାନ୍ତର-ଦେଇ-ପୂର୍ଣ୍ଣୀଭବନହିଁ ଜୀବନର ପରମ ସତ୍ୟ।

ପାଠକେ ଏଇ ୪୪ ଶ୍ଲୋକର 'ହ୍ୟବଶଃ' (ଅନାୟତ୍ତଭାବରେ) ଶବ୍ଦଟିକୁ ଲକ୍ଷ୍ୟ କରିବେ। ଏହା ଅତ୍ୟନ୍ତ ବ୍ୟଞ୍ଜନାପୂର୍ଣ୍ଣ। ପ୍ରଗତିମୁଖୀ ଆତ୍ମା ସମୁଦ୍ର-ଗାମୀ ଜଳସ୍ରୋତ ପରି ତା ନିଜ ବାଟରେ ବୋହି ହିଁ ଚାଲିବ। ତାକୁ କେହି ଅଟକାଇପାରିବନି, ସେ ନିଜେ ମଧ୍ୟ। ଶ୍ରୀ ଅରବିନ୍ଦଙ୍କ ପିତା ପୁଅକୁ ପୁରାପୁରି

ଇଂରେଜ ବନେଇବାପାଇଁ ସାତ ବର୍ଷ ବୟସରୁ ଇଂଲଣ୍ଡ ପଠାଇଥିଲେ । କିନ୍ତୁ ସେ ସାହେବ ତ ହେଲେନି ଏତେ ପ୍ରଯତ୍ନ ସତ୍ତ୍ୱେ, ହେଲେ ମହାଯୋଗୀ ଅରବିନ୍ଦ । ଏହାହିଁ ଗୀତାର 'ସ୍ୱ-ଧର୍ମ' । ପ୍ରତ୍ୟେକ ଆତ୍ମାର ନିଜର 'ଧର୍ମ' ସୁନିର୍ଦ୍ଦିଷ୍ଟ । ତାକୁ ଖୋଜି ପାଇବାହିଁ, ଆବିଷ୍କାର କରିବାହିଁ ଗୀତାର ଯୋଗ, ଯେଉଁ ଯୋଗର ଅନ୍ୟ ନାମ 'କର୍ମସୁ କୌଶଳଂ' ।

୪୫

ପ୍ରଯତ୍ନାଦ୍ୟତମାନସ୍ତୁ ଯୋଗୀ ସଂଶୁଦ୍ଧକିଲ୍ବିଷଃ
ଅନେକଜନ୍ମସଂସିଦ୍ଧସ୍ତତୋ ଯାତି ପରାଂ ଗତିମ୍ ।୪୫।

ପ୍ରଯତ୍ନାତ୍ ତୁ ଯତମାନଃ (ଯୋଗରେ ଉତ୍ତରୋତ୍ତର ଯତ୍ନବାନ୍) [ଏବଂ ସେହିକ୍ରମେ] ସଂଶୁଦ୍ଧକିଲ୍ବିଷଃ (ନିଷ୍ପାପ) [ସେହି] ଯୋଗୀ (ଯୋଗ ସାଧକ) ଅନେକ ଜନ୍ମସଂସିଦ୍ଧଃ (ଅନେକ ଜନ୍ମର ସାଧନାରେ ସିଦ୍ଧିବାନ୍ ହୋଇ) ତତଃ (ତାପରେ) ପରାଂ ଗତିଂ ଯାତି (ପରମଗତି ଲାଭ କରିଥାନ୍ତି) ।

## ଅନୁବାଦ

ଏହିପରି ଯୋଗରେ ଉତ୍ତରୋତ୍ତର ଯତ୍ନବାନ୍ ଏବଂ ସେହିହେତୁ କ୍ରମେ ନିଷ୍ପାପ ହୋଇଥିବା ସେହି ଯୋଗୀ ଏକାଧିକ ଜୀବନର ସାଧନାରେ ସିଦ୍ଧିବାନ୍ ହୋଇ ଶେଷରେ ପରମଗତି ଲାଭ କରିଥାନ୍ତି, ଅର୍ଥାତ୍ ଜୀବନର ପୂର୍ଣ୍ଣତା ପ୍ରାପ୍ତ ହୋଇଥାନ୍ତି ।

୪୬

ତପସ୍ୱିଭ୍ୟୋଽଧିକୋ ଯୋଗୀ ଜ୍ଞାନିଭ୍ୟୋଽପି ମତୋଽଧିକଃ
କର୍ମିଭ୍ୟଶ୍ଚାଧିକୋ ଯୋଗୀ ତସ୍ମାଦ୍ୟୋଗୀ ଭବାର୍ଜୁନ ।୪୬।

ଯୋଗୀ (କର୍ମଯୋଗୀ) ତପସ୍ୱିଭ୍ୟଃ ଅଧିକଃ (ତପସ୍ୱୀମାନଙ୍କ ଅପେକ୍ଷା ଶ୍ରେଷ୍ଠ), ଜ୍ଞାନିଭ୍ୟଃ ଅପି (ଜ୍ଞାନୀମାନଙ୍କଠାରୁ ମଧ୍ୟ) ଅଧିକଃ (ଶ୍ରେଷ୍ଠ) । କର୍ମିଭ୍ୟଃ ଚ ଅଧିକଃ (କର୍ମୀମାନଙ୍କଠାରୁ ଶ୍ରେଷ୍ଠ), [ଏହା ଆମ୍ଭର] ମତଃ (ମତ) । ତସ୍ମାତ୍ (ସେହି ହେତୁରୁ) [ହେ] ଅର୍ଜୁନ, ଯୋଗୀ ଭବ (ତୁମେ କର୍ମଯୋଗୀ ହୁଅ) ।

## ଅନୁବାଦ

ହେ ଅର୍ଜୁନ, ଏହିପ୍ରକାର ସଂସାରବିରାଗୀ ଧ୍ୟାନପରାୟଣ ଯୋଗୀ ତପସ୍ୱୀ, ଜ୍ଞାନୀ ଓ କର୍ମୀମାନଙ୍କଠାରୁ ଶ୍ରେଷ୍ଠ । ତେଣୁ ଯୋଗୀ ଭାବରେହିଁ ଜୀବନଯାପନ କରିବାକୁ ଚେଷ୍ଟା କର ।

## ବିଶେଷ ବିଷୟ

**ତପସ୍ୱୀ:**—କୃଚ୍ଛ୍ରସାଧକ । ଶରୀରକୁ ନାନାଭାବରେ ନିର୍ଯ୍ୟାତିତ କଲେ ଯେଉଁମାନେ ଆଧ୍ୟାତ୍ମିକ ଶକ୍ତିଲାଭ ଓ ସ୍ୱର୍ଗପ୍ରାପ୍ତି ହେବ ବୋଲି ବିଶ୍ୱାସ କରୁଥିଲେ ।

**ଜ୍ଞାନୀ:**—ସାଂଖ୍ୟବାଦୀ, ଅର୍ଥାତ୍ ପୁସ୍ତକାଧ୍ୟୟନସର୍ବସ୍ୱ ଲୋକେ ।

କର୍ମୀ:—ବେଦର 'କର୍ମ' ଅର୍ଥାତ୍ ଯାଗ-ଯଜ୍ଞାଦିରେ ବିଶ୍ୱାସ କରୁଥିବା ଲୋକେ ।

ଏ ତିନି ଶ୍ରେଣୀଭିତରେ ଗୀତା କର୍ମଯୋଗୀ ବା ଯୋଗୀଙ୍କୁହିଁ ଶ୍ରେଷ୍ଠ ସ୍ଥାନ ଦେଉଛନ୍ତି । କାରଣ ସେ ସମାଜରେ ରହି, ଗୃହସ୍ଥ ହୋଇ ସକଳ କର୍ତ୍ତବ୍ୟ ପାଳନ କରନ୍ତି, ଅଥଚ ସେହି କର୍ତ୍ତବ୍ୟପାଳନଭିତରେ ଦୈନନ୍ଦିନ ଜୀବନର ସହସ୍ର ଜଞ୍ଜାଳକୁ ଯଜ୍ଞାୟିତ କରି କର୍ମର ଫଳପ୍ରତି ଆଶା ବା ଆସକ୍ତି ନ ରଖି ବା ସକଳ କର୍ମକୁ ଈଶ୍ୱରଙ୍କଠାରେ ସମର୍ପିଦେଇ, ଅନାସକ୍ତ ଭାବରେ ନିଜକୁ ଈଶ୍ୱରଙ୍କର ସାମାନ୍ୟ ଏକ ଉପକରଣ ମନେକରି କାମ କରି-ଚାଲିଯାନ୍ତି ଏବଂ ଧ୍ୟାନାଭ୍ୟାସ କରି ଆତ୍ମା ସହିତ ମିଳିତ ହେବାକୁ ଚେଷ୍ଟା କରନ୍ତି । ଏପ୍ରକାର ଯଜ୍ଞାୟିତ କର୍ମ ପଛରେ ଜ୍ଞାନ, ତପସ୍ୟା ଓ ଯଜ୍ଞ(କର୍ମ) —ତିନୋଟିଯାକ ଗୁଣ ନିହିତ । ଗୀତା ତେଣୁ ହିଁ ଏହି ଏହି ପ୍ରକାର ବ୍ରହ୍ମାର୍ପିତ କର୍ମମୟ ଜୀବନକୁ ଅଧିକ ପସନ୍ଦ କରିଛନ୍ତି । ଏହାହିଁ ଗୀତାର ଯୋଗ ବା କର୍ମଯୋଗ ।

କିନ୍ତୁ ଗୀତା ବର୍ତ୍ତମାନ ଆଉ ଏକ ମତବାଦ ଏହି ଅଧ୍ୟାୟର ଶେଷ ଶ୍ଲୋକରେ ପରିବେଷିତ କରୁଛନ୍ତି, ଠିକ୍ ଯେପରି ପୂର୍ବ ୫ମ ଅଧ୍ୟାୟର ଶେଷ ଶ୍ଲୋକରେ କରିଥିଲେ ।

୪୭

ଯୋଗିନାମପି ସର୍ବେଷାଂ ମଦ୍‌ଗତେନାନ୍ତରାତ୍ମନା
ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ ସ ମେ ଯୁକ୍ତତମୋ ମତଃ । ୪୭ ।

[କିନ୍ତୁ] ଯଃ (ଯେ) ଶ୍ରଦ୍ଧାବାନ୍ (ଶ୍ରଦ୍ଧାଯୁକ୍ତ ହୋଇ) ମଦ୍‌ଗତେନ ଅନ୍ତରାତ୍ମନା (ମୋଠାରେ ସମର୍ପିତ ଅନ୍ତରାତ୍ମାଦ୍ୱାରା) [କେବଳ] ମାଂ ଭଜତେ (ମତେହିଁ, ଈଶ୍ୱରଙ୍କୁହିଁ ଭଜନା କରନ୍ତି) ସଃ (ସେ) ସର୍ବେଷାଂ ଅପି ଯୋଗିନାଂ (ସବୁ ଯୋଗୀଙ୍କ ମଧ୍ୟରେ) ମେ ଯୁକ୍ତତମଃ ମତଃ (ସର୍ବାପେକ୍ଷା ଶ୍ରେଷ୍ଠ ବୋଲି ମୋର ମତ) ।

## ଅନୁବାଦ

କିନ୍ତୁ ସବୁ ଯୋଗୀଙ୍କ ଭିତରେ ଯେ ମଦ୍‌ଗତପ୍ରାଣ ହୋଇ ଶ୍ରଦ୍ଧାବନ୍ତ-ଭାବରେ ମୋତେ (ଏକମେବାଦ୍ୱିତୀୟ ପରମେଶ୍ୱରଙ୍କୁହିଁ) ଭଜନା କରିଥାନ୍ତି, ତାଂକୁହିଁ ସବୁଠାରୁ ଶ୍ରେଷ୍ଠ 'ଯୁକ୍ତ' ବୋଲି ଜାଣିବ ।

## ବିଶେଷ ଭାଷ୍ୟ

ଗୀତା ଏହି ଛଅ ଅଧ୍ୟାୟଯାକ ଜ୍ଞାନ ଓ କର୍ମର କଥା କହିବାଭିତରେ ଏଠାରେ ସାମାନ୍ୟଭାବରେ 'ଭକ୍ତି'ର କଥା ଶେଷ ଶ୍ଳୋକଟି ଦେଇ ସୂଚିତ କରାଇଛନ୍ତି । ପଞ୍ଚମ ଅଧ୍ୟାୟର ଶେଷ ଶ୍ଳୋକରେ ମଧ୍ୟ ଏହିପରି ସୂଚନା ଦେଇଛନ୍ତି । ଏହାର ବିଶଦୀକରଣ ଆମେ ଗୀତାର ପରବର୍ତ୍ତୀ ଅଧ୍ୟାୟଠାରୁ ପାଇବା । କାରଣ ପର ଅଧ୍ୟାୟଠାରୁ ଗୀତାର 'ଭକ୍ତିଯୋଗ' ଓ 'ଈଶ୍ୱରବାଦ'ହିଁ ବିଶେଷଭାବରେ ବ୍ୟାଖ୍ୟାପିତ ହେବ ।

ଗୀତାରେ 'କର୍ମଯୋଗ'ର ବିଶେଷ ବ୍ୟାଖ୍ୟାନ ଏହିଠାରୁ ତେଣୁ ଏକପ୍ରକାର ଶେଷ ହେଲା । ତାପରେ ବିଶେଷଭାବରେ ଭକ୍ତିଯୋଗ ଓ ଜ୍ଞାନଯୋଗର ପାଳି ଆସିବ । ଯେଉଁ ପାଠକପାଠିକା ଗୀତାର ଏହି ଜୀବନାଦର୍ଶ ନେଇ ପ୍ରକୃତ ଆଗ୍ରହୀ, ସେମାନଙ୍କୁ ଅନୁରୋଧ, ସେମାନେ ଦୟାକରି ସ୍ୱାମୀ ବିବେକାନନ୍ଦଙ୍କ 'କର୍ମଯୋଗ' ବହିଖଣ୍ଡି ଧ୍ୟାନ ଦେଇ ପଢ଼ିବେ । ଏ ବହିଟି ବୋଧହୁଏ ସେହି ଅସାଧାରଣ ପ୍ରତିଭାଧର ସନ୍ନ୍ୟାସୀଙ୍କର ସମଗ୍ର ରଚନାବଳୀମଧ୍ୟରେ, ଶ୍ରେଷ୍ଠ ଯାହାକୁ ଇଂରାଜୀରେ କହନ୍ତି ମାଷ୍ଟାର୍‌ପିସ୍ (master piece) । ଏହି ଲେଖକ ତେଣୁ ସେ ଗ୍ରନ୍ଥଟିକୁ

ବାରଂବାର ଅଧ୍ୟୟନ କରନ୍ତି । ଏହା ପାଠକଙ୍କୁ କେବଳ ଗୀତାର 'କର୍ମଯୋଗ' ବୁଝାଇବନି, ଏହା ସେମାନଙ୍କୁ ଯୋଗାଇଦେବ ଏକ ପରିପୂର୍ଣ୍ଣ ଜୀବନାଦର୍ଶ, ଏକ ଯୁକ୍ତିଯୁକ୍ତ ଜୀବନ-ଯାତ୍ରା ଓ ଜୀବନ-ଦର୍ଶନ । ଏଠାରେ ଆମେ ଭାରତର ଶ୍ରେଷ୍ଠ କର୍ମଯୋଗୀ ଗାନ୍ଧିଜୀଙ୍କର ଗୀତାର କର୍ମଯୋଗ ସମ୍ପର୍କରେ କେତୋଟି ମୂଲ୍ୟବାନ ମନ୍ତବ୍ୟ ପରିବେଷିତ କରି ବିଦାୟ ନେଉଛୁଁ ।

ଗାନ୍ଧିଜୀ ତାଙ୍କର 'Message of the Gita'ରେ କହିଛନ୍ତି—

"ସାଧାରଣ ମତରେ ଗୁଡ଼ାଏ ବହି ପଢ଼ିଥିବା ଲୋକହିଁ ଜ୍ଞାନୀ । ତାଙ୍କର କୌଣସି ସାମାଜିକ ସେବାକର୍ମ କରିବାର ଆବଶ୍ୟକତା ନାହିଁ ବୋଲି ଆମର ଧାରଣା । ସେହି ତଥାକଥିତ ଜ୍ଞାନ-ଯୋଗୀ ଗୋଟିଏ ଲୋଟାକୁ ନେଇଯିବାକୁ ମଧ୍ୟ ମନେ କରିବେ କର୍ମ ଓ ବନ୍ଧନର କାରଣ ।

ଅନ୍ୟ ପକ୍ଷରେ ଭକ୍ତିକ ଅନାଅ । ସାଧାରଣ ଭାବନାରେ ଭକ୍ତି କେବଳ କୋମଳ ଭାବପ୍ରବଣତା ବା ମାଳା-ଜପ । କୌଣସି ସ୍ନେହବଶ ସେବାକର୍ମ କରିବା ମଧ୍ୟ ଭକ୍ତଙ୍କର କର୍ତ୍ତବ୍ୟଭିତରେ ଗଣାଯାଏ ନାହିଁ । ତେଣୁ ଏ ପ୍ରକାର ଭକ୍ତ କେବଳ ପାନ-ଭୋଜନାଦି କର୍ମପାଇଁ ସିନା ମାଳା ଗଡ଼େଇବା ବନ୍ଦ କରିଥାନ୍ତି, କିନ୍ତୁ ରୋଗିସେବା ବା ଅନ୍ନ ପେଷିବାପାଇଁ ନୁହେଁ ।

କିନ୍ତୁ ଗୀତା କହନ୍ତି ଯେ, କେହି ହେଲେ ଜଣେ ବିନା କର୍ମରେ ସିଦ୍ଧିଲାଭ କରି ନାହାନ୍ତି । ଜନକଂକ ପରି ରାଜ୍ୟେଶ୍ୱରଂକୁ ମଧ୍ୟ ଏହି କର୍ମ ଭିତର ଦେଇ ଯିବାକୁ ହୋଇଛି । ଈଶ୍ୱର ମଧ୍ୟ କ୍ଷଣକପାଇଁ କାମ ବନ୍ଦ କରିଦେଲେ ଏ ସୃଷ୍ଟି ଧ୍ୱଂସ ପାଇଯିବ । ତେଣୁ ଆମ ପରି ସାଧାରଣ ଲୋକପକ୍ଷରେ ସବୁବେଳେ କର୍ମ-ନିରତ ରହିବାର ଆବଶ୍ୟକତା ସହଜରେ ଅନୁମେୟ ।

ଏକ ପକ୍ଷରେ ଏହା ଯେପରି ନିଃସନ୍ଦେହଭାବରେ ସତ୍ୟ ଯେ ପ୍ରତ୍ୟେକ କର୍ମ ବନ୍ଧନର କାରଣ ହୋଇପାରେ, ଅପର ପକ୍ଷରେ ଏହା ମଧ୍ୟ ସେହିପରି ସତ୍ୟ ଯେ, ସମସ୍ତ ପ୍ରାଣୀ, ଇଚ୍ଛାନ୍ତୁ ବା ନ ଇଚ୍ଛାନ୍ତୁ, କୌଣସି କର୍ମରେ ଲାଗି-ରହିବେହିଁ ରହିବେ । ପୁଣି କର୍ମ କହିଲେ, ଉଭୟ ଶାରୀରିକ ଓ ମାନସିକ କର୍ମକୁ ବୁଝାଇବ । ତେଣୁ ଲୋକ କାମ କରିବ ଅଥଚ କର୍ମଜନିତ ବନ୍ଧନ ଭୋଗ କରିବନି, କିପରି ଆଶା କରିପାରେ ?

ମୁଁ ଯେତେଦୂର ଜାଣିପାରୁଛି, ଗୀତା ଯେପରିଭାବରେ ଏହାର ସମାଧାନ ଉପସ୍ଥାପିତ କରିପାରିଛନ୍ତି, ତାହା ଅନନ୍ୟ । ଗୀତା ଉପଦେଶ ଦେଉଛନ୍ତି —ତୁମକୁ ସମାଜ ଯେଉଁ କାମ କରିବାକୁ ଦେଇଛି, ତାହା ନିଷ୍ଠାର ସହିତ

କର, କିନ୍ତୁ ଫଳାଶା ରଖି ନୁହେଁ । ଅନାସକ୍ତ ହୋଇ କାମ କର । କାମ କର, କିନ୍ତୁ ପୁରସ୍କାରର ଆଶା ରଖି କାମ କର ନାହିଁ ।

ଏହାହିଁ ଗୀତାର ସୁନିର୍ଦ୍ଦିଷ୍ଟ ଓ ନିଃସନ୍ଦେହ ବାଣୀ । ଯିଏ କର୍ମ ପରିତ୍ୟାଗ କଲା, ତାର ଅଧଃପତନ ନିଶ୍ଚିତ । କିନ୍ତୁ ଯେ କାମ କରି ପୁରସ୍କାର ଗୃହେ ନା, ସେ ଉପରକୁ ଉଠେ । ଅବଶ୍ୟ କୌଣସି କାମର ଫଳାସକ୍ତିଶୂନ୍ୟତାର ଅର୍ଥ ନୁହେଁ ପରିଣାମପ୍ରତି ନିଃସ୍ପୃହତା । ଲୋକ ଯେକୌଣସି କାମ ହାତକୁ ନେବ, ତାର ପରିଣତି ସେ ଚିନ୍ତା କରି ଦେଖିବ, ଉପାୟର ମନ୍ଦତା ବା ଉତ୍ତମତା ବୁଝିନେବ ଏବଂ ଭଲରୂପେ ବିଚାରିବ, ସେ କାମପ୍ରତି ନିଜର ଯଥୋପଯୁକ୍ତ ଶକ୍ତି ବା ଯୋଗ୍ୟତା ଅଛି କି ନାହିଁ । ଯେ କର୍ମପାଇଁ ଯୋଗ୍ୟ ଓ ଶକ୍ତିସଂପନ୍ନ ଅଥଚ ପୁରସ୍କାରର ଆଶା ନ ରଖି ହାତକୁ ନେଇଥିବା କାମଟିକୁ ନିଷ୍ଠା ଓ ଆନ୍ତରିକତା ସହିତ କରିଥାଏ, ତାକୁହିଁ କେବଳ ଫଳତ୍ୟାଗୀ ବୋଲି କୁହାଯିବ ।

ପୁଣି କେହି ଯେପରି ମନେ ନ କରନ୍ତୁ ଯେ ଫଳତ୍ୟାଗୀ କର୍ମଯୋଗୀର ଭାଗ୍ୟ ସମ୍ପୂର୍ଣ୍ଣ ଫଳହୀନ । ଗୀତା ପାଠ କଲେ ଏପରି କୌଣସି ବ୍ୟର୍ଥତାର ସୂଚନା ମିଳେ ନାହିଁ । ବସ୍ତୁତଃ ଯେ ଫଳାସକ୍ତି ତ୍ୟାଗ କରନ୍ତି, ସେ ସହସ୍ରଗୁଣ ଫଳ ପାଇଥାନ୍ତି । ଗୀତା ଫଳାସକ୍ତିତ୍ୟାଗ କେବଳ ସାଧକର ବିଶ୍ୱାସର କଠିନ ପରୀକ୍ଷା ମାତ୍ର । ଯେଉଁ ଲୋକ ସବୁବେଳେ ଫଳପାଇଁ ଚିନ୍ତିତ, ସେ ଲୋକ ଲକ୍ଷ୍ୟସିଦ୍ଧିପାଇଁ ଯେଉଁ ସ୍ନାୟବିକ ଦୃଢ଼ତା ଦରକାର, ତାହା ହରାଇବସେ । ସେ ଧୈର୍ଯ୍ୟ ହରାଇବସିବ ଓ ହରାଇବ ଚିନ୍ତା-ଶକ୍ତି ଏବଂ ଯାହା ତା ପକ୍ଷରେ ଅଯୋଗ୍ୟ, ଏପରି କାମ ମଧ୍ୟ କରିଚାଲିବ । ଅଧୈର୍ଯ୍ୟରେ ତାକୁ ଗୋଟାଏ କାମ ଛାଡ଼ି ଅନ୍ୟ କାମ ଧରିବାର ମଧ୍ୟ ଆମେ ଦେଖିବା । ଆହୁରି ମଧ୍ୟ ଦେଖିବା ଯେ, କୌଣସିଟି କାମରେ ତାର ଦୃଢ଼ ନିଷ୍ଠା ନାହିଁ । ଫଳାସକ୍ତ ଲୋକ ଯୌନ-ବ୍ୟଭିଚାରାସକ୍ତ ଲୋକ ପରି ସବୁବେଳେ ବିକ୍ଷୁବ୍ଧଚିତ୍ତ ଓ ନୈତିକ ବିଚାରପ୍ରତି ଲଘୁଚିତ୍ତ । ସେ ଲକ୍ଷ୍ୟସାଧନପାଇଁ ଯେକୌଣସି ଉପାୟ ଉଚିତ ବୋଲି ମନେ କରିଥାଏ ଏବଂ ଅବାଧରେ ଅସତ୍ ଉପାୟ ମଧ୍ୟ ଅବଲମ୍ବନ କରିଥାନ୍ତି ।"

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଯୋଗଶାସ୍ତ୍ରେ ଶ୍ରୀ କୃଷ୍ଣାର୍ଜୁନ ସଂବାଦେ ଧ୍ୟାନଯୋଗୋ ନାମ ଷଷ୍ଠୋଽଧ୍ୟାୟଃ ।